# ଶିକ୍ଷା ମନୋବିଜ୍ଞାନ

(+୩ ଶ୍ରେଣୀ ପାଇଁ)

ଅଧ୍ୟାପକ **ବିରଞ୍ଚି ନାରାୟଣ ଦାଶ** ଏମ. ଏ., ଏମ୍. ଏଡ୍. ଓ ଭ. ଏସ

ଶିକ୍ଷା ବିଭାଗ, ସାମନ୍ତ ଚନ୍ଦ୍ର ଶେଖର ମହାବିଦ୍ୟାଳୟ, ପୁରୀ

**ବୁକ୍ସ ଏଣ୍ଡ ବୁକ୍ସ**

**ବିନୋଦବିହାରୀ, କଟକ-୨**

# ଶିକ୍ଷା ମନୋବିଜ୍ଞାନ

+ ୩ ଶ୍ରେଣୀ ନିମନ୍ତେ

ଲେଖକ :

ଅଧ୍ୟାପକ ବିରଞ୍ଚି ନାରାୟଣ ଦାଶ, ଏମ୍. ଏ., ଏମ୍. ଏଡ୍. ଓ ଇ. ଏସ

ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀ

ପ୍ରକାଶକ :

ବୁକ୍ସ ଏଣ୍ଡ ବୁକ୍ସ

ବିନୋଦବିହାରୀ, କଟକ-୨

ପ୍ରଥମ ପ୍ରକାଶ—୧୯୮୭



ମୁଦ୍ରଣ :

ଜାନକୀ ପ୍ରିଣ୍ଟର୍ସ

ଅଲିଶା ବଜାର, କଟକ-୨

ମୂଲ୍ୟ—ଛବିଶି ଟଙ୍କା ମାତ୍ର

# ଭୂମିକା

ଭାରତୀୟ ଦର୍ଶନ ଥିଲା ମୁଖ୍ୟତଃ ମୁକ୍ତି କେନ୍ଦ୍ରିକ । ଏ ଦେଶର ଯୋଗୀ ଓ ମନୀଷୀମାନେ କର୍ମବନ୍ଧନରୁ ମୁକ୍ତି ପାଇଁ ମୃତ୍ୟୁ ଓ ନିର୍ବାଣ କଥା କେବଳ ଚିନ୍ତା କରୁଥିଲେ । ଆମ ଜୀବନ ଦର୍ଶନ ସୃଷ୍ଟିକୁ ସ୍ରଷ୍ଟା ପାଇଁ ଅବହେଳା କରୁଥିଲା । ବେଦାନ୍ତ ଦର୍ଶନର "ବ୍ରହ୍ମ ସତ୍ୟ ଜଗନ୍ମିଥ୍ୟା" ଉକ୍ତିରେ ଏହି ସତ୍ୟ ପ୍ରକଟିତ । ଶିକ୍ଷାର ଦର୍ଶନ ଓ ଅଭିମୁଖ୍ୟ ସାଧାରଣ ଜୀବନ ଦର୍ଶନ ଦ୍ୱାରା ନିୟନ୍ତ୍ରିତ ହୁଏ । ତେଣୁ ପୌରାଣିକ ଓ ବୈଦିକ ଯୁଗରୁ ଆମ ଶିକ୍ଷାର ଅଭିମୁଖ୍ୟ ହୋଇଛି "ସା ବିଦ୍ୟା ଯା ବିମୁକ୍ତୟେ" । ମୁକ୍ତିକାମୀ ଶିକ୍ଷା ପ୍ରଧାନତଃ ବ୍ୟକ୍ତି କେନ୍ଦ୍ରିକ, ବ୍ୟକ୍ତି ପାଇଁ ଏହା ସମାଜକୁ ଅବହେଳା କରେ । ଭାରତରେ ଏଥିପାଇଁ ଏକ ସାର୍ବଜନୀନ ଶିକ୍ଷା ବ୍ୟବସ୍ଥା ଏପର୍ଯ୍ୟନ୍ତ ସମ୍ଭବ ହୋଇ ନଥିଲା । ଶିକ୍ଷା ବ୍ୟବସ୍ଥାରେ ଏହି ବ୍ୟକ୍ତି କେନ୍ଦ୍ରିକତା ଏବଂ ପାରଲୌକିକତା ଯୋଗୁଁ ଭାରତବର୍ଷ ମଧ୍ୟ ଯୁଗରେ ତା'ର ସ୍ୱାଧୀନତା ହରାଇଥିଲା । ଭାରତ ବଡ଼ ବଡ଼ ଦାର୍ଶନିକ, ଯୋଗୀ, କବି ଓ ବୈଜ୍ଞାନିକ ସୃଷ୍ଟି କରିଛି; କିନ୍ତୁ କର୍ମୀ ସୃଷ୍ଟି କରିପାରି ନାହିଁ । ପ୍ରକାରାନ୍ତରେ ପାଶ୍ଚାତ୍ୟ ଦେଶର ଦର୍ଶନ ସୃଷ୍ଟି ପାଇଁ ସ୍ରଷ୍ଟାକୁ ଅବହେଳିତ କରିଛି । ଏହି ଇହଲୌକିକ ସର୍ବସ୍ୱ ଦର୍ଶନରେ ଶିକ୍ଷା ସମାଜ ଅଭିମୁଖୀ । ତେଣୁ ସାର୍ବଜନୀନ ଶିକ୍ଷା ନୀତି କେବଳ ଇଉରୋପରୁ ହିଁ ଆରମ୍ଭ ହୋଇଛି । ଏ ଶିକ୍ଷା ସମାଜର ଉନ୍ନତି ବିଧାନ କରେ ସତ୍ୟ, ମାତ୍ର ବ୍ୟକ୍ତିର ଶାଶ୍ୱତ ମୂଲ୍ୟକୁ ସମ୍ମୁଖରେ ରଖି ନଥିବାରୁ ନିଜକୁ ଯନ୍ତ୍ରବତ୍ କରି ପକାଏ । ଏକ ଦେଶ-ଦର୍ଶିତା ଯୋଗୁଁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଶିକ୍ଷା ଉଭୟତଃ ସାମାଜିକ ଉନ୍ନତିକୁ ବ୍ୟାହତ କରିଛନ୍ତି ।

ତେଣୁ ଏକ ସମନ୍ୱିତ ଶିକ୍ଷା ବ୍ୟବସ୍ଥାରେ ବ୍ୟକ୍ତିର ଶାଶ୍ୱତ ମୂଲ୍ୟ ଏବଂ ସାମାଜିକ ଉନ୍ନତି ଓ ରୂପାନ୍ତର ଧ୍ୟେୟ ହେବା ଉଚିତ୍ । ଈଶ୍ୱର ଲୀଳା-କର୍ମ ମାଧ୍ୟମରେ ନିଜକୁ ବ୍ୟକ୍ତ କରନ୍ତି ଏବଂ ବ୍ୟକ୍ତି କର୍ମ ମାଧ୍ୟମରେ ନିଜର ତଥା ସମାଜର ସର୍ବାଙ୍ଗୀନ ଉନ୍ନତି ଘଟାଇ ବିଶ୍ୱଭୂତ ସହ ଏକୀଭୂତ ହୁଏ । ତେଣୁ 'କର୍ମ' ଏକ ସାଧାରଣ ମାଧ୍ୟମ ଯାହାଦ୍ୱାରା ସୃଷ୍ଟି କେନ୍ଦ୍ରିକ ଓ ସ୍ରଷ୍ଟା କେନ୍ଦ୍ରିକ ଶିକ୍ଷା ମଧ୍ୟରେ ସମନ୍ୱୟ ଆସିପାରିବ । ସର୍ବୋପରି ଆବେଗ (Affection) କର୍ମ (Conation or Action) ଓ ଜ୍ଞାନ (Cognition or Knowledge) ମନୁଷ୍ୟ ବ୍ୟକ୍ତିତ୍ୱର ତିନୋଟି ପରିସର । ସମନ୍ୱିତ ଶିକ୍ଷା ଏହି ତିନୋଟି ପରିସରର ଉନ୍ନତି ବିଧାନ କରେ । ବିନୋବାଙ୍କ ମତରେ

କୌଣସି ଗୋଟିଏ ପକ୍ଷସରର ପ୍ରାଧାନ୍ୟ ଯୋଗୁଁ ମନୁଷ୍ୟ ଦାର୍ଶନିକ, କବି ଓ କର୍ମୀ ହୋଇପାରେ । ମାତ୍ର କୌଣସି ଗୋଟିଏ ବିଷୟକୁ ଅଯଥା ଗୁରୁତ୍ୱ ଦେବା ଅର୍ଥ ବ୍ୟକ୍ତିତ୍ୱକୁ ବିକୃତ କରିବା । ଆବେଗର ପ୍ରାଧାନ୍ୟରେ ମନୁଷ୍ୟ "ମା" ହୋଇପାରେ ଓ ଅଯଥା ପ୍ରାଧାନ୍ୟରେ ପ୍ରକୃତ ପକ୍ଷସ୍ଖଳିତ ହୋଇ ପଶୁ ପାଲଟି ଯାଇପାରେ । ସେହିପରି 'କର୍ମ'ର ପ୍ରାଧାନ୍ୟରେ ମନୁଷ୍ୟ ଦୁର୍ବୋଧ୍ୟରେ ଚାଲିବନ୍ତ ହୁଏ । ଜ୍ଞାନ ଉପରେ ଅଯଥା ଗୁରୁତ୍ୱ ଦେଲେ ମନୁଷ୍ୟ ଏକ ଶୁଷ୍କ ଦାର୍ଶନିକ ମାତ୍ର ହେବ । ଆବେଗ କର୍ମକୁ ଏକନିଷ୍ଠ କରେ । ଜ୍ଞାନ କର୍ମକୁ ପ୍ରବୃତ୍ତ କରେ ଏବଂ କର୍ମ ଜ୍ଞାନ ଓ ଆବେଗକୁ କ୍ରିୟାଶୀଳ ଓ ସକ୍ରିୟ କରେ । ତେଣୁ କର୍ମ ହେଲା ପ୍ରକାଶ ମାଧ୍ୟମ । ଶ୍ରୀମଦ୍ ଭଗବଦ୍ ଗୀତା କର୍ମ ଉପରେ ବେଶୀ ଗୁରୁତ୍ୱ ଆରୋପ କରିଛି ଏବଂ ଲୋକମାନ୍ୟ ତିଲକ ତାଙ୍କ 'ଗୀତା ରହସ୍ୟ'ର ନାମ ରଖିଛନ୍ତି 'କର୍ମଯୋଗ ଶାସ୍ତ୍ର' । ମୁକ୍ତି କେବଳ କର୍ମ ମାଧ୍ୟମରେ ସମ୍ଭବ । କର୍ମ ପରିତ୍ୟାଗରେ ନୁହେଁ । ଆତ୍ମ ନିଯୁକ୍ତ ହେଉ ବା ବହିଃ ନିଯୁକ୍ତ ହେଉ—ନିଯୁକ୍ତି ଦ୍ୱାରା କର୍ମ ସମ୍ଭବ । ତେଣୁ ଆମ ଶିକ୍ଷାର ଯଥାର୍ଥ ଆଭିମୁଖ୍ୟ ହେବା ଉଚିତ୍ "ସା ବିଦ୍ୟା ଯା ନିଯୁକ୍ତୟେ" ।

ଭାରତକୁ କୁହାଯାଏ କର୍ମ ଭୂମି ଓ ମୋକ୍ଷ ଭୂମି । ଏ ଦେଶର ବ୍ୟକ୍ତି କର୍ମ ମାଧ୍ୟମରେ ମୋକ୍ଷ ଅନୁସରଣ କରେ । ଗଙ୍ଗା ନଦୀ ପ୍ରବାହମାନ ଭାରତୀୟ ସଂସ୍କୃତିର ପ୍ରତୀକ । ସରସ୍ୱତୀ ଓ ଯମୁନା ଗଙ୍ଗାରେ ମିଳିତ ହୋଇଛନ୍ତି ଏବଂ ଗଙ୍ଗାନଦୀ ଶେଷରେ ମହା ସମୁଦ୍ରରେ ମିଶି ଯାଇଛି । ଆମ ଶିକ୍ଷା ଏକ ତ୍ରିବେଣୀ ସଙ୍ଗମ ହେବା ଉଚିତ୍, ଯେଉଁଠାରେ ଜ୍ଞାନମୟୀ ସରସ୍ୱତୀ ଏବଂ ରାଧା-କୃଷ୍ଣ-ବାଧୁରୀ ଆବେଗମୟୀ ଯମୁନା ଗଙ୍ଗାର ମହାକର୍ମ ପ୍ରବାହରେ ନିଜକୁ ମିଳିତ କରି ବ୍ୟକ୍ତି ଓ ସମାଜକୁ ଅସୀମତାର ସାଗର ଆଡ଼କୁ ଟାଣି ନିଅନ୍ତି । ଆମର ନୂତନ ୧୦ + ୨ + ୩ ଶିକ୍ଷା ବ୍ୟବସ୍ଥା ଏକ ଜାତୀୟ ଶିକ୍ଷା ବ୍ୟବସ୍ଥା ଏବଂ ଏହି ବ୍ୟବସ୍ଥାରେ କର୍ମକୁ ମୁଖ୍ୟ ସ୍ଥାନ ଦିଆଯାଇଥିବାରୁ ତାହା ଏକାନ୍ତ ଭାବେ ସ୍ୱାଗତଯୋଗ୍ୟ ।

କୋଠାରୀ କମିଶନ ୧୯୬୬ ମସିହା ଜୁନ୍ ମାସରେ ୧୦ + ୨ + ୩ ଶିକ୍ଷା ପଦ୍ଧତିକୁ ଭାରତର ଜାତୀୟ ଶିକ୍ଷା ଭାବେ ଗ୍ରହଣ କରିବାକୁ ସୁପାରିଶ କରିଥିଲେ । ୧୯୭୨ ମସିହା ଅକ୍ଟୋବର ମାସରେ ସେବା ଗ୍ରାମ ଜାତୀୟ ଶିକ୍ଷା ସମ୍ମିଳନୀ ଉକ୍ତ ସୁପାରିଶ ପ୍ରତି ଗୁରୁତ୍ୱ ଆରୋପ କରି ଏହାକୁ ଦେଶରେ ଏକରୂପ-ପଦ୍ଧତି (Uniform Pattern) ରୂପେ କାର୍ଯ୍ୟକାରୀ କରିବାକୁ ଭାରତ ସରକାରଙ୍କ ଉପରେ ଚାପ ପକାଇଥିଲେ । ବର୍ତ୍ତମାନ ଭାରତ ସରକାର ତଥା ପ୍ରାୟ ସମସ୍ତ ରାଜ୍ୟସରକାର ଏହି ଶିକ୍ଷା ପ୍ରଣାଳୀକୁ ଜାତୀୟ ଶିକ୍ଷା ପଦ୍ଧତି ଭାବେ ଗ୍ରହଣ କଲେଣି । ୧୯୮୩ ମସିହାରୁ ଓଡ଼ିଶାରେ ୧୦ + ୨ + ୩ ଶିକ୍ଷା ପ୍ରଚଳିତ ହୋଇ ଆସୁଅଛି ।

ଏ ପର୍ଯ୍ୟନ୍ତ +୩ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କ ପାଇଁ ଶିକ୍ଷା ମନୋବିଜ୍ଞାନ' ଉପରେ କୌଣସି ପୁସ୍ତକ ପ୍ରକାଶ ପାଇନାହିଁ । ମୋର ସୀମିତ ଜ୍ଞାନ ଓ ଅଭିଜ୍ଞତା ଦୃଷ୍ଟିରୁ ଏପ୍ରକାର ପୁସ୍ତକ ରଚନା କରିବା କଷ୍ଟସାଧ୍ୟ ହେଲେ ମଧ୍ୟ, ଶିକ୍ଷା (Education) ବିଷୟକୁ ଆମର ମାତୃଭାଷା ଓଡ଼ିଆରେ ଲେଖିବାର ସୁଯୋଗ ମିଳିଥିବା ଯୋଗୁଁ ମୁଁ ଏହି ଦାୟିତ୍ୱ ଆନନ୍ଦରେ ଗ୍ରହଣ କଲି ।

ପୁସ୍ତକର ପାଣ୍ଡୁଲିପି ପ୍ରସ୍ତୁତ କଲାବେଳେ ଏ ସମ୍ବନ୍ଧୀୟ ବିଭିନ୍ନ ପୁସ୍ତକର ସାହାଯ୍ୟ ନେଇଛି । ଏଥିପାଇଁ ମୁଁ ପ୍ରତ୍ୟେକ ପୁସ୍ତକ ରଚୟିତା ନିକଟରେ ଋଣୀ ।

ମୋର କେତେକ ଛାତ୍ରଛାତ୍ରୀ, ସହକର୍ମୀ ଓ ବନ୍ଧୁ ପୁସ୍ତକର ପାଣ୍ଡୁଲିପି ପ୍ରସ୍ତୁତ ସମୟରେ ଅକୁଣ୍ଠ ସାହାଯ୍ୟ କରିଥିବାରୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଛି ।

ମୋର ପ୍ରକାଶକ **ବୁକ୍‌ସ ଆଣ୍ଡ ବୁକ୍‌ସ** ପୁସ୍ତକଟିକୁ ପ୍ରକାଶ କରିବା ପାଇଁ ସମ୍ମତି ପ୍ରଦାନ କରିଥିବାରୁ ମୁଁ ତାଙ୍କ ନିକଟରେ ଋଣୀ । ପରିଶେଷରେ ମୋର ଆଶା ଓ ବିଶ୍ୱାସ ଯେ, ଏ ପୁସ୍ତକଟି +୩ ରେ ଅଧ୍ୟୟନ କରୁଥିବା ଶିକ୍ଷା ବିଭାଗର ଛାତ୍ରଛାତ୍ରୀମାନଙ୍କର ସହାୟକ ହେବ ।

ପୁଷ୍ପାଭିଷେକ
୧୯୮୭

**ବିରଞ୍ଚିନାରାୟଣ ଦାଶ**



# ସୂଚୀପତ୍ର

ବିଷୟ | ପୃଷ୍ଠା



●

# ପ୍ରଥମ ଅଧ୍ୟାୟ

## ଶିକ୍ଷାମନୋବିଜ୍ଞାନର ଅର୍ଥ, ପ୍ରକୃତି ଓ ପରିସର

## (Meaning, Nature and Scope of Educational Psychology)

**ମନୋବିଜ୍ଞାନର ସଂଜ୍ଞା :**

ମନୋବିଜ୍ଞାନର ପ୍ରକୃତ ସଂଜ୍ଞା ନିରୂପଣ କରିବାକୁ ହେଲେ ଆମକୁ ପ୍ରଥମେ ଏହାର ଇତିହାସକୁ ଅନୁଧ୍ୟାନ କରିବାକୁ ହେବ । କାରଣ ମନୋବିଜ୍ଞାନର ଅଭ୍ୟୁଦୟ ପାଇଁ ଭିନ୍ନ ଭିନ୍ନ ମନସ୍ତତ୍ତ୍ୱବିତ୍‌ମାନେ ଭିନ୍ନ ଭିନ୍ନ ସମୟରେ ଏହାର ସଂଜ୍ଞା ନିଜ ନିଜର ଚିନ୍ତାଧାରା ଅନୁଯାୟୀ ନିରୂପଣ କରିଥିଲେ । ଫଳରେ ସେମାନଙ୍କର ପ୍ରଦତ୍ତ ସଂଜ୍ଞା ବା ସ୍ୱରୂପ ମଧ୍ୟରେ ନାନା ପ୍ରକାର ମତଦ୍ୱୈଧ ପରିଲକ୍ଷିତ ହୁଏ । ମନୋବିଜ୍ଞାନର ଇତିହାସ ଅନୁଧ୍ୟାନ କଲେ ଦେଖାଯାଏ ଯେ, ଏହାର ନାମକରଣ ନୂତନ ହେଲେ ମଧ୍ୟ ବହୁ ପ୍ରାଚୀନ କାଳରୁ ଏହାର ଆବଶ୍ୟକତା ଓ ଉପାଦେୟତା ଅନୁଭୂତ ହୋଇ ଆସୁଅଛି । ପୂର୍ବେ ମନୋବିଜ୍ଞାନ ଦର୍ଶନ-ଶାସ୍ତ୍ର ସହିତ ସମ୍ପୃକ୍ତ ଥିଲା ଏବଂ ଏଥିରେ ବାହ୍ୟ ଆଚରଣ କିମ୍ବା ଅଭିଜ୍ଞତା ସମ୍ପର୍କରେ ଗୁରୁତ୍ୱ ଦିଆ ନ ଯାଇ କେବଳ ଆତ୍ମା ସମ୍ବନ୍ଧରେ ଆଲୋଚନା ହେଉଥିଲା; କିନ୍ତୁ ବର୍ତ୍ତମାନ ମନୋବିଜ୍ଞାନ ଅନ୍ୟ ଯେକୌଣସି ଶାସ୍ତ୍ର ସହିତ ଜଡ଼ିତ ନ ହୋଇ ସ୍ୱୟଂସମ୍ପୂର୍ଣ୍ଣ ଓ ସ୍ୱତନ୍ତ୍ର ଶାସ୍ତ୍ରରୂପେ ପରିଗଣିତ ହେଉଅଛି ।

ଇଂରାଜୀରେ ମନୋବିଜ୍ଞାନକୁ Psychology କୁହାଯାଏ । ଏହି Psychology ଶବ୍ଦଟି 'Psyche' ଓ 'Logos' ନାମକ ଦୁଇଟି ଗ୍ରୀକ୍ ଶବ୍ଦକୁ ନେଇ ସଙ୍ଗଠିତ ହୋଇଅଛି । 'Psyche' ଶବ୍ଦର ଅର୍ଥ Soul ବା ଆତ୍ମା ଏବଂ 'Logos' ଶବ୍ଦର ଅର୍ଥ Science ବା ବିଜ୍ଞାନ । ଅର୍ଥାତ୍‌, ସାଧାରଣତଃ ସାହିତ୍ୟିକ ଦୃଷ୍ଟିଭଙ୍ଗୀରୁ ହେଉ କିମ୍ବା କଥିତ ଦୃଷ୍ଟିରୁ ହେଉ Psychology ବା ମନୋବିଜ୍ଞାନର ତାତ୍ତ୍ୱିକ ଅର୍ଥ ହେଉଛି 'Science of Soul' ବା ଆତ୍ମା ସମ୍ବନ୍ଧୀୟ ବିଜ୍ଞାନ ।

ପ୍ରାଚୀନ ଦାର୍ଶନିକମାନେ ଆତ୍ମା ସମ୍ବନ୍ଧୀୟ ଆଲୋଚନାରେ ବିଶେଷ ଭାବେ ବ୍ୟାପୃତ ଥିବାରୁ ମନୋବିଜ୍ଞାନକୁ ଆତ୍ମା ସମ୍ବନ୍ଧୀୟ ବିଜ୍ଞାନ ରୂପେ ଗ୍ରହଣ କରି ନେଇଥିଲେ । ମାତ୍ର ଆଧୁନିକ ମନସ୍ତତ୍ତ୍ୱବିତ୍‌ମାନେ ବାହ୍ୟ ଆଚରଣ ଓ ଅଭିଜ୍ଞତାକୁ ଗୁରୁତ୍ୱ ଦେଉଥିବାରୁ ମନୋବିଜ୍ଞାନର ଉପରୋକ୍ତ ସଂଜ୍ଞାକୁ ସ୍ୱ ସ୍ୱ ବଳିଷ୍ଠ ଯୁକ୍ତିଦ୍ୱାରା ଖଣ୍ଡନ କରିବା ସଙ୍ଗେ ସଙ୍ଗେ ପରିହାର କରିଛନ୍ତି । ସେମାନଙ୍କ ମତାନୁଯାୟୀ ମନୋବିଜ୍ଞାନ ଅନ୍ୟାନ୍ୟ ବିଜ୍ଞାନ ଯଥା : ପଦାର୍ଥ ବିଜ୍ଞାନ, ପ୍ରାଣୀ ବିଜ୍ଞାନ ଓ ରସାୟନ ବିଜ୍ଞାନ ପରି ଏକ ସ୍ୱତନ୍ତ୍ର ବିଜ୍ଞାନ । ଦର୍ଶନଶାସ୍ତ୍ର ସହିତ ଏହାର ଆଦୌ ସମ୍ବନ୍ଧ ନାହିଁ । ବାହ୍ୟ ଆଚରଣ ବା ବ୍ୟବହାର ଦ୍ୱାରା ହିଁ ମନର ଭାବ ପରିପ୍ରକାଶ ଲାଭ କରେ ଏବଂ ସେହି ବ୍ୟବହାର ବା ଆଚରଣ ବୈଜ୍ଞାନିକ ବିଶ୍ଳେଷଣ ବା ଆଲୋଚନା ହିଁ ମନୋବିଜ୍ଞାନର ପ୍ରକୃତ ବିଷୟବସ୍ତୁ । ମାତ୍ର ଯାହା ଇନ୍ଦ୍ରିୟଗ୍ରାହ୍ୟ ନୁହେଁ ବା ଯାହାର ଇନ୍ଦ୍ରିୟ ସହ ସମ୍ପର୍କ ନାହିଁ ତାହା ମନୋବିଜ୍ଞାନର ବିଷୟବସ୍ତୁ ହେବା ଅସମ୍ଭବ । ଏତଦ୍ ବ୍ୟତୀତ ସେମାନଙ୍କ ଯୁକ୍ତି ଅନୁଯାୟୀ ଆତ୍ମା ଏକ ବ୍ୟାପକ ଶବ୍ଦ ଯାହାର ବିଶ୍ଳେଷଣ ମଧ୍ୟ ସାଧ୍ୟାତୀତ । ଏହାକୁ ଜାଣିବା ନିହାତି କଷ୍ଟକର ବ୍ୟାପାର । ଅନ୍ୟାନ୍ୟ ବିଜ୍ଞାନ ପରି ଏହାକୁ ବିଜ୍ଞାନାଗାରରେ ପରୀକ୍ଷାନିରୀକ୍ଷା କରିବା ମଧ୍ୟ ଅସମ୍ଭବ ।

ଅନ୍ୟ କେତେକ ମନୋବୈଜ୍ଞାନିକଙ୍କ ମତରେ ମନୋବିଜ୍ଞାନ ହେଉଛି 'Science of mind' କିନ୍ତୁ ଆତ୍ମାପରି mind ବା ମନର ସ୍ୱରୂପ ସମ୍ପର୍କରେ ମଧ୍ୟ ମତଦ୍ୱୈଧ ପରିଲକ୍ଷିତ ହୁଏ । ମନ ଶବ୍ଦଟି ମଧ୍ୟ ଏକ ଜଟିଳ ଶବ୍ଦ ଯାହାକୁ ବୁଝିବା ବା ବୁଝାଇବା କଷ୍ଟକର । ମାତ୍ର କେତେକ ମନସ୍ତତ୍ତ୍ୱବିତ୍ କହନ୍ତି ଯେ, ମନ ହେଉଛି ଚେତନା ବା Consciousness ଏବଂ ବିଭିନ୍ନ ଚିତ୍ତବୃତ୍ତି ବା Facultiesର ଏକତ୍ର ସମାହାର । ସେମାନଙ୍କ ମତରେ ମନ, ଚିନ୍ତା, କଳ୍ପନା, ତର୍କଣା, ବିଚାରବୋଧ ପ୍ରଭୃତି କେତେକ ଚିତ୍ତବୃତ୍ତିର ସମ୍ମିଶ୍ରଣ । ମାତ୍ର ମନୋବିଜ୍ଞାନର ଉକ୍ତ ସଂଜ୍ଞା 'ଚେତନାବିଜ୍ଞାନ' ବା Science of Consciousness ତତ୍ପରବର୍ତ୍ତୀ ଯୁଗର ମନସ୍ତତ୍ତ୍ୱବିତ୍‌ମାନଙ୍କ ଦ୍ୱାରା ଆଗ୍ରହ୍ୟ ହେଲା । କାରଣ ମନ କେବଳ ଚେତନାର ପରିପ୍ରକାଶ ନୁହେଁ । ଏତଦ୍‌ବ୍ୟତୀତ ମନରେ ଅବଚେତନା ଓ ଅନ୍ୟାନ୍ୟ ସ୍ତର ରହିଅଛି । ତେଣୁ ଏହାକୁ 'ଚେତନା ବିଜ୍ଞାନ' ରୂପେ ଗ୍ରହଣ କରିବା ଅସମୀଚୀନ । ପରବର୍ତ୍ତୀ କାଳରେ ମନସ୍ତତ୍ତ୍ୱବିତ୍‌ମାନେ ମତ ଦେଲେ ଯେ, ମନୋବିଜ୍ଞାନ ହେଉଛି "Science of Experience' ବା ଅଭିଜ୍ଞତା ବିଜ୍ଞାନ ବ୍ୟକ୍ତି ନିଜର ଅନ୍ତରରେ ଯେଉଁସବୁ ଅବସ୍ଥା ଅନୁଭବ କରେ, ତାହା ହିଁ ହେଉଛି ଅଭିଜ୍ଞତା । ବିଭିନ୍ନ ପ୍ରକାର ଅନୁଭୂତି ହିଁ ଅଭିଜ୍ଞତା ପଦବାଚ୍ୟ । ମାତ୍ର ମନୋବିଜ୍ଞାନ କେବଳ ଆଭ୍ୟନ୍ତରୀଣ ଅଭିଜ୍ଞତା ଉପରେ ନିର୍ଭର କରେ ନାହିଁ । ଏହା ଉଭୟ ଆଭ୍ୟନ୍ତରୀଣ ଓ ବାହ୍ୟ ଅନୁଭୂତି ଉପରେ ନିର୍ଭରଶୀଳ । ତେଣୁ ଏହା ମଧ୍ୟ ମନୋ-

ବୈଜ୍ଞାନିକମାନଙ୍କ ଦ୍ୱାରା ପରିହାର୍ଯ୍ୟ ହେଲା । କେତେକ ବୈଜ୍ଞାନିକମାନଙ୍କ ମତରେ ମନ କଳ୍ପିତ ଓ ଅତୀନ୍ଦ୍ରିୟ ସତ୍ତା ହୋଇଥିବାରୁ ଏହାକୁ କେବଳ ଚିତ୍ତବୃତ୍ତିର ସମାହାର ବୋଲି ଆକ୍ଷେପ କରିବା ସମୀଚୀନ ନୁହେଁ । ମନର ଚେତନାଶକ୍ତି ନିର୍ଜ୍ଞାନସ୍ତର ମଧ୍ୟ ଥିବାରୁ ଏହାକୁ ଅନୁଶୀଳନ କରିବା ଅସମ୍ଭବ । ଆଧୁନିକ ମନସ୍ତତ୍ତ୍ୱବିତ୍‌ମାନଙ୍କ ମତାନୁଯାୟୀ ବ୍ୟକ୍ତିର ଆଚରଣ, କାର୍ଯ୍ୟକଳାପ ତଥା ବ୍ୟବହାରରେ ହିଁ ମନର ସ୍ୱରୂପ ପରିପ୍ରକାଶ ଲାଭ କରେ । ତେଣୁ ସେମାନେ ମନୋବିଜ୍ଞାନକୁ 'Science of Behaviour' ବା ବ୍ୟବହାର ବିଜ୍ଞାନ ରୂପେ ଅଭିହିତ କରିଥାନ୍ତି । ତେବେ ବ୍ୟବହାର ବା Behaviour ଶବ୍ଦ ସମ୍ବନ୍ଧରେ ମଧ୍ୟ ମନୋବୈଜ୍ଞାନିକମାନଙ୍କ ମତରେ ମତଦ୍ୱୈଧ ଦେଖାଯାଏ । ମାର୍କିନ୍ ମନୋବୈଜ୍ଞାନିକ ଜେ. ବି. ଓ୍ୱାଟସନ ଓ ଅନ୍ୟ ଅତ୍ୟାଧୁନିକ ମନସ୍ତତ୍ତ୍ୱବିତ୍‌ମାନଙ୍କ ମତରେ ବ୍ୟବହାର ଏକପ୍ରକାର ଯାନ୍ତ୍ରିକ କାର୍ଯ୍ୟ । ପ୍ରାଣୀର ବ୍ୟବହାର ଯାନ୍ତ୍ରିକ କାର୍ଯ୍ୟଠାରୁ କୌଣସି ଗୁଣରେ ଭିନ୍ନ ନୁହେଁ । ଉପରୋକ୍ତ ମନସ୍ତତ୍ତ୍ୱବିତ୍‌ମାନେ 'ମନ' ବୋଲି ଗୋଟିଏ ଅବସ୍ଥା ବା ପଦାର୍ଥର ଅସ୍ତିତ୍ୱକୁ ମଧ୍ୟ ଅଗ୍ରାହ୍ୟ କରିଥାଆନ୍ତି । କାରଣ ବ୍ୟବହାର ସ୍ଥୂଳତଃ ପ୍ରାଣୀମାନଙ୍କର ବହିର୍ଜଗତଗତ ତଥା, ଶରୀରର ଆଭ୍ୟନ୍ତରୀଣ କ୍ରିୟାର ପ୍ରତିକ୍ରିୟା । ଏହା ଠିକ୍ ଯାନ୍ତ୍ରିକ କ୍ରିୟା ସଦୃଶ । ବହିର୍ଜଗତରେ ଯେପରି Stimulus ବା ଉଦ୍ଦୀପକ; Response ବା ପ୍ରତିକ୍ରିୟା ସୃଷ୍ଟି କରାଏ, ସେହିପରି ଜୀବଜଗତର ବ୍ୟବହାର ମଧ୍ୟ ଉଭୟ ବାହ୍ୟ ଓ ଆଭ୍ୟନ୍ତରୀଣ ଉଦ୍ଦୀପକଗୁଡ଼ିକର ପ୍ରତିକ୍ରିୟା ରୂପେ ପରିପ୍ରକାଶ ହୋଇଥାଏ । ମନସ୍ତତ୍ତ୍ୱବିତ୍ ଓ୍ୱାଟସନ୍ ବ୍ୟବହାରବାଦ ବା Behaviourism ନାମରେ ଏକ ନୂତନ ଚିନ୍ତାଧାରା ସୃଷ୍ଟି କରିଥିଲେ । ଏହା କେବଳ ପ୍ରାଣୀମାନଙ୍କର ବ୍ୟବହାର ସମ୍ପର୍କିତ ଥିଲା । ମାତ୍ର ଇଂଲଣ୍ଡର ମନସ୍ତତ୍ତ୍ୱବିତ୍ William Mc. Dougal (ୱିଲିୟମ୍ ମାକ ଡୁଗାଲ୍) କହନ୍ତି ଯେ, ପ୍ରାଣୀର ଆଚରଣ ସମ୍ବନ୍ଧୀୟ ବିଷୟଗତ ବିଜ୍ଞାନ ହିଁ 'ମନୋବିଜ୍ଞାନ' । ଏହା ଯାନ୍ତ୍ରିକ ପ୍ରକ୍ରିୟା ନୁହେଁ । ତାଙ୍କ ମତାନୁଯାୟୀ କୌଣସି ଉଦ୍ଦେଶ୍ୟ ବା ଲକ୍ଷ୍ୟ ସାଧନର ପ୍ରଚେଷ୍ଟା ହିଁ ବ୍ୟବହାରର ବୈଶିଷ୍ଟ୍ୟତା । ଅର୍ଥାତ୍, ପ୍ରାଣୀର ଆଚରଣ ବା ବ୍ୟବହାର ତା'ର ମନର ବାହ୍ୟ ପରିପ୍ରକାଶ ଅଟେ । ପ୍ରାଣୀର ପ୍ରତ୍ୟେକ ଉଦ୍ଦେଶ୍ୟ ସାଧନର ପ୍ରଚେଷ୍ଟା ସମ୍ପୂର୍ଣ୍ଣ ମାନସିକ । ବ୍ୟବହାର କ୍ଷେତ୍ରରେ ଅନେକ ସମୟରେ ପରିଦୃଷ୍ଟ ହୁଏ ଯେ, ଉଦ୍ଦୀପକ ଏକ ଥିବା ସ୍ଥଳେ ତାହାର ପ୍ରତିକ୍ରିୟା ଭିନ୍ନ ଭିନ୍ନ ହୋଇଥାଏ ।

ଉପରୋକ୍ତ ପର୍ଯ୍ୟାଲୋଚନାରୁ ଏହା ସ୍ପଷ୍ଟ ଯେ, ମନୋବିଜ୍ଞାନର ସଂଜ୍ଞାଗୁଡ଼ିକରେ ଭିନ୍ନ ଭିନ୍ନ ବିଷୟ ଉପରେ ଗୁରୁତ୍ୱ ବା ପ୍ରାଧାନ୍ୟ ଦିଆଯାଇଛି । ତେଣୁ ମନୋବିଜ୍ଞାନର ପ୍ରକୃତ ସ୍ୱରୂପ କେବଳ ଚେତନା; ମନ, ଯାନ୍ତ୍ରିକ କ୍ରିୟା ବା ଉଦ୍ଦେଶ୍ୟମୂଳକ କ୍ରିୟା ଇତ୍ୟାଦିକୁ ଭିତ୍ତିକରି ନିର୍ଣ୍ଣୟ କରିବା ଅସମ୍ଭବ ହୋଇପଡ଼ୁଛି । ଫ୍ରଏଡ୍ ଓ ଅନ୍ୟାନ୍ୟ

ମନସ୍ତତ୍ତ୍ୱବିଦ୍‌ମାନେ ମାନସିକ ଜୀବନରେ ଅବଚେତନ ବା ଅଜ୍ଞାନ (Unconscious) ସ୍ତରକୁ ଚେତନ (Conscious) ସ୍ତର ଅପେକ୍ଷା ଅଧିକ ପ୍ରାଧାନ୍ୟ ଦେଇଥାନ୍ତି । ସେମାନଙ୍କ ମତାନୁଯାୟୀ ବ୍ୟକ୍ତି ଜୀବନର ଚେତନ ସ୍ତରକୁ ଅବଚେତନ ସ୍ତର ଅଧିକ ମାତ୍ରାରେ ପ୍ରଭାବିତ କରିଥାଏ । ତେଣୁ ମନୋବିଜ୍ଞାନକୁ ଚେତନ ଅବସ୍ଥାରେ ଅନୁଶୀଳନ ରୂପେ ପରିଗଣିତ କରିବା ଅଗ୍ରହଣୀୟ । ସେହିପରି ପ୍ରାଣୀର ବ୍ୟବହାରକୁ ମଧ୍ୟ ଯାନ୍ତ୍ରିକ କାର୍ଯ୍ୟରୂପେ ଅଭିହିତ କରି ତା' ମାଧ୍ୟମରେ ବ୍ୟାଖ୍ୟା କରିବା ଅସମୀଚୀନ । ଆଧୁନିକ ମନୋବିଜ୍ଞାନୀମାନେ ୱାଟସନ୍‌ଙ୍କର ଯାନ୍ତ୍ରିକ କାର୍ଯ୍ୟକୁ ସମ୍ପୂର୍ଣ୍ଣ ଭାବେ ସମର୍ଥନ ନ କଲେ ମଧ୍ୟ ତାଙ୍କର ନୂତନ ଚିନ୍ତାଧାରା ପ୍ରବର୍ତ୍ତିତ ବ୍ୟବହାରବାଦ ବା Behaviourismକୁ ଗୁରୁତ୍ୱ ଦେଇଥାନ୍ତି । କାରଣ, ସେମାନେ ମତ ଦିଅନ୍ତି ଯେ, ମନୋବିଜ୍ଞାନକୁ ବ୍ୟବହାର ବିଜ୍ଞାନ ରୂପେ ଅଭିହିତ କରାଇବା ଅଧିକ ଯୁକ୍ତିଯୁକ୍ତ ଓ ଗ୍ରହଣୀୟ । ମନୋବିଜ୍ଞାନ ଏକ ବିଜ୍ଞାନ ହୋଇଥିବାରୁ ଏହା ଇନ୍ଦ୍ରିୟଦ୍ୱାରା ଗ୍ରହଣୀୟ ହେବା ସଙ୍ଗେ ସଙ୍ଗେ ବାସ୍ତବ ହେବା ବିଧେୟ । ବ୍ୟବହାର ମାଧ୍ୟମରେ ମନୁଷ୍ୟ ବା ପ୍ରାଣୀର କ୍ରିୟା ପରିସ୍ଫୁଟ ହୁଏ । ତେଣୁ ବ୍ୟବହାର ହିଁ ପ୍ରକୃତରେ ବାସ୍ତବ ଓ ଇନ୍ଦ୍ରିୟଗ୍ରାହ୍ୟ । ଏହାକୁ ସମର୍ଥନ କରୁଥିବା ମନସ୍ତତ୍ତ୍ୱବିଦ୍‌ମାନଙ୍କ ମତରେ ବ୍ୟବହାରଗତ ଅର୍ଥକୁ ସଙ୍କୀର୍ଣ୍ଣ ଭାବେ ଗ୍ରହଣ ନ କରି ବ୍ୟାପକ ଭାବେ ଗ୍ରହଣ କରିବା ସମୁଚିତ । କାରଣ, ବ୍ୟବହାର ଉଭୟ କ୍ରିୟାର ବାହ୍ୟ ପ୍ରତିକ୍ରିୟା ଓ ଆଭ୍ୟନ୍ତରୀଣ ପ୍ରତିକ୍ରିୟା ସହିତ ସଂଶ୍ଳିଷ୍ଟ । ଉପରୋକ୍ତ କାରଣରୁ ମନୋବିଜ୍ଞାନ ବା Psychologyକୁ ପ୍ରାଣୀମାନଙ୍କ ବ୍ୟବହାର ସମ୍ପର୍କିତ ବସ୍ତୁନିଷ୍ଠ ବିଜ୍ଞାନ ରୂପେ ଅଭିହିତ କରାଯାଇପାରେ ।

### ଶିକ୍ଷା-ମନୋବିଜ୍ଞାନର ସ୍ୱରୂପ

### (Nature of Educational Psychology) :—

ଶିକ୍ଷା ଉପରୋକ୍ତ ବାହ୍ୟ ଓ ଆଭ୍ୟନ୍ତରୀଣ ବ୍ୟବହର ତଥା ମାନସିକ ପ୍ରକ୍ରିୟା ସହିତ ସଂଶ୍ଳିଷ୍ଟ ଥିବାରୁ ଅଧୁନା ମନୋବିଜ୍ଞାନର ଗୁରୁତ୍ୱ ଏହି କ୍ଷେତ୍ରରେ ଉପଲବ୍ଧି କରାଯାଉଅଛି । ଶିକ୍ଷା ପରିସର ବା ଶିକ୍ଷା କ୍ଷେତ୍ରରେ ମନୋବିଜ୍ଞାନର ବହୁଳ ପ୍ରୟୋଗ ଫଳରେ ଶିକ୍ଷା-ମନୋବିଜ୍ଞାନର ସୃଷ୍ଟି ହୋଇଅଛି । ଶିକ୍ଷା ସମ୍ବନ୍ଧୀୟ ସମସ୍ୟାଗୁଡ଼ିକର ବିଶ୍ଳେଷଣ, ଆଲୋଚନା, ପର୍ଯ୍ୟାଲୋଚନା ଓ ସୁଚିନ୍ତିତ ମାର୍ଗ ଅନୁକରଣରେ ସେଗୁଡ଼ିକର ଆଶୁ ସମାଧାନ ଏହି ମନୋବିଜ୍ଞାନ ଦ୍ୱାରା ହିଁ କରାଯାଉଅଛି । ତେଣୁ ଶିକ୍ଷା ସହିତ ସଂପୃକ୍ତ ଏହି ମନୋବିଜ୍ଞାନକୁ 'ଶିକ୍ଷା-ମନୋବିଜ୍ଞାନ' ରୂପେ ଅଭିହିତ କରାଯାଉଅଛି । ଶିକ୍ଷା ମାଧ୍ୟମରେ ପ୍ରାଣୀର ତ୍ରୁଟିଗତ ବ୍ୟବହାରକୁ ସଂଶୋଧନ କରାଯିବା ବିଧେୟ । ତେଣୁ ବ୍ୟବହାରରେ ପରିବର୍ତ୍ତନ ଆଣିବା ନିମିତ୍ତ ଶିକ୍ଷା କ୍ଷେତ୍ରରେ ମନୋବିଜ୍ଞାନର ଭୂମିକା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଶିକ୍ଷାକ୍ଷେତ୍ରରେ ମନୋବିଜ୍ଞାନର ପ୍ରୟୋଗ ଯୋଗୁଁ

ଏହାକୁ କେତେକ ମନସ୍ତତ୍ତ୍ୱବିଦ୍ ପ୍ରାୟୋଗିକ ବିଜ୍ଞାନ (Applied Science) ରୂପେ ଗ୍ରହଣ କଲେ ମଧ୍ୟ ଅନ୍ୟ କେତେକ ମନସ୍ତତ୍ତ୍ୱବିଦ୍ ଏପରି ମତକୁ ଅସ୍ୱୀକାର କରିଥାନ୍ତି । ସେମାନଙ୍କ ମତାନୁଯାୟୀ ଶିକ୍ଷା-ମନୋବିଜ୍ଞାନର ଏକ ବିଭାଗ ଯାହା ସାହାଯ୍ୟରେ ଶିଶୁର ଶାରୀରିକ, ମାନସିକ ତଥା ସାମାଜିକ ଏହିପରି ସର୍ବବିଧ ଉନ୍ନତି ସଂଗଠିତ ହୋଇଥାଏ । ଶିକ୍ଷାଦ୍ୱାରା ଶିଶୁର ଭିନ୍ନ ଭିନ୍ନ ଅବସ୍ଥାରେ ମାନସିକ, ସାମାଜିକ ତଥା ଶାରୀରିକ ବିକାଶ ଓ ଏ ଦିଗରେ ପ୍ରତିବନ୍ଧକ ସଦୃଶ ପରିଦୃଷ୍ଟ ହେଉଥିବା ସମସ୍ୟା-ଗୁଡ଼ିକର ବୈଜ୍ଞାନିକ ଆଲୋଚନା ହିଁ ଶିକ୍ଷା ମନୋବିଜ୍ଞାନର କାର୍ଯ୍ୟାବଳୀ ଅନ୍ତର୍ଭୁକ୍ତ । ତେଣୁ ଶିକ୍ଷା-ମନୋବିଜ୍ଞାନକୁ ମନୋବିଜ୍ଞାନର ଏକ ଶାଖା ବା ବିଭାଗରୂପେ ପରିଗଣିତ କରାଯାଏ ।

ଶିକ୍ଷକ ଓ ଶିକ୍ଷାପ୍ରଣାଳୀ ସହିତ ସଂପୃକ୍ତ ବ୍ୟକ୍ତିମାନଙ୍କୁ ବୈଜ୍ଞାନିକ ଗବେଷଣାରୁ ଜ୍ଞାତ ଶିକ୍ଷା ପ୍ରଣାଳୀର ଶିକ୍ଷାନୀତି ଓ କାର୍ଯ୍ୟର ସ୍ୱରୂପ ସମ୍ପର୍କରେ ଜାଣିବା ନିମିତ୍ତ ସାହାଯ୍ୟ କରିବା ହେଉଛି ଶିକ୍ଷା-ମନୋବିଜ୍ଞାନର ପ୍ରଧାନ କାର୍ଯ୍ୟ । ଶିକ୍ଷା ସହିତ ସଂଶ୍ଳିଷ୍ଟ ଓ ଏ ଦିଗରେ ଆଗ୍ରହୀ ଯେକୌଣସି ବ୍ୟକ୍ତିର ଶିକ୍ଷା ପ୍ରଣାଳୀ ସମ୍ପର୍କରେ ସମ୍ୟକ୍ ଜ୍ଞାନ ବା ଧାରଣା ଥିବା ନିହାତି ଆବଶ୍ୟକ । କିନ୍ତୁ ଅନେକ କ୍ଷେତ୍ରରେ ଦେଖାଯାଏ ଯେ, ଏସବୁ ଧାରଣା ସାଧାରଣତଃ ସାଧାରଣ ବିଜ୍ଞାନ, ବ୍ୟକ୍ତିଗତ ପ୍ରତିକ୍ରିୟା, ବ୍ୟକ୍ତିଗତ ପରୀକ୍ଷଣ, ପ୍ରଚଳିତ ବିଶ୍ୱାସ ଏବଂ ଅନ୍ୟ କେତେକ ସ୍ଥଳରେ ଏପରିକି ଧର୍ମ ସମ୍ବନ୍ଧୀୟ ଏବଂ ଲୋକକଥା ବା ଲୋକନୀତି ଉପରେ ପର୍ଯ୍ୟବେସିତ ଥାଏ । ମାତ୍ର ଏପରି ଧାରଣା ସଂପୂର୍ଣ୍ଣ ଭାବେ ବିଜ୍ଞାନସମ୍ମତ ନ ହୋଇଥିବାରୁ ଅଯୌକ୍ତିକ ଓ ଅପୂର୍ଣ୍ଣ ହୋଇଥାଏ ଏବଂ ଅନେକ କ୍ଷେତ୍ରରେ ଭ୍ରମାତ୍ମକ ଓ ମାରାତ୍ମକ ମଧ୍ୟ ହୋଇଥାଏ । ଶିକ୍ଷାଗତ ବ୍ୟବହାରରେ ପରିଦୃଷ୍ଟ ଏ ସବୁ ଭୁଲ୍ ଧାରଣା ଓ ଭୁଲ୍ ବୁଝାମଣାକୁ ସଂଶୋଧନ କରିବା ହେଉଛି ଶିକ୍ଷା-ମନୋବିଜ୍ଞାନର ବିଶିଷ୍ଟ ଦାନ । ଏହାଛଡ଼ା ଶିକ୍ଷା ପ୍ରଣାଳୀ ସମ୍ପର୍କରେ ଗଭୀର ଏବଂ ନୂତନ ଜ୍ଞାନ ସଂଗ୍ରହରେ ଏହା ସାହାଯ୍ୟ କରିଥାଏ । ଶିକ୍ଷା ପ୍ରଣାଳୀ ସମ୍ପର୍କରେ ଉତ୍ତମ ମନୋବୈଜ୍ଞାନିକ ଧାରଣା ଜଣେ ଶିକ୍ଷକକୁ ତା'ର ଶ୍ରେଣୀ କକ୍ଷରେ ଉପୁଜିଥିବା ଅସୁବିଧା ସମ୍ପର୍କରେ ଜାଣିବାରେ ସାହାଯ୍ୟ କରିଥାଏ । ଫଳତଃ ଶିକ୍ଷକ ଛାତ୍ରଛାତ୍ରୀମାନଙ୍କୁ ସମ୍ପୂର୍ଣ୍ଣ ରୂପେ ଜାଣିବା ସଙ୍ଗେ ସଙ୍ଗେ ଅସୁବିଧା ସବୁକୁ ଉତ୍ତମ ରୂପେ ଉପଲବ୍ଧି କରିପାରିଥାନ୍ତି ଏବଂ ନୂତନ ବୈଜ୍ଞାନିକ ଉପାୟରେ ବା ପଦ୍ଧତି ଅନୁକରଣରେ ସେ ସବୁ ସମାଧାନ କରିବାକୁ ସକ୍ଷମ ହୋଇଥାନ୍ତି ।

ଷ୍ଟାନଫୋର୍ଡ଼ ବିଶ୍ୱବିଦ୍ୟାଳୟର ଆଇଥର୍ କୋଲଷ୍ଟର୍ନିକ୍ ମତରେ ଶିକ୍ଷା-ମନୋବିଜ୍ଞାନ, ଶିକ୍ଷାର ମୂଳଦୂଆ ସଦୃଶ । ଏହା ଶିକ୍ଷାର ପର୍ଯ୍ୟବେକ୍ଷଣ, ବିଶ୍ଳେଷଣ ଇତ୍ୟାଦି କାରଣକୁ ନେଇ ଗଠିତ । ଏହି ଦୃଷ୍ଟିରୁ ଶିକ୍ଷା-ମନୋବିଜ୍ଞାନ ଶିକ୍ଷାର ବୈଜ୍ଞାନିକ

ମୂଳଦୁଆ ଅଟେ । କିନ୍ତୁ ଶିକ୍ଷା-ମନୋବିଜ୍ଞାନର ପ୍ରଣାଳୀ ଏବଂ ଏଥିରୁ ଲବ୍ଧଜ୍ଞାନର ସଦୁପଯୋଗ ହେଲେ ହିଁ ଏହାର କାର୍ଯ୍ୟକାରିତା ବା ପ୍ରଭାବକୁ ଉପଲବ୍ଧି କରିହେବ । ଶିକ୍ଷକ ମନୋବିଜ୍ଞାନଗତ ପ୍ରଣାଳୀର ଉପଯୋଗ କରିବା ସଙ୍ଗେ ସଙ୍ଗେ ନିଜର କାର୍ଯ୍ୟ ବା କର୍ତ୍ତବ୍ୟ ପ୍ରତି ଏକ ପରୀକ୍ଷାମୂଳକ ବା ଗବେଷଣାତ୍ମକ ମନୋବୃତ୍ତି ପୋଷଣ କରିବା ଦ୍ୱାରା ଶିକ୍ଷାମନୋବିଜ୍ଞାନର ପ୍ରକୃତ ଉଦ୍ଦେଶ୍ୟ ସାଧନ ହୋଇପାରିବ ।

ଶିକ୍ଷା ବୈଜ୍ଞାନିକ ଧାରାରେ ଆରମ୍ଭ ପ୍ରାଥମିକ ଭାବେ ଶିକ୍ଷାମନୋବିଜ୍ଞାନକୁ ଶ୍ରେଣୀ ଶିକ୍ଷାର ସ୍ୱରୂପ, ଅବସ୍ଥା, ଫଳ ଏବଂ ପରୀକ୍ଷଣ ସହିତ ସମ୍ପୃକ୍ତ କରାଇଥାଏ । ଏହା କହିବା ବାହୁଲ୍ୟ ଯେ, ଶିକ୍ଷାମନୋବିଜ୍ଞାନ କେବଳ ଶିକ୍ଷଣତତ୍ତ୍ୱ, ଜ୍ଞାନସମ୍ବନ୍ଧୀୟ ତତ୍ତ୍ୱ, ବ୍ୟକ୍ତିଗତ ତତ୍ତ୍ୱ ଏବଂ ମନୋବିଜ୍ଞାନଗତ ପରମାପତତ୍ତ୍ୱର ଏକତ୍ରୀକରଣ । ଶ୍ରେଣୀ କକ୍ଷରେ ନିଜର ଶିକ୍ଷାଦାନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାପାଇଁ ଶିକ୍ଷାମନୋବିଜ୍ଞାନ ଶିକ୍ଷକକୁ ଉପଯୁକ୍ତ ମନସ୍ତାତ୍ତ୍ୱିକ ଧାରଣା, ଦକ୍ଷତା ଇତ୍ୟାଦି ଯୋଗାଇ ଦେଇଥାଏ । ମନସ୍ତାତ୍ତ୍ୱିକ ନୀତିନିୟମ ଶ୍ରେଣୀ-ଗୃହର ଶିକ୍ଷା ପ୍ରକ୍ରିୟାରେ ସିଧାସଳଖ ଭାବେ ଓ ସଙ୍ଗେ ସଙ୍ଗେ ଅନୁବାଦିତ ଏବଂ ସ୍ୱୀକୃତ ହୋଇପାରିବ ନାହିଁ । ଶ୍ରେଣୀଗୃହରେ ଏସବୁ ନୀତିନିୟମ ପ୍ରଣୟନ ପୂର୍ବରୁ ଏହା ସମ୍ପର୍କରେ ପ୍ରୟୋଗାତ୍ମକ ଗବେଷଣା (Applied Research) କରିବା ଆବଶ୍ୟକ । ସେଥିପାଇଁ ଏସବୁ ନୀତିନିୟମଗୁଡ଼ିକୁ ପରୀକ୍ଷା କରିବା ନିମିତ୍ତ ଅଧିକ ଗୁରୁତ୍ୱ ଦିଆଯାଉଅଛି । ଶ୍ରେଣୀକକ୍ଷ ଶିକ୍ଷଣରେ ମନସ୍ତାତ୍ତ୍ୱିକ ନୀତିଗୁଡ଼ିକର ପ୍ରୟୋଗ ପାଇଁ ଯଥେଷ୍ଟ ବିଚାରର ଆବଶ୍ୟକତା ରହିଅଛି । ଏହା ବ୍ୟତୀତ ଶିକ୍ଷାକ୍ଷେତ୍ରରେ ମନୋବିଜ୍ଞାନର ପ୍ରୟୋଗ ଫଳପ୍ରଦ ହେବନାହିଁ ।

ଶିକ୍ଷା-ମନୋବିଜ୍ଞାନ କେତେକ ସାଧାରଣ ଧାରଣା ଉପରେ ପରିବେଷିତ ନୁହେଁ । କାରଣ ସାଧାରଣ ଧାରଣା, ବୈଜ୍ଞାନିକସମ୍ମତ କିମ୍ବା ସତ୍ୟତା ଉପରେ ପ୍ରତିଷ୍ଠିତ ନୁହେଁ । ସାଧାରଣ ଧାରଣା ଅନେକ ସମୟରେ ସତ୍ୟପର ପରିଦୃଷ୍ଟ ହେଲେହିଁ ଏଗୁଡ଼ିକ ପ୍ରକୃତରେ ପ୍ରମାଣିତ ନୁହେଁ । ଏହି ଧାରଣା ମୁଖ୍ୟତଃ ସାଧାରଣ ଜ୍ଞାନ ବା ଚିନ୍ତାଧାରା ଉପରେ ପ୍ରତିଷ୍ଠିତ ହେତୁ ସବୁବେଳେ ଅସତ୍ୟ ବା ଅପ୍ରମାଣିତ ନ ହେଲେ ମଧ୍ୟ ଏଗୁଡ଼ିକ ଗବେଷଣା ଇତ୍ୟାଦି ଦ୍ୱାରା ପ୍ରମାଣ ହୋଇ ନଥିବାରୁ ସତ୍ୟ ହୋଇନଥାଏ । ଉଦାହରଣ ସ୍ୱରୂପ—ଆମେ ବିଶ୍ୱାସ କରୁ ଯେ ଅଭ୍ୟାସ ଦ୍ୱାରା ଜ୍ଞାନ ଆହରଣ, ସ୍ମରଣ ଶକ୍ତି ସମୟଦ୍ୱାରା ନିୟନ୍ତ୍ରିତ ଇତ୍ୟାଦି ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଭ୍ରମାତ୍ମକ ଅଟେ । ଶିକ୍ଷା-ମନୋବିଜ୍ଞାନ ଶିକ୍ଷଣର ସାଧାରଣ ତତ୍ତ୍ୱ ଏବଂ ଅଭିପ୍ରେରଣା ଓ ଶିକ୍ଷାର ସାଧାରଣ ବ୍ୟାବହାରିକ ନିୟମ ଉପରେ ଗୁରୁତ୍ୱ ଆରୋପ କରି ନଥାଏ । ବରଂ ଏହା ଶିକ୍ଷଣର ନିର୍ଦ୍ଦିଷ୍ଟ ବିଷୟବସ୍ତୁ ସହିତ ସଂପୃକ୍ତ ଥାଏ । ଏ ଦୃଷ୍ଟିରୁ ସାଧାରଣ ମନୋବିଜ୍ଞାନ ଏବଂ ଶିକ୍ଷାମନୋବିଜ୍ଞାନ ମଧ୍ୟରେ ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ ।

ସାଧାରଣ ମନୋବିଜ୍ଞାନ ଶିକ୍ଷଣର ସାଧାରଣ ଦିଗ ଉପରେ ପ୍ରାଧାନ୍ୟ ଦେଇଥାଏ । ମାତ୍ର ଶିକ୍ଷା-ମନୋବିଜ୍ଞାନ ଶିକ୍ଷା କ୍ଷେତ୍ରରେ ଓ ସାମାଜିକ କ୍ଷେତ୍ରରେ ଶିକ୍ଷଣର ଗୁରୁତ୍ୱ ସଂପର୍କରେ ମତ ପ୍ରତିପାଦନ କରିଥାଏ ।

## ଶିକ୍ଷା-ମନୋବିଜ୍ଞାନ—ଏକ ସ୍ୱତନ୍ତ୍ର ବିଜ୍ଞାନ :

ବିଗତ ଦଶନ୍ଧିରେ ଶିକ୍ଷା-ମନୋବିଜ୍ଞାନ ଆଶାତୀତ ଭାବରେ ଅଗ୍ରସର ହୋଇପାରିଛି ଏବଂ ଏକ ସ୍ୱତନ୍ତ୍ର ବିଷୟ ଭାବରେ ଶିକ୍ଷାକ୍ଷେତ୍ରରେ ପ୍ରତିଷ୍ଠିତ ହୋଇପାରିଛି । ପ୍ରାରମ୍ଭିକ ଅବସ୍ଥାରେ ସାଧାରଣ ମନୋବିଜ୍ଞାନର ନୀତି ଓ ନିୟମଗୁଡ଼ିକୁ ନେଇ ଶିକ୍ଷା-ମନୋବିଜ୍ଞାନର ବିଷୟବସ୍ତୁ ସଙ୍ଗଠିତ ହେଉଥିଲା । ଶିକ୍ଷା କ୍ଷେତ୍ରରେ ସାଧାରଣ ମନୋବିଜ୍ଞାନର ନୀତିନିୟମଗୁଡ଼ିକର ପ୍ରୟୋଗ ନିମିତ୍ତ ଅଧିକ ପ୍ରାଧାନ୍ୟ ଦିଆଯାଉଥିଲା ଏବଂ ଶିକ୍ଷା-ମନୋବିଜ୍ଞାନର କୌଣସି ନିର୍ଦ୍ଦିଷ୍ଟ ନିଜସ୍ୱ ବିଭାଗ ନଥିଲା । ମନସ୍ତାତ୍ତ୍ୱିକମାନଙ୍କ ଦ୍ୱାରା ମନସ୍ତାତ୍ତ୍ୱିକ ପ୍ରୟୋଗଶାଳାରେ ଆବିଷ୍କୃତ ନୀତି ନିୟମ ଶ୍ରେଣୀଗୃହରେ ବ୍ୟବହୃତ ହେଉଥିଲା । କିନ୍ତୁ ପରବର୍ତ୍ତୀ ସମୟରେ ଏଥିରେ ପରିବର୍ତ୍ତନ ପରିଦୃଷ୍ଟ ହେଲା । ଶିକ୍ଷା କ୍ଷେତ୍ରରେ ପ୍ରକୃତ ମନୋବିଜ୍ଞାନର ନିୟମଗୁଡ଼ିକୁ ପ୍ରୟୋଗ କରିବା ପୂର୍ବରୁ ଶ୍ରେଣୀ ଗୃହରେ ପରୀକ୍ଷିତ ହେବା ନିହାତି ଆବଶ୍ୟକ ବୋଲି ମନସ୍ତତ୍ତ୍ୱବିଦ୍‌ମାନେ ଚିନ୍ତା କଲେ । ଏହି ଅବସ୍ଥାରେ ମନସ୍ତାତ୍ତ୍ୱିକ ନୀତିଗୁଡ଼ିକୁ ଶିକ୍ଷାକ୍ଷେତ୍ରରେ ବ୍ୟବହାର କରାଯିବା ପୂର୍ବରୁ ସେଗୁଡ଼ିକର ଆଲୋଚନା ଓ ସମାଲୋଚନା କରାଗଲା । ଶିକ୍ଷା ପ୍ରକ୍ରିୟାରେ ସେଗୁଡ଼ିକର ପ୍ରୟୋଗକୁ ଶିକ୍ଷା ପ୍ରଣାଳୀରେ ପରୀକ୍ଷାମୂଳକ ଭାବେ ଫଳପ୍ରଦ ମନେହେଲା-ପରେ ଗ୍ରହଣଯୋଗ୍ୟ ବା ଯୁକ୍ତିଯୁକ୍ତ ବୋଲି ବିଚାର କରାଗଲା । ବର୍ତ୍ତମାନ ଶିକ୍ଷା-ଯୋଜନାରେ ମନସ୍ତାତ୍ତ୍ୱିକ ନୀତିଗୁଡ଼ିକର ସତ୍ୟତା ପରୀକ୍ଷାର ଗୁରୁତ୍ୱକୁ ଗଭୀର ଭାବେ ଉପଲବ୍ଧି କରାଯାଉଛି ।

ମନୋବିଜ୍ଞାନର ଅନ୍ୟାନ୍ୟ କ୍ଷେତ୍ରରେ ହେଉଥିବା ପରୀକ୍ଷଣ ଉପରେ କମ୍ ନିର୍ଭର କରିବା ଉଚିତ୍ ବୋଲି ଶିକ୍ଷା ମନସ୍ତତ୍ତ୍ୱବିତ୍‌ମାନେ ଖୁବ୍ ଶୀଘ୍ର ଅନୁଭବ କରିବେ ଏବଂ ସ୍ୱାଧୀନ ଭାବେ ଗବେଷଣାତ୍ମକ କାର୍ଯ୍ୟ କରିବେ । ଉଭୟ ବିଦ୍ୟାଳୟ ପରିପ୍ରେକ୍ଷୀରେ ପଠିତ ବିଷୟଗୁଡ଼ିକ ଓ ବୈଜ୍ଞାନିକମାନଙ୍କ ପ୍ରୟୋଗଶାଳାରୁ ଉଦ୍ଭୂତ ନୀତିଗୁଡ଼ିକରେ ଜଟିଳତା ଦେଖାଯାଏ । କେଣୁ ଶିକ୍ଷାର୍ଥୀମାନେ ଶିକ୍ଷଣରେ ସମ୍ମୁଖୀନ ହେଉଥିବା ସମସ୍ୟାଗୁଡ଼ିକର ସମାଧାନ ପାଇଁ ଗବେଷଣା କାର୍ଯ୍ୟ ହାତକୁ ନିଆଯିବା ଆବଶ୍ୟକ । ଏସବୁ ଦୃଷ୍ଟିରୁ ଶିକ୍ଷା ମନୋବିଜ୍ଞାନକୁ ଏକ ସ୍ୱତନ୍ତ୍ର ଶୃଙ୍ଖଳା ରୂପେ ଗ୍ରହଣ କରାଯିବା ବିଧେୟ । ଏହାଛଡ଼ା ଏହାର ନିଜସ୍ୱ ତତ୍ତ୍ୱ ଓ ଧାରଣା ରହିବା ମଧ୍ୟ ଆବଶ୍ୟକ । ବର୍ତ୍ତମାନ ଶିକ୍ଷାମନୋବିଜ୍ଞାନ କେବଳ ଗବେଷଣାତ୍ମକ ମନସ୍ତାତ୍ତ୍ୱିକ ନୀତିଗୁଡ଼ିକର

ପ୍ରୟୋଗ ମଧ୍ୟରେ ଆବଦ୍ଧ ନୁହେଁ, ଏହା ଏକ ସ୍ୱତନ୍ତ୍ର ବିଷୟ ରୂପେ ପରିଣତ ହେବାରୁ ଶିକ୍ଷାବିତ୍‌ମାନେ ଏହି ବିଷୟ ଜ୍ଞାନରେ ଖ୍ୟାତିଲାଭ କରିବା ପାଇଁ ଅଧିକ ଚେଷ୍ଟା କରୁଛନ୍ତି । ଶିକ୍ଷାଗତ ସମସ୍ୟାଗୁଡ଼ିକର ସଂଶୋଧନ ପାଇଁ ଏହା କେତେଗୁଡ଼ିଏ କର୍ମସୂଚୀ ପ୍ରବର୍ତ୍ତିତ କଲାଣି ଯାହାକି ସାଧାରଣ ମନସ୍ତତ୍ତ୍ୱବିତ୍‌ମାନଙ୍କ ଦୃଷ୍ଟି ଆକର୍ଷଣ କରିନାହିଁ । ଶିକ୍ଷା-ମନୋବିଜ୍ଞାନରେ ଅନେକଗୁଡ଼ିଏ ନୂତନ ବିଷୟବସ୍ତୁ ପ୍ରଚଳିତ ହେଲାଣି । ସେଗୁଡ଼ିକ ହିଁ ଏହାକୁ ଏକ ସ୍ୱତନ୍ତ୍ର ବିଷୟରୂପେ ପରିଗଣିତ କରିଛି । ସେଗୁଡ଼ିକ ହେଲା—ଶିଶୁଶିକ୍ଷା, ପ୍ରତିଭାଶାଳୀ ଛାତ୍ରଛାତ୍ରୀଙ୍କ ପାଇଁ ଶିକ୍ଷା, ଶାରୀରିକ ଅକ୍ଷମଙ୍କ ପାଇଁ ଶିକ୍ଷା, ସଂକ୍ଷେପରେ ପରୀକ୍ଷଣ, ଶିକ୍ଷଣର ପ୍ରତିବନ୍ଧକ ଇତ୍ୟାଦି । ପ୍ରକୃତ ଶ୍ରେଣୀଗୃହ ଶିକ୍ଷାଦାନରେ ଅସୁବିଧା ବୃଦ୍ଧି ହେବାରୁ ଶିକ୍ଷାମନୋବିଜ୍ଞାନରେ କ୍ରମଶଃ ବିଭିନ୍ନ ପରିବର୍ତ୍ତନ ଦେଖାଯାଉଛି । ଶ୍ରେଣୀ କକ୍ଷରେ ସାମାଜିକ ଅବସ୍ଥା, ବ୍ୟବହାର ପରିବର୍ତ୍ତନ ଉପାୟ (techniques of behaviour modification), ଶିକ୍ଷଣର କର୍ମସୂଚୀ (Programme of Learning), ଏବଂ ଅନୁଭୂତି ବିକାଶ ତତ୍ତ୍ୱ ଇତ୍ୟାଦି ପଠନ ଦ୍ୱାରା ଏହା ସ୍ପଷ୍ଟ ଅନୁମେୟ ଯେ, ଶିକ୍ଷା-ମନୋବିଜ୍ଞାନ ଯଥାର୍ଥରେ ଏକ ସ୍ୱତନ୍ତ୍ର ବିଷୟ । ଏହା ସାଧାରଣ ମନୋବିଜ୍ଞାନ ଦ୍ୱାରା ପ୍ରଭାବିତ ନୁହେଁ କିମ୍ବା ସାଧାରଣ ମନୋବିଜ୍ଞାନ ସହିତ ସଂପୃକ୍ତ ନୁହେଁ ।

## ଶିକ୍ଷା-ମନୋବିଜ୍ଞାନ ଓ ସାଧାରଣ ମନୋବିଜ୍ଞାନ ମଧ୍ୟରେ ପାର୍ଥକ୍ୟ (Difference between Educational Psychology and General Psychology.) :—

ସାଧାରଣତଃ ସାଧାରଣ ମନସ୍ତତ୍ତ୍ୱବିତ୍‌ମାନେ ତାତ୍ତ୍ୱିକ ଜ୍ଞାନ ମଧ୍ୟରେ ଆବଦ୍ଧ । ସାଧାରଣ ପ୍ରକୃତିର ଓ ବ୍ୟବହାର ସମ୍ପର୍କୀୟ ନୀତିଗୁଡ଼ିଏ ତିଆରି କରିବା ହିଁ ସାଧାରଣ ମନୋବିଜ୍ଞାନର ଉଦ୍ଦେଶ୍ୟ । ଜଣେ ସାଧାରଣ ମନୋବିଜ୍ଞାନୀ କେବଳ ତା'ର ଗବେଷଣା-ଦ୍ୱାରା ସାଧାରଣ ଅନୁମାନର ତର୍କଣା କରି ବ୍ୟବହାରଗତ ସାଧାରଣ ନିୟମଗୁଡ଼ିକ ତିଆରି କରିଥାଏ । କିନ୍ତୁ ଶିକ୍ଷାଗତ ସମସ୍ୟାଗୁଡ଼ିକର କାର୍ଯ୍ୟକାରୀ ସମାଧାନ ହିଁ ଶିକ୍ଷା-ମନୋବିଜ୍ଞାନର ମୁଖ୍ୟ ଉଦ୍ଦେଶ୍ୟ ଅଟେ । ଶିକ୍ଷା-ମନୋବିଜ୍ଞାନ ସାହାଯ୍ୟରେ ଶିକ୍ଷାକ୍ଷେତ୍ରରେ ବହୁ ବୃତ୍ତିଗତ ଉଦ୍ଦେଶ୍ୟ ସାଧିତ ହୋଇପାରୁଛି ।

କିନ୍ତୁ ସାଧାରଣ ମନୋବିଜ୍ଞାନ ଏବଂ ଶିକ୍ଷା-ମନୋବିଜ୍ଞାନ ମଧ୍ୟରେ ଏ ପ୍ରକାର ବିଭାଜନ ପ୍ରାଞ୍ଜଳ ନୁହେଁ । ସାଧାରଣ ମନୋବିଜ୍ଞାନୀମାନେ ବୈଜ୍ଞାନିକ କର୍ମଶାଳାରେ ଯେ କେବଳ ଗବେଷଣା କାର୍ଯ୍ୟ କରୁଛନ୍ତି ତା' ନୁହେଁ । ଶିକ୍ଷା ପରିବେଶରେ ମଧ୍ୟ ସେମାନେ ପରୀକ୍ଷାମୂଳକ ଭାବେ ନିଜର କାର୍ଯ୍ୟ କରୁଛନ୍ତି । ସେହିପରି ଶିକ୍ଷା-ମନସ୍ତତ୍ତ୍ୱବିତ୍‌ମାନେ

କେବଳ ଉଦ୍ଭମ ମନସ୍ତାତ୍ତ୍ୱିକ ତତ୍ତ୍ୱଗୁଡ଼ିକୁ ଶ୍ରେଣୀଗୃହରେ କାର୍ଯ୍ୟକାରୀ କରିବାରେ ଲିପ୍ତ ନ ରହି ବ୍ୟବହାର ସମ୍ବନ୍ଧୀୟ ସାଧାରଣ ତତ୍ତ୍ୱର ଉନ୍ନତି କଲେ ଚେଷ୍ଟିତ ହେଉଛନ୍ତି । ତେଣୁ ଉଭୟ ସାଧାରଣ ମନସ୍ତତ୍ତ୍ୱବିଦ୍ ଓ ଶିକ୍ଷା-ମନସ୍ତତ୍ତ୍ୱବିଦ୍‌ମାନେ ପ୍ରତ୍ୟେକ କ୍ଷେତ୍ରରେ ଉଭୟ ବିଷୟବସ୍ତୁ ପାଇଁ ଚିନ୍ତା କରୁଛନ୍ତି । ଏ ଦୃଷ୍ଟିରୁ ଉଭୟ ଶୃଙ୍ଖଳା ମଧ୍ୟରେ ସମ୍ପର୍କ ଅତୀତରେ ଥିଲା, ବର୍ତ୍ତମାନ ଅଛି ଓ ଭବିଷ୍ୟତରେ ରହିବ ଏହା ନିଃସନ୍ଦେହ ।

## ଶିକ୍ଷା-ମନୋବିଜ୍ଞାନର ପରିସର
## (Scope of Educational Psychology) :—

ଶିକ୍ଷା-ପରିବେଶରେ ମାନବ ବ୍ୟବହାରର ଅନୁଧ୍ୟାନ ହିଁ ଶିକ୍ଷା ମନୋବିଜ୍ଞାନର ପରିସର ଅନ୍ତର୍ଭୁକ୍ତ । ବ୍ୟକ୍ତି ଓ ସେମାନଙ୍କର ଶିକ୍ଷଣ ପରିସ୍ଥିତି ସହିତ ଶିକ୍ଷା-ମନୋବିଜ୍ଞାନର ବିଷୟବସ୍ତୁ ସମ୍ପୂର୍ଣ୍ଣଭାବେ ସଂଶ୍ଳିଷ୍ଟ । ଶିଶୁ, କିଶୋର, ଯୁବକ ଓ ବୃଦ୍ଧମାନଙ୍କ ସମ୍ବନ୍ଧୀୟ ଶିକ୍ଷା ହିଁ ମନୋବିଜ୍ଞାନର ପରିସର ଅନ୍ତର୍ଭୁକ୍ତ । ଶିକ୍ଷା-ପ୍ରକ୍ରିୟା ଯେପରି ଜୀବନବ୍ୟାପୀ, ସେହିପରି ଶିକ୍ଷା-ମନୋବିଜ୍ଞାନର ପରିସର ମଧ୍ୟ ଜୀବନର ପ୍ରତ୍ୟେକ ଅବସ୍ଥା ସହିତ ସଂପୃକ୍ତ ।

ମନୋବିଜ୍ଞାନର ବିଷୟବସ୍ତୁକୁ ବିଭିନ୍ନ ବିଭାଗରେ ବିଭକ୍ତ କରାଯାଇପାରେ । ଏହି ବିଭାଗଗୁଡ଼ିକ ଅପରିବର୍ତ୍ତନୀୟ ନୁହେଁ; କିନ୍ତୁ ଏହା ମନସ୍ତତ୍ତ୍ୱବିତ୍‌ମାନଙ୍କ ପ୍ରସ୍ତୁତିକରଣ ଉପରେ ନିର୍ଭର କରିଥାଏ । ଶିକ୍ଷାମନୋବିଜ୍ଞାନର ପରିସର ନିମ୍ନଲିଖିତ ବିଭାଗଗୁଡ଼ିକ ସହ ସନ୍ନିବେଶିତ ।

୧ । ମନୋବିଜ୍ଞାନ ଓ ଶିକ୍ଷା

୨ । ମାନବ ବୃଦ୍ଧି ଓ ବିକାଶ

୩ । ଶିକ୍ଷଣ

୪ । ବ୍ୟକ୍ତିତ୍ୱ ଓ ସ୍ଥିତିସ୍ଥାପକରଣ

୫ । ବ୍ୟକ୍ତି ଓ ଦଳଗତ ଶିକ୍ଷଣ

୬ । ପରିମାପ ଏବଂ ପରୀକ୍ଷଣ

୭ । ପରିସଂଖ୍ୟାନ ଏବଂ ଗବେଷଣା ପଦ୍ଧତି

ଶିକ୍ଷା-ମନୋବିଜ୍ଞାନ ସମ୍ପର୍କରେ କେତେକ ମନସ୍ତତ୍ତ୍ୱବିଦ୍ ନିମ୍ନଲିଖିତ ମତମାନ ପୋଷଣ କରନ୍ତି ।

1. Charles Skinner :—"Educcational Psychology is that branch of psychology which deals with teaching and learning "

2. Arthur Coladarci :—"Educational psychology is the empirical foundation of education."

3. Trow :—"Educational psychology is the study of psychological aspects of Educational situation."

4. Kashyap and Puri :—"Educational psychology is a study of activities of the pupil or of the individuals in response to Educational Environment."

5. Crow and Crow :—"Educational psychology describes and explains the learning experiences of an individual from birth through old age."

6. E. A. Peel :—"Educational psychology is the science of Education."

## ଶିକ୍ଷା-ମନୋବିଜ୍ଞାନର ତଥ୍ୟ ସଂଗ୍ରହ ପ୍ରଣାଳୀ
## (Methods of Investigation in Educational Psychology) :—

ଶିକ୍ଷା-ପରିବେଶରେ ମାନବ ବ୍ୟବହାରର ଅଧ୍ୟୟନକୁ ମନସ୍ତତ୍ତ୍ୱବିତ୍‌ମାନେ ଶିକ୍ଷା-ମନୋବିଜ୍ଞାନ ବୋଲି ଅଭିହିତ କରନ୍ତି । କିନ୍ତୁ ଶିକ୍ଷା କାର୍ଯ୍ୟକ୍ରମ ମଧ୍ୟରେ ମନୁଷ୍ୟର ବ୍ୟବହାରକୁ କିପରି ଅନୁଧ୍ୟାନ କରାଯିବ ସେଥିନିମନ୍ତେ ମନସ୍ତତ୍ତ୍ୱବିତ୍‌ମାନେ ବିଭିନ୍ନ ପ୍ରଣାଳୀର ସାହାଯ୍ୟ ନେଇଥାନ୍ତି । ଯଦିଓ ମନୋବିଜ୍ଞାନ ଏକ ସାମାଜିକ ବିଜ୍ଞାନ ତଥାପି ଏହାର ଗବେଷଣା ନିମନ୍ତେ ବୈଜ୍ଞାନିକ ପଦ୍ଧତିକୁ ଅନୁସରଣ କରାଯାଏ । ବୈଜ୍ଞାନିକ ପଦ୍ଧତି ସଂଗୃହୀତ ତଥ୍ୟକୁ ସଠିକ୍ ଭାବରେ ପର୍ଯ୍ୟବେକ୍ଷଣ, ଓ ପର୍ଯ୍ୟାଲୋଚନା କରି ପରିଶେଷରେ ଏକ ନିର୍ଦ୍ଦିଷ୍ଟ ସତ୍ୟ ବା ନିୟମ ଉଦ୍ଭାବନ କରିଥାଏ ଯାହାକି ସାର୍ବଜନୀନ ହୁଏ । ଶିକ୍ଷାଦାନ କ୍ଷେତ୍ରରେ ମଧ୍ୟ ବିଭିନ୍ନ ପ୍ରକାର ସମସ୍ୟା ପରିଦୃଷ୍ଟ ହୁଏ । ଶିକ୍ଷା ମନସ୍ତତ୍ତ୍ୱ ସମ୍ପର୍କୀୟ ସମସ୍ୟାଗୁଡ଼ିକର ସମାଧାନ ନିମନ୍ତେ ବିଭିନ୍ନ ଗବେଷଣା କରାଯାଏ ।

ଏହି ଗବେଷଣା କାର୍ଯ୍ୟ ପାଇଁ ଆବଶ୍ୟକ ହେଉଥିବା ବିଭିନ୍ନ ତଥ୍ୟ ସଂଗ୍ରହ ନିମନ୍ତେ ଯେଉଁ କୌଶଳ ବା ପଦ୍ଧତି ଅନୁସରଣ କରାଯାଏ ତାହା ତଥ୍ୟ-ସଂଗ୍ରହ ପ୍ରଣାଳୀ ରୂପେ ନାମିତ ହୋଇଅଛି ।

ବୈଜ୍ଞାନିକ ପଦ୍ଧତିକୁ ଗବେଷଣା ସମୟରେ ମନସ୍ତତ୍ତ୍ୱବିଦ୍‌ମାନେ ବିଭିନ୍ନ ଉପାୟରେ ବ୍ୟବହାର କରିଥାନ୍ତି । ଗବେଷଣା ନିମନ୍ତେ ନିଆଯାଇଥିବା ସମସ୍ୟାର ପ୍ରକୃତି, ଉଦ୍ଦେଶ୍ୟ ଏବଂ ଗବେଷକଙ୍କ ଦକ୍ଷତା ଅନୁଯାୟୀ ତଥ୍ୟ ସଂଗ୍ରହ ପ୍ରଣାଳୀ ଭିନ୍ନ ଭିନ୍ନ ହୋଇଥାଏ । ତଥ୍ୟ ସଂଗ୍ରହ ପ୍ରଣାଳୀ ବିଷୟରେ ସୂଷ୍ଠୁ ଜ୍ଞାନ ହାସଲ କରିବାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଶିକ୍ଷା-ପରିବେଶ ମଧ୍ୟରେ ଦୈନନ୍ଦିନ ଉପୁଜୁଥିବା ବିଭିନ୍ନ ସମସ୍ୟା-ଗୁଡ଼ିକର ସମାଧାନ ନିମନ୍ତେ ଉପାୟ ନିର୍ଦ୍ଧାରିତ କରିବା । ତେଣୁ ପ୍ରତ୍ୟେକ ଶିକ୍ଷକ ଏହି ପ୍ରଣାଳୀ ସମ୍ବନ୍ଧରେ ଅବଗତ ହେବା ଉଚିତ୍ । ବର୍ତ୍ତମାନ ଦେଖାଯାଉଛି ଗବେଷଣା କ୍ଷେତ୍ରରେ ନୂତନ ନୂତନ ପ୍ରଣାଳୀ ଉଦ୍ଭାବନ କରାଗଲାଣି । କିନ୍ତୁ ମନସ୍ତତ୍ତ୍ୱବିତ୍‌ମାନେ ମନସ୍ତାତ୍ତ୍ୱିକ ସମସ୍ୟା ସମ୍ବନ୍ଧୀୟ ଗବେଷଣା ସମୟରେ ଯେଉଁ ପଦ୍ଧତି ସବୁ ଅନୁସରଣ କରିଥାନ୍ତି ସେଗୁଡ଼ିକ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ—

(୧) ପର୍ଯ୍ୟବେକ୍ଷଣ ପ୍ରଣାଳୀ—(Methods of Observation)

(୨) ପରୀକ୍ଷା ପ୍ରଣାଳୀ—(Methods of Experiment)

ଅନ୍ୟ କେତେକ ମନସ୍ତତ୍ତ୍ୱବିଦ୍ ମଧ୍ୟ ଏହି ତଥ୍ୟ ସଂଗ୍ରହ ପ୍ରଣାଳୀର ବିଭାଜନ ବିଷୟ ନିଷ୍ଠତା (Subjective) ଓ ବସ୍ତୁନିଷ୍ଠତା (Objective) ଭିତ୍ତିରେ କରନ୍ତି । କାରଣ ପ୍ରତ୍ୟେକ ପ୍ରଣାଳୀର କିଛି ନା କିଛି ବସ୍ତୁନିଷ୍ଠ ଓ ବିଷୟନିଷ୍ଠ ଉପାଦାନ ରହିଛି । କିନ୍ତୁ ଏହି ଉପାୟରେ ତଥ୍ୟ ସଂଗ୍ରହ ପଦ୍ଧତିଗୁଡ଼ିକୁ ବିଭାଜନ କରାଇବା କଷ୍ଟକର । ତେଣୁ ଗବେଷଣାର ଉଦ୍ଦେଶ୍ୟ ଓ ପରିବେଶର ନିୟନ୍ତ୍ରଣ ଅନୁଯାୟୀ ପଦ୍ଧତିଗୁଡ଼ିକର ବିଭାଗୀକରଣ କରାଯାଇଛି ।

ମନସ୍ତତ୍ତ୍ୱରେ ପର୍ଯ୍ୟବେକ୍ଷଣ ପ୍ରଣାଳୀକୁ ପୁଣି ଦୁଇଭାଗରେ ବିଭକ୍ତ କରାଯାଇଛି ଯଥା :—(୧) ଆତ୍ମ-ପର୍ଯ୍ୟବେକ୍ଷଣ ବା ବ୍ୟକ୍ତିନିଷ୍ଠ ପର୍ଯ୍ୟବେକ୍ଷଣ (Introspection), (୨) ବାହ୍ୟ-ପର୍ଯ୍ୟବେକ୍ଷଣ ବା ବସ୍ତୁନିଷ୍ଠ ପର୍ଯ୍ୟବେକ୍ଷଣ ((Extrospection) । ନିମ୍ନରେ ବିଭିନ୍ନ ପର୍ଯ୍ୟବେକ୍ଷଣ ପଦ୍ଧତିଗୁଡ଼ିକ ସମ୍ପର୍କରେ ଆଲୋଚନା କରାଗଲା ।

**ଆତ୍ମ-ପର୍ଯ୍ୟବେକ୍ଷଣ (Introspection) :**

ମନସ୍ତତ୍ତ୍ୱର ପ୍ରାଥମିକ ସ୍ତରରେ ମନସ୍ତତ୍ତ୍ୱବିଦ୍‌ମାନେ ତଥ୍ୟ ସଂଗ୍ରହ ନିମନ୍ତେ ଏହି ଆତ୍ମ-ପର୍ଯ୍ୟବେକ୍ଷଣ ପ୍ରଣାଳୀର ବହୁଳ ବ୍ୟବହାର କରୁଥିଲେ । କାରଣ ସେତେବେଳେ

ମନୋବିଜ୍ଞାନ, ଦର୍ଶନ ସହ ସମ୍ପୃକ୍ତ ଜଡ଼ିତ ଥିଲା । ସେତେବେଳେ ମନୋବିଜ୍ଞାନକୁ "ମନର ବିଜ୍ଞାନ" ବା Science of mind ବୋଲି ଅଭିହିତ କରାଯାଉଥିଲା । ତେଣୁ ମଣିଷ ମନର ବିଭିନ୍ନ ସ୍ତର ବା ଚେତନାକୁ ଅଧ୍ୟୟନ କରିବା ପାଇଁ ଏହି ଆତ୍ମ-ପର୍ଯ୍ୟବେକ୍ଷଣ ପଦ୍ଧତି ବିଶେଷ ସାହାଯ୍ୟ କରୁଥିଲା । ମନୋବିଜ୍ଞାନର ସଂଜ୍ଞା 'ବ୍ୟବହାର ବିଜ୍ଞାନ' ଭାବେ ଆଦୃତ ହେବା ପର୍ଯ୍ୟନ୍ତ ଏହା ଏକ ଉପାଦେୟ ପଦ୍ଧତି ରୂପେ ପରିଗଣିତ ହୋଇ-ଆସୁଥିଲା ।

ଆତ୍ମ-ପର୍ଯ୍ୟବେକ୍ଷଣକୁ ଇଂରାଜୀରେ Introspection କୁହାଯାଏ । ଏହି Introspection ଶବ୍ଦଟି Intro ଏବଂ spection—ଏହି ଦୁଇଟି ଶବ୍ଦର ସମ୍ମିଶ୍ରଣରେ ଗଠିତ । Intro ଅର୍ଥ within or inward (ଅନ୍ତଃ) ଏବଂ spection ଅର୍ଥ Looking (ଦେଖିବା) । ତେଣୁ Introspectionର ଆକ୍ଷରିକ ଅର୍ଥ ହେଉଛି looking within or looking inwrrd (ଅନ୍ତଃ-ଦୃଷ୍ଟି) । ଅନ୍ୟ ଭାବରେ କହିଲେ ଏହା ହେଉଛି ନିଜସ୍ୱ ଅନୁଭବ ବା ବୋଧ କରିବା କ୍ଷମତା । ତେଣୁ ଏହି ପଦ୍ଧତିରେ ବ୍ୟକ୍ତିବିଶେଷ ନିଜେ ନିଜର ମାନସିକ ପ୍ରକ୍ରିୟା ଓ ମାନସିକ କାର୍ଯ୍ୟକଳାପକୁ ପର୍ଯ୍ୟବେକ୍ଷଣ କରିଥାଏ । ମନସ୍ତତ୍ତ୍ୱବିତ୍ ଷ୍ଟାଉଟ୍ (Stout)ଙ୍କ ମତାନୁଯାୟୀ "to introspect is to attend to the workings of one's own mind in a systematic way." ମୋଟାମୋଟି ଭାବରେ ବିଚାର କଲେ ଏହି ପଦ୍ଧତିରେ ତଥ୍ୟ ସଂଗ୍ରହ ସମୟରେ ଯେଉଁ ବ୍ୟକ୍ତିଠାରୁ ତଥ୍ୟ ଅଣାଯିବ ତାଙ୍କୁ ସମ୍ପୂର୍ଣ୍ଣ ସ୍ୱାଧୀନତା ଦିଆଯାଇଥାଏ । ସେ ନିଜେ ନିଜର ମାନସିକ କ୍ରିୟାକୁ ଅନୁଭବ କରେ, ତା'ର ପର୍ଯ୍ୟବେକ୍ଷଣ, ପରୀକ୍ଷଣ ଏବଂ ଅଭିଲେଖନ ମଧ୍ୟ କରିଥାଏ ।

ଆତ୍ମ-ପର୍ଯ୍ୟବେକ୍ଷଣର ମୁଖ୍ୟତଃ ନିମ୍ନଲିଖିତ ତିନୋଟି ପର୍ଯ୍ୟାୟ ରହିଛି । ଯଥା :—

୧ । କୌଣସି ଏକ ବାହ୍ୟ ବସ୍ତୁକୁ ପର୍ଯ୍ୟବେକ୍ଷଣ କରିବା ସମୟରେ ତା'ର ମାନସିକ କ୍ରିୟା କିପରି ହେଉଛି ତାହା ସେ ନିଜେ ଅନୁଭବ କରେ । ଉଦାହରଣ ସ୍ୱରୂପ କୌଣସି ନାଟକ ବା ଚଳଚ୍ଚିତ୍ର ଦେଖିବା ସମୟରେ ତା'ର ମାନସିକ କ୍ରିୟା କିପରି ହେଉଛି ତାହା ସେ ନିଜ ଅନୁଭବରୁ ପ୍ରକାଶ କରେ ।

୨ । କୌଣସି କାର୍ଯ୍ୟ କରିସାରିବା ପରେ କିମ୍ବା ଅନ୍ୟ କୌଣସି ବ୍ୟକ୍ତିକୁ ଅପମାନିତ କରିବା ପରେ ସେ ନିଜର କାର୍ଯ୍ୟ ପାଇଁ ନିଜକୁ ପ୍ରଶ୍ନ କରିଥାଏ । ତାହାର ଏ ପ୍ରକାର କାର୍ଯ୍ୟପାଇଁ ଅନୁତାପ ମଧ୍ୟ କରେ ।

୩। ପରିଶେଷରେ ସେ ନିଜର ମାନସିକ ଧାରାକୁ ନେଇ କେତେକ ନୀତି-ନିୟମ ପ୍ରସ୍ତୁତ କରିଥାଏ। ଏହି ନିୟମାବଳୀ ଅନୁସାରେ ସେ ନିଜର ଆବେଗିକ ସ୍ଥିତିକୁ ନିୟନ୍ତ୍ରଣ କରିବାକୁ ଚେଷ୍ଟା କରିଥାଏ। ଆତ୍ମ-ପର୍ଯ୍ୟବେକ୍ଷଣରେ ଏହି ସ୍ଥିତି ବ୍ୟକ୍ତିର ଜ୍ଞାନ ଆହରଣରେ ସାହାଯ୍ୟ କରେ ଓ ଏହା ବୈଜ୍ଞାନିକ ପଦ୍ଧତି ଅନୁସୃତ ଅଟେ।

ଉପରୋକ୍ତ ତିନୋଟି ପର୍ଯ୍ୟାୟ ଆତ୍ମ-ପର୍ଯ୍ୟବେକ୍ଷଣ ପଦ୍ଧତି ଆବଶ୍ୟକ ହୋଇଥାଏ।

## ଆତ୍ମ-ପର୍ଯ୍ୟବେକ୍ଷଣର ସାଧାରଣ ଲକ୍ଷଣ
## (General Characteristics of Introspection) :—

ଆତ୍ମ-ପର୍ଯ୍ୟବେକ୍ଷଣରେ ନିମ୍ନଲିଖିତ ସାଧାରଣ ଲକ୍ଷଣଗୁଡ଼ିକ ପରିଲକ୍ଷିତ ହୁଏ।

୧। ଏହି ପଦ୍ଧତିଦ୍ୱାରା ବ୍ୟକ୍ତି ମନ ସମ୍ବନ୍ଧରେ ଖୁବ୍ ଶୀଘ୍ର ପ୍ରତ୍ୟକ୍ଷ ଓ ଆଶୁ ଜ୍ଞାନ ଲାଭ କରିଥାଏ।

୨। ବ୍ୟକ୍ତି ନିଜର ମାନସିକ କ୍ରିୟାକୁ ବାସ୍ତବରେ ପର୍ଯ୍ୟବେକ୍ଷଣ କରିପାରେ। ସେ ନିଜର ମାନସିକ ସ୍ଥିତି ସମ୍ବନ୍ଧରେ କୌଣସି ଭ୍ରାନ୍ତ ଧାରଣା ଆଣିପାରେ ନାହିଁ।

## ଆତ୍ମ-ପର୍ଯ୍ୟବେକ୍ଷଣର ଦୋଷ ଦୁର୍ବଳତା
## (Drawbacks of the Introspection Method) :—

୧। ଆତ୍ମ-ପର୍ଯ୍ୟବେକ୍ଷଣ ପଦ୍ଧତିରେ ପର୍ଯ୍ୟବେକ୍ଷଣକାରୀ ନିଜେ ନିଜର କ୍ରିୟାକୁ ପର୍ଯ୍ୟବେକ୍ଷଣ କରୁଥିବାରୁ ଏହା ବସ୍ତୁନିଷ୍ଠ ହେବା ପରିବର୍ତ୍ତେ ବିଷୟନିଷ୍ଠ (Subjetive) ହୋଇପଡ଼େ। କାରଣ ପର୍ଯ୍ୟବେକ୍ଷଣ କରିବା ସମୟରେ ତା'ର ମାନସିକ ପ୍ରକ୍ରିୟା ଦୁଇ ଭାଗରେ ବିଭକ୍ତ ହୋଇଥାଏ। ଗୋଟିଏ ଭାଗ ପର୍ଯ୍ୟବେକ୍ଷିତ ହେବାବେଳେ ଅନ୍ୟ ଭାଗଟି ପର୍ଯ୍ୟବେକ୍ଷଣ କରୁଥାଏ। ଯେତେବେଳେ ବ୍ୟକ୍ତି କୌଣସି ବିଷୟରେ ଚିନ୍ତା କରୁଥାଏ ସେହି ସମୟରେ ତାକୁ ତା'ର ଚିନ୍ତାଧାରାକୁ ବିଶ୍ଳେଷଣ କରିବାକୁ ପଡ଼ିଥାଏ। ତେଣୁ ସମାଲୋଚକମାନେ କହନ୍ତି ଏକ ସମୟରେ ଦୁଇଟି କାର୍ଯ୍ୟ ସମାପନ କରିବା ଅସମ୍ଭବ।

୨। ପ୍ରତିମୁହୂର୍ତ୍ତରେ ଆମର ମାନସିକ ପ୍ରକ୍ରିୟାରେ ପରିବର୍ତ୍ତନ ଘଟେ । ତେଣୁ ଆମର ଚିନ୍ତାଧାରା, ଅନୁଭବ ଓ ଧାରଣାରେ ମଧ୍ୟ ପ୍ରତ୍ୟହ ପରିବର୍ତ୍ତନ ଘଟୁଥାଏ । ତେଣୁ ଆତ୍ମ-ପର୍ଯ୍ୟବେକ୍ଷଣ ପଦ୍ଧତି ମାଧ୍ୟମରେ ମାନସିକ ପ୍ରକ୍ରିୟା ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରିବା କଷ୍ଟସାଧ୍ୟ ବୋଲି ଅନେକ ମତ ଦିଅନ୍ତି ।

୩। ମନୁଷ୍ୟର ଶାରୀରିକ କ୍ରିୟାକଳାପକୁ ପର୍ଯ୍ୟବେକ୍ଷଣ କରିବା ସହଜ ଓ ସମ୍ଭବ ମଧ୍ୟ । କିନ୍ତୁ ତା'ର ମାନସିକ ପ୍ରକ୍ରିୟାକୁ ଜାଣିବା ଏକ ଦୁରୂହ ବ୍ୟାପାର । କାରଣ ଅନେକ ସମୟରେ ଆମେ ଯାହା ଚିନ୍ତା କରୁଥାଏ ତା'ର ପରିପ୍ରକାଶ ଅନ୍ୟଭାବରେ କରିଥାଏ । ତେଣୁ ପ୍ରତ୍ୟେକ ବ୍ୟକ୍ତିର ମାନସିକ କ୍ରିୟା ବିଷୟରେ ସେ ନିଜେ ଅବଗତ ଥିଲେ ମଧ୍ୟ ତାହାର ପୂର୍ଣ୍ଣ ପରିପ୍ରକାଶ କରି ନଥାଏ ।

୪। ଯେତେ ବିଜ୍ଞ ବା ପଣ୍ଡିତ ବ୍ୟକ୍ତି ହେଲେ ମଧ୍ୟ ସେ ନିଜର ବା ଅନ୍ୟର ମାନସିକ କ୍ରିୟାକୁ ପ୍ରତ୍ୟକ୍ଷ ଭାବରେ ଜାଣିପାରିବ ନାହିଁ । କେବଳ ତା'ର ବାହ୍ୟ ବ୍ୟବହାରରୁ ତାକୁ ଅଧ୍ୟୟନ କରିବ । ତେଣୁ ଆତ୍ମ ପର୍ଯ୍ୟବେକ୍ଷଣ ପଦ୍ଧତିରେ ପ୍ରତ୍ୟକ୍ଷ ତଥ୍ୟ ସଂଗ୍ରହ ଅମନୋବୈଜ୍ଞାନିକ ବୋଲି ସମାଲୋଚକମାନେ କହନ୍ତି ।

ଆତ୍ମ-ପର୍ଯ୍ୟବେକ୍ଷଣ ପଦ୍ଧତିର ଯଦିଓ ବିଭିନ୍ନ ଦୋଷ-ତ୍ରୁଟି ପରିଲକ୍ଷିତ ହୋଇଥାଏ ତଥାପି ମାନସିକ କ୍ରିୟା ସମ୍ପର୍କୀୟ ପ୍ରତ୍ୟକ୍ଷ ତଥ୍ୟ ସଂଗ୍ରହ କରିବା ପାଇଁ ଏହା ମନସ୍ତାତ୍ତ୍ୱିକ ସମସ୍ୟା ବିଷୟରେ ସମ୍ପୂର୍ଣ୍ଣ ବିବରଣୀ ଜାଣିବା ପାଇଁ ଏହି ପଦ୍ଧତି ସାହାଯ୍ୟ କରିଥାଏ । କାରଣ ଶିକ୍ଷା ମନୋବିଜ୍ଞାନ ଏକ ସାମାଜିକ ବିଜ୍ଞାନ ହୋଇଥିବାରୁ ଏହାର ପ୍ରତିଟି କ୍ରିୟା-ଅନୁକ୍ରିୟା ଶିକ୍ଷାର୍ଥୀ, ଶିକ୍ଷକ ଆଦିଙ୍କ ଦ୍ୱାରା ସଂଗଠିତ ହୋଇଥାଏ । ଫଳରେ ସେମାନଙ୍କ ମାନସିକ ସ୍ତର ଓ ତତ୍ସମ୍ବନ୍ଧୀୟ ସମସ୍ୟାଗୁଡ଼ିକର ସମାଧାନ କ୍ଷେତ୍ରରେ ଅଧୁନା ଏହି ପଦ୍ଧତି ବିଶେଷ ଆବଶ୍ୟକ ।

## ପର୍ଯ୍ୟବେକ୍ଷଣ ପଦ୍ଧତି (Observation Method) : —

ଆତ୍ମ-ପର୍ଯ୍ୟବେକ୍ଷଣ ପଦ୍ଧତିରେ ବ୍ୟକ୍ତି ନିଜେ ନିଜ ମାନସିକ ପ୍ରକ୍ରିୟାକୁ ପ୍ରତ୍ୟକ୍ଷ ଭାବରେ ବିଶ୍ଳେଷଣ କରିଥାଏ । କିନ୍ତୁ ପର୍ଯ୍ୟବେକ୍ଷଣ ପଦ୍ଧତିରେ ଗବେଷକ (Researcher) ଅନ୍ୟ ବ୍ୟକ୍ତିର ମାନସିକ କ୍ରିୟାକୁ ପର୍ଯ୍ୟବେକ୍ଷଣ କରିଥାଏ । ବିଜ୍ଞାନରେ ପର୍ଯ୍ୟବେକ୍ଷଣ କହିଲେ ଆମେ ବୃହତ୍ ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ ବାହ୍ୟ ପରିବେଶ ସମ୍ବନ୍ଧରେ ଜ୍ଞାନ ଆହରଣ କରିବା । ବର୍ତ୍ତମାନ ଗବେଷଣା କ୍ଷେତ୍ରରେ ଏହି ପର୍ଯ୍ୟବେକ୍ଷଣ ପଦ୍ଧତିକୁ ବହୁଳ ଭାବରେ ବ୍ୟବହାର କରାଯାଉଛି । ଶିକ୍ଷା ପରିବେଶ

ମଧ୍ୟରେ ଶିକ୍ଷାର୍ଥୀ, ଶିକ୍ଷକ, ଶିକ୍ଷା-ପ୍ରଶାସକ ଓ ଅଭିଭାବକମାନଙ୍କର ମନୋବୃତ୍ତିକୁ ଜାଣିବା ନିମନ୍ତେ ଏହି ପରୋକ୍ଷ ପର୍ଯ୍ୟବେକ୍ଷଣ ବିଶେଷ ସହାୟକ । ଅନ୍ୟ ବ୍ୟକ୍ତିର ମାନସିକ କାର୍ଯ୍ୟକୁ ଅଧ୍ୟୟନ କରିବା ବାସ୍ତବରେ ସମ୍ଭବ ନୁହେଁ । କିନ୍ତୁ ଗବେଷଣା କ୍ଷେତ୍ରରେ ବ୍ୟକ୍ତିର ବାହ୍ୟ କାର୍ଯ୍ୟକଳାପ, ଚାଲିଚଳଣି ଓ ବ୍ୟବହାରରୁ ତା'ର ମାନସିକ କ୍ରିୟା ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରାଯାଏ । ଉଦାହରଣ ସ୍ୱରୂପ ଜଣେ ବ୍ୟକ୍ତି ଆଖିରୁ ଲୁହ ଝରିଲେ ଆମେ ତା'ର ମନଦୁଃଖ ଅଛି ବୋଲି ଜାଣିପାରୁ । ପିଲାଟିଏ କାନ୍ଦିଲେ ତା'ର କୌଣସି ଅଭାବ ଅସୁବିଧା ରହିଛି ବୋଲି ମନେହୁଏ । ତେଣୁ ଶିଶୁର ବ୍ୟକ୍ତିତ୍ୱର ତର୍ଜମା କରିବା ସମୟରେ ତା'ର ବଂଶାନୁଗତ ଓ ପରିବେଶର ପ୍ରଭାବ ସମ୍ବନ୍ଧୀୟ ତଥ୍ୟ ସଂଗ୍ରହ ପାଇଁ ଏହି ପର୍ଯ୍ୟବେକ୍ଷଣ ପଦ୍ଧତି ବିଶେଷ ସହାୟକ ।

ସାଧାରଣତଃ ପର୍ଯ୍ୟବେକ୍ଷଣ ପଦ୍ଧତିରେ ତଥ୍ୟ ସଂଗ୍ରହ କରାଯିବା ସମୟରେ ଶିଶୁର ମାନସିକ କ୍ରିୟା ଜାଣିବା ପାଇଁ ତାହାର ଶାରୀରିକ କ୍ରିୟାକୁ ବିଶେଷ ପ୍ରାଧାନ୍ୟ ଦିଆଯାଇଥାଏ । ବିଭିନ୍ନ ପରିବେଶରେ ସେ କିପରି ବ୍ୟବହାର ପ୍ରଦର୍ଶନ କରୁଛି ତାହାକୁ ସଂଗ୍ରହ କରାଯାଏ । ଗବେଷଣା କରାଯାଉଥିବା ସମସ୍ୟାଟିର ଲକ୍ଷ୍ୟ, ଉଦ୍ଦେଶ୍ୟ ଓ ଗବେଷକଙ୍କ ଦକ୍ଷତା ଅନୁସାରେ ପର୍ଯ୍ୟବେକ୍ଷଣ କରାଯାଏ । କାରଣ ଶିଶୁର ପ୍ରତିଟି ବ୍ୟବହାର ଗବେଷଣା କାର୍ଯ୍ୟପାଇଁ ଆବଶ୍ୟକ ହୁଏନାହିଁ । ବିଦ୍ୟାଳୟ ପରିସର ମଧ୍ୟରେ ଶିକ୍ଷାଦାନ ସମୟରେ ଛାତ୍ରଛାତ୍ରୀମାନେ ବିଭିନ୍ନ ପରିବେଶରେ ଭିନ୍ନ ଭିନ୍ନ ବ୍ୟବହାର ପ୍ରଦର୍ଶନ କରିଥାଏ । ପର୍ଯ୍ୟବେକ୍ଷଣ ପଦ୍ଧତି ସମସ୍ୟାବହୁଳ ଶିକ୍ଷାର୍ଥୀମାନଙ୍କ ସମ୍ବନ୍ଧରେ ସବିଶେଷ ଜାଣିବା ପାଇଁ ଶିକ୍ଷକମାନଙ୍କୁ ସାହାଯ୍ୟ କରିଥାଏ ।

ମନୋବିଜ୍ଞାନରେ ବିଭିନ୍ନ ପ୍ରକାର ଗବେଷଣା କରିବା ପାଇଁ ଏହି ପର୍ଯ୍ୟବେକ୍ଷଣ ପଦ୍ଧତି ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଉ ଥିଲେ ହେଁ ଏହାର ଅନେକ ଦୋଷ ଦୁର୍ବଳତା ପରିଲକ୍ଷିତ ହୁଏ । ନିମ୍ନରେ ସେଗୁଡ଼ିକ ପ୍ରଦତ୍ତ କରାଗଲା ।

**ଦୋଷଦୁର୍ବଳତା :**

୧ । ପର୍ଯ୍ୟବେକ୍ଷଣ ପଦ୍ଧତିରେ ପର୍ଯ୍ୟବେକ୍ଷଣକାରୀ ପର୍ଯ୍ୟବେକ୍ଷିତ ବ୍ୟକ୍ତିର ମାନସିକ କ୍ରିୟାକୁ ଅଧ୍ୟୟନ କରି ନିଜର ମତାମତ ତଥା ଅନୁଭୂତିକୁ ପ୍ରକାଶ କରିଥାଏ । ଫଳରେ ଏହି ତଥ୍ୟ ସଂଗ୍ରହ ପ୍ରଣାଳୀ ବସ୍ତୁନିଷ୍ଠ ହୋଇନଥାଏ । ତେଣୁ ତଥ୍ୟ ବିଶ୍ଳେଷଣ ଓ ସତ୍ୟାନୁସନ୍ଧାନ ସମୟରେ ସଠିକ୍ ଫଳାଫଳ ମିଳେ ନାହିଁ ।

୨ । ସମସ୍ତ ସମୟରେ ମଧ୍ୟ ଦେଖାଯାଏ ପର୍ଯ୍ୟବେକ୍ଷଣକାରୀ ପ୍ରତ୍ୟେକ ଶିଶୁର ମାନସିକ କ୍ରିୟା ଓ ବାହ୍ୟ ବ୍ୟବହାରକୁ ଠିକ୍ ଭାବରେ ପ୍ରତିପାଦନ ନ କରି

ଭିତ୍ତିରେ ପାତ୍ରଅନ୍ତର ବିସ୍ତର କରିଥାନ୍ତି । ତେଣୁ ଏପରି ତଥ୍ୟ ମଧ୍ୟ ସତ୍ୟାନୁସନ୍ଧାନ ପାଇଁ ଫଳପ୍ରଦ ନୁହେଁ ।

୩ । ଯେଉଁ ଶିଶୁ ବା ବ୍ୟକ୍ତିଙ୍କୁ ପର୍ଯ୍ୟବେକ୍ଷଣ କରାଯାଉଥାଏ ଏବଂ ସେ ଯଦି ଜାଣିପାରେ ଯେ କେହି ତା'ର ବ୍ୟବହାରକୁ ଅନୁଧ୍ୟାନ କରୁଛନ୍ତି ତାହାଲେ ସେ ନିଜ ମାନସିକ ପ୍ରକ୍ରିୟାର ଠିକ୍ ଓଲଟା ବ୍ୟବହାର ପ୍ରଦର୍ଶନ କରିଥାଏ ଓ ନିଜର କ୍ରିୟାକଳାପକୁ ଲୁଚାଇ ରଖେ । ତେଣୁ ପ୍ରକୃତ ବ୍ୟବହାରକୁ ପର୍ଯ୍ୟବେକ୍ଷଣକାରୀ ଅନୁଧ୍ୟାନ ନ କରି ପାରି ଭୁଲ ତଥ୍ୟ ସଂଗ୍ରହକରିବାର ଦେଖାଯାଇଥାଏ ।

୪ । ଏହି ପଦ୍ଧତି ମଧ୍ୟ ସମୟସାପେକ୍ଷ ହୋଇଥିବାରୁ ଗବେଷଣା କାର୍ଯ୍ୟ ସମାପନ ଓ ନିର୍ଦ୍ଦିଷ୍ଟ ସତ୍ୟ ଉଦ୍‌ଘାଟନ ପାଇଁ ଅଧିକ ସମୟ ଲାଗିଯାଏ ।

ଶିକ୍ଷାକ୍ଷେତ୍ରରେ ମନସ୍ତାତ୍ତ୍ୱିକ ତତ୍ତ୍ୱାଧାରର ପ୍ରୟୋଗ ନିମନ୍ତେ ପର୍ଯ୍ୟବେକ୍ଷଣ ପଦ୍ଧତିର ଭୂମିକା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ବିଶେଷକରି ଶିଶୁମାନଙ୍କ ବ୍ୟବହାରକୁ ଅଧ୍ୟୟନ କରିବା ନିମନ୍ତେ ପର୍ଯ୍ୟବେକ୍ଷଣ ପଦ୍ଧତିର ସାହାଯ୍ୟ ନିଆଯାଇଥାଏ ଓ ସେମାନଙ୍କ ମାନସିକ କ୍ରିୟା ଏବଂ ମାନସିକ ପ୍ରସ୍ତୁତି ଅନୁସାରେ ସେମାନଙ୍କୁ ଉପଯୁକ୍ତ ଶିକ୍ଷା ପ୍ରଦାନ କରାଯାଇଥାଏ । ପର୍ଯ୍ୟବେକ୍ଷଣ ପଦ୍ଧତିରେ ବିଭିନ୍ନ ତଥ୍ୟ ସଂଗ୍ରହ କରାଯାଇ ଶିଶୁମାନଙ୍କୁ ଶିକ୍ଷାଦାନ ନିମନ୍ତେ କ୍ରୀଡ଼ା ପଦ୍ଧତି, ଆବିଷ୍କାରମୂଳକ ପଦ୍ଧତି ଆଦିର ପ୍ରଚଳନ କରାଯାଇଛି ।

**ପଞ୍ଚମ (Psycho Analysis Method)**

ଡକ୍ଟର ସିଗ୍‌ମଣ୍ଡ ଫ୍ରଏଡ୍ (**Dr. Sigmund Freud**) ଙ୍କୁ ଏହି ପଦ୍ଧତିର ସୃଷ୍ଟିକର୍ତ୍ତା ବୋଲି କୁହାଯାଏ । ବିଭିନ୍ନ ପ୍ରକାର ଗବେଷଣା ଓ ପରୀକ୍ଷାନିରୀକ୍ଷା କରି ସେ ଶେଷ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ, ମଣିଷର ମାନସିକ ପ୍ରକ୍ରିୟାର ତିନୋଟି ସ୍ତର ରହିଛି । ଯେଉଁ ସବୁ ବ୍ୟବହାର ମଣିଷ ପ୍ରଦର୍ଶନ କରିଥାଏ ସେସବୁ ତା'ର ଚେତନା ଅନ୍ତର୍ଭୁକ୍ତ ନୁହେଁ । ଚେତନା ବହିର୍ଭୂତ କେତେକ କାର୍ଯ୍ୟ ମଧ୍ୟ ସେ କରେ । ମଣିଷ ମନର ଏହି ତିନୋଟି ସ୍ତର ହେଉଛି :—(୧) ଚେତନା ସ୍ତର (Conscious Stage), (୨) ଅବଚେତନ ସ୍ତର (Unconscious Stage) ଏବଂ (୩) ଅର୍ଦ୍ଧ-ଚେତନ (Sub Concious Stage) । ଚେତନା ସ୍ତର ମଧ୍ୟରେ ଯେଉଁ ବ୍ୟବହାର ପ୍ରଦର୍ଶିତ ହୋଇଥାଏ ସେ ସବୁକୁ ବିଭିନ୍ନ ଉପାୟରେ ଅନୁଧ୍ୟାନ କରିବା ସହଜସାଧ୍ୟ କିନ୍ତୁ ଅବଚେତନ ଓ ଅର୍ଦ୍ଧଚେତନ ପ୍ରସୂତ ବ୍ୟବହାରକୁ ଆତ୍ମ-ପର୍ଯ୍ୟବେକ୍ଷଣ କିମ୍ବା ବହିଃ ପର୍ଯ୍ୟବେକ୍ଷଣ ସାହାଯ୍ୟରେ ଅଧ୍ୟୟନ କରିବା କଷ୍ଟକର ଓ ଅସମ୍ଭବ ମଧ୍ୟ ।

ଫ୍ରଏଡ୍‌ଙ୍କ ମତାନୁଯାୟୀ ମନୁଷ୍ୟ ଯାହା କିଛି ଚିନ୍ତାକରେ ଏବଂ ତା'ର ସମସ୍ତ ପ୍ରକାର ଆଶା ଆକାଙ୍‌କ୍ଷା, ଇଚ୍ଛା, ହର୍ଷ ଓ ବିଷାଦପୂର୍ଣ୍ଣ ଅନୁଭୂତି ପ୍ରତ୍ୟେକ—ଏହି ଅବଚେତନ ସ୍ତର ମଧ୍ୟରେ ସଞ୍ଚିତ୍ ହୋଇ ରହିଯାଏ । ଉଦାହରଣ ସ୍ୱରୂପ ଜଣେ ବ୍ୟକ୍ତି କୌଣସି ଏକ ଜଘନ୍ୟ କାର୍ଯ୍ୟରେ ସମ୍ପୃକ୍ତ ଏବଂ ତାହା ମଧ୍ୟ ଅନ୍ୟମାନଙ୍କ ଅଗୋଚରରେ ହୋଇଥାଏ । ତେଣୁ ସେ ନିଜର ଦୋଷକୁ କେବଳ ନିଜେ ହିଁ ଜାଣିଥାଏ ଓ ତାକୁ କେବେ ବି ପରପ୍ରକାଶ କରିବାକୁ ଦିଏ ନାହିଁ । ତେଣୁ ମଣିଷ ଯେଉଁ ଜିନିଷଗୁଡ଼ିକୁ ପ୍ରକାଶ କରିବାକୁ ଚାହିଁଥାଏ ସେଗୁଡ଼ିକ ତାର ଚେତନା ଅନ୍ତର୍ଭୁକ୍ତ ହୋଇଥାଏ ଓ ଅନ୍ୟ ସମସ୍ତ ଚିନ୍ତା ଓ ଅନୁଭୂତି ତାର ଅବଚେତନ ସ୍ତରରେ ପୁଞ୍ଜିଭୂତ ହୋଇ ରହିଥାଏ । ବିଭିନ୍ନ ଚିନ୍ତାଧାରା ଓ ଅନୁଭୂତିକୁ ଲୁକ୍‌କାୟିତ ରଖିବା-ପରେ ସେଗୁଡ଼ିକ କିଛିଦିନ ପରେ ବ୍ୟକ୍ତିର ବ୍ୟବହାରକୁ ଅସଂଗତ ଓ ବିଶୃଙ୍ଖଳିତ କରିଦିଏ । ଫଳରେ ସେ ବିଭିନ୍ନ ପ୍ରକାର ଅସାମାଜିକ ବ୍ୟବହାର ପ୍ରଦର୍ଶନ କରିଥାଏ ଓ ତା'ର ମାନସିକ ଜଗତରେ ସ୍ଥିରତା ପରିବର୍ତ୍ତେ ବ୍ୟତିକ୍ରମ ଦେଖାଯାଏ । ତେଣୁ ଫ୍ରଏଡ୍‌ଙ୍କର ଏହି ନୂତନ ଧରଣର ତଥ୍ୟ ସଂଗ୍ରହ ପ୍ରଣାଳୀର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ବ୍ୟକ୍ତିର ଉକ୍ତ ଅଭିଳାଷ, ଇଚ୍ଛା ଓ ଚିନ୍ତାଧାରକୁ ଚେତନା ସ୍ତରକୁ ଆଣି ତା'ର ଅସଂଗତ ବ୍ୟବହାରର କାରଣ ଜାଣିବା । ଆହୁରି ମଧ୍ୟ ଏହି ପଦ୍ଧତି ପରୀକ୍ଷିତ ବ୍ୟକ୍ତିର ଅନଭିପ୍ରେତ ବ୍ୟବହାରର ମୂଳ କାରଣ ଉତ୍ପାଟନ କରିଥାଏ ।

ମାନସିକ ସ୍ତରର ବିଭିନ୍ନ ପ୍ରକାର ଅସୁସ୍ଥତା ଓ ତା'ର ନିରାକରଣ ନିମନ୍ତେ ଏହି ମାନସିକ ବିଶ୍ଳେଷଣ ପଦ୍ଧତି ସାହାଯ୍ୟ କରେ । ଏହା ଶିଶୁ ବା ବ୍ୟକ୍ତିର ମାନସିକ, ଆବେଗିକ ଓ ସ୍ନାୟୁଜନିତ ଦୁର୍ବଳତାକୁ ଜାଣିବା ପାଇଁ ମନସ୍ତତ୍ତ୍ୱବିତ୍‌ଙ୍କୁ ସାହାଯ୍ୟ କରିଥାଏ । ମାନସିକ ଅସ୍ଥିରତା ସମ୍ବନ୍ଧୀୟ ବିଭିନ୍ନ ତଥ୍ୟ ସଂଗ୍ରହ କରିବା ପାଇଁ ଏହି ପଦ୍ଧତିରେ ନିମ୍ନଲିଖିତ ଚାରୋଟି ଉପାୟ ଅବଲମ୍ବନ କରାଯାଏ । ସେଗୁଡ଼ିକ ଯଥା :—

## ୧ । ପାରିବାରିକ ସମ୍ବନ୍ଧ ସ୍ଥାପନ (Establishing Repport) :

ମାନସିକ ଅସୁସ୍ଥତା ସମ୍ବନ୍ଧୀୟ ତଥ୍ୟ ସଂଗ୍ରହ କରିବାକୁ ହେଲେ ପରୀକ୍ଷିତ ମାନସିକ ରୋଗୀସହ ପ୍ରଥମେ ସମ୍ବନ୍ଧ ସ୍ଥାପନ କରିବାକୁ ହୋଇଥାଏ । ତେଣୁ ବିଶ୍ଳେଷଣକାରୀ ଉକ୍ତ ରୋଗୀସହ ଆବେଗପୂର୍ଣ୍ଣ ଖବର ଆଦାନ ପ୍ରଦାନ ନିମନ୍ତେ ପ୍ରାଥମିକ ସ୍ତରରେ ସମସ୍ତ ଚେଷ୍ଟା କରି ଉପଯୁକ୍ତ ସମ୍ପର୍କ ଓ ବିଶ୍ୱାସ ଆଣିଥାନ୍ତି । ଏ ପ୍ରକାର ପାରିବାରିକ ସମ୍ପର୍କ କେବଳ ସହଯୋଗୀ ଓ ଦୟାଳୁ ମନୋବୃତ୍ତି ଦ୍ୱାରା ସମ୍ଭବ ହୋଇଥାଏ ।

୨ । ବିଶ୍ଳେଷଣ (Analysis) :

ଅନୁଧ୍ୟାନ କରିସାରିଥିବା ମାନସିକ ରୋଗୀଟି ସହ ଉପଯୁକ୍ତ ଆବେଗିକ ସମ୍ପର୍କ ସ୍ଥାପିତ ହେବାପରେ ବିଶ୍ଳେଷଣକାରୀ ରୋଗୀଟିକୁ ଏକ ନିର୍ଜନ ପ୍ରକୋଷ୍ଠରେ ରଖି ତାକୁ ତା'ର ସମସ୍ତ ଅସୁବିଧା ପ୍ରକାଶ କରିବା ପାଇଁ ପୂର୍ଣ୍ଣ ସ୍ୱାଧୀନତା ଦେବା ସଙ୍ଗେ ସଙ୍ଗେ ବିଭିନ୍ନ ପ୍ରକାର ଉପାୟ ଅବଲମ୍ବନ କରି ତା'ର ମାନସିକ ସ୍ତରକୁ ଜାଣିବା ପାଇଁ ଚେଷ୍ଟା କରିଥାନ୍ତି । ରୋଗୀର ମାନସିକ ବିଶ୍ଳେଷଣ ସମୟରେ ନିମ୍ନଲିଖିତ ଟେକ୍‌ନିକ୍‌ଗୁଡ଼ିକ ପ୍ରତି ଧ୍ୟାନ ଦେବାକୁ ହୋଇଥାଏ ।

(କ) ସ୍ୱାଧୀନ ମତପ୍ରକାଶ ପଦ୍ଧତି :

ଏହି ପଦ୍ଧତିରେ ରୋଗୀକୁ ତାର ମନରେ ଯେଉଁ ଚିନ୍ତାଧାରାର ଉତ୍ପତ୍ତି ହେଉଥାଏ ତାହାକୁ ପରିପ୍ରକାଶ କରିବା ପାଇଁ ସ୍ୱାଧୀନତା ଦିଆଯାଏ ଓ ଏହି ପରିପ୍ରକାଶ ମଧ୍ୟରୁ ବିଶ୍ଳେଷଣକାରୀ ବିଭିନ୍ନ ତଥ୍ୟ ସଂଗ୍ରହ କରିଥାନ୍ତି ।

(ଖ) ସ୍ୱପ୍ନ-ବିଶ୍ଳେଷଣ :

ଫ୍ରଏଡ୍ କହନ୍ତି ଯେ ଶୋଇବା ସମୟରେ ମଣିଷ ଯାହାସବୁ ଚିନ୍ତାକରୁଥାଏ ତାହା ତା'ର ସ୍ୱପ୍ନ ମାଧ୍ୟମରେ ପ୍ରତିଫଳିତ ହୋଇଥାଏ । ସେ ସ୍ୱପ୍ନ ମାଧ୍ୟମରେ ତା'ର ଅପୂରଣୀୟ ଇଚ୍ଛାଗୁଡ଼ିକୁ ପରିପୂରଣ କରିଥାଏ । ତେଣୁ ଅବଚେତନ ମନକୁ ଜାଣିବା ପାଇଁ ସ୍ୱପ୍ନ-ବିଶ୍ଳେଷଣ (Dream-Analysis) ବିଶେଷ ସାହାଯ୍ୟ କରେ ।

(ଗ) ପ୍ରତିଦିନର ମାନସିକ କ୍ରିୟାକଳାପର ବିଶ୍ଳେଷଣ :

ମାନସିକ ଅସ୍ଥିରତା ଓ ବ୍ୟାବହାରିକ ଅସଂଗତିର କାରଣ ଜାଣିବା ପାଇଁ ବିଶ୍ଳେଷଣକାରୀ ପରୀକ୍ଷା କରୁଥିବା ରୋଗୀମାନଙ୍କର ଦୈନିକ ମାନସିକ କ୍ରିୟାକୁ ଲିପିବଦ୍ଧ କରି ତାହାକୁ ବିଶ୍ଳେଷଣ କରନ୍ତି । ଏହି ପ୍ରକାର ବିଶ୍ଳେଷଣ ଅବଚେତନ ମନ ସମ୍ପର୍କରେ କେତେକ ତଥ୍ୟ ମଧ୍ୟ ଯୋଗାଇ ଦେଇଥାଏ ।

୩ । ସଂଶ୍ଳେଷଣ (Synthesis) :

ବିଶ୍ଳେଷଣକାରୀ ମାନସିକ ଅସୁସ୍ଥତା ସମ୍ପର୍କୀୟ ବିଭିନ୍ନ ତଥ୍ୟ ସଂଗ୍ରହ ଓ ତାହାର ବିଶ୍ଳେଷଣ କରିସାରିବା ପରେ ରୋଗୀର ଏହି ମାନସିକ ବିକୃତିର ବିଭିନ୍ନ କାରଣ ଜାଣିପାରନ୍ତି । ତେଣୁ ସେ ଏହି ମାନସିକ ବିକୃତିର ସ୍ଥିରତା ଆଣିବା ନିମନ୍ତେ ବିଭିନ୍ନ

ମନସ୍ତାତ୍ତ୍ୱିକ ଉପାୟ ଅବଲମ୍ବନ କରି ତା'ର ମାନସିକ ସୁସ୍ଥତାକୁ ଫେରାଇ ଆଣିବା ପାଇଁ ଚେଷ୍ଟା କରିଥାନ୍ତି ।

୪ । ପାରିବାରିକ ସଂପର୍କ ଭଙ୍ଗ (Breaking of the Ropport) :

ମାନସିକ-ଅସୁସ୍ଥତା ବିଶ୍ଳେଷଣ ପଦ୍ଧତିରେ ସମସ୍ତ ତଥ୍ୟ ସଂଗୃହୀତ ହୋଇ ତା'ର ବିଶ୍ଳେଷଣ ଓ ସଂଶ୍ଳେଷଣ କରାଯିବା ପରେ ବିଶ୍ଳେଷଣକାରୀ ରୋଗୀସହ ଯେଉଁ ଦୟାଭାବାପନ୍ନ ପାରିବାରିକ ସଂପର୍କ ସୃଷ୍ଟି କରିଥାନ୍ତି ତାହାକୁ ହଠାତ୍ ପ୍ରତ୍ୟାହୃତ କରିଥାନ୍ତି । ଫଳରେ ରୋଗୀ ଜାଣେ ଯେ, ତା'ର ମାନସିକ ବିକୃତି ନିମନ୍ତେ ଏସବୁ କାର୍ଯ୍ୟ କରାଯାଉଥିଲା ଓ ସେ ନିଜେ ମଧ୍ୟ ସ୍ୱାଧୀନ ଭାବରେ ସମସ୍ତ କାର୍ଯ୍ୟ କରିଥାଏ ।

ମୋଟାମୋଟି ଭାବରେ ଦେଖିଲେ ଫ୍ରଏଡ୍‌ଙ୍କ (Psycho analysis) ପଦ୍ଧତି ମଣିଷ ଚିନ୍ତାଧାରାର ଲୁକ୍‌କାୟିତ ଭାବଧାରାର ପରିପ୍ରକାଶ କରିବା ପାଇଁ ବିଶେଷ ଆବଶ୍ୟକ । ଏହା ଅବଚେତନ ମନକୁ ବିଶ୍ଳେଷଣ କରିବା ସଙ୍ଗେ ସଙ୍ଗେ ବ୍ୟାବହାରିକ ବିଶୃଙ୍ଖଳାର ପ୍ରକୃତ କାରଣ ଉଦ୍ଭାବନ କରିଥାଏ । ଯଦିଓ ଏହି ପଦ୍ଧତିର ପ୍ରଚଳନ ମାନସିକ ବିକୃତି ଜାଣିବା ପାଇଁ ବିଶେଷ ବ୍ୟବହାର କରାଯାଉଛି ଓ ଆଧୁନିକ ଯୁଗରେ ଫ୍ରଏଡ୍‌ଙ୍କ ତାତ୍ତ୍ୱିକ ପ୍ରମାଣକୁ ବିଶେଷ ପ୍ରାଧାନ୍ୟ ଦିଆଯାଉଛି ତଥାପି ଏହି ପଦ୍ଧତିକୁ ଅନେକ ମନସ୍ତତ୍ତ୍ୱବିଦ୍ ନିମ୍ନଲିଖିତ କାରଣଗୁଡ଼ିକ ଯୋଗୁଁ ଆଲୋଚନା କରନ୍ତି ।

୧ । ମାନସିକ ବିକୃତିର କାରଣ ବିଶ୍ଳେଷଣ କରି ତାହାର ନିରାକରଣର ଉପଯୁକ୍ତ ଉପାୟ ବାହାର କରିବା ପାଇଁ ଏହି ପଦ୍ଧତିରେ ବହୁତ ସମୟ ଲାଗିଥାଏ । ତେଣୁ ଏହା ଏକ ସମୟସାପେକ୍ଷ ପଦ୍ଧତି ।

୨ । ଏହି ପଦ୍ଧତି ପ୍ରୟୋଗ କରି ତଥ୍ୟ ସଂଗ୍ରହ କରିବା ବ୍ୟୟବହୁଳ ହୋଇଥିବାରୁ ଅନେକ ଏହାର ସାହାଯ୍ୟ ନିଅନ୍ତି ନାହିଁ ।

୩ । ଯେଉଁମାନଙ୍କର ମାନସିକ ଅସୁସ୍ଥତା ଚରମ ସୀମାରେ ପହଞ୍ଚିଯାଇଥାଏ ସେମାନଙ୍କ ପାଖରେ ଏହି ପଦ୍ଧତି ବ୍ୟବହାର କରିବା ଫଳପ୍ରଦ ନୁହେଁ ।

୪ । ଏହି ପଦ୍ଧତିରେ ତଥ୍ୟ ସଂଗ୍ରହ ନିମନ୍ତେ ଉପଯୁକ୍ତ ତାଲିମପ୍ରାପ୍ତ ବିଶ୍ଳେଷଣକାରୀ ଦରକାର । ତେଣୁ ସାଧାରଣ ବ୍ୟକ୍ତିଦ୍ୱାରା ଏହି କାର୍ଯ୍ୟ ସମାହିତ କରାଇବା ସମ୍ଭବ ହେଉନଥିବାରୁ ଏହି ପଦ୍ଧତିଟିକୁ ସମାଲୋଚନା କରାଯାଏ ।

ଶିକ୍ଷା-ପରିସରରେ ଛାତ୍ରଛାତ୍ରୀମାନଙ୍କର କିମ୍ବା ଶିକ୍ଷକ, ଶିକ୍ଷାପ୍ରଶାସକ ଆଦିଙ୍କର ଉପୁଜୁଥିବା ଶୈକ୍ଷିକ ମାନସିକ ଅସୁସ୍ଥତାର ଦୂରୀକରଣ ନିମନ୍ତେ ଏହି ପଦ୍ଧତିକୁ ଉପଯୁକ୍ତ

ଭାବରେ ବ୍ୟବହାର କରାଗଲେ ବିଭିନ୍ନ ଶୈକ୍ଷିକ ସମସ୍ୟାର ସମାଧାନ କରାଯାଇ ପାରିବ ।

ଉପରୋକ୍ତ ଆଲୋଚନାରେ ଆମେ ଆତ୍ମପର୍ଯ୍ୟବେକ୍ଷଣ (Introspection), ପର୍ଯ୍ୟବେକ୍ଷଣ (observation) ଏବଂ ମାନସିକ ଅସୁସ୍ଥତା ବିଶ୍ଳେଷଣ (Psycho-Analysis) ପଦ୍ଧତି ଆଦି ସମ୍ପର୍କରେ ଆଲୋଚନା କଲେ । ମନୁଷ୍ୟର ମନକୁ ଅନୁଧ୍ୟାନ କରିବା ନିମନ୍ତେ ଏହି ଉନୋଟିଯାକ ପଦ୍ଧତି ବିଶେଷ ଭାବରେ ସହାୟକ । ଅଧୁନା ମନସ୍ତତ୍ତ୍ୱ ସମ୍ବନ୍ଧୀୟ ଗବେଷଣା କରିବା ପାଇଁ ଆହୁରି କେତେକ ନୂତନ ତଥ୍ୟ ସଂଗ୍ରହ ପ୍ରଣାଳୀର ପ୍ରବର୍ତ୍ତନ କରାଗଲାଣି । ସେଗୁଡ଼ିକ ହେଉଛି ଭେଷଜ ପଦ୍ଧତି (Clinical Method), ସର୍ଭେ ବା ସର୍ବେକ୍ଷଣ ପଦ୍ଧତି (Survey or Differential Method) ଏବଂ ପରୀକ୍ଷାମୂଳକ ପଦ୍ଧତି (Experimental Method) । ଏହି ଉନ୍ନତ ଓ ବୈଜ୍ଞାନିକ ପଦ୍ଧତିଗୁଡ଼ିକ ସମ୍ବନ୍ଧରେ ନିମ୍ନରେ ଆଲୋଚନା କରାଗଲା ।

### ଭେଷଜ ପଦ୍ଧତି (Clinical Method) .

ଏହି ପଦ୍ଧତି ମାଧ୍ୟମରେ ବିଶେଷ କରି ଅପାରଗ, ବିଶୃଙ୍ଖଳିତ ଓ ଅସ୍ୱାଭାବିକ ବ୍ୟବହାର ପ୍ରଦର୍ଶନ କରୁଥିବା ବ୍ୟକ୍ତିମାନଙ୍କଠାରୁ ବିଭିନ୍ନ ତଥ୍ୟ ସଂଗ୍ରହ କରାଯାଇଥାଏ । ଶିକ୍ଷା-ମନୋବିଜ୍ଞାନ ସମ୍ବନ୍ଧୀୟ ବିଭିନ୍ନ ଗବେଷଣା କରିବା ସମୟରେ ଏହି ପଦ୍ଧତି ବିଶେଷ ଆବଶ୍ୟକ ହୋଇଥାଏ । ଛାତ୍ରଛାତ୍ରୀମାନଙ୍କ ଠାରେ ବିଭିନ୍ନ କାରଣରୁ ଏହି ଅସ୍ୱାଭାବିକ ବା ବିଶୃଙ୍ଖଳିତ ମନୋଭାବ ପରିଲକ୍ଷିତ ହୋଇଥାଏ । ଏହି ପ୍ରକାର ବିଶୃଙ୍ଖଳା ଅସାମାଜିକ ବ୍ୟବହାର, ଆବେଗିକ ଅସ୍ଥିରତା କିମ୍ବା ଶିକ୍ଷଜନିତ ବିଭିନ୍ନ ଦୋଷତ୍ରୁଟି ଓ ବିଭିନ୍ନ ପ୍ରକାର ଶାରୀରିକ ଅପାରଗତା ଯୋଗୁଁ ଦୃଷ୍ଟିଗୋଚର ହୋଇଥାଏ । ଏହି ପଦ୍ଧତିରେ ତଥ୍ୟ ସଂଗ୍ରହ କରିବାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି କୌଣସି ଗୋଟିଏ ବ୍ୟକ୍ତି କିମ୍ବା ଏକାଧିକ ବ୍ୟକ୍ତି ବିଶେଷଙ୍କ ଠାରୁ ବିଭିନ୍ନ ତଥ୍ୟ ଆଣି ସେମାନଙ୍କ ପ୍ରକୃତ ସମସ୍ୟା ଓ ବ୍ୟବହାରଗତ ବିଶୃଙ୍ଖଳତାକୁ ସଠିକ୍‌ରୂପେ ନିରୂପଣ କରି ତାହାର ନିରାକରଣ ନିମନ୍ତେ ଉପଯୁକ୍ତ ପଥ ନିର୍ଦ୍ଧାରଣ କରିବା । ଭେଷଜ ପଦ୍ଧତିରେ ତଥ୍ୟ ସଂଗ୍ରହ କରିବା ସମୟରେ ପରୀକ୍ଷିତ ବ୍ୟକ୍ତିଟିର ଜନ୍ମଠାରୁ ବର୍ତ୍ତମାନର ସମସ୍ୟା ବହୁଳ ବ୍ୟବହାର ପ୍ରଦର୍ଶନ ଯାଏଁ ସମସ୍ତ ତଥ୍ୟ ଠିକଣଠି ଭାବରେ ସଂଗ୍ରହ କରାଯାଇଥାଏ । ଏହି ତଥ୍ୟ ବ୍ୟକ୍ତିର ବାହ୍ୟ ଆଚରଣ ଉପରେ ମୁଖ୍ୟତଃ ଆଧାରିତ । ଏହିପରି ତଥ୍ୟ ସଂଗ୍ରହ ଦ୍ୱାରା ଶିଶୁର ବ୍ୟବହାରଗତ ବିଶୃଙ୍ଖଳାର ମୁଖ୍ୟ କାରଣ ନିରୂପିତ ହୋଇଥାଏ ଓ ଚିକିତ୍ସକ କାରଣ ନିର୍ଣ୍ଣୟ କରି ତାର ଉପଯୁକ୍ତ ସମାଧାନ ପ୍ରଣାଳୀ ମନସ୍ତାତ୍ତ୍ୱିକ ଚିନ୍ତାଧାରା ଅନୁଯାୟୀ ନିରୂପଣ କରିଥାନ୍ତି । ଭେଷଜ ପଦ୍ଧତିରେ ତଥ୍ୟ ସଂଗ୍ରହ ସମୟରେ

ଅନ୍ତଃପର୍ଯ୍ୟବେକ୍ଷଣ, ବହିଃ-ପର୍ଯ୍ୟବେକ୍ଷଣ, ସାକ୍ଷାତକାର, ବିଭିନ୍ନ ଚିକିତ୍ସାଳୟ ପରୀକ୍ଷା, ବ୍ୟକ୍ତିର କ୍ୟୁମୁଲେଟିଭ୍ ରେକର୍ଡ, ଆତ୍ମଜୀବନୀ, ଡାଏରୀ ଆଦିରୁ ତଥ୍ୟ ସଂଗ୍ରହ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ପରୀକ୍ଷା ଯଥା ବୁଦ୍ଧି, ବ୍ୟକ୍ତିତ୍ୱ, ଆଗ୍ରହ ମନଯୋଗ ଆଦି ମାଧ୍ୟମରେ ମଧ୍ୟ ତଥ୍ୟ ଅଣାଯାଇଥାଏ, ବ୍ୟକ୍ତିର ଅତୀତ ଓ ବର୍ତ୍ତମାନ ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରିସିବା ପରେ ତା'ର ଅର୍ଥ ନିରୂପଣ ଓ ନିର୍ଦ୍ଧାରଣ କରାଯାଇଥାଏ ଓ ସମାନ୍ୟୀକରଣ ବାହାର କରାଯାଏ । ମୋଟାମୋଟି ଭାବରେ କହିଲେ ବିଦ୍ୟାଳୟ ପରିବେଶରେ ମଧ୍ୟ ଛାତ୍ରଛାତ୍ରୀମାନେ କାହିଁକି ଭଲ ପଢ଼ୁନାହିଁ, କାହିଁକି ସେମାନେ ଅସାମାଜିକ ବ୍ୟବହାର ପ୍ରଦର୍ଶନ କରୁଥାନ୍ତି, ପଢ଼ାଇବା ସମୟରେ ଅମନୋଯୋଗୀ ଓ ଅନାଗ୍ରହ ପ୍ରଦର୍ଶନ କରନ୍ତି କାହିଁକି ଇତ୍ୟାଦି ବିଷୟ ସମ୍ବନ୍ଧୀୟ ବିଭିନ୍ନ ଗବେଷଣାମୂଳକ ସମସ୍ୟା ସମ୍ବନ୍ଧରେ ପୂର୍ଣ୍ଣାଙ୍ଗ ତଥ ଭେଷଜ ପଦ୍ଧତି ପରିବେକ୍ଷଣ କରିଥାଏ ।

ଭେଷଜ ପଦ୍ଧତିରେ ତଥ୍ୟ ସଂଗ୍ରହ କରିବା ସମୟରେ ନିମ୍ନଲିଖିତ ପନ୍ଥା ଅନୁସରଣ କରି ତଥ୍ୟ ସଂଗ୍ରହ କରାଯାଇଥାଏ । କାରଣ ଏହି ପଦ୍ଧତିରେ ଗବେଷଣା କରିବାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଛାତ୍ରଛାତ୍ରୀମାନଙ୍କ ବ୍ୟାବହାରିକ ଅସଙ୍ଗତି ସମ୍ପର୍କରେ ପ୍ରକୃଷ୍ଟ କାରଣ ନିର୍ଣ୍ଣୟ କରି ତାହାର ନିରାକରଣର ପଥ ନିରୂପଣ କରିବା । ତେଣୁ ଶ୍ରେଣୀକକ୍ଷରେ ଯେଉଁ ଶିକ୍ଷାର୍ଥୀମାନେ ବିଶୃଙ୍ଖଳ ଆଚରଣ ପ୍ରଦର୍ଶନ କରିଥାନ୍ତି ସେମାନଙ୍କର ପୂର୍ଣ୍ଣାଙ୍ଗ ବିବରଣୀ ଲିପିବଦ୍ଧ କରିବାକୁ ହୁଏ । ନିମ୍ନରେ ଏହି ବିବରଣୀ ସଂଗ୍ରହ ପ୍ରଣାଳୀ ପ୍ରଦତ୍ତ କରାଗଲା ।

୧ । ପ୍ରାଥମିକ :

| | |
|---|---|
| ନାମ | ପିତାଙ୍କ ବୃତ୍ତି ଓ ଶିକ୍ଷାଗତ ଯୋଗ୍ୟତା |
| ବୟସ | ମାତାଙ୍କ ବୃତ୍ତି ଓ ଶିକ୍ଷାଗତ ଯୋଗ୍ୟତା |
| ଲିଙ୍ଗ | ପରିବାରର ଜନସଂଖ୍ୟା |
| ପିତାଙ୍କ ନାମ ଓ ବୟସ | ସାମାଜିକ ମର୍ଯ୍ୟାଦା |
| ମାତାଙ୍କ ନାମ ଓ ବୟସ | |

୨ । ଅତୀତ ଇତିହାସ :

(କ) ଜନ୍ମ ପୂର୍ବରୁ ମାତାଙ୍କ
ଶାରୀରିକ/ମାନସିକ ଅବସ୍ଥା

(ଖ) ଶୈଶବ କାଳରେ ବିକାଶ ସମ୍ବନ୍ଧୀୟ
କୌଣସି ସମସ୍ୟା ଥିଲା କି ?

(ଗ) ପରିବାରରେ ବାପା, ବୋଉ ଓ ଅନ୍ୟାନ୍ୟ
ସଭ୍ୟଙ୍କ ମଧ୍ୟରେ ସମ୍ପର୍କ କପଟ

(ଘ) ବିଭିନ୍ନ ଶ୍ରେଣୀରେ ଶିଶୁର ଶିକ୍ଷାଗତ ସାଫଲ୍ୟ

(ଙ) ଅନ୍ୟାନ୍ୟ ସହ ପାଠ୍ୟକ୍ରମ କାର୍ଯ୍ୟାବଳୀରେ
ଶିଶୁର କୌଣସି ଯୋଗ୍ୟତା

**୩ । ବର୍ତ୍ତମାନ ଅବସ୍ଥା :**

(କ) ଶାରୀରିକ ବିବରଣୀ
(ଖ) ମାନସିକ ବିବରଣୀ
(ଗ) ସାମାଜିକ ବିବରଣୀ
(ଘ) ପରିବେଶ ସମ୍ବନ୍ଧୀୟ ବିବରଣୀ
(ଙ) ଶିଶୁର ବିଭିନ୍ନ ଆଗ୍ରହ ବୌଦ୍ଧିକ, ସାମାଜିକ, ବୃତ୍ତିଗତ……
(ଚ) ବିଦ୍ୟାଳୟ ବିଭିନ୍ନ ପାଠ୍ୟ ବିଷୟରେ ଶିଶୁର ସାଫଲ୍ୟ

**ସର୍ଭେ ବା ସର୍ବେକ୍ଷଣ ପଦ୍ଧତି (Survey or Differential Method) :**

ସର୍ଭେ ବା ସର୍ବେକ୍ଷଣ ପଦ୍ଧତି ମାଧ୍ୟମରେ କୌଣସି ଗୋଟିଏ ବିଷୟରେ ଏକ ସମୟରେ ଏକାଧିକ ବ୍ୟକ୍ତିଙ୍କଠାରୁ ତଥ୍ୟ ସଂଗ୍ରହ କରାଯାଇଥାଏ । ଏହା 'ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ରହିଥିବା ବ୍ୟକ୍ତିଗତ ପାର୍ଥକ୍ୟ ସମ୍ପର୍କରେ ସବିଶେଷ ବିବରଣୀ ପ୍ରଦାନ କରିଥାଏ । ଏହି ପଦ୍ଧତିରେ ତଥ୍ୟ ସଂଗ୍ରହ କରିବା ପାଇଁ ବିଭିନ୍ନ ଟେକ୍‌ନିକ୍‌ର ସାହାଯ୍ୟ ନେବାକୁ ହୋଇଥାଏ ଯଥା : ପ୍ରଶ୍ନାବଳୀ, ପର୍ଯ୍ୟବେକ୍ଷଣ, ସାକ୍ଷାତକାର ଇତ୍ୟାଦି ଏବଂ ଅଧୁନା ସର୍ଭେ ପଦ୍ଧତିରେ ପରିସଂଖ୍ୟାନ (Statistics) ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଉଛି । ଏକ ବୃହତ୍ ପରିସର ସମ୍ବନ୍ଧରେ ଗବେଷଣା କରିବା ସମୟରେ ଗବେଷକ ତାହାର ଏକ କ୍ଷୁଦ୍ର ନମୁନା (sample) ଆଣି ପରିସଂଖ୍ୟାନ ପଦ୍ଧତିରେ ତାହାର ବିଶ୍ଳେଷଣ କରି ଫଳାଫଳ ନିର୍ଣ୍ଣୟ କରିପାରୁଛନ୍ତି । ସର୍ଭେ ବା ସର୍ବେକ୍ଷଣ ପଦ୍ଧତିକୁ ତିନୋଟି ବିଭାଗରେ ବିଭକ୍ତ କରାଯାଏ ଯଥା :—

୧ । କ୍ଷେତ୍ର ସର୍ବେକ୍ଷଣ (Field Survey),

୨ । ବିକାଶମୂଳକ ସର୍ଭେ (Developmental Survey), ଏବଂ

୩ । ବିସଦୃଶ ସର୍ଭେ (Differential Survey)·

## ସର୍ଭେ ପଦ୍ଧତିର ଦୋଷତ୍ରୁଟି :

୧। ଏହି ପଦ୍ଧତିରେ ତଥ୍ୟ ସଂଗ୍ରହ କରିବା ସମୟରେ ଗବେଷକ ଗବେଷଣା କରୁଥିବା ବୃହତ୍ କ୍ଷେତ୍ରରୁ କେତେକ ନମୁନା ସଂଗ୍ରହ କରି ଆଣିଥାଏ। ଅନେକ ସମୟରେ ଏହି ନମୁନା ବୃହତ୍ କ୍ଷେତ୍ର ବିଷୟରେ ପୂର୍ଣ୍ଣ ଧାରଣା ପ୍ରଦାନ କରି ନଥାଏ। ତେଣୁ ସଠିକ୍ ଫଳାଫଳ ନିର୍ଣ୍ଣୟ କରିବା କଷ୍ଟକର।

୨। ସାଧାରଣ ସର୍ଭେରେ କେବଳ ପୌନଃପୌନିକ ବା କେତେ ସଂଖ୍ୟକ ଲୋକ ଏକ ଧରଣର ମତାମତ ଦେଲେ ତାହା ସ୍ଥିର କରାଯାଇଥାଏ। ଫଳରେ ଆମେ କେତେକ ଦରକାରୀ ବିଷୟ ସହଜରେ ଜାଣିପାରିଲେ ମଧ୍ୟ କୌଣସି ବିଷୟରେ ଧାରାବାହିକ ଜ୍ଞାନ ମିଳିବା କଷ୍ଟ।

୩। ସର୍ଭେ ପଦ୍ଧତିର ଅନ୍ୟ ଏକ ଦୁର୍ବଳତା ହେଉଛି ଏହି ପଦ୍ଧତିରେ ତଥ୍ୟ ସଂଗ୍ରହ ସମୟରେ ବିଷୟୀ (Subject) ମାନଙ୍କ ମଧ୍ୟରେ ଉପଯୁକ୍ତ ସମ୍ବନ୍ଧ ଓ ସହଯୋଗ ସ୍ଥାପିତ ହୋଇପାରେ ନାହିଁ। ତେଣୁ ପ୍ରଦତ୍ତ ପ୍ରଶ୍ନାବଳୀ ଗୁଡ଼ିକରେ ସେମାନେ ସଠିକ୍ ଉତ୍ତର ପ୍ରଦାନ କରନ୍ତି ନାହିଁ ଓ ଏଭଳି ଉତ୍ତର ସଠିକ୍ ଫଳାଫଳ ନିର୍ଣ୍ଣୟ କରିପାରେ ନାହିଁ।

୪। ଏହି ପଦ୍ଧତି କାର୍ଯ୍ୟ, କାରଣ ଓ ଫଳାଫଳ ନିରୂପଣ ଉପରେ ଉପଯୁକ୍ତ ଧାରଣା ଦେଇପାରେ ନାହିଁ।

## ପରୀକ୍ଷାମୂଳକ ପଦ୍ଧତି (Experimental Method) :

ଆଧୁନିକ ବିଜ୍ଞାନସମ୍ମତ ଯୁଗରେ ମନୋବିଜ୍ଞାନ କ୍ଷେତ୍ରରେ ମଣିଷର ବ୍ୟବହାରକୁ ଅଧ୍ୟୟନ କରିବା ନିମନ୍ତେ ପରୀକ୍ଷାମୂଳକ ପଦ୍ଧତି ଅଧୁନା ଏକ ସର୍ବୋତ୍କୃଷ୍ଟ। ବୈଜ୍ଞାନିକ ଓ ବସ୍ତୁନିଷ୍ଠ ପଦ୍ଧତି ଭାବରେ ସ୍ୱୀକୃତ ହୋଇପାରିଛି। ମନୋବିଜ୍ଞାନରେ ଯେତେଗୁଡ଼ିଏ ପଦ୍ଧତିର ବ୍ୟବହାର କରାଯାଇଅଛି ସେ ସମସ୍ତ ପରୀକ୍ଷାମୂଳକ ପଦ୍ଧତି ପରି ନିୟନ୍ତ୍ରିତ ପରିବେଶ ମଧ୍ୟରେ ବସ୍ତୁନିଷ୍ଠ ଭାବରେ ବ୍ୟବହାରକୁ ଅନୁଧ୍ୟାନ କରାଯାଇପାରେ ନାହିଁ। ଏହି ପଦ୍ଧତିରେ ସଂପରୀକ୍ଷକ ବିଭିନ୍ନ ଉପାଦାନ ଉପରେ ନିୟନ୍ତ୍ରଣ ରଖିଥାଏ। ଫଳରେ ସେ ସଠିକ୍ ତଥ୍ୟରେ ଉପନୀତ ହୋଇପାରିଥାଏ। ଶିକ୍ଷା-ମନୋବିଜ୍ଞାନ କ୍ଷେତ୍ରରେ ପରୀକ୍ଷାମୂଳକ ପଦ୍ଧତିର ପ୍ରଚଳନ କରିବା ଦିଗରେ ବ୍ୟବହାରବାଦୀ ମନସ୍ତତ୍ତ୍ୱବିତ୍ ମାନଙ୍କର ଅବଦାନ ଅତୁଳନୀୟ। ଯେକୌଣସି ଶୈକ୍ଷିକ ପରିବେଶ ଓ ଢାଞ୍ଚାରେ ଛାତ୍ରଛାତ୍ରୀମାନଙ୍କର ବ୍ୟବହାର ଜାଣିବା ଦିଗରେ ଏହା ବିଶେଷ ସହାୟକ। ଏହା ମଧ୍ୟ ସମସ୍ତ ପଦ୍ଧତିଠାରୁ ଭିନ୍ନ; କାରଣ ଏହି ପଦ୍ଧତି ଯୋଜନାବଦ୍ଧଭାବେ, ଧାରାବାହିକ ଭାବରେ

ଓ ନିୟନ୍ତ୍ରିତ ପରିବେଶ ମଧ୍ୟରେ ତଥ୍ୟ ସଂଗ୍ରହ କରିଥାଏ । ମନସ୍ତତ୍ତ୍ୱବିତ୍‌ମାନେ କହନ୍ତି ଯେ, କେବଳ ପରୀକ୍ଷାମୂଳକ ପଦ୍ଧତି ହିଁ ନିୟନ୍ତ୍ରିତ ପର୍ଯ୍ୟବେକ୍ଷଣ ପାଇଁ ସକ୍ଷମ ଓ ଏହା କେତେକ ତଥ୍ୟ, ସୂତ୍ର ଓ କେତେକ କାର୍ଯ୍ୟ କାରଣ ସମ୍ପର୍କ ନିର୍ଦ୍ଧିଷ୍ଟ କରିଥାଏ ।

ପରୀକ୍ଷାମୂଳକ ପଦ୍ଧତିରେ ବିଭିନ୍ନ ପରୀକ୍ଷା ଉପରେ ସ୍ୱତନ୍ତ୍ର ଗୁରୁତ୍ୱ ଆରୋପ କରାଯାଇଥାଏ । ଉଦାହରଣ ସ୍ୱରୂପ :—ଶିକ୍ଷକ ଶ୍ରେଣୀରେ ଶିକ୍ଷାଦାନ କରିବା ସମୟରେ ଅନୁଭବ କଲେ ଯେ ପୁରାତନ ପଦ୍ଧତିରେ ଗଣିତ ଶିକ୍ଷାଦେଲେ ପିଲାମାନେ ବିଶେଷ ଆଗ୍ରହ ପ୍ରଦର୍ଶନ କରୁନାହାଁନ୍ତି । ତେଣୁ ନୂତନ ପଦ୍ଧତିରେ ଶିକ୍ଷାଦାନ କଲେ ତାହା କେତେଦୂର ଫଳପ୍ରଦ ହୋଇପାରିବ ତାହା ଜାଣିବା ପାଇଁ ପରୀକ୍ଷାମୂଳକ ପଦ୍ଧତି ପ୍ରୟୋଗ କରିବା ବିଧେୟ । ଏହି ପରୀକ୍ଷା କରିବା ପାଇଁ ସେ ଶ୍ରେଣୀର ପିଲାମାନଙ୍କୁ 'କ' ଓ 'ଖ' ଏହିପରି ଦୁଇଟି ଦଳରେ ବିଭକ୍ତ କରିଦେବେ ଏବଂ ଗୋଟିଏ ଦଳକୁ ପୁରାତନ ପଦ୍ଧତିରେ ଶିକ୍ଷାଦେବେ ଓ ଅନ୍ୟ ଦଳକୁ ନୂତନପଦ୍ଧତି (ଗୀତ ମାଧ୍ୟମରେ) ଶିକ୍ଷାଦେବେ । ଏବଂ ଶିକ୍ଷାଦାନ କାର୍ଯ୍ୟ ସମାପ୍ତ ହେବା ପରେ ଉଭୟ ଦଳର ସାଫଲ୍ୟତା ପରୀକ୍ଷା କରି ଫଳାଫଳ ନିରୂପଣ କରିବେ । ଏହିପରି ଅନିୟମିତ ଭାବରେ ଓ ମୌଳିକ ସାମ୍ୟ ନଥାଇ ଯେଉଁ ପରୀକ୍ଷା କରାଯାଇଥାଏ ତାହା ସନ୍ଦେହଜନକ ଫଳ ପ୍ରଦାନ କରିଥାଏ । ତେଣୁ ଅଧୁନା ଗବେଷଣା କ୍ଷେତ୍ରରେ କେତେକ ପରୀକ୍ଷାମୂଳକ ନମୁନାର ଉଦ୍ଭାବନ ହୋଇଅଛି । ଗବେଷଣା ସମୟରେ ଗୋଟିଏ ପ୍ରକାର ପରୀକ୍ଷାଦ୍ୱାରା ସଠିକ୍ ସୂତ୍ର ଓ କାର୍ଯ୍ୟକାରଣ ନିର୍ଦ୍ଧିଷ୍ଟ କରାଯାଇପାରେ ନାହିଁ । ତେଣୁ ଗବେଷଣାର ସମସ୍ୟାଟିକୁ ବୁଝି ପରୀକ୍ଷାମୂଳକ ନମୁନାର ବ୍ୟବହାର କରାଯାଇଥାଏ ।

ବର୍ତ୍ତମାନ ବୈଜ୍ଞାନିକ ପଦ୍ଧତିରେ ବସ୍ତୁନିଷ୍ଠ ଭାବରେ ଓ ନିୟନ୍ତ୍ରିତ ପରିବେଶ ମଧ୍ୟରେ ଶୈକ୍ଷିକ ସମସ୍ୟାଗୁଡ଼ିକର ସମାଧାନ ପାଇଁ ପ୍ରୟୋଗଶାଳା (Laboratory)ର ବ୍ୟବହାର କରାଯାଉଛି । କିନ୍ତୁ ପ୍ରାକୃତିକ ବିଜ୍ଞାନ ପରି ସାମାଜିକ ବିଜ୍ଞାନ ସମ୍ବନ୍ଧୀୟ ସମସ୍ୟାର ସମାଧାନ ପ୍ରୟୋଗଶାଳା ମଧ୍ୟରେ ଅସମ୍ଭବ । ଶିକ୍ଷାଗତ ସମାଧାନ ନିମନ୍ତେ ପ୍ରକୃଷ୍ଟ ପ୍ରୟୋଗଶାଳା ହେଉଛି ଶ୍ରେଣୀ ପ୍ରକୋଷ୍ଠ । ଏହା ମଧ୍ୟରେ ଛାତ୍ରଛାତ୍ରୀମାନଙ୍କର ବିଭିନ୍ନ ବ୍ୟବହାରକୁ ପରୀକ୍ଷା ଓ ଅନୁଧ୍ୟାନ କରିବା ସହଜସାଧ୍ୟ ଓ ସମ୍ଭବପର । କାରଣ ପରୀକ୍ଷାମୂଳକ ପଦ୍ଧତିରେ ମୁଖ୍ୟତଃ ଏକ ନିୟନ୍ତ୍ରିତ ଓ ପୂର୍ବନିର୍ଦ୍ଧାରିତ ପରିବେଶ ମଧ୍ୟରେ ଛାତ୍ରଛାତ୍ରୀମାନଙ୍କର ବ୍ୟବହାର ଓ କାର୍ଯ୍ୟକଳାପକୁ ବସ୍ତୁନିଷ୍ଠ ଭାବରେ ପର୍ଯ୍ୟବେକ୍ଷଣ କରାଯାଏ । ନିମ୍ନରେ ପରୀକ୍ଷାମୂଳକ ପଦ୍ଧତିର କେତେଗୁଡ଼ିଏ ବୈଶିଷ୍ଟ୍ୟତା ପ୍ରତିପାଦନ କରାଗଲା ।

୧ । ଏହି ପଦ୍ଧତିରେ ମନସ୍ତାତ୍ତ୍ୱିକ ପରୀକ୍ଷା କରିବାକୁ ହେଲେ ବିଶେଷତଃ ଦୁଇଜଣ ବ୍ୟକ୍ତିଙ୍କ ଉପରେ ନିର୍ଭର କରିବାକୁ ହୋଇଥାଏ । ସେମାନେ ହେଲେ (୧)

ଗବେଷକ ବା ପରୀକ୍ଷକ ଏବଂ (୨) ବିଷୟୀ ବା ଯେଉଁ ବ୍ୟକ୍ତିର ବ୍ୟବହାରକୁ ପର୍ଯ୍ୟବେକ୍ଷଣ କରାଯାଏ ।

୨ । ମନସ୍ତାତ୍ତ୍ୱିକ ପରୀକ୍ଷଣଗୁଡ଼ିକ ମୁଖ୍ୟତଃ ସଜୀବ ପ୍ରାଣୀମାନଙ୍କୁ ନେଇ ପରିଚାଳିତ ହୋଇଥାଏ । ଏହା ପ୍ରାକୃତିକ ବିଜ୍ଞାନ ପରି ନିର୍ଜୀବ ବସ୍ତୁ ଉପରେ ଦୃଷ୍ଟି ପ୍ରଦାନ କରେ ନାହିଁ । ତେଣୁ ମନୋବିଜ୍ଞାନର ଇତିହାସକୁ ପଢ଼ିଲେ ଜଣାଯାଏ ମନସ୍ତତ୍ତ୍ୱବିତ୍‌ମାନେ ବ୍ୟବହାର ସମ୍ବନ୍ଧରେ ବିଭିନ୍ନ ତଥ୍ୟ ଜାଣିବା ପାଇଁ ମୂଷା, ବିରାଡ଼ି, ସିମ୍ପାଞ୍ଜି ଆଦିଙ୍କୁ ବ୍ୟବହାର କରିଛନ୍ତି । କିନ୍ତୁ ଶିକ୍ଷା-ମନୋବିଜ୍ଞାନରେ ଛାତ୍ରଛାତ୍ରୀମାନେ ପରୀକ୍ଷାରେ ମୁଖ୍ୟ ଭୂମିକା ନେଇଥାନ୍ତି ।

୩ । ପରୀକ୍ଷାମୂଳକ ପଦ୍ଧତିରେ ପରିବେଶ ନିୟନ୍ତ୍ରଣ (Control of variables) ଉପରେ ବିଶେଷ ପ୍ରାଧାନ୍ୟ ଆରୋପ କରାଯାଇଥାଏ । ଏହାଦ୍ୱାରା ଅନାବଶ୍ୟକୀୟ ଅବସ୍ଥାକୁ ପରିହାର କରାଯାଇ କେବଳ ଆବଶ୍ୟକ ବିଷୟ ଉପରେ ଗବେଷଣା ଓ ଅନୁଧ୍ୟାନ କରିବା ସମ୍ଭବ ହୋଇଥାଏ । ଉଦାହରଣ ସ୍ୱରୂପ : ଅଷ୍ଟମ ଶ୍ରେଣୀରେ ଇତିହାସ ପଢ଼ାଇବା ନିମନ୍ତେ ଭାଷଣ ଓ ଆଲୋଚନା (Lecture and Demonstration) ପଦ୍ଧତି କେଉଁଟି ଫଳପ୍ରଦ ତାହା ଜାଣିବା ପାଇଁ ଶିକ୍ଷକ ପରୀକ୍ଷଣ ପଦ୍ଧତିର ପ୍ରୟୋଗ କରି ସେ ଶ୍ରେଣୀର ପିଲାମାନଙ୍କୁ ତିନୋଟି ଦଳରେ ବିଭକ୍ତ କରି ଗୋଟିଏ ଦଳକୁ ଭାଷଣ ପଦ୍ଧତିରେ, ଦ୍ୱିତୀୟ ଦଳକୁ ଆଲୋଚନା ପଦ୍ଧତିରେ ଓ ତୃତୀୟ ଦଳକୁ ଭାଷଣ ଓ ଆଲୋଚନା ପଦ୍ଧତିରେ ଶିକ୍ଷାଦାନ କରିଲେ । ତେଣୁ ଏହି ପରୀକ୍ଷଣରେ ଶିକ୍ଷକଙ୍କର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଉଭୟ ପଦ୍ଧତି ମଧ୍ୟରୁ କେଉଁଟି ଇତିହାସ ଶିକ୍ଷାଦାନ ପାଇଁ ବିଶେଷ ଫଳପ୍ରଦ । ତେଣୁ ଯାହା ଉପରେ ଉଦ୍ଦେଶ୍ୟ ନିହିତ ଥାଏ ତାହାକୁ ସ୍ୱାଧୀନ ଉଦ୍ଦୀପକ (Independent variable) କୁହାଯାଏ ଏବଂ ଏହି ସ୍ୱାଧୀନ ଅବସ୍ଥାକୁ ସାହାଯ୍ୟ କରୁଥିବା ଅବସ୍ଥାଗୁଡ଼ିକୁ ନିର୍ଭରଶୀଳ ଉଦ୍ଦୀପକ (Dependent variable) କହନ୍ତି । କିନ୍ତୁ ସବୁ ସମୟରେ ବିଭିନ୍ନ ଉଦ୍ଦୀପକ ଓ ଉତ୍ପାଦକକୁ ନିୟନ୍ତ୍ରଣ କରିବା ଅସମ୍ଭବ ଏବଂ ବିଷୟୀମାନଙ୍କୁ ଆନୁସୂଚିତଭାବେ ଭାଗ ଭାଗ କରିବା ମଧ୍ୟ ସମ୍ଭବ ହେବ ନାହିଁ । ତେଣୁ ପରୀକ୍ଷାମୂଳକ ପଦ୍ଧତିରେ ବାହ୍ୟ ଉଦ୍ଦୀପକଗୁଡ଼ିକୁ ଭଲ ଭାବରେ ନିୟନ୍ତ୍ରଣ କରିବାକୁ ପଡ଼ିଥାଏ ।

ପରୀକ୍ଷାମୂଳକ ପଦ୍ଧତିରେ ବସ୍ତୁନିଷ୍ଠ ଭାବରେ ଫଳାଫଳ ନିର୍ଣ୍ଣୟ କରିବା ନିମନ୍ତେ ଅଧୁନା କେତେକ ନୂତନ ନମୁନା (design) ଉଦ୍ଭାବନ କରାଯାଇଛି । ଏହି ନମୁନା-

ଗୁଡ଼ିକ ସାଧାରଣତଃ ତିନିପ୍ରକାର । ନିମ୍ନରେ ସେଗୁଡ଼ିକ ବିଷୟରେ ଆଲୋଚନା କରାଗଲା ।

## ୧ । ପରୀକ୍ଷଣ ନିୟନ୍ତ୍ରିତ ନମୁନା (The Control-Test Method) :

ଏହି ପ୍ରକାର ପରୀକ୍ଷାମୂଳକ ନମୁନାରେ ଗବେଷକ ବିଭିନ୍ନ ଅବସ୍ଥାରେ ପରୀକ୍ଷିତମାନଙ୍କର ବ୍ୟବହାରର ପରିବର୍ତ୍ତନକୁ ପର୍ଯ୍ୟବେକ୍ଷଣ କରିଥାଏ । ଏ ପ୍ରକାର ପଦ୍ଧତିରେ ପରୀକ୍ଷାର୍ଥୀମାନଙ୍କୁ ଭିନ୍ନ ଭିନ୍ନ ଭାଗରେ ବିଭକ୍ତ ନକରି କେବଳ ପରୀକ୍ଷଣ ଗୁଡ଼ିକରେ ବିଭିନ୍ନ ପରିବର୍ତ୍ତନ ଅଣାଯାଇଥାଏ । ଉଦାହରଣ ସ୍ୱରୂପ ସପ୍ତମ ଶ୍ରେଣୀରେ ପିଲମାନଙ୍କୁ ସଙ୍ଗୀତ ମାଧ୍ୟମରେ ଶିକ୍ଷା ଦିଆଗଲେ କି ପରିବର୍ତ୍ତନ ହେଉଛି ତାହା ପରୀକ୍ଷା କରାଯିବ । ତେଣୁ ଶ୍ରେଣୀର ପିଲମାନଙ୍କୁ ପ୍ରଥମେ ପ୍ରଚଳିତ ପଦ୍ଧତିରେ ଶିକ୍ଷାଦାନ କରାଯାଇ ଶିକ୍ଷାଦାନର ଫଳାଫଳ ନିର୍ଣ୍ଣୟ କରାଯିବ । ଏହି ପରୀକ୍ଷା କରାଯିବାର କେତେ ସମୟପରେ ପୁଣିଥରେ ସଙ୍ଗୀତ ମାଧ୍ୟମରେ ଶିକ୍ଷା ପ୍ରଦାନ କରାଯାଇ ତାହାର ସଫଳତାକୁ ମଧ୍ୟ ମୂଲ୍ୟାୟନ କରାଯାଏ । ପୁନଶ୍ଚ ଉଭୟ ପଦ୍ଧତି ମାଧ୍ୟମରେ ଏକ ସମୟରେ ଶିକ୍ଷାଦାନ କଲେ ତା'ର ଫଳାଫଳ କ'ଣ ହେଉଛି ତା' ମଧ୍ୟ ମୂଲ୍ୟାୟନ କରାଯାଏ । ପରିଶେଷରେ ତିନୋଟିଯାକ ପରୀକ୍ଷା ମଧ୍ୟରେ କିଏ ସର୍ବୋତ୍କୃଷ୍ଟ ତାହା ବିଶ୍ଳେଷଣ କରାଯାଇ ଉତ୍କୃଷ୍ଟ ପଦ୍ଧତିଟିର ପ୍ରଚଳନ କରାଯାଏ ।

ତେଣୁ ପରୀକ୍ଷଣ ନିୟନ୍ତ୍ରିତ ନମୁନାରେ ପିଲମାନେ ବା ପରୀକ୍ଷା କରାଯାଉଥିବା ଛାତ୍ରଛାତ୍ରୀଙ୍କ ମଧ୍ୟରେ କୌଣସି ପରିବର୍ତ୍ତନ ଅଣା ନଯାଇ କେବଳ ପରୀକ୍ଷା ପଦ୍ଧତି ଓ ତା'ର ଅବସ୍ଥାରେ ବିଭିନ୍ନ ପରିବର୍ତ୍ତନ କରାଯାଇ ତଥ୍ୟ ସଂଗ୍ରହ କରାଯାଇଥାଏ ।

## ଗୋଷ୍ଠୀ ନିୟନ୍ତ୍ରଣ ନମୁନା (Control-Group Method) :

ପରୀକ୍ଷଣ ନିୟନ୍ତ୍ରିତ ପଦ୍ଧତିର ଏକ ବିରାଟ ଦୁର୍ବଳତା ହେଉଛି ଧନାତ୍ମକ ଅଭ୍ୟାସ ଫଳ । ଏହି ଦୋଷ ଦୁର୍ବଳତାର ଦୂରୀକରଣ ନିମନ୍ତେ ପରୀକ୍ଷାମୂଳକ ପଦ୍ଧତିରେ ଗୋଷ୍ଠୀ ନିୟନ୍ତ୍ରିତ ନମୁନାର ବ୍ୟବହାର କରାଯାଇଅଛି । ଏହି ପ୍ରଣାଳୀରେ ପରୀକ୍ଷାର ସ୍ୱରୂପକୁ ନିୟନ୍ତ୍ରଣ କରି ନଯାଇ ଶିଶୁମାନଙ୍କୁ (ଗୋଷ୍ଠୀ) ନିୟନ୍ତ୍ରଣ କରାଯାଇ-ଥାଏ । ପ୍ରଥମେ ଶ୍ରେଣୀର ପିଲଙ୍କୁ ଅନିୟମିତ ଭାବରେ ଦୁଇ ସମାନ ଭାଗରେ ବିଭକ୍ତ କରିବାକୁ ହୁଏ । କୌଣସି ସ୍ୱତନ୍ତ୍ର ପରବର୍ତ୍ତୀ (ପଦ୍ଧତି) ପ୍ରୟୋଗ କରିବା ପୂର୍ବରୁ ଉଭୟ ଦଳର ପୂର୍ବଜ୍ଞାନ ଓ ଶିକ୍ଷା ଉପଲବ୍ଧିକୁ ମୂଲ୍ୟାୟନ କରାଯାଏ । ଏହି ଦୁଇଟି ଦଳରୁ ଗୋଟିଏ ଦଳ ପରୀକ୍ଷିତ ଦଳ (Experimental group) ଏବଂ ଅନ୍ୟ ଦଳଟିକୁ ନିୟନ୍ତ୍ରିତ ଦଳ (Control group) ଭାବରେ ନାମିତ କରାଯାଏ । ପ୍ରତ୍ୟେକ ଦଳରେ

ଯେଉଁ ଶିଶୁମାନଙ୍କୁ ନିଆଯାଏ ସେମାନଙ୍କର ବୟସ, ବୁଦ୍ଧ୍ୟାଙ୍କ, ଶାରୀରିକ ବିକାଶ, ଆଦିକୁ ମଧ୍ୟ ନିୟନ୍ତ୍ରଣ କରାଯାଇଥାଏ; ଅର୍ଥାତ୍ ପ୍ରତ୍ୟେକ ଦଳର ସମାନ ବୟସ, ସମ ବୁଦ୍ଧ୍ୟାଙ୍କ ପିଲମାନଙ୍କୁ ଗ୍ରହଣ କରାଯାଏ । ଶିଶୁମାନଙ୍କୁ ଏହିପରି ଦୁଇଟି ଗୋଷ୍ଠୀରେ ବିଭକ୍ତ କରାଯିବାପରେ ନିୟନ୍ତ୍ରିତ ଦଳକୁ ସଙ୍ଗୀତ ମାଧ୍ୟମରେ ଶିକ୍ଷାଦାନ ଓ ପରୀକ୍ଷିତ ଦଳକୁ ପରମ୍ପରାଗତ ପଦ୍ଧତିରେ ଶିକ୍ଷାଦାନ କରାଯିବ । ଶିକ୍ଷାଦାନ ଶେଷରେ ଉଭୟ ଦଳର ଶିକ୍ଷା ଉପଲବ୍ଧିର ସାଫଲ୍ୟାଙ୍କ ନିରୂପଣ କରାଯାଇ ଥାଏ । ପରୀକ୍ଷା ପୂର୍ବରୁ ମୂଲ୍ୟାୟନ କରାଯାଇଥିବା ସାଫଲ୍ୟାଙ୍କ ସହ ତୁଳନା କରାଯାଇ ଫଳାଫଳ ନିର୍ଣ୍ଣୟ କରାଯାଇଥାଏ । ଏହି ନମୁନାରେ ଅନ୍ତଃବୈଧତା ଓ ବାହ୍ୟବୈଧତାରେ କୌଣସି ପରିବର୍ତ୍ତନ ହୁଏ ନାହିଁ ।

**ଆବର୍ତ୍ତନ ପଦ୍ଧତି (Rotation Method) :**

ପରୀକ୍ଷିତ ଦଳକୁ ଗୋଟିଏ ଗୋଟିଏ ସ୍ଥଳେ ପରବର୍ତ୍ତୀ ପ୍ରୟୋଗ ଦ୍ୱାରା ସେମାନଙ୍କର ଉପଲବ୍ଧି ଓ ତହିଁର ବିଭିନ୍ନ ଦୋଷକୁ ବାହାର କରାଯିବା ପରେ ପୁନଶ୍ଚ ସେହି ବାହ୍ୟ ଉଦ୍ଦୀପକଗୁଡ଼ିକର ନିୟନ୍ତ୍ରଣ ନିମନ୍ତେ ସେମାନଙ୍କୁ ଥରକୁ ଥର ନିୟନ୍ତ୍ରଣ ପରିବେଶ ମଧ୍ୟରେ ପରୀକ୍ଷା କରାଯାଇଥାଏ ।

**ପରୀକ୍ଷାମୂଳକ ପଦ୍ଧତିର ଉପାଦେୟତା :**

୧ । ମନସ୍ତତ୍ତ୍ୱ ଓ ଶିକ୍ଷା ସମ୍ବନ୍ଧୀୟ ବିଭିନ୍ନ ସମସ୍ୟାର ସମାଧାନ ନିମନ୍ତେ ପରୀକ୍ଷଣ ପଦ୍ଧତି ଏକ ଧାରାବାହିକ ଓ ଉତ୍କୃଷ୍ଟ ଧରଣର ପଦ୍ଧତି । ଏହା ଗବେଷଣା କାର୍ଯ୍ୟ ନିମନ୍ତେ ବିଶ୍ୱାସଯୋଗ୍ୟ ଓ ନିର୍ଭୁଲ ତଥ୍ୟ ଯୋଗାଇ ଦେଇଥାଏ । ନିୟନ୍ତ୍ରିତ ପରିବେଶ ମଧ୍ୟରେ ବିଷୟୀମାନଙ୍କୁ ପରୀକ୍ଷା କରାଯାଉଥିବାରୁ ଏହା ନିର୍ଭୁଲ ତଥ୍ୟ ଯୋଗାଇବାରେ ବିଶେଷ ସହାୟକ ହୋଇଥାଏ ।

୨ । ପରୀକ୍ଷାମୂଳକ ପଦ୍ଧତି ମାଧ୍ୟମରେ ଯେଉଁ ସତ୍ୟତା ନିରୂପଣ କରାଯାଇଥାଏ ତାହା ସାର୍ବଜନୀନ । କାରଣ ଯଦି ସେହି ଏକା ପ୍ରକାର ସମସ୍ୟାକୁ ବିଭିନ୍ନ ଗବେଷକ ପରୀକ୍ଷା କରନ୍ତି ତାହା'ଲେ ସମସ୍ତଙ୍କର ଶେଷ ସିଦ୍ଧାନ୍ତ ଏକା ହୋଇଥାଏ ।

୩ । ଏହା ସମସ୍ୟାର ସମାଧାନ ନିମନ୍ତେ ବସ୍ତୁନିଷ୍ଠ ଉପାୟରେ ତଥ୍ୟ ଯୋଗାଇ ଦେଇଥାଏ ।

୪ । ଶିକ୍ଷଣ ପ୍ରକ୍ରିୟାରେ ରହିଥିବା ବିଭିନ୍ନ ସମସ୍ୟାର ପ୍ରକୃତ କାରଣ ନିର୍ଣ୍ଣୟ କରିବା ପାଇଁ ଏହି ପଦ୍ଧତି ଉପଯୁକ୍ତ ତଥ୍ୟ ଯୋଗାଇ ଦିଏ ।

୫ । ଏହା ଗତାନୁଗତିକ ଧାରାରେ କୁଠାରଘାତ ଶିକ୍ଷାକ୍ଷେତ୍ରରେ ନୂତନ ଆଲୋକ ପ୍ରଦର୍ଶନ କରିବାରେ ସାହାଯ୍ୟ କରିଥାଏ ।

୬ । ବିଭିନ୍ନ ସମସ୍ୟାରେ ନୂତନ ଗବେଷଣା କରିବା ପାଇଁ ଉତ୍ସାହ ଓ ଉଦ୍ଦୀପନା ସୃଷ୍ଟି ହୁଏ ।

## ପରୀକ୍ଷାମୂଳକ ପଦ୍ଧତିର ଦୋଷଦୁର୍ବଳତା :

୧ । ନିୟନ୍ତ୍ରଣାଧୀନ ପରିବେଶ ବା ପ୍ରୟୋଗଶାଳା ମଧ୍ୟରେ ଶିକ୍ଷାର୍ଥୀମାନଙ୍କୁ ଅବସ୍ଥାପିତ କରାଯାଇ ସେମାନଙ୍କର ବ୍ୟବହାରର ପର୍ଯ୍ୟବେକ୍ଷଣ ଏହି ପଦ୍ଧତିରେ କରାଯାଇଥାଏ । ଫଳରେ ପରୀକ୍ଷାର୍ଥୀମାନେ ନିଜର ସ୍ୱାଭାବିକ ବା ପ୍ରାକୃତିକ ବ୍ୟବହାର ପ୍ରଦର୍ଶନ ନ କରି ଅପ୍ରାକୃତିକ ବ୍ୟବହାର ପ୍ରଦର୍ଶନ କରନ୍ତି । ତେଣୁ ଏହି ଅପ୍ରାକୃତିକ ବ୍ୟବହାରରୁ ସଠିକ୍ ତଥ୍ୟ ସଂଗ୍ରହ କରାଯାଇପାରେ ନାହିଁ ବୋଲି କେତେକ ସମାଲୋଚକ କହନ୍ତି ।

୨ । ପରୀକ୍ଷାମୂଳକ ପଦ୍ଧତିର ସଫଳତା ବିଭିନ୍ନ ବାହ୍ୟ ଓ ଅନ୍ତଃ ଉଦ୍ଦୀପକ ଏବଂ ଉତ୍ପାଦକର ନିୟନ୍ତ୍ରଣ ଉପରେ ନିର୍ଭର କରିଥାଏ । କିନ୍ତୁ ସବୁ ପରିବେଶରେ ଓ ସବୁ ସମୟରେ ଏ ପ୍ରକାର ନିୟନ୍ତ୍ରଣ କରିବା ଅସମ୍ଭବ ଓ କଷ୍ଟକର ମଧ୍ୟ ।

୩ । ମନସ୍ତତ୍ତ୍ୱବିତ୍‌ମାନେ ବିଭିନ୍ନ ପ୍ରକାର ପ୍ରାଣୀଙ୍କୁ ପ୍ରୟୋଗଶାଳାରେ ରଖି ସେମାନଙ୍କ ବ୍ୟବହାର ଓ କାର୍ଯ୍ୟକଳାପକୁ ପରୀକ୍ଷାମୂଳକ ପଦ୍ଧତିରେ ନିରୂପଣ କରିଥାନ୍ତି । ତେଣୁ ଏହି ପରୀକ୍ଷଣଗୁଡ଼ିକରୁ ଯେଉଁ ସତ୍ୟତା, ନିୟମ ଓ କାର୍ଯ୍ୟକାରଣ ନିରୂପଣ କରାଯାଇଥାଏ ତାହା ମନୁଷ୍ୟ ନିକଟରେ ପ୍ରୟୋଗ କରାଯିବା ଦୁଃସାଧ୍ୟ ।

୪ । ମନସ୍ତତ୍ତ୍ୱ ସମ୍ବନ୍ଧୀୟ ଯେତେଗୁଡ଼ିଏ ସମସ୍ୟା ବିଭିନ୍ନ କ୍ଷେତ୍ରରେ ରହିଛି । ସେ ସମସ୍ତର ସମାଧାନ ପରୀକ୍ଷାମୂଳକ ପଦ୍ଧତି ମାଧ୍ୟମରେ ସମାଧାନ କରିବା ଅସମ୍ଭବ ।

୫ । ଏହା ଏକ ସମୟସାପେକ୍ଷ ଓ ବ୍ୟୟବହୁଳ ପଦ୍ଧତି ।

୬ । ଯେକୌଣସି ବ୍ୟକ୍ତି ଏହି ପଦ୍ଧତିରେ କାର୍ଯ୍ୟ ସମ୍ପାଦନ କରିପାରିବ ନାହିଁ । ଉକ୍ତ ପଦ୍ଧତିରେ ପରୀକ୍ଷା କରିବା ପାଇଁ ଉପଯୁକ୍ତ ତାଲିମପ୍ରାପ୍ତ ଶିକ୍ଷକ ବା ବ୍ୟକ୍ତି ଆବଶ୍ୟକ ହେଉଥିବାରୁ ସବୁ ସ୍ଥାନରେ ଓ ସବୁ ସମୟରେ ଏହାର ପ୍ରୟୋଗ ଅସମ୍ଭବ ।

ଶିକ୍ଷା-ମନସ୍ତତ୍ତ୍ୱର ଗବେଷଣା କ୍ଷେତ୍ରରେ ବିଭିନ୍ନ ସମସ୍ୟା ସମ୍ବନ୍ଧୀୟ ତଥ୍ୟ ସଂଗ୍ରହ ନିମନ୍ତେ ଉପରେ ଆଲୋଚନା କରାଯାଇଥିବା ବିଭିନ୍ନ ପଦ୍ଧତିଗୁଡ଼ିକର ବ୍ୟବହାର କରାଯାଇଥାଏ । କିନ୍ତୁ କେଉଁ ପଦ୍ଧତିଟି ସର୍ବୋତ୍କୃଷ୍ଟ ତାହା ନିରୂପଣ କରିବା କଷ୍ଟକର । ତେଣୁ ମନସ୍ତତ୍ତ୍ୱବିତ୍‌ମାନେ ଗବେଷଣା ପାଇଁ ଠିକ୍ କରିଥିବା ସମସ୍ୟାର ପ୍ରକୃତି ଓ ଆବଶ୍ୟକତା ଅନୁଯାୟୀ ସେମାନେ ତଥ୍ୟ ସଂଗ୍ରହ ପଦ୍ଧତି ନିରୂପଣ କରିଥାନ୍ତି । ଗବେଷକଙ୍କର ଅଭିଜ୍ଞତା, ଦକ୍ଷତା ଓ କର୍ମକୁଶଳତା ଉପରେ ଉପଯୁକ୍ତ ପଦ୍ଧତି ନିରୂପଣ ନିର୍ଭର କରେ । ସମସ୍ୟାର ପ୍ରକୃତି ଅନୁଯାୟୀ ଉପଯୁକ୍ତ ତଥ୍ୟ ସଂଗ୍ରହ ପଦ୍ଧତି ବ୍ୟବହାର କରି ନଗଲେ ସମସ୍ୟାଟିର ପ୍ରକୃତ କାରଣ ବିଶ୍ଳେଷଣ କରି ସିଦ୍ଧାନ୍ତରେ ପହଞ୍ଚିବା ସମ୍ଭବପର ନୁହେଁ ।

**ଶିକ୍ଷକଙ୍କ ପାଇଁ ଶିକ୍ଷା-ମନୋବିଜ୍ଞାନର ଉପଯୋଗିତା :—**

ଶିଶୁର ଶିକ୍ଷା କେବଳ ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟର ପରିସର ମଧ୍ୟରେ ସୀମିତ ନୁହେଁ, ଏହା ଜନ୍ମଠାରୁ ଆରମ୍ଭ ହୁଏ ଓ ଶେଷ ହୁଏ ମୃତ୍ୟୁରେ । ମାନବର ଶିକ୍ଷା ଏକ ଜୀବନବ୍ୟାପୀ ନିରବଚ୍ଛିନ୍ନ ପ୍ରକ୍ରିୟା । ଜୀବନର ପ୍ରତ୍ୟେକ ଅବସ୍ଥାରେ ମନୁଷ୍ୟ ପ୍ରତ୍ୟେକ ପରିସ୍ଥିତିରେ ତା'ର ପରିବେଷ୍ଟନୀ, ଆତ୍ମୀୟସ୍ୱଜନ ଓ ସ୍ୱକାର୍ଯ୍ୟକଳାପରୁ ଶିକ୍ଷାଲାଭ କରିଥାଏ । ତେଣୁ ପାରିପାର୍ଶ୍ୱିକ ପରିବେଷ୍ଟନୀ ମଧ୍ୟରେ ଅନ୍ୟମାନଙ୍କ ସାହାଯ୍ୟ ଓ ସହାନୁଭୂତିପୂର୍ଣ୍ଣ ବ୍ୟବହାରରେ ଯେଉଁସବୁ ପରିବର୍ତ୍ତନ ପରିଦୃଷ୍ଟ ହୁଏ, ତାହାକୁ ହିଁ ଶିକ୍ଷାରୂପେ ଅଭିହିତ କରାଯାଇଥାଏ ।

ମନୋବିଜ୍ଞାନ ଶିକ୍ଷା ସହିତ ଓତଃପ୍ରୋତ ଭାବେ ଜଡ଼ିତ । କାରଣ ଶିକ୍ଷା-ପ୍ରକ୍ରିୟା ସହ ଶିଶୁର ମନ ଅତ୍ୟନ୍ତ ଘନିଷ୍ଠ । ତେଣୁ ଅଧୁନା ଶିକ୍ଷାକ୍ଷେତ୍ରରେ ପ୍ରଚଳିତ ଶିକ୍ଷା-ପଦ୍ଧତିଗୁଡ଼ିକ ଏହି ମନୋବିଜ୍ଞାନର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ପ୍ରାଚୀନ ଶିକ୍ଷାଦାନ ପଦ୍ଧତିରେ ଶିଶୁର ମାନସିକ ସ୍ତର ସଂପର୍କରେ ଗୁରୁତ୍ୱ ଆରୋପ କରି ନ ଯାଇ ଶିକ୍ଷାଦାନ ନିମିତ୍ତ ପ୍ରସ୍ତୁତ ବିଷୟବସ୍ତୁ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଥିଲା । ମାତ୍ର ସଭ୍ୟତା ଓ ସଂସ୍କୃତିର ତାଳେ ତାଳେ ଜ୍ଞାନର ବିସ୍ଫୋରଣ ହେଲା । ପରବର୍ତ୍ତୀ ଯୁଗରେ ଶିକ୍ଷାବିତ୍‌ମାନେ ବହୁ ଗବେଷଣା, ଆଲୋଚନା, ପର୍ଯ୍ୟାଲୋଚନା କରି ଶିକ୍ଷାଦାନ ପ୍ରକ୍ରିୟାରେ ଶିକ୍ଷାର୍ଥୀର ମାନସିକସ୍ତର ଉପରେ ଅଧିକ ପ୍ରାଧାନ୍ୟ ଦେଲେ । ରୁଷୋ, ପେଷ୍ଟାଲଜି, ହରବର୍ଟ, ଫ୍ରୋବେଲ, ମଣ୍ଟେସୋରି ଆଦି ଶିକ୍ଷାବିତ୍‌ମାନେ ଏହି ବିଷୟବସ୍ତୁକୈନ୍ଦ୍ରିକ ଶିକ୍ଷା ପରିବର୍ତ୍ତେ ଶିଶୁକୈନ୍ଦ୍ରିକ ଶିକ୍ଷାର ପ୍ରବର୍ତ୍ତନ କରାଇବା ପାଇଁ ମତ ଦେଇଥିଲେ । ଶିଶୁ ସାମାଜିକ ଓ ପାରିବାରିକ ପରିବେଷ୍ଟନୀ ମଧ୍ୟରେ ଜ୍ଞାନ ଆହରଣ କରେ । ତେବେ ଶିକ୍ଷା କେବଳ ଯେ ଅନୁଭୂତି ଓ ପରିବେଶ ମଧ୍ୟରେ ସୀମିତ

ନୁହେଁ; ତେଣୁ ଶିକ୍ଷାର ସାମୂହିକ ପ୍ରସାର ତଥା ଶିଶୁର ବ୍ୟକ୍ତିତ୍ୱ ଶାରୀରିକ ଓ ମାନସିକ ବିକାଶ ନିମିତ୍ତ ବିଦ୍ୟାଳୟର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଶିକ୍ଷାଦାନ ଏକ କଳା (Art) ଓ ଶିକ୍ଷକ ଜଣେ କୁଶଳୀ କଳାକାର (Artist) । କଳାକାର ତା'ର କଳା ମାଧ୍ୟମରେ ନିଜର ଗୁଣ ବା ପ୍ରତିଭାର ପରିଚୟ ଦେଇଥାଏ । ସେହିପରି ଶିକ୍ଷକ ସୁଶିକ୍ଷାଦାନ କଳା ମାଧ୍ୟମରେ ନିଜକୁ ପ୍ରତିଷ୍ଠିତ କରାଇଥାଏ । ବିଦ୍ୟାଳୟ ପରିପ୍ରେକ୍ଷୀରେ ଶିକ୍ଷକଙ୍କର ଭୂମିକା ଅପରିହାର୍ଯ୍ୟ । ଶିଶୁର ନିଜର ଉନ୍ନତି ତଥା ସମାଜର ସର୍ବବିଧ ଅଗ୍ରଗତିର ଦାୟିତ୍ୱ ଶିକ୍ଷକଙ୍କ ଉପରେ ନ୍ୟସ୍ତ । ବିଦ୍ୟାଳୟରେ ଶିକ୍ଷକଙ୍କର ଭୂମିକା ତାତ୍ପର୍ଯ୍ୟପୂର୍ଣ୍ଣ ହେତୁ ତାଙ୍କୁ ଚିକିତ୍ସକ କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ । କାରଣ ଚିକିତ୍ସକ ଯେପରି ରୋଗୀର ରୋଗକୁ ଭଲଭାବରେ ପରୀକ୍ଷାନିରୀକ୍ଷା ପୂର୍ବକ ନିରୂପଣ କରନ୍ତି ଏବଂ ଏହାର ନିଦାନ ନିମିତ୍ତ ଉପଯୁକ୍ତ ଉପାୟ ଅବଲମ୍ବନ ପାଇଁ ନିର୍ଦ୍ଦେଶ ଦିଅନ୍ତି ସେହିପରି ଶିକ୍ଷକ ଛାତ୍ରଛାତ୍ରୀମାନଙ୍କ ଯୋଗ୍ୟତା, ବ୍ୟବହାରଗତ ଦୋଷତ୍ରୁଟି ଇତ୍ୟାଦିକୁ ଉତ୍ତମରୂପେ ପର୍ଯ୍ୟବେକ୍ଷଣ କରି ସେ ସବୁକୁ ଦୂରୀକରଣ ନିମିତ୍ତ ଉପଯୁକ୍ତ ପଦକ୍ଷେପ ନିଅନ୍ତି । ତଦନୁଯାୟୀ ଶିକ୍ଷାଦାନର ବ୍ୟବସ୍ଥା ମଧ୍ୟ କରନ୍ତି । ଏଥିରୁ ସ୍ପଷ୍ଟ ଅନୁମେୟ ଯେ, ଆନୁଷ୍ଠାନିକ ଶିକ୍ଷା କ୍ଷେତ୍ରରେ ଶିକ୍ଷାର ପ୍ରସାର ଓ ଉନ୍ନତି ନିମିତ୍ତ ଶିକ୍ଷକମାନେ ହିଁ ଦାୟୀ । ସ୍ରଷ୍ଟାଙ୍କ ସର୍ବଶ୍ରେଷ୍ଠ ସୃଷ୍ଟି ମନୁଷ୍ୟ ତା'ର ଶିକ୍ଷା ଓ ଚିନ୍ତାଶକ୍ତି ପାଇଁ ହିଁ ଇତର ପ୍ରାଣୀମାନଙ୍କଠାରୁ ଭିନ୍ନ । ମାନବର ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ହିଁ ଇତର ପ୍ରାଣୀ ଓ ମନୁଷ୍ୟ ମଧ୍ୟରେ ଥିବା ପାର୍ଥକ୍ୟ ମଧ୍ୟରେ ଅଧିକ ଗୁରୁତ୍ୱପୂର୍ଣ୍ଣ । ପଶୁପକ୍ଷୀମାନଙ୍କ ମଧ୍ୟରେ ବିଭିନ୍ନ ପ୍ରକାର ପାର୍ଥକ୍ୟ ପରିଦୃଷ୍ଟ ହେଲେହେଁ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ବିଶେଷଭାବେ ପରିଦୃଷ୍ଟ ହୁଏନାହିଁ । ଶାରୀରିକ ଗଠନ, ବୁଦ୍ଧିମତ୍ତା, ଚାଲିଚଳଣି, ବିଭିନ୍ନ କ୍ଷେତ୍ରରେ ଥିବା ଆଗ୍ରହ ଅନାଗ୍ରହ ଇତ୍ୟାଦି ପ୍ରତ୍ୟେକ କ୍ଷେତ୍ରରେ ଗୋଟିଏ ମାନବ ଶିଶୁ ଅନ୍ୟଠାରୁ ସ୍ୱତନ୍ତ୍ର । ଏହି ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ଦୃଷ୍ଟିରୁ କେଉଁ ଶିଶୁ ଅତ୍ୟନ୍ତ କର୍ମତତ୍ପର ଓ କେଉଁ ଶିଶୁ ଆଳସ୍ୟ ପରାୟଣ, କେଉଁ ଶିଶୁ ଅଧ୍ୟବସାୟୀ ଓ କେଉଁ ଶିଶୁ ସମ୍ପୂର୍ଣ୍ଣ ଅମନୋଯୋଗୀ, କେଉଁ ଶିଶୁ ଦୁଃସାହସୀ ତ କେଉଁ ଶିଶୁ ଭୀରୁ, କେଉଁ ଶିଶୁ ବୁଦ୍ଧିମାନ ତ କେଉଁ ଶିଶୁ ବୁଦ୍ଧିହୀନ । ତେଣୁ ସମସ୍ତ ଶିଶୁଙ୍କ ଗୁଣଗୁଡ଼ିକର ଆବଶ୍ୟକ ଓ ସ୍ଥାୟୀ ପରିବର୍ତ୍ତନ ଆଣିବା ସକାଶେ ଶିଶୁର ବ୍ୟବହାର, ଆଚରଣ, ତା'ର ପାରିବାରିକ ଓ ମାନସିକ ଅବସ୍ଥା ଇତ୍ୟାଦିର ଅନୁଧ୍ୟାନ କରିବା ଏକାନ୍ତ ଆବଶ୍ୟକ । ଶିଶୁର ଏ ସମସ୍ତ ଆଚରଣ ବିଧିର ପର୍ଯ୍ୟାଲୋଚନା ଓ ସମୁଚିତ ଉପାୟ ଅନୁସରଣ ପନ୍ଥା ଆବିଷ୍କାର କରିବା ହିଁ ଶିକ୍ଷା-ମନୋବିଜ୍ଞାନର ପ୍ରଧାନ କାର୍ଯ୍ୟ । ଶିଶୁର ବ୍ୟାବହାରିକ ପରିବର୍ତ୍ତନ ଯେ କଠୋର ଦଣ୍ଡ ବା ରୁକ୍ଷ ବ୍ୟବହାରଦ୍ୱାରା ସଂଗଠିତ ହୋଇପାରିବ ତା' ନୁହେଁ । ଏହା ମାଧ୍ୟମରେ ଯଦି ବା ପରିବର୍ତ୍ତନ ଦେଖାଯାଏ ତାହା କ୍ଷଣସ୍ଥାୟୀ ଓ ସାମୟିକ ମଧ୍ୟ । ଶିକ୍ଷା-ମନୋବିଜ୍ଞାନର ତତ୍ତ୍ୱଗୁଡ଼ିକର ସୂକ୍ଷ୍ମ ଆଲୋଚନା ଓ ପର୍ଯ୍ୟାଲୋଚନାରୁ ଏହାର

କାର୍ଯ୍ୟକ୍ରମ ସମ୍ପର୍କରେ ଜାଣିହୁଏ । ଶିଶୁର ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ, ବଂଶପରମ୍ପରାର ପ୍ରଭାବ, ପରିବେଷ୍ଟନୀର ପ୍ରତିକ୍ରିୟା, ସାମାଜିକ ପରିସ୍ଥିତି, ଶିକ୍ଷା ଲାଭରେ କେମିତି ଅନ୍ତରାୟ ଓ ତା'ର ସୀମା, ଶିକ୍ଷାଦ୍ୱାରା ଶିଶୁଚରିତ୍ରରେ ସଙ୍ଗଠିତ ହେଉଥିବା ପରିବର୍ତ୍ତନାଦି ଶିକ୍ଷା-ମନୋବିଜ୍ଞାନର ପ୍ରଧାନ ଆଲୋଚ୍ୟ ବିଷୟବସ୍ତୁ । ନିମ୍ନରେ ଶିକ୍ଷା-ମନୋବିଜ୍ଞାନର ମୁଖ୍ୟ ଉପଯୋଗିତାଗୁଡ଼ିକ ସମ୍ପର୍କରେ ଆଲୋଚନା କରାଗଲା ।

**୧ । ଶିକ୍ଷାର ପ୍ରକୃତ ଲକ୍ଷ୍ୟ ଓ ଉଦ୍ଦେଶ୍ୟକୁ ଜାଣିବା ପାଇଁ ଶିକ୍ଷା-ମନୋବିଜ୍ଞାନ ସାହାଯ୍ୟ କରିଥାଏ :**

ଶିକ୍ଷାଦାନ କରିବା ପୂର୍ବରୁ ପ୍ରତ୍ୟେକ ଶିକ୍ଷକ ଶିକ୍ଷାର ପ୍ରକୃତ ଲକ୍ଷ୍ୟ ଓ ଉଦ୍ଦେଶ୍ୟ କ'ଣ ତାହା ଭଲ ଭାବରେ ଜାଣିବା ଉଚିତ । ଶିକ୍ଷା-ମନୋବିଜ୍ଞାନର ସାହାଯ୍ୟ ବ୍ୟତୀତ କେ ଶିକ୍ଷାର ଲକ୍ଷ୍ୟ କ'ଣ, କାହିଁକି ଶିକ୍ଷା ଦିଆଯିବ—ଏ ସମସ୍ତ ବିଷୟରେ ଜ୍ଞାନ ଆହରଣ କରିବା କଷ୍ଟସାଧ୍ୟ । ଶିକ୍ଷାର୍ଥୀ ଚିନ୍ତାଧାରା, ଦୃଷ୍ଟିଭଙ୍ଗୀ, ଅନୁଭବ ଇତ୍ୟାଦିରେ ପରିବର୍ତ୍ତନ ଆଣିବା ହିଁ ଶିକ୍ଷାର ପ୍ରକୃତ କାର୍ଯ୍ୟ । ତେଣୁ ଛାତ୍ରଛାତ୍ରୀମାନଙ୍କର ସମସ୍ତ ପ୍ରକାର ବ୍ୟବହାରର କାରଣ ଜାଣିବାରେ ଶିକ୍ଷା-ମନୋବିଜ୍ଞାନ ଶିକ୍ଷକଙ୍କୁ ସାହାଯ୍ୟ କରିଥାଏ ।

**୨ । ଶିକ୍ଷଣବିଧି ବା ଶିକ୍ଷା କ୍ଷେତ୍ରରେ ନିହିତ ସତ୍ୟ ଓ କାରଣ ଗୁଡ଼ିକର ତର୍କ ମୀମାଂସା ମନୋବିଜ୍ଞାନଦ୍ୱାରା ହିଁ ସମ୍ଭବ :**

ଶିକ୍ଷଣବିଧି ବା ଶିକ୍ଷଣ ପ୍ରକ୍ରିୟାର ବିଭିନ୍ନ କାରଣଗୁଡ଼ିକ ବିଷୟରେ ଆଲୋଚନା ଓ ଅନୁଧ୍ୟାନ କରିବା ଶିକ୍ଷା-ମନୋବିଜ୍ଞାନର ପ୍ରଧାନ ବିଷୟବସ୍ତୁ । ଶିଶୁ ମୁଖ୍ୟତଃ ଅନୁକରଣ, ଅନୁଶୀଳନ ଓ ଅଭ୍ୟାସ ଦ୍ୱାରା ଜ୍ଞାନଲାଭ କରିଥାଏ ଓ ତଦନୁଯାୟୀ ତା'ର ଆଗ୍ରହ ବ୍ୟବହାର ପରିବର୍ତ୍ତିତ ହୋଇଥାଏ, ଶିକ୍ଷକ ଶିକ୍ଷଣ ପ୍ରକ୍ରିୟାକୁ ଗଭୀର ଅନୁଧ୍ୟାନ ପୂର୍ବକ ଶିକ୍ଷାଦାନ ନିମିତ୍ତ ଉପଯୁକ୍ତ ପ୍ରଣାଳୀ ଅବଲମ୍ବନ କରିବା ସମୁଚିତ । ଏହି ନୀତି ଅନୁସାରେ ଶିକ୍ଷାଦାନ କାର୍ଯ୍ୟ ସମ୍ପନ୍ନ ହେଲେ ଶିଶୁର ଶିକ୍ଷାକାର୍ଯ୍ୟ ସୁଗମ ହୋଇଥାଏ । ଶିକ୍ଷାଦାନ କାର୍ଯ୍ୟକୁ ଫଳପ୍ରଦ କରିବା ନିମିତ୍ତ ଶିକ୍ଷା ପରିବେଶରେ ଉପଯୁକ୍ତ ପରିବର୍ତ୍ତନ ଏକାନ୍ତ ଆବଶ୍ୟକ । ତେଣୁ ଶିକ୍ଷଣର ସମସ୍ତ ତତ୍ତ୍ୱ ଶିକ୍ଷକ ଶିକ୍ଷାମନୋବିଜ୍ଞାନରୁ ହିଁ ଜାଣିପାରନ୍ତି ।

**୩ । ଶିଶୁର ବ୍ୟକ୍ତିତ୍ୱକୁ ଜାଣିବା ପାଇଁ ଶିକ୍ଷାମନୋବିଜ୍ଞାନ ଏକାନ୍ତ ଅପରିହାର୍ଯ୍ୟ :**

ଶିଶୁର ବ୍ୟକ୍ତିତ୍ୱର ସର୍ବାଙ୍ଗୀଣ ଉନ୍ନତି ଓ ବିକାଶ ହେଉଛି ଶିକ୍ଷାର ପ୍ରଧାନ ଲକ୍ଷ୍ୟ ଓ ଉଦ୍ଦେଶ୍ୟ । ବ୍ୟକ୍ତିତ୍ୱର ସ୍ୱରୂପ, ଏହାର ବିଭିନ୍ନ ଉପାଦାନ, ବ୍ୟକ୍ତିତ୍ୱ ବିକାଶ ପଥରେ

ପ୍ରତିବନ୍ଧକ ଓ ଏହାର ପ୍ରତିରୋଧ ନିମିତ୍ତ ଉପାୟ ଇତ୍ୟାଦି ଶିକ୍ଷା-ମନୋବିଜ୍ଞାନର ଆଲୋଚନାର ବିଷୟବସ୍ତୁ ।

**୪ । ଶିକ୍ଷା-ମନୋବିଜ୍ଞାନ ଶିଶୁର ଅନ୍ତର୍ନିହିତ ପ୍ରକୃତିକୁ ଅଧ୍ୟୟନ କରିବାରେ ସାହାଯ୍ୟ କରେ :**

ଜନ୍ମରୁ ପ୍ରତ୍ୟେକ ଶିଶୁ ନିଜ ନିଜର ସ୍ୱତନ୍ତ୍ରତା ନେଇ ଭୂମିଷ୍ଠ ହୋଇଥାଏ । ଶିଶୁର ଏହି ଅନ୍ତର୍ନିହିତ ପ୍ରକୃତିର ସ୍ୱରୂପ ଓ ତା'ର ଦୋଷତ୍ରୁଟି ସମ୍ପର୍କରେ ଶିକ୍ଷକଙ୍କୁ ଅବଗତ କରାଇବା ଶିକ୍ଷା ମନୋବିଜ୍ଞାନର ପ୍ରଧାନ କାର୍ଯ୍ୟ । ଶିକ୍ଷା-ମନୋବିଜ୍ଞାନର ପଦ୍ଧତି ଅନୁକରଣରେ ଶିକ୍ଷକ, କେଉଁ ଛାତ୍ର ବଳିଷ୍ଠ, କିଏ ଦୁର୍ବଳ, କିଏ ଚତୁର, କିଏ ବୋକା, କିଏ ମୂର୍ଖ ବା କିଏ ବୁଦ୍ଧିମାନ ଏହା ନିର୍ଦ୍ଧାରଣ କରିଥାନ୍ତି ।

**୫ । ବୃଦ୍ଧି ଓ ବିକାଶର ସ୍ୱରୂପ ଓ କାର୍ଯ୍ୟ ସମ୍ବନ୍ଧୀୟ ସବିଶେଷ ବିବରଣୀ ଶିକ୍ଷକ ଶିକ୍ଷାମନୋବିଜ୍ଞାନରୁ ହିଁ ଜାଣନ୍ତି :**

ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ମଣିଷର ବୃଦ୍ଧି ଓ ବିକାଶ ବିଭିନ୍ନ ସ୍ତରରେ ଭିନ୍ନ ଭିନ୍ନ ଆକାରରେ ପରିବର୍ତ୍ତିତ ହେଉଅଛି । ଶିଶୁର ଏହି ବୃଦ୍ଧି ଓ ବିକାଶ ତା'ର ଶାରୀରିକ, ମାନସିକ, ସାମାଜିକ, ଆବେଗିକ ଆଦି ପ୍ରତ୍ୟେକ ଦିଗକୁ କ୍ରମାଗତ ଭାବରେ ପରିବର୍ତ୍ତିତ କରୁଛି । ଏହି ବୃଦ୍ଧି ଓ ବିକାଶ ସମ୍ବନ୍ଧରେ ଶିକ୍ଷକ ଉପଯୁକ୍ତ ଜ୍ଞାନ ଆହରଣ କରି ନ ଥିଲେ ସେ ଶିଶୁର ବ୍ୟବହାରରେ ଉପଯୁକ୍ତ ପରିବର୍ତ୍ତନ ଆଣିବା ପାଇଁ ଅସମର୍ଥ ହୋଇଥାନ୍ତି । ବିଭିନ୍ନ ସ୍ତରରେ ଶିଶୁର କି କି ପରିବର୍ତ୍ତନ ହୁଏ ଓ ତାହାକୁ କିପରି ଉତ୍ତମ ମାର୍ଗରେ ପରିଚାଳିତ କରିବାକୁ ପଡ଼ିବ ସେ ସମସ୍ତ ବିଷୟ ଶିକ୍ଷକ ଶିକ୍ଷା-ମନୋବିଜ୍ଞାନର ଅଧ୍ୟୟନରୁ ହିଁ ଜାଣିପାରନ୍ତି ।

**୬ । ଉପଯୁକ୍ତ ଶିକ୍ଷାଦାନ ପ୍ରଣାଳୀ ନିର୍ଣ୍ଣୟ କରିବା ପାଇଁ ଶିକ୍ଷା-ମନୋବିଜ୍ଞାନ ସାହାଯ୍ୟ କରେ :**

ଅଧିକାଂଶ ଶିକ୍ଷକ ମନେକରନ୍ତି ଯେ ଶ୍ରେଣୀ କକ୍ଷରେ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷାଦାନ କରିବା ଏକ ସହଜସାଧ୍ୟ ବ୍ୟାପାର । ସେମାନେ ଭାବନ୍ତି ବିଷୟବସ୍ତୁଟିକୁ ପ୍ରାଞ୍ଜଳ ଭାବରେ ପିଲାମାନଙ୍କ ସମ୍ମୁଖରେ ଭାଷଣ ଦେଇଦେଲେ ଶିକ୍ଷାଦାନ କାର୍ଯ୍ୟ ସମାପ୍ତ ହୋଇଯାଏ । କିନ୍ତୁ ବାସ୍ତବରେ ଶିକ୍ଷାଦାନ କରିବା ସେତେଟା ସହଜ ଓ ସରଳ ପ୍ରକ୍ରିୟା ନୁହେଁ । ଅଧୁନା ଶିଶୁ-କେନ୍ଦ୍ରିକ ଶିକ୍ଷା ଉପରେ ବିଶେଷ ପ୍ରାଧାନ୍ୟ ଆରୋପ କରାଯାଉଛି । ଯେଉଁ ଶିକ୍ଷାଦ୍ୱାରା ଶିଶୁର ମାନସିକ ବୌଦ୍ଧିକ ତଥା ସାମାଜିକ ପରିବର୍ତ୍ତନ କରାଯାଇ

ତାହାକୁ ଏକ ପୂର୍ଣ୍ଣାଙ୍ଗ ମାନବରେ ପରିଣତ କରିବା ବର୍ତ୍ତମାନ ଶିକ୍ଷାର ପ୍ରଧାନ ଲକ୍ଷ୍ୟ ଅଟେ । ବର୍ତ୍ତମାନ ବୈଜ୍ଞାନିକମାନେ ବିଭିନ୍ନ ପରୀକ୍ଷାନିରୀକ୍ଷା କରି ଏଥିପାଇଁ ବିହିତ ବୈଜ୍ଞାନିକ ଉପାୟମାନ ନିର୍ଣ୍ଣୟ କରୁଛନ୍ତି । ଶିଶୁର ଜ୍ଞାନ ପରିମାଣ, ବ୍ୟକ୍ତିତ୍ୱ, ଆଗ୍ରହ, କାର୍ଯ୍ୟ ସାମର୍ଥ୍ୟ ଇତ୍ୟାଦିର ପରିମାପ କରିସାରି ନୂତନ ନୂତନ ଶିକ୍ଷା ପଦ୍ଧତିର ଉଦ୍ଭାବନ ପ୍ରଚଳନ କରିଗଲେଣି । ତେଣୁ ଶିକ୍ଷକ ଶିକ୍ଷା-ମନୋବିଜ୍ଞାନ ଅଧ୍ୟୟନ କରି ଶିଶୁର ପ୍ରକୃତି ଜାଣି କେଉଁ ସ୍ତରରେ କେଉଁ ପଦ୍ଧତିରେ ଶିକ୍ଷାଦାନ କଲେ ତାହା ଫଳପ୍ରଦ ହେବ ଜାଣିପାରନ୍ତି ।

## ୭ । ଗୋଷ୍ଠୀ ବା ଦଳବଦ୍ଧ ଭାବରେ ଶିକ୍ଷାଦାନ :

ରୁଷୋ ଏବଂ ଅନ୍ୟ କେତେକ ଶିକ୍ଷାବିତ୍ ବ୍ୟକ୍ତିଗତ ଶିକ୍ଷାର ପ୍ରଚଳନ ପାଇଁ ମତ ପ୍ରଦାନ କରିଥିଲେ ; ମାତ୍ର ବର୍ତ୍ତମାନ ମନୁଷ୍ୟଜୀବନ ସମାଜ ସହିତ ଓତଃପ୍ରୋତଭାବେ ଜଡ଼ିତ ହୋଇଥିବାରୁ ଶିଶୁ ବା ଶିକ୍ଷାର୍ଥୀମାନଙ୍କର ସାମାଜିକ ଗୁଣରାଜିର ବିକାଶ ଏକାନ୍ତ ଆବଶ୍ୟକ । ମାତ୍ର ବ୍ୟକ୍ତିଗତ ଶିକ୍ଷା ଏ ଦିଗରେ ଘୋର ଅନ୍ତରାୟ ସୃଷ୍ଟି କରେ । ତେଣୁ ଗୋଷ୍ଠୀ ବା ଶ୍ରେଣୀଗତ ଶିକ୍ଷା ବର୍ତ୍ତମାନ ସମାଜ ପାଇଁ ନିହାତି ଅପରିହାର୍ଯ୍ୟ । ଶିକ୍ଷାମନୋବିଜ୍ଞାନ ଅଧ୍ୟୟନ ଦ୍ୱାରା ଶିକ୍ଷକ ବ୍ୟକ୍ତି ଉପରେ ଗୋଷ୍ଠୀ ଜୀବନ କି କି ପ୍ରଭାବ ପକାଉଛି ଓ ଗୋଷ୍ଠୀଜୀବନ ନିମନ୍ତେ କି ପ୍ରକାର ଶିକ୍ଷା ଦିଆଯିବ ତାହା ଜାଣିପାରନ୍ତି ।

## ୮ । ବଂଶାନୁକ୍ରମ ଓ ପରିବେଷ୍ଟନୀର ପ୍ରଭାବ ବିଷୟରେ ଉପଯୁକ୍ତ ଜ୍ଞାନଲାଭ :—

ସାଧାରଣତଃ ବିଦ୍ୟାଳୟରେ ଶିକ୍ଷାଲାଭ ପାଇଁ ବିଭିନ୍ନ ପରିବେଶରୁ ଛାତ୍ରଛାତ୍ରୀ-ମାନେ ଆସିଥାନ୍ତି । ତେଣୁ ସ୍ୱପରିବେଶ ଓ ବଂଶାନୁକ୍ରମିକ ପ୍ରଭାବ ଶିଶୁର ଚରିତ୍ର ଓ ତା'ର ଆଚାର-ବ୍ୟବହାରରୁ ହିଁ ଜଣାଯାଇଥାଏ । ତେଣୁ ଶିକ୍ଷାଦାନ କ୍ଷେତ୍ରରେ ଏସବୁ ଆଚରଣ ବା ବ୍ୟବହାର ବିଭିନ୍ନ ପ୍ରକାର ଅସୁବିଧା ସୃଷ୍ଟି କରିଥାଏ । ଶିଶୁର ପିତା, ମାତା, ଅଭିଭାବକ, ପଡ଼ୋଶୀ ଓ ପରିବାରବର୍ଗଙ୍କ ସହିତ ସମ୍ପର୍କ ସ୍ଥାପନ କରି ଶିଶୁର ଅସୁବିଧା ଓ ଦୋଷତ୍ରୁଟି ସମ୍ପର୍କରେ ଜାଣିବା ସଙ୍ଗେ ସଙ୍ଗେ ଏହାର ପ୍ରତିକାର ନିମିତ୍ତ ବିହିତ ଉପାୟ ଅବଲମ୍ବନ କରିବାରେ ଶିକ୍ଷା-ମନୋବିଜ୍ଞାନ ଶିକ୍ଷକଙ୍କୁ ସାହାଯ୍ୟ କରିଥାଏ ।

## ୯ । ଶିକ୍ଷା-ମନୋବିଜ୍ଞାନ ମାଧ୍ୟମରେ ହିଁ ସମାଜଗତ ଶିକ୍ଷା ପାଇଁ ଏକ ସାମାଜିକ ଅନୁଭୂତ ସୃଷ୍ଟି କରିବା ପାଇଁ ଶିକ୍ଷକ ସମର୍ଥ ହୁଅନ୍ତି :

ମନୁଷ୍ୟ ଏକ ସାମାଜିକ ପ୍ରାଣୀ । ତେଣୁ ସମାଜରେ ଚଳିବା ପାଇଁ ଆବଶ୍ୟକ ସାମାଜିକ ଜ୍ଞାନ ପ୍ରତ୍ୟେକ ବ୍ୟକ୍ତିର ରହିବା ଉଚିତ୍ । ବିଦ୍ୟାଳୟଗତ ଶିକ୍ଷାପରି ଏହି

ସମାଜଗତ ଶିକ୍ଷା ପ୍ରଦାନ ପାଇଁ ନିହାତି ଆବଶ୍ୟକ । ଶିକ୍ଷା-ମନୋବିଜ୍ଞାନ ମାଧ୍ୟମରେ ଏହି ସାମାଜିକ ଅନୁଭୂତିର ପରିବେଶ ସୃଷ୍ଟି କରିବାର ଆବଶ୍ୟକତାକୁ ଶିକ୍ଷକ ଉପଲବ୍ଧି କରିଥାନ୍ତି । ଏତଦ୍ ବ୍ୟତୀତ ସାହିତ୍ୟ, ବିଜ୍ଞାନ, ଇତିହାସ ଇତ୍ୟାଦି ବିଷୟମାନଙ୍କର ଉପଯୁକ୍ତ ଶିକ୍ଷାଦାନ ପଦ୍ଧତି ସମ୍ପର୍କରେ ଆଲୋଚନା ଓ ପର୍ଯ୍ୟାଲୋଚନା କରିବା ଶିକ୍ଷକଙ୍କର ପ୍ରଧାନ କାର୍ଯ୍ୟ । କାରଣ ଏହା ବଳିଷ୍ଠ ଓ ସୁସ୍ଥ ଚରିତ୍ର ଗଠନରେ ସାହାଯ୍ୟ କରିଥାଏ । ଶିକ୍ଷା-ମନୋବିଜ୍ଞାନ ଏ ସବୁ କାର୍ଯ୍ୟର ସୁଷ୍ଠୁ ସମ୍ପାଦନ ନିମନ୍ତେ ଶିକ୍ଷକଙ୍କୁ ସାହାଯ୍ୟ କରିଥାଏ ।

### ୧୦ । ଶିଶୁର ବ୍ୟବହାରଗତ ଦୋଷତ୍ରୁଟିର ପରିମାର୍ଜନା ପାଇଁ ଶିକ୍ଷା-ମନୋବିଜ୍ଞାନ ସମ୍ବନ୍ଧୀୟ ଜ୍ଞାନ ଆବଶ୍ୟକ—

ଅନୁକରଣ କରିବା ଶିଶୁମାନଙ୍କର ପ୍ରକୃତିଗତ ଅଭ୍ୟାସ । ତେଣୁ ବାଲ୍ୟାବସ୍ଥାରୁ ହିଁ ଶିଶୁ ସମ୍ପର୍କରେ ଆସୁଥିବା ତା'ର ପିତାମାତା, ଆତ୍ମୀୟ ସ୍ୱଜନ ଓ ପରବର୍ତ୍ତୀ କାଳରେ ଶିକ୍ଷକଙ୍କର ଆଚରଣ ମଧ୍ୟ ଶିଶୁକୁ ପରୋକ୍ଷରେ ହେଉ ବା ପ୍ରତ୍ୟକ୍ଷରେ ହେଉ ପ୍ରଭାବିତ କରିଥାଏ । ତେଣୁ ଶିଶୁଠାରେ ଆଚରଣ ବା ବ୍ୟବହାରଗତ ଦୋଷତ୍ରୁଟି ପରିଦୃଷ୍ଟ ହେବା ବାଞ୍ଛନୀୟ । ମାତ୍ର ଏ କ୍ଷେତ୍ରରେ ଶିଶୁର ଆଚରଣଗତ କୁ-ପ୍ରଭାବକୁ ଦୂର କରିବା ପାଇଁ ଶିକ୍ଷାମନୋବିଜ୍ଞାନ ଶିକ୍ଷକଙ୍କୁ ଆବଶ୍ୟକୀୟ ନିଦାନ ସମ୍ପର୍କରେ ଅବଗତ କରାଇଥାଏ ।

ଛାତ୍ରଛାତ୍ରୀମାନଙ୍କ ଆବଶ୍ୟକତା, ଆଗ୍ରହ ବା ରୁଚି, ମନୋବୃତ୍ତି ଇତ୍ୟାଦିକୁ ଅନୁଶୀଳନ କରି ତା' ଅନୁସାରେ ଶିକ୍ଷକ ପ୍ରକ୍ରିୟାକୁ ପରିବର୍ତ୍ତନ କରିବା ହିଁ ଶିକ୍ଷା-ମନୋବିଜ୍ଞାନର ପ୍ରଧାନ କାର୍ଯ୍ୟ । ଶିକ୍ଷାଦାନ କ୍ଷେତ୍ରରେ ସମସ୍ତ ପ୍ରକାର କାର୍ଯ୍ୟର ସୁ-ପରିଚାଳନା ପାଇଁ ଶିକ୍ଷକ ନିଯୁକ୍ତ ହୋଇଥାନ୍ତି । ତେଣୁ ଏ କ୍ଷେତ୍ରରେ ଶିକ୍ଷକଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଶିଶୁର ବ୍ୟବହାର, ଶିକ୍ଷଣ ପ୍ରକ୍ରିୟା ଇତ୍ୟାଦି ସମ୍ପର୍କରେ ଶିକ୍ଷକଙ୍କୁ ଶିକ୍ଷା ମନୋବିଜ୍ଞାନ ସବୁ ପ୍ରକାର ସାହାଯ୍ୟ କରିଥାଏ । ଶିକ୍ଷା-ମନୋବିଜ୍ଞାନକୁ ଉତ୍ତମ ରୂପେ ଜାଣିଲେ ଶିକ୍ଷକ ଫଳପ୍ରଦ ଭାବେ ଶିକ୍ଷାଦାନ କାର୍ଯ୍ୟ ସମ୍ପନ୍ନ କରିପାରିବେ । ତେଣୁ ଶିକ୍ଷା-ମନୋବିଜ୍ଞାନ ସମ୍ପର୍କରେ ଶିକ୍ଷକଙ୍କର ଆବଶ୍ୟକ ଜ୍ଞାନ ଏକାନ୍ତ ଅପରିହାର୍ଯ୍ୟ ।



# ଦ୍ୱିତୀୟ ଅଧ୍ୟାୟ

## ବୃଦ୍ଧି ଓ ବିକାଶ

## (Growth and Development)

ଶିକ୍ଷାର ଅତୀତ ଇତିହାସକୁ ଅଧ୍ୟୟନ କଲେ ଜଣାଯାଏ ଯେ, ଶିକ୍ଷା ଅନେକଟି ସୋପାନ ବା ସ୍ତର ଅତିକ୍ରମ କରି ଆସିଅଛି । ପୂର୍ବରୁ ପ୍ରଚଳିତ ଶିକ୍ଷା ଅଧୁନା ପ୍ରଚଳିତ ଶିକ୍ଷାଠାରୁ ପୃଥକ ଥିଲା । ସେତେବେଳେ କେବଳ ଜ୍ଞାନର ବିକାଶ ଉପରେ ଶିକ୍ଷାଦାନ କାର୍ଯ୍ୟ ପ୍ରତିଷ୍ଠିତ ଥିଲା । ତେଣୁ ଏହା ପ୍ରକୃତରେ "ଜ୍ଞାନ-କେନ୍ଦ୍ରିକ ଶିକ୍ଷା" **(Knowledge-Centned-Education)** ଥିଲା । ପୁରାତନ ଶିକ୍ଷା ପ୍ରଣାଳୀରେ ଶିକ୍ଷକ ମୁଖ୍ୟ ପୁରୋଧା ଥିଲେ । ତେଣୁ ଶିକ୍ଷକଙ୍କ ମୁଖନିଃସୃତ ବାଣୀକୁ ଶିଶୁ ଯେତେଦୂର ଗ୍ରହଣ କରିପାରୁଥିଲା ତଦନୁଯାୟୀ ସେ ଜ୍ଞାନୀ ରୂପେ ବିବେଚିତ ହେଉଥିଲା । ବୈଜ୍ଞାନିକ ଦୃଷ୍ଟିକୋଣରୁ ଏହାକୁ **(Jet Theory of Education)** ବୋଲି ଅଭିହିତ କରାଯାଉଥିଲା । ଜେଟ୍ ନିର୍ଗତ ହେଲାଭଳି ଶିକ୍ଷକଙ୍କ ମୁଖନିଃସୃତ ବାଣୀ ତାଙ୍କ ଅନ୍ତରରୁ ନିର୍ଗତ ହୋଇ ଛାତ୍ରଛାତ୍ରୀମାନଙ୍କୁ ଜ୍ଞାନପ୍ରଦାନ କରାଯାଉଥିଲା । ଏ ପ୍ରକାର ଶିକ୍ଷାରେ ଶିକ୍ଷକଙ୍କୁ ଜ୍ଞାନର ଭଣ୍ଡାର ରୂପେ ଗ୍ରହଣ କରାଯାଉଥିଲା । ସମୟକ୍ରମେ ଅବଶ୍ୟମ୍ଭାବୀ ପରିବର୍ତ୍ତନ ପରିଦୃଷ୍ଟ ହେଲା । ଶିକ୍ଷାର ପ୍ରସାର, ବୈଜ୍ଞାନିକ ଆବିଷ୍କାର ଓ ଶ୍ରେଷ୍ଠ ମାନବ ଚିନ୍ତା ପ୍ରଚଳନର ନିଦର୍ଶନ ସ୍ୱରୂପ ଶିକ୍ଷା କେବଳ ଜ୍ଞାନକେନ୍ଦ୍ରିକ ହୋଇ ରହିପାରିଲା ନାହିଁ । ଶିକ୍ଷାବିତ୍‌ମାନେ ଶିକ୍ଷାକ୍ଷେତ୍ରରେ ବିଭିନ୍ନ ଗବେଷଣା ଚଳାଇ ଶିକ୍ଷାକୁ ଶିଶୁ କେନ୍ଦ୍ରିକ କରିବା ପାଇଁ ମତଦେଲେ । ଫଳତଃ ଜ୍ଞାନକେନ୍ଦ୍ରିକ ଶିକ୍ଷାର ବିକାଶ ଦ୍ୱାରା ଶିକ୍ଷା ଶିଶୁକେନ୍ଦ୍ରିକ ହୋଇପଡ଼ିଲା ଓ ପରେ ପରେ ଏହା ଜୀବନ-କେନ୍ଦ୍ରିକ ଶିକ୍ଷାରେ ପରିଣତ ହେଲା । ଶିକ୍ଷା କ୍ଷେତ୍ରରେ ଏସବୁ ପରିବର୍ତ୍ତନ ଦ୍ୱାରା ମନୋବିଜ୍ଞାନକୁ ମଧ୍ୟ ଶିକ୍ଷାର ଅବିଚ୍ଛେଦ୍ୟ ଅଙ୍ଗରୂପେ ଗ୍ରହଣ କରାଗଲା । ପୂର୍ବ ଅଧ୍ୟାୟରୁ ମନୋବିଜ୍ଞାନ ଓ ଶିକ୍ଷା କ୍ଷେତ୍ରରେ ତାର ଭୂମିକା ସମ୍ପର୍କରେ ସ୍ପଷ୍ଟ ଜାଣିହେବ ।

ଶିକ୍ଷା ବର୍ତ୍ତମାନ ଯୁଗରେ ଶିଶୁକେନ୍ଦ୍ରିକ ହୋଇପଡ଼ିଛି । ତେଣୁ ଶିକ୍ଷାକ୍ଷେତ୍ରରେ ଯେ ଶିଶୁର ଭୂମିକା ଅପରିହାର୍ଯ୍ୟ ଏହା ଅନୁମେୟ । ଶିକ୍ଷକ ତେଣୁ ଶିଶୁ ସମ୍ପର୍କରେ

ଭିତ୍ତମରୂପେ ଅବଗତ ହେବା ନିତାନ୍ତ ଆବଶ୍ୟକ । ଫଳତଃ ଶିଶୁର ମାନସିକ ଓ ଶାରୀରିକ ଅଭିବୃଦ୍ଧି ମନୋବିଜ୍ଞାନର ପ୍ରଧାନ ଆଲୋଚ୍ୟ ବିଷୟବସ୍ତୁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଦୃଷ୍ଟିକୋଣରୁ ଶିଶୁର ଜୀବନ ସମ୍ପର୍କରେ ଅନୁଧ୍ୟାନ କରିବା ଜଣେ ବୟୋପ୍ରାପ୍ତଙ୍କ ସମ୍ପର୍କରେ ଜାଣିବାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇପଡ଼ିଛି । ଶିକ୍ଷା ଯେପରି ଏକ ଜୀବନବ୍ୟାପୀ ପ୍ରକ୍ରିୟା ସେହିପରି ଶିଶୁର ବୃଦ୍ଧି ଓ ବିକାଶ ମଧ୍ୟ ଏକ ଆଜୀବନବ୍ୟାପୀ ନିରବଚ୍ଛିନ୍ନ ପ୍ରକ୍ରିୟା । ଜୀବନର ପ୍ରତ୍ୟେକ ମୁହୂର୍ତ୍ତରେ ଏକ ପରିବର୍ତ୍ତିତ ପ୍ରଣାଳୀରେ ପ୍ରତ୍ୟେକ ବ୍ୟକ୍ତି ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହୋଇଥାନ୍ତି । ବୃଦ୍ଧି ଓ ବିକାଶ ମନୁଷ୍ୟର ମୁଖ୍ୟ ଗୁଣାବଳୀ ମନୁଷ୍ୟ ବ୍ୟବହାରରେ ଅନୁଧ୍ୟାନ ବୃଦ୍ଧି ଓ ବିକାଶର ଅନୁଧ୍ୟାନ ବ୍ୟତିରେକେ ଅସମ୍ପୂର୍ଣ୍ଣ ।

## ବୃଦ୍ଧି ଓ ବିକାଶର ଅର୍ଥ (Meaning of Growth and Development)

ବୃଦ୍ଧି ଓ ବିକାଶ ଏ ଦୁଇଟି ଶବ୍ଦ ଏକ ଅର୍ଥବାଚୀ ବୋଲି ପ୍ରତୀୟମାନ ହେଲେହେଁ ଏହା ସତ୍ୟ ନୁହେଁ । ଏହି ଶବ୍ଦ ଦୁଇଟି ଅଦଳ ବଦଳ ହୋଇ ବ୍ୟବହୃତ ହୋଇଥିବାରୁ ଏଗୁଡ଼ିକ ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କରିଥାନ୍ତି । ବିଭିନ୍ନ ମନସ୍ତତ୍ତ୍ୱବିଦ୍ ମାନଙ୍କ ଦ୍ୱାରା ଏହି ଶବ୍ଦଗୁଡ଼ିକ ପ୍ରଭେଦ କରାଯାଇଅଛି । ମନସ୍ତତ୍ତ୍ୱବିଦ୍ କ୍ରୋ ଏବଂ କ୍ରୋ (crow and crow)ଙ୍କ ମତାନୁଯାୟୀ "ସାଧାରଣତଃ ଅଙ୍ଗ ପ୍ରତ୍ୟଙ୍ଗ ତଥା ଶାରୀରିକ ପରିବର୍ତ୍ତନକୁ "ବୃଦ୍ଧି"କୁହାଯାଏ । ମାତ୍ର ବିକାଶ ଉଭୟ ପାରିପାର୍ଶ୍ୱିକ ଅବସ୍ଥା ବୃଦ୍ଧିର ପ୍ରଭାବ ଦ୍ୱାରା ବ୍ୟବହାରରେ ପରିଦୃଷ୍ଟ ପରିବର୍ତ୍ତନ ସହିତ ସମ୍ପୃକ୍ତ" । ସାଧାରଣତଃ ଆକାରର କ୍ରମ ପରିବର୍ତ୍ତନକୁ "ବୃଦ୍ଧି" ବୋଲି କୁହାଯାଇଥାଏ । ବ୍ୟକ୍ତିର ଶାରୀରିକ ପରିବର୍ତ୍ତନ ତଥା ଅଙ୍ଗ ପ୍ରତ୍ୟଙ୍ଗର ଆକାର । ଓଜନ ଇତ୍ୟାଦିର ବୃଦ୍ଧି ସହିତ ଶକ୍ତି ସାମର୍ଥ୍ୟରେ ଉତ୍କର୍ଷ, ଜ୍ଞାନ ଓ ବୁଦ୍ଧିମତ୍ତାରେ ପରିପକ୍ୱତା ଇତ୍ୟାଦିକୁ ଶରୀରର ବୃଦ୍ଧି ଓ ବିକାଶ ରୂପେ ଅଭିହିତ କରାଯାଏ । ମାତ୍ର କେବଳ ଶିଶୁର ହାତ, ଗୋଡ଼, ମାଂସପେଶୀ, ମସ୍ତିଷ୍କ ପ୍ରଭୃତି ଅଙ୍ଗ ପ୍ରତ୍ୟଙ୍ଗର ପରିବର୍ତ୍ତନକୁ "ବୃଦ୍ଧି" (Growth) ବୋଲି କୁହାଯାଏ ।

ଏହାକୁ ମାପିବା ସମ୍ଭବପର । କିନ୍ତୁ ସାମୂହିକ ଭାବରେ ଶିଶୁର ଶାରୀରିକ ଅଭିବୃଦ୍ଧି ସହିତ ମାନସିକ ଅଭିବୃଦ୍ଧି ଓ ପରିପ୍ରକାଶକୁ "ବିକାଶ" (Development) କୁହାଯାଏ । ଏହା ବ୍ୟକ୍ତିର ଆଚରଣ ଓ କାର୍ଯ୍ୟକଳାପରେ ପରିଲକ୍ଷିତ ହୋଇଥାଏ । ବୃଦ୍ଧି ପରିମାଣାତ୍ମକ ହେଲେହେଁ ବିକାଶ ସମ୍ପୂର୍ଣ୍ଣଭାବେ ଗୁଣାତ୍ମକ । ବୃଦ୍ଧି ଓ ବିକାଶ ଶିଶୁଠାରେ ଏକ ସମୟରେ ପରିଲକ୍ଷିତ ହୁଏ । ଉଦାହରଣ ସ୍ୱରୂପ ଶିଶୁର ଗୋଡ଼ର ବୃଦ୍ଧି ସଙ୍ଗେ ସଙ୍ଗେ ତା'ର କାର୍ଯ୍ୟକ୍ଷମତା ବା ବିକାଶ ଦେଖା ଦେଇଥାଏ ।

ଶିଶୁର ହାତ ଶୈଶବାବସ୍ଥାରେ ଯାହାଥାଏ, ବାଳକ ଅବସ୍ଥା ହେଲାବେଳକୁ ହାତର ଆକୃତିର ବୃଦ୍ଧି ସଙ୍ଗେ ସଙ୍ଗେ ବିକାଶ ମଧ୍ୟ ଘଟିଥାଏ, ଅର୍ଥାତ୍ ବୟସ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ସେ ଗୁଡ଼ିକର କାର୍ଯ୍ୟଦକ୍ଷ କ୍ଷମତାର କ୍ରମ ପରିବର୍ତ୍ତନ ଘଟେ ଓ ଅନେକ ସ୍ଥଳରେ ଉକ୍ତ ବୃଦ୍ଧି ବିକାଶ ସାଧନରେ ସାହାଯ୍ୟ କରେ । ବୃଦ୍ଧି ଗୋଟିଏ ନିର୍ଦ୍ଦିଷ୍ଟ ସମୟ ବା ଅବସ୍ଥା ପର୍ଯ୍ୟନ୍ତ ସୀମାବଦ୍ଧ । ମାତ୍ର ବିକାଶ କୌଣସି ନିର୍ଦ୍ଦିଷ୍ଟ ଅବସ୍ଥାକୁ ଅପେକ୍ଷା କରେ ନାହିଁ । ବୃଦ୍ଧି ଓ ବିକାଶ ଏକ ସମୟରେ ସଂଗଠିତ ହେଲେହେଁ ସ୍ଥଳବିଶେଷରେ ଏଥିରେ ଅନିୟମିତତା ପରିଦୃଷ୍ଟ ହୁଏ । ଅନେକ ସମୟରେ ଶିଶୁର ଓଜନ ଓ ଅନ୍ୟାନ୍ୟ ଶାରୀରିକ ବୃଦ୍ଧି ଘଟୁଥିଲେ ମଧ୍ୟ କାର୍ଯ୍ୟ ସାଧନ ଦିଗରେ ଦକ୍ଷତା ବୃଦ୍ଧି ହୋଇ ନ ଥାଏ । ଠିକ୍ ସେହିପରି ଜଣକର କାର୍ଯ୍ୟ କ୍ଷମତାର ବିକାଶ ହେଉଥିଲେହେଁ ଶାରୀରିକ ବୃଦ୍ଧି ଘଟି ନ ଥାଏ । ବୃଦ୍ଧି ଓ ବିକାଶ ଓତଃପ୍ରୋତ ଭାବେ ଜଡ଼ିତ ହେଲେ ମଧ୍ୟ ଅନେକ କ୍ଷେତ୍ରରେ ଦେଖାଯାଏ ଯେ, ବୃଦ୍ଧି ବିନା ବିକାଶ ଓ ବିକାଶ ବିନା ବୃଦ୍ଧି ଘଟିଥାଏ । ସ୍ଥୂଳତଃ ଓଜନ ଓ ଆକାର ଇତ୍ୟାଦିରେ ବ୍ୟକ୍ତିର ବୃଦ୍ଧି ହେଲେ ଚାଲିବା, ଦୌଡ଼ିବା ଇତ୍ୟାଦି ଦୈହିକ କାର୍ଯ୍ୟକଳାପରେ ବିକାଶ ହୋଇଥାଏ । ଅନେକ ବ୍ୟକ୍ତିଙ୍କର ବୃଦ୍ଧିର ପରିସମାପ୍ତି ଘଟିଲେ ମଧ୍ୟ ପରିବେଷ୍ଟନୀ ସହିତ ଖାପ ଖୁଆଇ ଚଳିବା ନିମିତ୍ତ ସେ ନୂତନ ଜ୍ଞାନ, ଅଭ୍ୟାସ, ମନୋବୃତ୍ତି (Attitude) ହାସଲ କରିଥାଏ । ଏହି ଦକ୍ଷତା ବା ବିକାଶ ମାନସିକ (Mental) ସାମାଜିକ (Social) । ଆବେଗାତ୍ମକ (Emotional) ଇତ୍ୟାଦି ବିଭିନ୍ନ ଦିଗରେ ସଂଗଠିତ ହୋଇଥାଏ ।

## ବୃଦ୍ଧି ଓ ବିକାଶର ପରିପକ୍ୱତା (Maturation) :

ଶିଶୁର ଶାରୀରିକ ବୃଦ୍ଧି ଓ ମାନସିକ ବିକାଶଦ୍ୱାରା ସେ ସମାଜ ଓ ତା'ର ପରିବେଷ୍ଟନୀ ସହି ଖାପଖୁଆଇ ଚଳିବାପାଇଁ ଆବଶ୍ୟକୀୟ ଆଚରଣ, ବ୍ୟବହାର, ଚାଲିଚଳନ ଇତ୍ୟାଦି ଶିଖିଥାଏ । ତେବେ ଶିଶୁ କୌଣସି ନିର୍ଦ୍ଦିଷ୍ଟ ବ୍ୟବହାର ଶିକ୍ଷାକରିବା ପୂର୍ବରୁ ତାର ଯେଉଁ ବୃଦ୍ଧି ଓ ବିକାଶ ସଂଗଠିତ ହୁଏ, ତାହାକୁ ପରିପକ୍ୱ ଅବସ୍ଥା ବୋଲି କୁହାଯାଏ । ଏହି ପରିପକ୍ୱତା ବା maturation ଲାଭ ଶିଶୁକୁ ସମ୍ପୂର୍ଣ୍ଣ କାର୍ଯ୍ୟକ୍ଷମ କରାଇଥାଏ । ତେଣୁ ଉଭୟ ଶାରୀରିକ ଓ ମାନସିକ ବୃଦ୍ଧି ତଥା ବିକାଶ କ୍ଷେତ୍ରରେ ପରିପକ୍ୱତାର ପ୍ରାଧାନ୍ୟ ଅଧିକ । କାରଣ ଶିକ୍ଷଣ ଓ ଅନ୍ୟାନ୍ୟ କାର୍ଯ୍ୟାବଳୀ ପରିପକ୍ୱତା ଉପରେ ନିର୍ଭରଶୀଳ । ପରିପକ୍ୱତା ସମ୍ପର୍କରେ ମତାନ୍ତର ଦେଖାଯାଇଥାଏ । କେତେକଙ୍କ ମତରେ ଏହା ଏକ ଅନ୍ତର୍ନିହିତ ବୃଦ୍ଧି ଓ ତାଲିମ ଦ୍ୱାରା ପ୍ରଭାବିତ ହୁଏନାହିଁ । ମାତ୍ର ଅନ୍ୟ କେତେକଙ୍କ ମତରେ ପରିପକ୍ୱତା ଏକ ଅପରିବର୍ତ୍ତନୀୟ ଅନ୍ତର୍ବୃଦ୍ଧି (Inner-Growth) । ଗୋଟିଏ ଛୋଟ ଶିଶୁ କୌଣସି ରଙ୍ଗୀନ ଖେଳନା ଦେଖି ଓ ତା'ର ଶବ୍ଦ ଶୁଣି ତା ଆଡ଼କୁ ଆକୃଷ୍ଟ ହୋଇ ତାକୁ ଧରିବାକୁ ହାତ ବଢ଼ାଇଥାଏ । ମାତ୍ର କେବଳ

କାନ ଓ ଆଖି ଶବ୍ଦ ଶୁଣିବା ଓ ଦେଖିବା ପାଇଁ ପରିପକ୍ୱ ହୋଇଥିଲେ ହେଁ ହାତ ପରିପକ୍ୱ ହୋଇନଥିବାରୁ ସେ ଏହାକୁ ସ୍ପର୍ଶ କରିପାରିଲେ ମଧ୍ୟ ଧରିପାରି ନଥାଏ । ସେହିପରି ଶିଶୁ ଅନ୍ୟ ସ୍ଥାନକୁ ଯିବାକୁ ଇଚ୍ଛାଥିଲେହେଁ ତା'ର ଗୋଡ଼ ଅପରିପକ୍ୱ ଥିବାରୁ ସେ ଯାଇପାରେ ନାହିଁ । ଏଥିନିମିତ୍ତ ତାଲିମ ଦେଲେ ମଧ୍ୟ କିଛି ଫଳ ମିଳି ନ ଥାଏ । କାରଣ, ହାତ, ଗୋଡ଼ ବା ଯେକୌଣସି ଅଙ୍ଗପ୍ରତ୍ୟଙ୍ଗ କେବଳ ପରିପକ୍ୱତା ପ୍ରାପ୍ତ ହେଲେହେଁ କାର୍ଯ୍ୟକ୍ଷମ ହୋଇ ପାରିଥାଏ । ପରିପକ୍ୱତା ପରିବେଷ୍ଟନୀ ଦ୍ୱାରା ପ୍ରଭାବିତ ମଧ୍ୟ ହୋଇନଥାଏ । ଶିକ୍ଷକ ଓ ଅଭିଭାବକ ପରିପକ୍ୱତା ସମ୍ପର୍କରେ ସଚେତନ ରହିବା ଆବଶ୍ୟକ । ତେଣୁ ଶିକ୍ଷାକ୍ଷେତ୍ର ତଥା ଜୀବନର ପ୍ରତ୍ୟେକ କ୍ଷେତ୍ରରେ ପରିପକ୍ୱତାର ପ୍ରଭାବ ସ୍ୱୀକାର୍ଯ୍ୟ ।

**ଶିକ୍ଷା ଏକ ବୃଦ୍ଧି ମାତ୍ର** :—ଶିଶୁକୁ ଗୋଟିଏ ସୁନାଗରିକ ତଥା ସାମାଜିକ ପ୍ରାଣୀଟିଏ କରି ଗଢ଼ି ତୋଳିବାରେ ଗୁରୁଦାୟିତ୍ୱ ଶିକ୍ଷକଙ୍କ ଉପରେ ନ୍ୟସ୍ତ । ଶିଶୁର ଶାରୀରିକ ଓ ମାନସିକ ବିକାଶ, ଜ୍ଞାନ, ଭାବନାଶକ୍ତି ଓ ଆବେଗର ସୁନିୟନ୍ତ୍ରଣ ପାଇଁ ଶିକ୍ଷକ ସତର୍କହେବାକୁ ପଡ଼ିଥାଏ । ତେଣୁ ଶିଶୁର ବୃଦ୍ଧି ଓ ବିକାଶ ସମ୍ପର୍କୀୟ ଯଥାଯଥ ଜ୍ଞାନାର୍ଜନ କରିବା ଶିକ୍ଷକଙ୍କର ପ୍ରଧାନ କର୍ତ୍ତବ୍ୟ । କେବଳ ବିଦ୍ୟା ଶିକ୍ଷାଦାନରେ ଶିକ୍ଷକଙ୍କର ପ୍ରଧାନକାର୍ଯ୍ୟ ସମାପ୍ତ ହୁଏ ନାହିଁ । ଶିଶୁର ଚରିତ୍ର ଗଠନ, ବ୍ୟକ୍ତିତ୍ୱର ବିକାଶ ମଧ୍ୟ ଏକାନ୍ତ ଆବଶ୍ୟକ । ଶିକ୍ଷକଙ୍କୁ ତେଣୁ ବିଦ୍ୟା ଶିକ୍ଷା ବ୍ୟତୀତ ଶିଶୁର ଚରିତ୍ର ଗଠନ ଓ ବ୍ୟକ୍ତିତ୍ୱ ବିକାଶ ପାଇଁ ଯତ୍ନବାନ ହେବାକୁ ପଡ଼େ । ଶିକ୍ଷାର ଏ ସମସ୍ତ ଲକ୍ଷ୍ୟ-ପୂର୍ତ୍ତି ନିମିତ୍ତ ବୃଦ୍ଧି ଓ ବିକାଶର ଗୁରୁତ୍ୱ ସ୍ୱୀକାର୍ଯ୍ୟ ।

ବ୍ୟକ୍ତିର ପୂର୍ଣ୍ଣ ବ୍ୟକ୍ତିତ୍ୱ ଚାରିପ୍ରକାର ବୃଦ୍ଧି ଓ ବିକାଶର ସମନ୍ୱୟରେ ପ୍ରତିଫଳିତ ହୋଇଥାଏ । ସେଗୁଡ଼ିକ ହେଲା—ଯଥା ଦୈହିକ ବିକାଶ (Physical Development), ମାନସିକ ବିକାଶ (Mental Development), ଆବେଗାତ୍ମକ ବିକାଶ, Emotional Development) ଓ ସାମାଜିକ ବିକାଶ (Social Development । ଦୈହିକ ଓ ମାନସିକ ବିକାଶର ଗୁରୁତ୍ୱକୁ ଶୀଘ୍ର ଓ ସହଜରେ ଉପଲବ୍ଧି କରିହୁଏ । ତଥାପି ଆବେଗାତ୍ମକ ଓ ସାମାଜିକ ବିକାଶର ଗୁରୁତ୍ୱ କମ୍ ନୁହେଁ । ଏ ସବୁର ପର୍ଯ୍ୟାଲୋଚନା ଓ ଅଧ୍ୟୟନର ସୁବିଧା ନିମିତ୍ତ ଏଗୁଡ଼ିକ ବିଭକ୍ତକୃତ ହୋଇଛନ୍ତି ।

ଦୈହିକ ବୃଦ୍ଧି ଓ ତାର କାର୍ଯ୍ୟକାରିତା ସମ୍ପର୍କରେ ଆମେ ଖୁବ୍ ସହଜରେ ଜାଣିପାରିଥାଉଁ । ଦୈହିକ ଶକ୍ତି ଓ ତା' ସମ୍ପର୍କୀୟ ଶୈଶବ ଶିକ୍ଷା କ୍ଷେତ୍ରରେ ବୃଦ୍ଧି କିପରି ଆବଶ୍ୟକ ତାହା ସହଜରେ ଅନୁମେୟ । ଶିଶୁ ଚାଲିବା, ଦୌଡ଼ିବା, କଥା କହିବା, ଇତ୍ୟାଦି କାର୍ଯ୍ୟକଳାପରେ ତା'ର ବୃଦ୍ଧି ସ୍ପଷ୍ଟ ଜାଣିହୁଏ, ମାତ୍ର ଅନ୍ୟ ବୃଦ୍ଧି ଓ

ବିକାଶ ସମ୍ପର୍କରେ ସହଜରେ ଜାଣିହୁଏ ନାହିଁ । ଶିଶୁର ମାନସିକ, ଆବେଗାତ୍ମକ ବା ସାମାଜିକ ବୃଦ୍ଧି ଓ ବିକାଶ ମୂଳତଃ ଅନୁଭୂତ ଓ ପରିବେକ୍ଷଣ ଦ୍ୱାରା ସଙ୍ଗଠିତ ହୋଇଥାଏ ; ମାତ୍ର ଏସବୁ ବୃଦ୍ଧି ଉପଦେଶ ବା ବକ୍ତୃତା ଇତ୍ୟାଦି ଦ୍ୱାରା ସମ୍ଭବପର ବୋଲି ମତ ପ୍ରଦାନ କରିଥାନ୍ତି । ତେବେ ଏ ସମସ୍ତ ପ୍ରକାର ପରିବର୍ତ୍ତନ ହଠାତ୍ ସମ୍ଭବ ନୁହେଁ । ଏହା ସମସ୍ତଙ୍କ ଧୀରମନ୍ଥର ଗତିରେ ହୋଇଥାଏ । ଏହି ବୃଦ୍ଧି ଓ ବିକାଶର ଭୂମିକା ଶିକ୍ଷାକ୍ଷେତ୍ରରେ ମଧ୍ୟ ଅନୁଭବ୍ୟ । ଶିକ୍ଷା କ୍ଷେତ୍ରରେ ଏହି ବୃଦ୍ଧି ଓ ବିକାଶ ତିନୋଟି ଅର୍ଥ ପ୍ରତିପାଦିତ କରେ ।

୧ । ବୃଦ୍ଧି ଓ ବିକାଶ ଶିଶୁଠାରେ ଆକସ୍ମିକ ଭାବେ ଦେଖାଦିଏ ନାହିଁ । ଏହା ନିୟମାନୁସାରେ ଏକ ଶୃଙ୍ଖଳିତ ସ୍ତର ଦେଇ ଗତିକରେ । ପୂର୍ବ ବ୍ୟବହାର ବା ବୃଦ୍ଧି ପର ବ୍ୟବହାରର ମୂଳଦୁଆ ଭଳି କାର୍ଯ୍ୟ କରେ । ପର୍ଯ୍ୟାୟକ୍ରମେ ବ୍ୟବହାରରେ ଦୃଷ୍ଟ ପରିବର୍ତ୍ତନ ଅନୁଧ୍ୟାନଯୋଗ୍ୟ ।

୨ । ଏହି ବୃଦ୍ଧି ପ୍ରକ୍ରିୟା ଦ୍ୱାରା ବର୍ତ୍ତମାନକୁ ଜାଣିହୁଏ ଓ ତା' ସଙ୍ଗେ ସଙ୍ଗେ ଭବିଷ୍ୟତରେ ଲକ୍ଷ୍ୟ ଓ ଉଦ୍ଦେଶ୍ୟକୁ ଉପଲବ୍ଧ କରିହୁଏ । ଗୁରୁଙ୍କର କାର୍ଯ୍ୟ କ୍ଷମତା, ଅନ୍ତର୍ନିହିତ ଶକ୍ତି, ପ୍ରଚଳିତ ଶିକ୍ଷା ପ୍ରଣାଳୀ ଓ ତା'ର ପ୍ରୟୋଗର ଆବଶ୍ୟକ ଫଳାଫଳ, ଶିକ୍ଷାଦାନର ନିର୍ଦ୍ଦିଷ୍ଟ ଧାରା, ଶିଶୁର ବୃଦ୍ଧିମତ୍ତା (ପରିବର୍ତ୍ତନୀୟ ଓ ଅପରିବର୍ତ୍ତନୀୟ) ଏ ସମସ୍ତକୁ ଅନୁଧ୍ୟାନ କଲେ ଭବିଷ୍ୟତ ସମ୍ପର୍କରେ ସୂଚନା ମିଳିଥାଏ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ପ୍ରତିଷ୍ଠାତା ଅତୀତକୁ ବାଦ୍‌ଦେଲେ ବର୍ତ୍ତମାନ ଓ ଭବିଷ୍ୟତର ଉନ୍ନତି ବା ବୃଦ୍ଧି ଆଶାତୀତ ଓ ଅସମ୍ଭବ ମଧ୍ୟ । ଶିକ୍ଷା ଭବିଷ୍ୟତ ନିର୍ମାଣ, ତେଣୁ ଏହା କେବଳ ଅତୀତଦ୍ୱାରା ସଙ୍ଗଠିତ ହୋଇଥାଏ ।

୩ । ସମୟେ ସମୟେ ଶିକ୍ଷାକୁ ବୃଦ୍ଧି ଅର୍ଥରେ ବ୍ୟବହାର କରାଯାଇଥାଏ । ଏପରି କ୍ଷେତ୍ରରେ ଶିକ୍ଷକ ଶିଶୁର ଶିକ୍ଷାଗତ ବୃଦ୍ଧି ସମ୍ପର୍କରେ ସଚେତନ ରହିବା ଆବଶ୍ୟକ ହୋଇଥାଏ । ପାଠ୍ୟ ତାଲିକା ଏପ୍ରକାର ମନମୁଖୀ ତନ୍ତ୍ରର ନିୟନ୍ତ୍ରଣ ମାତ୍ର ଓ ଶିଶୁମାନଙ୍କୁ ଶ୍ରେଣୀବଦ୍ଧଭାବେ ରହିବାପାଇଁ ଶିକ୍ଷା ପ୍ରଦାନ କରିଥାଏ । ମାତ୍ର ଏହା ସ୍ପଷ୍ଟ ଯେ, ଶିକ୍ଷାର ପ୍ରାଣକେନ୍ଦ୍ର ହେଉଛି ଶିଶୁ । ତେଣୁ ଶିଶୁର ଆଗ୍ରହ, ଆବଶ୍ୟକତା, ସମସ୍ୟା ଦୃଷ୍ଟିରୁ ତା'ର ପାଠ୍ୟକ୍ରମ ନିର୍ଦ୍ଧାରିତ ହେବା ବିଧେୟ । ଶିଶୁର ବ୍ୟକ୍ତିତ୍ୱର ସର୍ବବିଧ ଉନ୍ନତି ଶିଶୁର ବୃଦ୍ଧି ଓ ବିକାଶ ସମ୍ପର୍କୀୟ ଉପଯୁକ୍ତ ଜ୍ଞାନ ଅର୍ଜନ ସହିତ ଆବଶ୍ୟକୀୟ ଶିକ୍ଷା ପ୍ରଣାଳୀ ଓ ତା'ର ପ୍ରୟୋଗ କରିବା ତାଙ୍କର ପ୍ରଥମ ଓ ପ୍ରଧାନ କାର୍ଯ୍ୟ ହେବା ଏକାନ୍ତ ଆବଶ୍ୟକ ।

## ବୃଦ୍ଧି ଓ ବିକାଶର ସାଧାରଣ ଲକ୍ଷଣ (General Characteristics of Growth & Developmemt) :

ଶିକ୍ଷାକୁ ଯଦି ବୃଦ୍ଧି ବୋଲି ଧରାଯାଏ, ତେବେ ଶିକ୍ଷାଦାନ କ୍ଷେତ୍ରରେ ଓ ଗ୍ରହଣ କ୍ଷେତ୍ରରେ ଶାରୀରିକ ବୃଦ୍ଧି ଓ ବିକାଶ ସମ୍ପର୍କୀୟ ଧାରଣା ରହିବା ନିହାତି ଆବଶ୍ୟକ । ବୃଦ୍ଧି ଓ ବିକାଶ କ୍ଷେତ୍ରରେ ଅନେକ ବ୍ୟକ୍ତିଗତ ତାରତମ୍ୟ (Indiviual Differences) ପରିଲକ୍ଷିତ ହୁଏ ଏବଂ ଏସବୁ ପରିବର୍ତ୍ତନ ସାଂସ୍କୃତିକ ପ୍ରଭାବଦ୍ୱାରା ସଗଠିତ ହୋଇଥାଏ । ତେଣୁ ବୃଦ୍ଧି ଓ ବିକାଶର ସାଧାରଣ ଲକ୍ଷଣ ଗୁଡ଼ିକୁ ଅନୁଧ୍ୟାନ କରିବା ଏକାନ୍ତ ଗୁରୁତ୍ୱପୂର୍ଣ୍ଣ । ନିମ୍ନରେ ବୃଦ୍ଧି ଓ ବିକାଶର ଲକ୍ଷଣ ସମ୍ପର୍କରେ ଆଲୋଚନା କରାଗଲା—

### (୧) ବ୍ୟକ୍ତି ଓ ତା'ର ପରିବେଷ୍ଟନୀ ମଧ୍ୟରେ ସଂଗଠିତ ହେଉଥିବା ପାରସ୍ପରିକ ପ୍ରକ୍ରିୟାରୁ ହିଁ ବୃଦ୍ଧିର ସୃଷ୍ଟି

ବ୍ୟକ୍ତିର ବୃଦ୍ଧି ପରିବେଷ୍ଟନୀ ଦ୍ୱାରା କିମ୍ବା ବଂଶାନୁଗୁଣ ଦ୍ୱାରା ପ୍ରଭାବିତ । ଏ ସମ୍ପର୍କରେ ପ୍ରାଣୀବିଜ୍ଞାନୀ, ଶିକ୍ଷାବିତ୍ ଓ ମନୋବିଜ୍ଞାନୀଙ୍କ ମଧ୍ୟରେ ବାଦାନୁବାଦ ଘଟିଥାଏ । ଶିକ୍ଷକଙ୍କ ପାଇଁ ମଧ୍ୟ ଏହା ଏକ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ଭାବରେ ଦେଖା ଦେଇଥାଏ । ଯଦି ଆମେ ଧରିନେବା ଯେ "ବୃଦ୍ଧି ଓ ବିକାଶ" ବଂଶାନୁଗୁଣ (heredity) ଦ୍ୱାରା ପ୍ରଭାବିତ ହେଉଅଛି ତେବେ ଶିକ୍ଷକଙ୍କ ଭୂମିକା ଅତ୍ୟନ୍ତ ଗୌଣ ହୋଇପଡ଼ିବ । ସେ କେବଳ ଶିଶୁର ବଂଶାନୁଗୁଣର କ୍ରମାଗତ ପରିବର୍ତ୍ତନ ଓ ଶିଶୁର ଅନ୍ତର୍ନିହିତ ଶକ୍ତି ବିକାଶକୁ ଲକ୍ଷ୍ୟ କରିବା ଶିକ୍ଷକଙ୍କର ପ୍ରଧାନ କାର୍ଯ୍ୟ ହେବ । ଅନ୍ୟ ପକ୍ଷରେ ଯଦି ଶିଶୁର "ବୃଦ୍ଧି ଓ ବିକାଶ" ପରିବେଷ୍ଟନୀ ଦ୍ୱାରା ସଙ୍ଗଠିତ ହେଉଅଛି ବୋଲି ଧରିନିଆଯାଏ, ତେବେ ଶିକ୍ଷକ ଆବଶ୍ୟକତାନୁଯାୟୀ ଶିଶୁର ଜୀବନରେ ଘଟୁଥିବା ବୃଦ୍ଧି ଓ ବିକାଶ ଧାରାକୁ ବଦଳାଇ ଦେଇପାରିବେ । ଏହି ଉଭୟ ମତକୁ ଯଦି ପୃଥକ୍ ପୃଥକ୍ ଭାବରେ ଗୁରୁତ୍ୱ ଆରୋପ କରାଯାଏ, ତେବେ ଏ ସମ୍ପର୍କରେ ଶିକ୍ଷକ ଅଭିଭାବକମାନଙ୍କ ଧାରଣା ଭ୍ରମାତ୍ମକ ବୋଲି ଧରିନିଆଯିବ ।

ଯେଉଁମାନେ ବ୍ୟକ୍ତି ବୃଦ୍ଧି ଓ ବିକାଶ କ୍ଷେତ୍ରରେ ବଂଶାନୁଗୁଣ ପ୍ରଭାବକୁ ବିଶ୍ୱାସ କରନ୍ତି, ସେମାନେ ନିରାଶାବାଦୀ ହୋଇଥାନ୍ତି । ସେମାନେ ମନେକରନ୍ତି ଯେ ବଂଶାନୁଗୁଣ ଅପରିବର୍ତ୍ତନୀୟ । ଏହି ବଂଶାନୁଗୁଣ ଦ୍ୱାରା ଜୀବନର ଗତିପଥ ନିୟନ୍ତ୍ରିତ ହୋଇଥାଏ; ମାତ୍ର ବୃଦ୍ଧି ଓ ବିକାଶ କ୍ଷେତ୍ରରେ ପରିବେଷ୍ଟନୀର ପ୍ରଭାବକୁ ଉପଲବ୍ଧି କରୁଥିବା ଶିକ୍ଷାବିତ୍ ବା ମନୋବିଜ୍ଞାନୀମାନେ ଆଶାବାଦୀ ଅଟନ୍ତି । ସେମାନଙ୍କ ମତାନୁଯାୟୀ ବ୍ୟକ୍ତିର ବୃଦ୍ଧି ଓ ବିକାଶକୁ ଇଚ୍ଛାନୁଯାୟୀ ପରିବର୍ତ୍ତନ କରିବା ସମ୍ଭବ । ମାତ୍ର ପ୍ରତ୍ୟେକ ଦୃଷ୍ଟିରୁ

ବିସ୍ତାର କଲେ ଏ ଦୁଇ ମତବାଦୀମାନଙ୍କ ମତ ଭୁଲ୍ ବୋଲି ପ୍ରମାଣିତ ହୋଇଥାଏ । ଉଭୟ ବଂଶାନୁଗୁଣ ଓ ପରିବେଷ୍ଟନୀର ପାରସ୍ପରିକ ପ୍ରକ୍ରିୟା ଦ୍ୱାରା ବୃଦ୍ଧି ଓ ବିକାଶ ସଂଗଠିତ ହୋଇଥାଏ ବୋଲି ଆଧୁନିକ ମନସ୍ତତ୍ତ୍ୱବିତ୍‌ମାନେ ମତ ପ୍ରକାଶ କରିଛନ୍ତି । ତେବେ ବୃଦ୍ଧି ଓ ବିକାଶରେ ବଂଶାନୁଗୁଣ ଓ ପରିବେଷ୍ଟନୀ କେଉଁକେଉଁ ଅଂଶରେ ପ୍ରଭାବ ବିସ୍ତାର କରିଛି ତାହା କହିବା କଷ୍ଟସାଧ୍ୟ । ମାତ୍ର ବ୍ୟକ୍ତିର ବୃଦ୍ଧି ଓ ବିକାଶରେ 'ଉଭୟ' ପ୍ରଭାବ ବିସ୍ତାର କରିଥାନ୍ତି ।

## ୨। ବାଲ୍ୟାବସ୍ଥାରେ ବୃଦ୍ଧିର ମାତ୍ରା ଅତ୍ୟନ୍ତ କ୍ଷିପ୍ର ହୋଇଥାଏ :

ଗର୍ଭଧାରଣଠାରୁ ଶିଶୁ ଜନ୍ମହେବା ମଧ୍ୟରେ ମାତ୍ର ନଅମାସ ଅତିବାହିତ ହୋଇଥାଏ । ଏହି ନଅମାସ ମଧ୍ୟରେ ଗୋଟିଏ ଓଜନ ବିହୀନ କ୍ଷୁଦ୍ରକୋଷ ସାତ ଆଠ ପାଉଣ୍ଡ ଓଜନର ହୋଇଥାଏ । ଏଥିରୁ ଗର୍ଭଧାରଣ ସମୟରେ ଶିଶୁର ଅଭିବୃଦ୍ଧି ସମ୍ପର୍କରେ ସ୍ପଷ୍ଟ ଜାଣିହୁଏ । ସେହି ସମୟ ମଧ୍ୟରେ ତାର କାନ, ନାକ, ଗୋଡ଼, ହାତ, ଆଖି ଇତ୍ୟାଦି ମଧ୍ୟ ପରସ୍ପରଠାରୁ ପୃଥକ୍ ହୋଇଥାନ୍ତି । ଜନ୍ମପରେ ଉକ୍ତ ବୃଦ୍ଧିର ମାତ୍ରା କମିଗଲେ ମଧ୍ୟ ଏହା କ୍ଷିପ୍ର ଥାଏ । ପ୍ରଥମ ବର୍ଷରେ ଶିଶୁ ତିନିଥର ଓଜନରେ ବୃଦ୍ଧି ଲାଭ କରିଥାଏ । ଶାରୀରିକ ବୃଦ୍ଧିକୁ ଭଲଭାବରେ ଜାଣି ହେଲେ ମଧ୍ୟ ମାନସିକ ବୃଦ୍ଧିକୁ ଏ ସମୟରେ ଜାଣି ହୋଇ ନଥାଏ । ମାନବ ଶିଶୁ ଅନ୍ୟ ପଶୁପକ୍ଷୀମାନଙ୍କ ଛୁଆ ଅପେକ୍ଷା ଅତ୍ୟନ୍ତ ସାହାଯ୍ୟହୀନ ଓ ନିର୍ଭରଶୀଳ ହୋଇ ଜନ୍ମ ହୋଇଥାଏ । କିନ୍ତୁ ତା'ର ବୃଦ୍ଧି ସ୍ୱାଧୀନଭାବେ ସଂଗଠିତ ହୋଇଥାଏ । ମାତ୍ର ତାର ବ୍ୟାବହାରିକ ଗୁଣ ସମ୍ପର୍କରେ ଖୁବ୍ ଶୀଘ୍ର ଜଣାପଡ଼ିଥାଏ । ଗୋଟିଏ ବାରବର୍ଷ ଓ ତେରବର୍ଷର ଶିଶୁ କିମ୍ବା ଷୋହଳ ଏବଂ ସତର ବର୍ଷର ପିଲା ମଧ୍ୟରେ ପାର୍ଥକ୍ୟ ସମ୍ପର୍କରେ କହିବା କଷ୍ଟକର ହୋଇପାରେ ; ମାତ୍ର ଗୋଟିଏ ବର୍ଷକର ଶିଶୁ ଅଠର ମାସର ଶିଶୁଠାରୁ କିମ୍ବା ଦୁଇବର୍ଷର ଶିଶୁ ତିନି ବର୍ଷର ଶିଶୁଠାରୁ କିପରି ପୃଥକ୍ ତା କହିବା ସହଜସାଧ୍ୟ ; କାରଣ ଶାରୀରିକ ବୃଦ୍ଧି ବାଲ୍ୟାବସ୍ଥାରେ ଖୁବ୍ ଶୀଘ୍ର ଗତିରେ ସଂଗଠିତ ହୋଇଥାଏ ।

## ୩। ଯେକୌଣସି ବ୍ୟକ୍ତି ଜୀବନରେ "ବ୍ୟବହାରର ବୃଦ୍ଧ" ନିୟମିତ ଭାବେ ଏବଂ ପର୍ଯ୍ୟାୟକ୍ରମେ ପରିଲକ୍ଷିତ ହୋଇଥାଏ :

ବୃଦ୍ଧି ବିଶୃଙ୍ଖଳିତ ନୁହେଁ; କିନ୍ତୁ ଶୃଙ୍ଖଳିତ ଏବଂ ଏହା କ୍ରମାଗତ ଭାବେ ବା ପର୍ଯ୍ୟାୟକ୍ରମେ ପ୍ରତ୍ୟେକ ବ୍ୟକ୍ତିଠାରେ ପରିଦୃଷ୍ଟ ହୋଇଥାଏ । ଶିଶୁ ଗୁରୁଣ୍ଡିବା ପୂର୍ବରୁ ବସେ, ଚାଲିବା ପୂର୍ବରୁ ଗୁରୁଣ୍ଡିଥାଏ ଏବଂ ଦଉଡ଼ିବା ପୂର୍ବରୁ ଚାଲେ । ଏହି ପର୍ଯ୍ୟାୟ ବ୍ୟକ୍ତିର ବୃଦ୍ଧି ଓ ବିକାଶର ଗୁଣ । ବୃଦ୍ଧି ଓ ବିକାଶର ଉକ୍ତ ଏକାକୃତ ପର୍ଯ୍ୟାୟକ୍ରମ

ଯୋଗୁଁ ମାନସିକ ପରୀକ୍ଷଣ ସମ୍ଭବ ହୋଇଥାଏ, ଏ ପ୍ରକାର କ୍ରମ ପରିବର୍ତ୍ତନ ପ୍ରତ୍ୟେକ ଶିଶୁଠାରେ ଦେଖାଯାଏ ।

**୪ । ଶୈଶବାବସ୍ଥାରୁ ବୟଃପ୍ରାପ୍ତି ପର୍ଯ୍ୟନ୍ତ ପ୍ରତ୍ୟେକ ବ୍ୟକ୍ତିର ବୃଦ୍ଧି ଓ ବିକାଶର ଧାରା ଏକାନ୍ତଭାବେ ନିଜସ୍ୱ ଏବଂ ଏହି ଧାରା ଅପରିବର୍ତ୍ତିତ ରହେ :**

ପିଲାମାନେ ସେମାନଙ୍କର ବୃଦ୍ଧି ଓ ବିକାଶ ଦ୍ୱାରରେ ଜଣେ ଅନ୍ୟ ଜଣଙ୍କଠାରୁ ପୃଥକ୍ ହୋଇଥାନ୍ତି । କେତେକ ଦ୍ରୁତ ଗତିରେ ବୃଦ୍ଧି ଲାଭ କରନ୍ତି ଏବଂ ଅନ୍ୟ କେତେକ ଖୁବ୍ ଧୀରେ ଧୀରେ ବିକାଶ ପ୍ରାପ୍ତ ହୁଅନ୍ତି । ଯାପ୍ତିମାନ ଶିଶୁ ସେମାନଙ୍କ ପ୍ରତିଭା ରକ୍ଷାକରନ୍ତି ଏବଂ ନିର୍ବୋଧ ଗ୍ରୁପମାନେ ନିର୍ବୋଧ ହୋଇ ରୁହନ୍ତି । ବୁଦ୍ଧ୍ୟଙ୍କ (I.Q.) ମାନସିକ ଅଭିବୃଦ୍ଧି ଦ୍ୱାରର ଏକ ପରିମାପକ ଅଟେ । ବୃଦ୍ଧିର ଅନୁଧ୍ୟାନରୁ ଜଣାଯାଏ ଯେ ମାନସିକ ଦୋଷଯୁକ୍ତ ପିଲାମାନଙ୍କର ବୃଦ୍ଧି ସାଧାରଣ ଶିଶୁମାନଙ୍କଠାରୁ ଅପେକ୍ଷାକୃତ ଶୀଘ୍ର ବନ୍ଦ ହୋଇଯାଏ ଏବଂ ସେମାନେ ଖୁବ୍ କମ୍ ହାରରେ ଶିକ୍ଷା ଗ୍ରହଣ କରିଥାନ୍ତି । ଶାରୀରିକ ଭାବେ ମଧ୍ୟ ଗୋଟିଏ ଶିଶୁ ତା ବୟସ ଅନୁସାରେ ପତଳା, ସବୁବେଳେ ଡେଙ୍ଗା ଏବଂ ଓଜନ ରହେ, ଗୋଟିଏ ଶିଶୁ ତା ବୟସ ଅନୁସାରେ ପତଳା ତଥା ଦୁର୍ବଳ ରହେ ।

ବୃଦ୍ଧି ବିକାଶର ଏହି ଗୁଣାବଳୀ ଶିକ୍ଷା ଉପରେ ଗୁରୁତ୍ୱପୂର୍ଣ୍ଣ ପ୍ରଭାବ ବିସ୍ତାର କରିଥାଏ । ଯଦି ବିଭିନ୍ନ ବ୍ୟକ୍ତିଙ୍କର ସମ୍ପର୍କିତ ବୃଦ୍ଧି ହାର ଶୈଶବାବସ୍ଥାରେ ଆଧାରିତ ହୋଇପାରେ ତେବେ ଶିଶୁର ସର୍ବବିଧ ଉନ୍ନତି ନିମିତ୍ତ ସମସ୍ତ ସୁଯୋଗ ଯୋଗାଇବା ଓ ଫଳପ୍ରଦ ଉପଦେଶ ଦେବା ସମ୍ଭବପର ହୋଇପାରିବ । ପ୍ରତ୍ୟେକ ଶିଶୁର ବିଭିନ୍ନ ମାନସିକ ଶକ୍ତି ସମଭାବରେ ବିକଶିତ ହୁଏ । ତେଣୁ ବୃଦ୍ଧି ଓ ବିକାଶ ଲକ୍ଷଣ ନିର୍ଣ୍ଣୟ କାର୍ଯ୍ୟ ଅତ୍ୟନ୍ତ ସାବଧାନତାସହ କରିବା ଉଚିତ୍ ଏବଂ ଏହା ସମୟ ଅନ୍ତରରେ ବିଭିନ୍ନ ପରୀକ୍ଷଣ ଉପରେ ପ୍ରତିଷ୍ଠିତ ହେବା ଆବଶ୍ୟକ ।

**୫ । ବୃଦ୍ଧି ଓ ବିକାଶ ପ୍ରଣାଳୀ ଅବିରତ ଏବଂ କ୍ରମାଗତ (Continuous and Gradual), ଏହା ଆକସ୍ମିକ ବା ଲମ୍ଫମାନ (Saltatog) ନୁହେଁ :**

ବ୍ୟକ୍ତିର ବ୍ୟବହାର ସମୟକ୍ରମେ କ୍ରମାଗତ ଓ ଧୀର ଗତିରେ ବୃଦ୍ଧିଲାଭ କରି ପୂର୍ଣ୍ଣତାପ୍ରାପ୍ତ ହୁଏ । ବ୍ୟବହାର, ଚରିତ୍ର, ବ୍ୟକ୍ତିତ୍ୱ ଓ ବୃଦ୍ଧି ଇତ୍ୟାଦିରେ ରୁହିକ ବିଦ୍ୟାଳୟ ହଠାତ୍ କୌଣସି ପରିବର୍ତ୍ତନ ହୁଏ ନାହିଁ । ଏସବୁ ଆରମ୍ଭ ହେଲେ

ହଠାତ୍ ଜାଣିହୁଏ ନାହିଁ । ମାତ୍ର ଏହା କ୍ରମାଗତ ଭାବେ ବୃଦ୍ଧିପ୍ରାପ୍ତ ହୋଇ ପୂର୍ଣ୍ଣତା ଲାଭକରେ । ଆମ୍ଭେ ବ୍ୟକ୍ତିର ବୃଦ୍ଧି ଓ ବିକାଶ ସମ୍ବନ୍ଧରେ ବିଭିନ୍ନ ପର୍ଯ୍ୟାୟ ଆଲୋଚନା କଲେହେଁ ବ୍ୟକ୍ତି ହଠାତ୍ କୌଣସି ପର୍ଯ୍ୟାୟରେ ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ଉପନୀତ ହୁଏ ନାହିଁ । ସେ କ୍ରମ ଅନୁସାରେ ଗୋଟିଏ ପର୍ଯ୍ୟାୟରୁ ଅନ୍ୟ ପର୍ଯ୍ୟାୟକୁ ଗତି କରିଥାଏ । ଶୈଶବାବସ୍ଥାରେ କିମ୍ବା ବାଲ୍ୟାବସ୍ଥାରେ ସଙ୍ଗଠିତ ହେବାକୁ ଯାଉଥିବା ବୃଦ୍ଧିର ମୂଳଦୁଆ ହୋଇଥାଏ ଏବଂ ଏହାର ଭିତ୍ତିଭୂମି ରୂପେ କାର୍ଯ୍ୟ କରିଥାଏ । ସେହିଭଳି ବାଲ୍ୟାବସ୍ଥାରେ ବୃଦ୍ଧି ଯୌବନାବସ୍ଥାପାଇଁ ଭିତ୍ତିଭୂମି ପ୍ରସ୍ତୁତ କରିବା ସଙ୍ଗେ ସଙ୍ଗେ ପଥ ପ୍ରଦର୍ଶକ ମଧ୍ୟ ହୋଇଥାଏ । ଏହି ଦୃଷ୍ଟିକୋଣରୁ ବୃଦ୍ଧି ଓ ବିକାଶର ବିଭିନ୍ନ ପର୍ଯ୍ୟାୟ ଯଥା—ବାଲ୍ୟାବସ୍ଥା, ଶୈଶବାବସ୍ଥା, ଯୌବନାବସ୍ଥା ଓ ବୃଦ୍ଧାବସ୍ଥା ଇତ୍ୟାଦିକୁ ବିଭାଗୀକରଣ କରିବା ସମୁଚିତ ନୁହେଁ । ଅତଏବ ପ୍ରତ୍ୟେକ ବ୍ୟକ୍ତି କ୍ରମାଗତ ଭାବେ ବୃଦ୍ଧିଲାଭ କରିଥାନ୍ତି ଏବଂ ଏହି ବୃଦ୍ଧି ଧାରାବାହିକ ଅଟେ ।

୭ । ବୃଦ୍ଧି ଓ ଭେଦୀକରଣ ଓ ଏକୀକରଣ (Differentiation and Integration) ପ୍ରକ୍ରିୟା : ଶିଶୁର ବ୍ୟବହାର ପରିବର୍ତ୍ତିତ ହୁଏ । ଦୈନନ୍ଦିନ ଜୀବନରେ ମନୁଷ୍ୟ ଯେଉଁ ବ୍ୟବହାର ଦେଖାଏ, ତାହା ଜନ୍ମରୁ ହୋଇ ନଥାଏ । ଶିଶୁର ବୃଦ୍ଧି ସଙ୍ଗେ ସଙ୍ଗେ ତା'ର ବ୍ୟବହାରରେ ପରିବର୍ତ୍ତନ ପରିଦୃଷ୍ଟ ହୁଏ । ଶିଶୁ ଅବସ୍ଥାରେ ହାତଗୋଡ଼ ହଲାଇବା, କାନ୍ଦିବା, ହସିବା ଆଦି କେତୋଟି ବ୍ୟବହାର ଶିଶୁଠାରେ ଦେଖାଯାଏ । ମାତ୍ର ବୃଦ୍ଧି ସଙ୍ଗେ ସଙ୍ଗେ ବ୍ୟବହାରରେ ଯେଉଁ ଉନ୍ନତି ଦେଖାଯାଏ ତାହାହିଁ ଭେଦୀକରଣ (Differentiation) ପ୍ରକ୍ରିୟା । କେତେକ ମନସ୍ତତ୍ତ୍ୱବିଦ୍ ମାନଙ୍କ ମତରେ ବିଭିନ୍ନ ଜଟିଳ ମାନସିକ ପ୍ରକ୍ରିୟା କେତେକ ମୌଳିକ ମାନସିକ ପ୍ରକ୍ରିୟାର ସମ୍ମିଶ୍ରଣ । ଉଇଲିୟମ ଜେମସ୍‌ଙ୍କ ମତାନୁଯାୟୀ ପରିବେଷ୍ଟନୀର ପ୍ରତ୍ୟେକ ଉଦ୍ଦୀପନା ବସ୍ତୁ ଶିଶୁପାଇଁ ଏକ ପ୍ରକାର ମନେହୋଇଥାଏ; ମାତ୍ର ତା'ର ଶାରୀରିକ ଓ ମାନସିକ ବୃଦ୍ଧିଦ୍ୱାରା ସେ ଏହି ଭେଦୀକରଣ ନୀତିଦ୍ୱାରା ଉକ୍ତ ଉଦ୍ଦୀପକ ବସ୍ତୁମାନଙ୍କୁ ବିଶ୍ଳେଷଣ କରିବାକୁ କ୍ଷମ ହୋଇଥାଏ ଓ ତା' ଦ୍ୱାରା ସେମାନଙ୍କ ମଧ୍ୟରେ ଥିବା ପାର୍ଥକ୍ୟ ସମ୍ପର୍କରେ ଅବଗତ ହେଉଥାଏ । ଉଦାହରଣ ସ୍ୱରୂପ ଗର୍ଭଧାରଣ ପରେ ଭ୍ରୂଣଟି ଅବିଭକ୍ତ କୋଷ ଗୁଚ୍ଛର ସମାହାର ହୋଇଥାଏ ଏବଂ କ୍ରମେ ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ଯଥା ଆଖି, ନାକ, କାନ, ଗୋଡ଼, ହାତ ଇତ୍ୟାଦି ସୃଷ୍ଟି ହୁଏ । ଏହା ଗର୍ଭ ମଧ୍ୟରେ ଅନିୟମିତ ଭାବେ ଅଙ୍ଗଗୁଳନା କରିଥାଏ ଓ ତାହା କେବଳ "ମାଆ" ଉପଲବ୍ଧି କରିପାରେ । ଜନ୍ମପରେ ମଧ୍ୟ ଶିଶୁ ତା'ର ହାତ, ଗୋଡ଼ ସଞ୍ଚାଳନ କରିଥାଏ । ମାତ୍ର ପରେ ପରେ ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ସ୍ୱ ସ୍ୱ କାର୍ଯ୍ୟ କରିବାରେ ସାମର୍ଥ୍ୟ ହାସଲ କରିଥାନ୍ତି । ମାନସିକ ବିକାଶରେ ମଧ୍ୟ ଏହି ଭେଦୀକରଣ ପରିଦୃଷ୍ଟ ହୋଇଥାଏ । ଉଦାହରଣ ସ୍ୱରୂପ :— ଶିଶୁ ଜନ୍ମ

ସମୟରେ ତା'ର ପିତାଙ୍କୁ ପରିବାରର ଅନ୍ୟ ବ୍ୟକ୍ତିଙ୍କଠାରୁ ପୃଥକ୍ କରି ଚିହ୍ନି ପାରିନଥାଏ । ମାତ୍ର ପରେ ପରେ ସେ ତାର ପିତା କିଏ ବୁଝିବା ପାଇଁ ସମର୍ଥ ହୋଇଥାଏ । ସେହିପରି ଭେଦୀକରଣ ପ୍ରକ୍ରିୟାଦ୍ୱାରା ଶିଶୁର ଆବେଗିକ ବିକାଶ ମଧ୍ୟ ସମ୍ଭବ ହୋଇଥାଏ । ଜନ୍ମ ଅବସ୍ଥାରେ ଉତ୍ତେଜନା ଶିଶୁର ଏକମାତ୍ର ଆବେଗଥାଏ । ମାତ୍ର କ୍ରମଶଃ ଏହା ଆନନ୍ଦ, ଦୁଃଖ, ଭୟ, କ୍ରୋଧ, ଇତ୍ୟାଦି ଆବେଗରେ ରୂପାନ୍ତରିତ ହୋଇଥାଏ । ଉଦାହରଣ ସ୍ୱରୂପ ଜନ୍ମ ସମୟରେ ଶିଶୁର ହସ ସ୍ୱାଭାବିକ ଥାଏ । ମାତ୍ର କ୍ରମଶଃ ବୟସ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ଆନନ୍ଦ, ଘୃଣା ବା ବିଦ୍ରୂପ, ଅନୁମୋଦନ ଇତ୍ୟାଦି ସୂଚନାରେ ହସ ବ୍ୟବହୃତ ହୋଇଥାଏ ।

ଏକୀକରଣ ବୃଦ୍ଧି ଓ ବିକାଶର ଭେଦୀକରଣ ଭଳି ବେଶ୍ ଗୁରୁତ୍ୱପୂର୍ଣ୍ଣ । ଏହା ଭେଦୀକରଣ ସହିତ କାର୍ଯ୍ୟ କରିଥାଏ । ଏକୀକରଣ ଶରୀରର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗର ସମୀକରଣ ମାତ୍ର । ପ୍ରତ୍ୟେକ ବ୍ୟକ୍ତିର ବୃଦ୍ଧି ଓ ବିକାଶ ଏହି ଏକୀକରଣ ପ୍ରଣାଳୀର ଫଳ । ଉଦାହରଣ ସ୍ୱରୂପ :—କବିତା ଦେବା, ଫୁଟ୍‌ବଲ୍ ଖେଳିବା କିମ୍ବା କୌଣସି କାର୍ଯ୍ୟ କରିବାକୁ ଗୋଟିଏ ଲେଖାଏଁ ପ୍ରକ୍ରିୟା ରୂପେ ଧରି ନିଆଗଲା । ଏ ସମସ୍ତ ଗୋଟିଏ ଗୋଟିଏ ଏକୀଭୂତ (Integrated) ପ୍ରକ୍ରିୟା । ଅନେକ ମୌଳିକ ଦକ୍ଷତା ଏକତ୍ର ହୋଇ ଏକଭୂତ ପ୍ରକ୍ରିୟାରୂପେ ବିବେଚିତ ହୁଅନ୍ତି । ଏଗୁଡ଼ିକ ମଧ୍ୟରେ ଦୈହିକ ଓ କେତେକ ମାନସିକ । ଉଦାହରଣ ସ୍ୱରୂପ :—ଗୋଟିଏ ଫୁଟ୍‌ବଲ୍ ଖେଳାଳୀ ଖେଳିବା ସମୟରେ ଶାରୀରିକ ଶକ୍ତି, ମାନସିକ ଅବସ୍ଥା, ମନର ଆବେଗ, ବୁଦ୍ଧିମତ୍ତା ଇତ୍ୟାଦିର ଏକୀକରଣ ଦ୍ୱାରା ଜଣେ ଉଦୀୟମାନ ଖେଳାଳୀ ରୂପେ ପ୍ରତିଷ୍ଠିତ ହୋଇପାରେ । ଏପରିରୂପ ସମନ୍ୱୟ ଦ୍ୱାରା ଲକ୍ଷ୍ୟ ହାସଲ ହୋଇପାରିଥାଏ । ସମନ୍ୱୟ ବ୍ୟତିରେକେ ଯୋଗ୍ୟତା ପ୍ରତିପାଦିତ ହେବା ଅସମ୍ଭବ । ବିକାଶ ଉଭୟ ଭେଦୀକରଣ ଓ ଏକୀକରଣ ପ୍ରକ୍ରିୟା ଉପରେ ନିର୍ଭର କରିଥାଏ । ତେଣୁ ପ୍ରଚଳିତ ଶିକ୍ଷା ପ୍ରଣାଳୀରେ ଏହି ପ୍ରକ୍ରିୟାକୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦେବା ନିହାତି ଆବଶ୍ୟକ । ଉପରୋକ୍ତ ଆଲୋଚନାରୁ ଏହା ସ୍ପଷ୍ଟ ଯେ ବୃଦ୍ଧି ଓ ବିକାଶରେ ଭେଦୀକରଣ ଓ ଏକୀକରଣ ପ୍ରକ୍ରିୟା ଉଭୟର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

୭ । ତାଲିମର ପ୍ରଭାବ ବୟଃପ୍ରାପ୍ତିର ପର୍ଯ୍ୟାୟ ସହିତ ପରିବର୍ତ୍ତିତ ହୁଏ—ପୂର୍ଣ୍ଣତାପ୍ରାପ୍ତି ବ୍ୟତିରେକେ ବ୍ୟକ୍ତି କୌଣସି ଶିକ୍ଷା ଫଳପ୍ରଦ ଭାବେ ଗ୍ରହଣ କରିପାରେ ନାହିଁ । ତାଲିମ୍ ଏବଂ ଦକ୍ଷତା ମଧ୍ୟ ହାସଲ କରିପାରେ ନାହିଁ । ଉଦାହରଣ ସ୍ୱରୂପ :—ଏ ସମ୍ପର୍କରେ ପରୀକ୍ଷା କରିବାକୁ ଯାଇ ଦୁଇଟି ଶିଶୁଙ୍କୁ ପୃଥକ୍ ପୃଥକ୍ ରଖି ଗୋଟିଏ ଶିଶୁକୁ ଗୁରୁଣ୍ଡିବା ନିମନ୍ତେ ତାଲିମ ଦେବାକୁ ହେବ ଓ ଅନ୍ୟ ଶିଶୁଟିକୁ ତାଲିମ୍ ଦିଆଯିବ ନାହିଁ । ମାତ୍ର ପରେ ପରୀକ୍ଷଣରୁ ସ୍ପଷ୍ଟ ଜଣାଯିବ ଯେ, ପୂର୍ଣ୍ଣତା ପ୍ରାପ୍ତି

ପରେ ହିଁ ଉଭୟ ଶିଶୁ (ତାଲିମ ପ୍ରାପ୍ତ ଓ ତାଲିମ ଅପ୍ରାପ୍ତ) ଏକ ସମୟରେ ଗୁରୁଣ୍ଡିବାକୁ ଆରମ୍ଭ କରିବେ । କାରଣ, ପୂର୍ଣ୍ଣତା ପ୍ରାପ୍ତି ବ୍ୟତିରେକେ ତାଲିମ ଦ୍ୱାରା ଶିଶୁର ପୂର୍ଣ୍ଣତା ବା ବୟଃପ୍ରାପ୍ତି ପୂର୍ବରୁ ବିଭିନ୍ନ ତାଲିମ ଦ୍ୱାରା ଦକ୍ଷତା ବୃଦ୍ଧି ହେବାରେ ପ୍ରୟାସୀ ହୋଇଥାଏ ମାତ୍ର ଏହା ବୃଥା ହୋଇଥାଏ ।

ମାତ୍ର ଉପଯୁକ୍ତ ସମୟରେ ତାଲିମ ଦେଲେ ଏହା ଫଳପ୍ରଦ ହୋଇଥାଏ । ଉପଯୁକ୍ତ ସମୟରେ ତାଲିମ ଦିଆଯିବା ଦ୍ୱାରା ଶିକ୍ଷକ ଓ ଶିକ୍ଷାର୍ଥୀ ସମସ୍ତେ ବିଫଳତା ଓ ନୈରାଶ୍ୟଜନକ ବ୍ୟାଧିରୁ ରକ୍ଷା ପାଇ ପାରିଥାନ୍ତି । ସାଧାରଣତଃ ମାନସିକ ବୟସ ପାଞ୍ଚ ଥିବା ସମୟରେ ଶିଶୁମାନଙ୍କର ପଢ଼ିବାର ଶକ୍ତି ସନ୍ତୋଷଜନକ ହୋଇପାରି ନଥାଏ । ମାତ୍ର ମାନସିକ ବୟସ ଛଅ ବା ଅଧିକ ହେଲେ ଏହା ସନ୍ତୋଷଜନକ ହୋଇଥାଏ ବୋଲି ଗବେଷଣା ଦ୍ୱାରା ଜଣାପଡ଼ିଅଛି । ଏହି କାରଣରୁ ଶିକ୍ଷଣ ପ୍ରଣାଳୀ ଓ ପାଠ୍ୟକ୍ରମ ପ୍ରସ୍ତୁତିକରଣ ସମୟରେ ଶିଶୁର ପରିପକ୍ୱତା ତଥା ପୂର୍ଣ୍ଣତାପ୍ରାପ୍ତିକୁ ଦୃଷ୍ଟି ପଥରେ ରଖିବା ନିହାତି ଆବଶ୍ୟକ ହୋଇଥାଏ ।

୮ । **ବୃଦ୍ଧି ପ୍ରକ୍ରିୟାରେ ବହୁଳଭାବେ ବ୍ୟକ୍ତିଗତ ତାରତମ୍ୟ ପରିଲକ୍ଷିତ ହୁଏ**—ବ୍ୟକ୍ତିର ବୃଦ୍ଧି ହାରରେ ଯେ କେବଳ ତାରତମ୍ୟ ପରିଲକ୍ଷିତ ହୁଏ ତା' ନୁହେଁ, ବୃଦ୍ଧି ପ୍ରକ୍ରିୟାରେ ମଧ୍ୟ ଏପ୍ରକାର ତାରତମ୍ୟ ପରିଦୃଷ୍ଟ ହୁଏ । ଦୁଇଟି ଶିଶୁଙ୍କର ହସ୍ତାକ୍ଷର ବା ପଠନ ଦକ୍ଷତା କେବେହେଲେ ବି ସମାନ ହେବ ନାହିଁ । ଯେତେବେଳେ ଗୋଟିଏ ଗୁଣକୁ ନେଇ ପୃଥକୀକରଣ କାର୍ଯ୍ୟ କରାଯାଏ, ସେତେବେଳେ ସେହି ନିୟମକୁ ବଦଳାଇ ଦେବା ବିଧେୟ । ସେ ଦୃଷ୍ଟିରୁ ଗୋଟିଏ ଶ୍ରେଣୀରୁ ଅନ୍ୟ ଶ୍ରେଣୀକୁ ଛାତ୍ରଛାତ୍ରୀ-ମାନଙ୍କୁ ଉତ୍ତୀର୍ଣ୍ଣ କଲାବେଳେ କଠୋର ପୃଥକୀକରଣ ବ୍ୟବସ୍ଥା ଗ୍ରହଣ କରାଯିବା ଅନୁଚିତ୍ । ବୃଦ୍ଧି ପ୍ରକ୍ରିୟାରେ ଅଧିକ ମାତ୍ରାରେ ବ୍ୟକ୍ତିଗତ ତାରତମ୍ୟ ପରିଲକ୍ଷିତ ହେଉଥିବାରୁ ସମସ୍ତ ଶିଶୁଙ୍କୁ ଏକପ୍ରକାର କାର୍ଯ୍ୟ କରିବା ପାଇଁ ନିର୍ଦ୍ଦେଶ ଦେବା ଏବଂ ସେମାନଙ୍କଠାରୁ ଏକପ୍ରକାର ମାନଦଣ୍ଡ ଆଶାକରିବା ଅନୁଚିତ୍ ।

୯ । ବିକାଶ ସମୟ ସାପେକ୍ଷ ଅଟେ । ଶିଶୁର ବୃଦ୍ଧି ସଙ୍ଗେ ସଙ୍ଗେ ତା'ର ବ୍ୟବହାର ଅଧିକ ରୁଚିସମ୍ପନ୍ନ ହୋଇଥାଏ । କିନ୍ତୁ ତାର କାର୍ଯ୍ୟାବଳୀର ଶୋଧନ ଓ ସ୍ୱୟଂସ୍ଥିତକୁ ଆସିବାପାଇଁ ବହୁତ ସମୟ ଓ ଅଭ୍ୟାସ ଆବଶ୍ୟକ ହୁଏ ।

୧୦ । ବ୍ୟକ୍ତିର ଭବିଷ୍ୟତ ବିକାଶ ଜାଣିହୁଏ । ପ୍ରତ୍ୟେକ ଶିଶୁର ପରିହାର ପ୍ରାୟ ସ୍ଥିର ରହିଥାଏ । ଫଳରେ ଅଠକମ୍ ବୟସରେ ଶିଶୁର ସମ୍ପୂର୍ଣ୍ଣତା ପ୍ରାପ୍ତି ନିମିତ୍ତ ବିକାଶ ସମ୍ପର୍କରେ ଆଗରୁ ନିର୍ଦ୍ଧାରିତ କରିହୁଏ । ମାତ୍ର ମାନସିକ ବୃଦ୍ଧି ସମ୍ପର୍କରେ ଓ

ଅନ୍ୟ କେତେକ ବିକାଶ ସମ୍ପର୍କରେ ଏହି ମାତ୍ରାରେ ନିର୍ଦ୍ଧାରିତ କରିହୁଏ ନାହିଁ । ମାତ୍ର ଏକ ସାଧାରଣ ପରିସର ମାନସିକ ବିକାଶ ରହିଥିବା ଶିଶୁମାନଙ୍କ ସମ୍ପର୍କରେ ଆଗରୁ ଜାଣିବା ସହଜସାଧ୍ୟ ; କିନ୍ତୁ ଏଥିରେ ସମୟେ ସମୟେ ବ୍ୟତିକ୍ରମ ପରିଲକ୍ଷିତ ହୋଇଥାଏ । ସାଧାରଣ ସ୍ତରରେ ମାନସିକ ବିକାଶ ରହିଥିବା ଶିଶୁମାନଙ୍କଠାରୁ ଯେଉଁମାନେ ବ୍ୟତିକ୍ରମ, ସେହିମାନଙ୍କ କ୍ଷେତ୍ରରେ ଏ ପ୍ରକାର ଅସୁବିଧା ଦୃଷ୍ଟିଗୋଚର ହୁଏ ।

ଶିଶୁର ବୃଦ୍ଧି ଓ ବିକାଶ କ୍ଷେତ୍ରରେ ପାରିପାର୍ଶ୍ୱିକ ଅବସ୍ଥା ଓ ବଂଶାନୁଗୁଣର ପ୍ରଭାବ ପରିଦୃଷ୍ଟ ହୋଇଥାଏ । ଏହି ପ୍ରଣାଳୀର କାର୍ଯ୍ୟକାରିତା ସମୟରେ ଶିଶୁ ନିଷ୍କ୍ରିୟ ହୋଇ ନରହି ସକ୍ରିୟ ଅଂଶ ଗ୍ରହଣ କରିଥାଏ । ସେ ତା'ର ପରିବେଶରୁ ଭବିଷ୍ୟତକୁ ଦୃଷ୍ଟିପଥରେ ରଖି ନିଜ ଅଭିରୁଚି ଓ ପସନ୍ଦ ମୁତାବକ କାର୍ଯ୍ୟ ପନ୍ଥା ଗ୍ରହଣ କରିଥାଏ ।

**ବୃଦ୍ଧି ଓ ବିକାଶକୁ ବଳପୂର୍ବକ ଗତିଶୀଳ କରାଇବା ଅସମ୍ଭବ :** ଅନେକ ଶିକ୍ଷାବିତ୍ ବିଶ୍ୱାସ କରନ୍ତି ଯେ, ଶିଶୁକୁ ଅନୁକୂଳ ପରିବେଶ ମଧ୍ୟରେ ରଖିବାଦ୍ୱାରା ତା'ର ବୃଦ୍ଧି ଓ ବିକାଶ ଅଧିକ କ୍ଷିପ୍ର ହୋଇଥାଏ । ସେମାନଙ୍କ ମତାନୁଯାୟୀ ଉତ୍ତମ ଖାଦ୍ୟ, ଉତ୍ତମ ବସ୍ତ୍ର, ଖେଳପାଇଁ ସୁବିଧା, ରୋଗ ନିରାକରଣ ପଦ୍ଧତି ଯୋଗାଇବା ଦ୍ୱାରା ଶିଶୁର ବୃଦ୍ଧି ଓ ବିକାଶ ପ୍ରାପ୍ତି ହୋଇଥାଏ । ଏସବୁ ଅନୁକୂଳ ପରିବେଶ ଓ ପରିସ୍ଥିତି ଶିଶୁର ବୃଦ୍ଧି ଓ ବିକାଶ କ୍ଷେତ୍ରରେ ସହାୟକ ହୋଇଥାଏ ସତ; ମାତ୍ର ଏହା କହିବା ବାହୁଲ୍ୟ ଯେ ଏପରି କାର୍ଯ୍ୟ ଦ୍ୱାରା ଶିଶୁର ବୃଦ୍ଧି ଓ ବିକାଶକୁ ବଳପୂର୍ବକ ଗତିଶୀଳ କରାଯାଇପାରେ ।

ଶିଶୁର ବୃଦ୍ଧି ଓ ବିକାଶ ସ୍ୱୟଂସମ୍ପୂର୍ଣ୍ଣ । ବିଶିଷ୍ଟ ଶିକ୍ଷାବିତ୍ ବିନେଟ୍ ଓ ଅନ୍ୟମାନେ ମତପୋଷଣ କରନ୍ତି ଯେ ବୃଦ୍ଧିର ବିକାଶ, ସାମାଜିକ ବିକାଶ ତଥା ଶିଶୁର ସର୍ବବିଧ ବିକାଶ ନିମିତ୍ତ ଅନୁକୂଳ ପାରିପାର୍ଶ୍ୱିକ ଅବସ୍ଥା ନିହାତି ଆବଶ୍ୟକ । ତେବେ ଏହା ସାଧାରଣ ବୃଦ୍ଧିରେ ସାହାଯ୍ୟ କରିଥାଏ । ଏହାକୁ ବଳପୂର୍ବକ ସଂଗଠିତ କରାଇବା ଅସମ୍ଭବ ।

**ବୃଦ୍ଧି ଓ ବିକାଶର ଲକ୍ଷଣ ଏବଂ ଶିକ୍ଷା :** ଶିକ୍ଷା ହିଁ ବୃଦ୍ଧି । ଶିଶୁର ସମସ୍ତ ଅନ୍ତର୍ନିହିତ ଗୁଣାବଳୀ ସମ୍ପର୍କରେ ଯଥାସମ୍ଭବ ଜାଣିବା ହିଁ ଶିକ୍ଷାର ଲକ୍ଷ୍ୟ । ଏହି ଦୃଷ୍ଟିରୁ ଶିକ୍ଷକ ଏବଂ ଅଭିଭାବକମାନେ ଶିଶୁର ପ୍ରବୃତ୍ତି ଓ ଅନ୍ତର୍ନିହିତ ଗୁଣରାଜି ସମ୍ପର୍କରେ ଅବଗତ ହେବା ଆବଶ୍ୟକ । ଏହି ଜ୍ଞାନ ଦ୍ୱାରା ସେମାନେ ଶିଶୁର ଚରମ ଉନ୍ନତି ତଥା ବୃଦ୍ଧିପାଇଁ ଆବଶ୍ୟକୀୟ ସୁବିଧା ଏବଂ ପାରିପାର୍ଶ୍ୱିକ ପରିବେଶ ଯୋଗାଇ ଦେବା ଉଚିତ୍ । ଏତଦ୍ ବ୍ୟତୀତ ସେମାନଙ୍କର ବ୍ୟବହାର ସାହାଯ୍ୟକାରୀ । ଉତ୍ସାହପ୍ରଦ ଏବଂ ଦାୟିତ୍ୱଯୁକ୍ତ ହେବା ବିଧେୟ ।

ବିଦ୍ୟାଳୟର କାର୍ଯ୍ୟସୂଚୀ, ପ୍ରଣାଳୀ ଏବଂ ଅଭ୍ୟାସ ସଗଠିତ ହେବାବେଳେ ଶିଶୁମାନଙ୍କର ବୃଦ୍ଧି ସହିତ ସ୍ଥିରୀକରଣ ଏବଂ ସମ୍ପୂର୍ଣ୍ଣତା ପ୍ରାପ୍ତି ସ୍ତର ସମ୍ପର୍କରେ ଶିକ୍ଷକ ଦୃଷ୍ଟି ଦେବା ଉଚିତ୍ । କାରଣ ପ୍ରତ୍ୟେକ ବ୍ୟକ୍ତି ମଧ୍ୟରେ ଏହି ବୃଦ୍ଧି ହାରରେ ତାରତମ୍ୟ ଦେଖାଯାଏ ବୃଦ୍ଧିର ବିଭିନ୍ନ ଅବସ୍ଥା ପରିସ୍ଥିତ ସମ୍ବନ୍ଧିତ ହେତୁ ଶିକ୍ଷକ ଓ ଅଭିଭାବକମାନେ ସମସ୍ତ ଅବସ୍ଥାପ୍ରତି ଦୃଷ୍ଟି ଦେବା ଉଚିତ୍ । ଉଦାହରଣ ସ୍ୱରୂପ :--ବିଭିନ୍ନ ପ୍ରକାର କ୍ରୀଡ଼ା ଓ ପ୍ରତିଯୋଗିତା ମାଧ୍ୟମରେ ଉତ୍ତମ ଶାରୀରିକ ବୃଦ୍ଧି ଓ ବୃଦ୍ଧିର ବିକାଶ ଫଳପ୍ରଦ ହୋଇଥାଏ । ମାତ୍ର ଅସାର ଖାଦ୍ୟ ମଧ୍ୟ ବିକାଶଦିଗରେ ଅନ୍ତରାୟ ହୋଇଥାଏ । ତେଣୁ ଛାତ୍ରଛାତ୍ରୀମାନଙ୍କୁ ସୁଷମ ଖାଦ୍ୟ ଖାଇବାରେ ଅଭ୍ୟସ୍ତ କରାଇବା ପାଇଁ ଶିକ୍ଷକ ଓ ଅଭିଭାବକମାନେ ସହଯୋଗୀ ମନୋଭାବ ପୋଷଣ କରିବା ନିହାତି ଆବଶ୍ୟକ ।

ବିକାଶର ଲକ୍ଷଣରୁ ଆମେ ବ୍ୟକ୍ତିଗତ ତାରତମ୍ୟ ଏବଂ ମନୁଷ୍ୟ ଜୀବନର ବିଭିନ୍ନ ପର୍ଯ୍ୟାୟ ମଧ୍ୟରେ ବିଭେଦ ସଂପର୍କରେ ଜାଣିଥାଉ । ଏ ଦୃଷ୍ଟିରୁ ଶିଶୁର ନିର୍ଦ୍ଦିଷ୍ଟ ପ୍ରତିଭା, ଗୁଣାବଳୀ ଏବଂ ଆଗ୍ରହ ଇତ୍ୟାଦିର ବୃଦ୍ଧି ପାଇଁ ବିଭିନ୍ନ ବିଷୟବସ୍ତୁକୁ ପାଠ୍ୟକ୍ରମ ଅନ୍ତର୍ଭୁକ୍ତ କରିବା ବିଧେୟ । ଏଥି ନିମିତ୍ତ ବିଭିନ୍ନ ପ୍ରକାର ସହପାଠ୍ୟକ୍ରମ ମଧ୍ୟ କାର୍ଯ୍ୟସୂଚୀ ମଧ୍ୟରେ ଅନ୍ତର୍ଭୁକ୍ତ ହେବା ଆବଶ୍ୟକ । ସେହିପରି ପାଠ୍ୟକ୍ରମଗତ କାର୍ଯ୍ୟାବଳୀ ମଧ୍ୟ ବିଭିନ୍ନ ପର୍ଯ୍ୟାୟରେ ଶିଶୁର ଆଗ୍ରହ ଓ ଆବଶ୍ୟକତାକୁ ଦୃଷ୍ଟି ପଥରେ ରଖି ସଗଠିତ ହେବା ଉଚିତ୍ ।

ବୃଦ୍ଧିର ପ୍ରତ୍ୟେକ ପର୍ଯ୍ୟାୟ ସୀମାବଦ୍ଧ । ତେଣୁ ଶିକ୍ଷକ ଓ ଅଭିଭାବକମାନେ ଶିଶୁଠାରୁ ଅଧିକ ଆଶା କରିବା ନିରର୍ଥକ । କାରଣ ଏହା ବୃଦ୍ଧିର ପର୍ଯ୍ୟାୟ ବହିର୍ଭୂତ । ଏପରି କଲେ ଶିଶୁମାନଙ୍କଠାରେ ଅଯଥା ଭୟ, ନୈରାଶ୍ୟବାଦ ଏବଂ ପ୍ରସାରଣଶୀଳ ମନୋଭାବ ବୃଦ୍ଧି ହୁଏ । ଉଦାହରଣ ସ୍ୱରୂପ—ଗୋଟିଏ ପ୍ରାଥମିକ ଶିଶୁଠାରୁ ଏକ ଜଟିଳ ବିଦ୍ୟା ଶିକ୍ଷା ଆଶାକରିବା ଅନୁଚିତ । ପ୍ରତ୍ୟେକ ଶିଶୁର ବୃଦ୍ଧି ଓ ବିକାଶରେ ସ୍ୱାତନ୍ତ୍ର୍ୟତା ଥିବାରୁ ସେମାନଙ୍କର ସ୍ୱତନ୍ତ୍ର ଆବଶ୍ୟକତା ଓ ଆଗ୍ରହକୁ ଦୃଷ୍ଟି ପଥରେ ରଖି ସେମାନଙ୍କର ଶିକ୍ଷା ସମ୍ବନ୍ଧୀୟ ଆବଶ୍ୟକତାଗୁଡ଼ିକୁ ପୂରଣ କରିବା ନିହାତି ଆବଶ୍ୟକ । ଏ ପ୍ରକାର ଜ୍ଞାନାଭାବ ଯୋଗୁଁ ଅଧୁନା ଶିକ୍ଷା ଆଶାନୁରୂପ ଫଳ ପ୍ରଦାନ କରିବାରେ ଅସମର୍ଥ ହୋଇ-ପଡ଼ୁଛି । ଏ ଦୃଷ୍ଟିରୁ ବୃଦ୍ଧି ଓ ବିକାଶ ସମ୍ପର୍କରେ ପ୍ରତ୍ୟେକ ଶିକ୍ଷକଙ୍କର ଆବଶ୍ୟକୀୟ ଜ୍ଞାନ ରହିବା ଆବଶ୍ୟକ ଓ ଶ୍ରେଣୀ ପରିପ୍ରେକ୍ଷୀରେ ଉକ୍ତ ଜ୍ଞାନର ଉପଯୁକ୍ତ ବିନିମୟ ହେବା ବିଧେୟ ।

●

# ତୃତୀୟ ଅଧ୍ୟାୟ

## ବଂଶାନୁଗୁଣ ଓ ପରିବେଷ୍ଟନୀ

## (Heredity and Environment)

ଶିଶୁର ବିକାଶ କ୍ଷେତ୍ରରେ ବଂଶାନୁଗୁଣର ଭୂମିକା ଯଥେଷ୍ଟ ବେଶି । ତେଣୁ ବଂଶାନୁଗୁଣ କ'ଣ ଏବଂ ଏହା କିପରି ଶିଶୁର ବିକାଶକୁ ପ୍ରଭାବିତ କରେ ତାହା ଜାଣିବା ଏକାନ୍ତ ଆବଶ୍ୟକ । ପାରିପାର୍ଶ୍ୱିକ ପରିବେଷ୍ଟନୀକୁ ମଧ୍ୟ ଅଧିକ ଗୁରୁତ୍ୱ ଦିଆଯାଇଛି । କାରଣ ବ୍ୟକ୍ତିର ଅନ୍ତର୍ନିହିତ ତଥା ଉତ୍ତରାଧିକାର ଗୁଣାବଳୀ କେବଳ ଅନୁକୂଳ ବାତାବରଣ ମଧ୍ୟରେ ସମ୍ପୂର୍ଣ୍ଣ ଭାବେ ବିକଶିତ ହୁଏ ଓ ଅନୁଭୂତ ହୁଏ । ଶିକ୍ଷା ଦୃଷ୍ଟିକୋଣରୁ ଉଭୟ ବଂଶାନୁଗୁଣ ଏବଂ ପରିବେଷ୍ଟନୀ ଶିଶୁର ବିକାଶ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି । ତେଣୁ ଏହା ଶିକ୍ଷା-ମନୋବିଜ୍ଞାନର ଏକ ପ୍ରଧାନ ଆଲୋଚ୍ୟ ବିଷୟ ରୂପେ ଗୃହୀତ ହୋଇଅଛି ।

ଶିଶୁର ସର୍ବାଙ୍ଗୀଣ ବୃଦ୍ଧି ଉଭୟ ବଂଶାନୁଗୁଣ ଏବଂ ପରିବେଷ୍ଟନୀର ପ୍ରଭାବ ଯୋଗୁଁ ସଙ୍ଗଠିତ ହୋଇଥାଏ । ତେବେ ଏ ସମ୍ବନ୍ଧରେ ମନସ୍ତତ୍ତ୍ୱବିଦ୍‌ମାନଙ୍କ ମଧ୍ୟରେ ଦ୍ୱିମତ ପରିଦୃଷ୍ଟ ହୁଏ । ଗୋଟିଏ ଗୋଷ୍ଠୀ ବଂଶାନୁଗୁଣ (Heredity) ଉପରେ ପ୍ରାଧାନ୍ୟ ଆରୋପ କରୁଥିବା ବେଳେ ଅନ୍ୟଗୋଷ୍ଠୀ ମତପ୍ରଦାନ କରନ୍ତି ଯେ ବ୍ୟକ୍ତିତ୍ୱର ବିକାଶ ନିମିତ୍ତ ପରିବେଷ୍ଟନୀ (Environment) ସମ୍ପୂର୍ଣ୍ଣଭାବେ ଦାୟୀ । ବଂଶାନୁଗୁଣକୁ ପ୍ରାଧାନ୍ୟ ଦେଉଥିବା ଗୋଷ୍ଠୀର ମତାନୁଯାୟୀ ଶିଶୁ ଯେଉଁସବୁ ବୃତ୍ତି ଓ ପ୍ରଲକ୍ଷଣ ନେଇ ମାତୃଗର୍ଭରୁ ଜନ୍ମଲାଭ କରେ ସେଗୁଡ଼ିକ ଅପରିବର୍ତ୍ତନୀୟ ରହେ । ଶିଶୁର ସମସ୍ତ ବିକାଶ ଉକ୍ତ ଜନ୍ମଗତ ବା ବଂଶାନୁଗୁଣ ସୂତ୍ରେ ପ୍ରାପ୍ତ ଉପାଦାନ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ମାତ୍ର ପରିବେଷ୍ଟନୀକୁ ଗୁରୁତ୍ୱ ଦେଉଥିବା ଗୋଷ୍ଠୀର ମତାନୁଯାୟୀ ଶିଶୁର ବିକାଶ ପାଇଁ ତା'ର ପାରିପାର୍ଶ୍ୱିକ ପରିବେଷ୍ଟନୀ ମୂଳତଃ ଦାୟୀ । ଉଭୟ ବଂଶାନୁଗୁଣ ଓ ପରିବେଷ୍ଟନୀ ସମ୍ପର୍କରେ ନିମ୍ନରେ ଆଲୋଚନା କରାଗଲା ।

## ବଂଶାନୁଗୁଣ (Heredity)

ସାଧାରଣତଃ ଉପାଦାନ ଓ ଅଣୁ (genes) ମାଧ୍ୟମରେ ପୂର୍ବପୁରୁଷଙ୍କ ଅନ୍ତର୍ନିହିତ ଗୁଣାବଳୀର ସନ୍ତାନସନ୍ତତିଙ୍କ ପାଖକୁ ପ୍ରେରଣ କରାଯିବା ବ୍ୟବସ୍ଥାକୁ ବଂଶାନୁଗୁଣ ରୂପେ ଅଭିହିତ କରାଯାଏ । ଅର୍ଥାତ୍, ଶିଶୁ ଉକ୍ତ ଉପାଦାନ ଅଣୁ ମାଧ୍ୟମରେ ତା'ର ପୂର୍ବପୁରୁଷଙ୍କ ଗୁଣାବଳୀକୁ ନେଇ ଜନ୍ମଲାଭ କରିଥାଏ ।

ମନସ୍ତାତ୍ତ୍ୱିକ ଇତିହାସର ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ ଯେ, ପୂର୍ବେ ଶିଶୁର ଜନ୍ମ ପୂର୍ବାବସ୍ଥା ସମ୍ପର୍କରେ କୌଣସି ଗବେଷଣା ବା ଆଲୋଚନା କରାଯାଇ ନଥିଲା । ଜନ୍ମ ପୂର୍ବାବସ୍ଥାକୁ ଉପେକ୍ଷା କରି କେବଳ ଜନ୍ମ ପରବସ୍ଥା ସମ୍ପର୍କରେ ଆଲୋଚନା କରାଯାଉଥିଲା । ଏହା ଫଳରେ ବଂଶାନୁଗୁଣ ସମ୍ପର୍କରେ ପୂର୍ଣ୍ଣ ଭାବରେ ଜ୍ଞାନଲାଭ କରିବା ସମ୍ଭବ ହେଉ ନଥିଲା । ପ୍ରେକ୍ଷାଳୟରେ କୌଣସି ଚଳଚ୍ଚିତ୍ରକୁ ଅଧାରୁ ଯାଇ ଦେଖିଲେ ଯେପରି କିଛି ବୁଝିହୁଏ ନାହିଁ ସେହିପରି ଶିଶୁର ଜନ୍ମ ପୂର୍ବାବସ୍ଥା ସମ୍ପର୍କରେ ନଜାଣି କେବଳ ଜନ୍ମ ପରବସ୍ଥା ସମ୍ପର୍କରେ ପଢ଼ିଲେ ତା'ର କୌଣସି ମୂଲ୍ୟ ନଥାଏ ଓ ତାହା ବୋଧଗମ୍ୟ ହୋଇ ନଥାଏ । ତେଣୁ ଅଧୁନା ମନସ୍ତତ୍ତ୍ୱବିତ୍‌ମାନେ ବଂଶାନୁଗୁଣର ପ୍ରଭାବ ସମ୍ପର୍କରେ ଆବଶ୍ୟକୀୟ ଜ୍ଞାନ ଆହରଣ ନିମିତ୍ତ ଉଭୟ ଜନ୍ମର ପୂର୍ବାବସ୍ଥା ଓ ପରାବସ୍ଥାକୁ ଗୁରୁତ୍ୱ ଦେଇଛନ୍ତି ।

## ଜୀବନ ଆରମ୍ଭ ହୁଏ କିପରି ?

ଗର୍ଭଧାରଣ ମୁହୂର୍ତ୍ତରୁହିଁ ଜୀବନ ଆରମ୍ଭ ହୁଏ । ଏହା ହେଉଛି ଏକ ମୁହୂର୍ତ୍ତ ଯେତେବେଳେ କି ଗୋଟିଏ ସ୍ତ୍ରୀର ପ୍ରଜନନକ୍ଷମ କୋଷ ବା ଡିମ୍ବାଣୁ (Ovum) ଗୋଟିଏ ପୁରୁଷର ପ୍ରଜନନକ୍ଷମ କୋଷ ବା ଶୁକ୍ରକୀଟ (Sperm) ଦ୍ୱାରା ଯୁଗ୍ମଜ (Fertilised) ହୋଇଥାଏ । ଜନ୍ମଲାଭ କରିବାର ପ୍ରାୟ ୨୮୦ ଦିନ ପୂର୍ବରୁ ମାତୃଗର୍ଭରେ ହିଁ ଶିଶୁର ଜୀବନ ଆରମ୍ଭ ହୋଇଥାଏ । ଜୀବନର ସୃଷ୍ଟି ପୂର୍ବରୁ ସ୍ତ୍ରୀ ଓ ପୁରୁଷର ପ୍ରଜନନକ୍ଷମ କୋଷ କେତେଗୁଡ଼ିଏ ପ୍ରସ୍ତୁତି ଦେଇ ଗତି କରିଥାଏ । ସ୍ତ୍ରୀ କୋଷଗୁଡ଼ିକ କ୍ଷେତ୍ରରେ ପ୍ରସ୍ତୁତ ମୁଖ୍ୟତଃ ତିନୋଟି ସ୍ତରଦେଇ ଗତି କରିଥାଏ । ସେଗୁଡ଼ିକ ହେଲା (୧) ପରିପକ୍ୱତା (Maturation) (୨) ଡିମ୍ବକୋଷ ସମ୍ବନ୍ଧୀୟ (Ovulation) ଏବଂ (୩) ଗର୍ଭଧାନ (Fertilization) । ପୁରୁଷ କୋଷଗୁଡ଼ିକ କ୍ଷେତ୍ରରେ ପ୍ରସ୍ତୁତିର ଦୁଇଗୋଟି ସ୍ତର ରହିଅଛି । ଯଥା (୧) ପରିପକ୍ୱତା (Maturation) ଏବଂ ଯୁଗ୍ମଜ ସମ୍ବନ୍ଧୀୟ (Fertilization) ।

## ପ୍ରଜନନକ୍ଷମ କୋଷଗୁଡ଼ିକର ପରିପକ୍ୱତା ( Maturation of Reproductive Cells) :

ଶିଶୁ କେଉଁ ଗୁଣାବଳୀ ନେଇ ଜନ୍ମ ଗ୍ରହଣ କରିବ ତାହା ଉକ୍ତ ପ୍ରଜନନକ୍ଷମ କୋଷଗୁଡ଼ିକର ପରିପକ୍ୱତା (ପ୍ରଥମ ପ୍ରସ୍ତୁତ ପ୍ରଣାଳୀ)ରୁ ହିଁ ଜଣାପଡ଼େ । ଏହା କୋଷ-ଗୁଡ଼ିକର ବିଭାଜନ ଦ୍ୱାରା କ୍ରୋମୋଜମ୍ (Chromosome)ର ସଂଖ୍ୟା ହ୍ରାସ ଉପରେ ନିର୍ଭର କରିଥାଏ । ପ୍ରତି ଲିଙ୍ଗକୋଷରେ (ଡିମ୍ବାଣୁ ହେଉବା ଶୁକ୍ରାଣୁ ହେଉ) ପରିପକ୍ୱତା ପ୍ରାପ୍ତି ପୂର୍ବରୁ ୨୩ ଯୋଡ଼ା କ୍ରୋମୋଜମ (Chromosome) ଥାନ୍ତି । କ୍ରୋମୋଜମ ହେଉଛି ବଂଶ ପ୍ରଲକ୍ଷଣର ବାହକ ବା (Careers of heredity) ସେଗୁଡ଼ିକ ଦେଖିବାକୁ ଠିକ୍ ସୂତାଭଳି ଏବଂ ପ୍ରତିଟି ମଧ୍ୟରେ ଅଣୁ ପ୍ରାୟ ଉତ୍ପାଦନ ଅଣୁ (genes) ଥାନ୍ତି । ଏହି ଉତ୍ପାଦନ ଅଣୁ ଏକ ବସ୍ତୁ ଯାହା ପିତାମାତାଙ୍କ ଠାରୁ ସନ୍ତାନ ସନ୍ତତି ପାଖକୁ ବଂଶ ପ୍ରଲକ୍ଷଣରେ ବାହକ ରୂପେ ପ୍ରବାହିତ ହୋଇଥାଏ ।

ପରିପକ୍ୱତା ପ୍ରଣାଳୀ ସମୟରେ, ପ୍ରତି କୋଷ ର କ୍ରୋମୋଜମ୍‌ଗୁଡ଼ିକ ନିଜେ ନିଜକୁ କୋଷସ୍ଥ ନିଉକ୍ଲିୟସର ବିପରୀତ ଦିଗରେ ଗୋଟିଏ ଗୋଟିଏ ଯୋଡ଼ାରେ ପ୍ରସ୍ତୁତ କରିଥାନ୍ତି । ପ୍ରତ୍ୟେକ ଯୋଡ଼ାରେ ମାତାଠାରୁ ଗୋଟିଏ କ୍ରୋମୋଜମ୍ (Chromosome) ଓ ପିତାଠାରୁ ଗୋଟିଏ କ୍ରୋମୋଜମ୍ ରହିଥାଏ । ଯେତେବେଳେ ଏହି ଯୋଡ଼ାଗୁଡ଼ିକ ବିଯୋଡ଼ା ହୁଅନ୍ତି । ଗୋଟିଏ କ୍ରୋମୋଜମ୍ ନୂତନଭାବେ ପ୍ରସ୍ତୁତ ହୋଇଥିବା କୋଷଗୁଡ଼ିକୁ ପ୍ରବେଶ କଲାବେଳେ ଅନ୍ୟ କ୍ରୋମୋଜମ୍‌ଟି ଅନ୍ୟକୋଷକୁ ଯାଇଥାଏ । ଏହାପରେ ପ୍ରସ୍ତୁତ ହୋଇଥିବା ଦୁଇଟି କୋଷ ପୁନର୍ବାର ବିଭକ୍ତ ହୋଇଥାନ୍ତି । ଜନ୍ତୁ ଏଥିରକ ଲମ୍ବାନୁଯାୟୀ ହୋଇଥିବାରୁ ପ୍ରକୃତ ସଂଖ୍ୟାର ଏକ ଦ୍ୱିତୀୟାଂଶ କ୍ରୋମୋଜମ୍ ଅଟକ ରହିଥାଏ । ପ୍ରକୃତ ଭାବରେ ବୁଝିବାକୁ ଗଲେ, ପରିପକ୍ୱ ପ୍ରଣାଳୀରେ ଅବଶେଷରେ ପ୍ରତ୍ୟେକ ଲିଙ୍ଗର ଚାରୋଟି ପରିପକ୍ୱ କୋଷଥାଏ ଏବଂ ପ୍ରତେକ ପରିପକ୍ୱ ଲିଙ୍ଗ କୋଷ ୨୩ଟି କ୍ରୋମୋଜମ୍‌କୁ ନେଇ ଗଠିତ ହୋଇଥାଏ । ପ୍ରତି ଶୁକ୍ରାଣୁ କୋଷ କ୍ଷେତ୍ରରେ ଉକ୍ତ ଚାରୋଟି ପରିପକ୍ୱ କୋଷ ମଧ୍ୟରୁ ପ୍ରତ୍ୟେକ ପ୍ରକୃତ କୋଷରୁ ଆସି ଗୋଟିଏ ଡିମ୍ବାଣୁ (Ovum) ପ୍ରଜନନକ୍ଷମ (Fertilizing) କରିବାକୁ ସକ୍ଷମ ହୋଇଥାନ୍ତି । ଅନ୍ୟ କ୍ଷେତ୍ରରେ ଡିମ୍ବକୋଷର କେବଳ ଗୋଟିଏ କୋଷ, ଯିଏ ଡିମ୍ବର ପୀତାଂଶକୁ ଅଧିକ ମାତ୍ରାରେ ଧରିରଖେ ବା ଅଟକ ରଖେ ସିଏ ଗର୍ଭାଧନ ପାଇଁ ସକ୍ଷମ ହୁଏ । ମାତ୍ର ଅନ୍ୟ ତିନୋଟି କୋଷ (The polar bodies) ଶୋଷିତ ଏବଂ ନିର୍ଗତ ହୋଇଥାନ୍ତି ।

ପରିପକ୍ୱ ପ୍ରଣାଳୀବେଳେ କପରି ଶୁକ୍ରାଣୁ କିମ୍ବା ଡିମ୍ବାଣୁର କ୍ରୋମୋଜମ୍ ଯୋଡ଼ା ବିଭକ୍ତ ହୁଅନ୍ତି । ସେ ସମ୍ପର୍କରେ ଏପର୍ଯ୍ୟନ୍ତ କୌଣସି ନିର୍ଦ୍ଦିଷ୍ଟ ବୈଜ୍ଞାନିକ ଜ୍ଞାନ ନଥିବାରୁ ଏହି ବିଭକ୍ତିକରଣ ଏକ ଆକସ୍ମିକ ଘଟଣା ରୂପେ ଗୃହୀତ ହୋଇଅଛି । ଉଦାହରଣ ସ୍ୱରୂପ, ଗୋଟିଏ କୋଷର ବିଭକ୍ତିକରଣ ସଙ୍ଗଠିତ ହେବାପରେ କୋଡ଼ିଏଟି କ୍ରୋମୋଜମ୍ ମହିଳାଠାରୁ ଓ ତିନୋଟି ପୁରୁଷଠାରୁ, କିମ୍ବା ୮ଟି ମହିଳାଠାରୁ ଏବଂ ୧୫ଟି ପୁରୁଷଠାରୁ ଏକତ୍ର ହୋଇପାରେ କିମ୍ବା ଅନ୍ୟ କୌଣସି ମିଶ୍ରଣ ହୋଇପାରେ । ଏହି କାରଣରୁ ଯେତେବେଳେ ଗୋଟିଏ କୋଷ ଅନ୍ୟ କୋଷ ସହିତ ଏକତ୍ରିତ ହୁଏ । ଯୁଗ୍ମକବେଳେ ଗୋଟିଏ ପରିବାରରୁ ଅନ୍ୟ ପରିବାର ଅପେକ୍ଷା ଅଧିକ ପ୍ରଲକ୍ଷଣ ଆଗତ ହେବା ସମ୍ଭବ । ଗୋଟିଏ ବଂଶର ପ୍ରଲକ୍ଷଣ କିଭଳି ଅନ୍ୟ ବଂଶର ପ୍ରଲକ୍ଷଣକୁ ଗଠନକରେ ତାହା ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ଅନୁମେୟ ।

## ସ୍ତ୍ରୀ ଡିମ୍ବାଣୁର ପ୍ରଜନନକ୍ଷମ କୋଷ (Ovulation of the female Reproductive Cell)

ଜୀବନ ଆରମ୍ଭର ଦ୍ୱିତୀୟ ପ୍ରସ୍ତୁତ ପର୍ଯ୍ୟାୟ କାର୍ଯ୍ୟ ଡିମ୍ବକୋଷ ସମ୍ବନ୍ଧୀୟ ଅଟେ । ଏହା ସ୍ତ୍ରୀର ପ୍ରଜନନକ୍ଷମ କୋଷ ବା ଡିମ୍ବାଣୁ (ovum) ମଧ୍ୟରେ ସୀମିତ । ଋତୁସ୍ରାବ ପର୍ଯ୍ୟାୟ ସମୟରେ ଗୋଟିଏ ପରିପକ୍ୱ ଡିମ୍ବାଣୁ ନିଷ୍କ୍ରାନ୍ତ ଲାଭ କରିବା ପ୍ରଣାଳୀକୁ ହିଁ ଡିମ୍ବକୋଷ ସମ୍ବନ୍ଧୀୟ କାର୍ଯ୍ୟ (ovulation) କୁହାଯାଏ । ଯଦି ଋତୁସ୍ରାବ ପର୍ଯ୍ୟାୟ ନିୟମିତ ଭାବେ ୨୮ ଦିନ ମଧ୍ୟରେ ହୁଏ ଉକ୍ତ ଡିମ୍ବକୋଷ ସମ୍ବନ୍ଧୀୟ କାର୍ଯ୍ୟ ୫ରୁ ୨୩ଦିନ ମଧ୍ୟରେ ସଙ୍ଗଠିତ ହୋଇଥାଏ । ହାରାହାରି ୧୧ଦିନ ମଧ୍ୟରେ ଏହି କାର୍ଯ୍ୟ ହୋଇଥାଏ । ସେ ଯାହାହେଉ ବିଭିନ୍ନ ସ୍ତ୍ରୀ ଲୋକମାନଙ୍କ କ୍ଷେତ୍ରରେ ବିଭିନ୍ନ ପରିଦୃଷ୍ଟ ହୁଏ । ଏପରିକି ଜଣେ ସ୍ତ୍ରୀ ବା ମହିଳାଙ୍କ କ୍ଷେତ୍ରରେ ମଧ୍ୟ କୌଣସି ନିର୍ଦ୍ଦିଷ୍ଟତା ନଥାଏ ।

## ଗର୍ଭାଧାନ (Fertilization)

ଶୁକ୍ରାଣୁ ଦ୍ୱାରା ଡିମ୍ବାଣୁର ଗର୍ଭାଧାନ ଅବସ୍ଥା ହିଁ ଜୀବନ ଆରମ୍ଭର ତୃତୀୟ ପ୍ରସ୍ତୁତ ପର୍ଯ୍ୟାୟ । ସାଧାରଣ ଗର୍ଭାଧାନରେ, ଡିମ୍ବାଣୁ ଫାଲୋପିଆନ୍ ଟିଉବ୍ (Fallopiontubes) ରେ ଗର୍ଭାଶୟଠାରୁ ଜରାୟୁ ମଧ୍ୟସ୍ଥ ଦ୍ୱାରାରେ ଥାଏ । ମୈଥୁନ କ୍ରିୟା ଫଳରେ ବହୁ ପରିମାଣରେ ପୁରୁଷର ଶୁକ୍ରାଣୁ ସ୍ତ୍ରୀର ଜରାୟୁ ମୁଖରେ ଜମା ହୋଇଯାଇ ଫାଲୋପିଆନ୍‌ଟିଉବ୍ ଅଭିମୁଖରେ ଗତିଶୀଳ ହୁଏ । ସେମାନେ ଡିମ୍ବାଣୁ ଆଡ଼କୁ ହରମୋନର ସ୍ରାବ ଫଳରେ ଆକର୍ଷିତ ହୁଅନ୍ତି । ଯାହାକି ସେଗୁଡ଼ିକୁ ଟିଉବ୍ ମଧ୍ୟକୁ ନେଇ ଯାଇଥାଏ । ଗୋଟିଏ ଶୁକ୍ରକୋଷ ଡିମ୍ବାଣୁ ମଧ୍ୟକୁ ପ୍ରବେଶ କଲାପରେ ଏଭଳି କ୍ରିୟା ହୁଏ । ଯାହା ଫଳରେ ଅନ୍ୟ କୌଣସି ଶୁକ୍ରାଣୁ ତା ମଧ୍ୟକୁ ପ୍ରବେଶ କରିପାରି ନଥାଏ । ଏହିପରି ଗୋଟିଏ ଶୁକ୍ରାଣୁ ସହିତ ମିଳିତ ହେଲାପରେ ଗର୍ଭାଧାନ

କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଥାଏ । ଏଭଳି ଯେଉଁ ନୂତନ କୋଷଟି ଗଠିତ ହୁଏ ସେଥିରେ ୨୩ ଯୋଡ଼ା କ୍ରୋମୋଜମ୍ (Chromosomes) ଥାଏ । ଯାହାର ଅର୍ଦ୍ଧେକ ପୁରୁଷ ଓ ଅନ୍ୟ ଅର୍ଦ୍ଧେକ ସ୍ତ୍ରୀ କୋଷରୁ ଆସିଥାଏ । ଶିଶୁ ପିତାମାତା ଦୁହିଁଙ୍କଠାରୁ ନୂତନ ସଂଯୋଗ ଅନୁସାରକ ଉତ୍ପାଦକ ଅଣୁ (Parental genes) ଗ୍ରହଣ କରିଥାଏ । ପିତାମାତା ସେମାନଙ୍କ ପିତାମାତାଙ୍କ ଠାରୁ ଯେଉଁ ଉତ୍ପାଦକ ଅଣୁ ଗ୍ରହଣ କରିଥାନ୍ତି ଏହାହିଁ ତାହା ଅଟେ । କେତେକ କ୍ରୋମୋଜମ୍ (Choromosomes) ଯାହାକୁ ଶିଶୁ ଉଭୟ ପିତାମାତାଙ୍କ ଠାରୁ ଗ୍ରହଣ କରିଥାଏ ତାହା ଉଭୟ କିମ୍ବା କୌଣସି ଗୋଟିଏ ପରିବାରରୁ ତଥା ପିତାମହ କିମ୍ବା ମାତାମହଙ୍କଠାରୁ ଆସିଥାଏ । ଏହା ଫଳରେ ଶିଶୁଠାରେ ଗୋଟିଏ ପିତାମାତା କିମ୍ବା ଉଭୟ ପିତାମାତାଙ୍କ ସଦୃଶ ଅନେକ ସାଧାରଣ ପ୍ରଲକ୍ଷଣ ଦେଖାଯାଏ । ଶିଶୁ କୌଣସି ଜଣେ ପିତାମହ କିମ୍ବା ପ୍ରପିତାମହଙ୍କ ଭଳି ହୋଇଥାଏ ।

## ବଂଶଗତ ପ୍ରକୃତି (Hereditary Endowment) :

ଗର୍ଭାଧାନ କ୍ରିୟା ସମ୍ପୂର୍ଣ୍ଣ ହେବାମାତ୍ରେ ଶିଶୁ ତା'ର ବଂଶଗତ ପ୍ରକୃତି ଲାଭ କରିଥାଏ । ଯେତେବେଳେ ଶୁକ୍ରାଣୁ ଡିମ୍ବାଣୁ ସହିତ ମିଳିତ ହେବା ମୁହୂର୍ତ୍ତରେ ହିଁ ଶିଶୁ ତା'ର ପିତାମାତା, ପିତାମହ ଓ ମାତାମହ ଏବଂ ଅନ୍ୟ ପୂର୍ବପୁରୁଷମାନଙ୍କଠାରୁ କ'ଣ ଗ୍ରହଣ କରିବେ ତାହା ସ୍ଥିରୀକୃତ ହୋଇଥାଏ । ଶିଶୁ ତା'ର ବଂଶଧରମାନଙ୍କଠାରୁ କେଉଁ ଗୁଣ ଗ୍ରହଣ କରିବ ତାହା ଏକ ଆକସ୍ମିକ ଘଟଣା । ଏ ସମ୍ପର୍କରେ ମତଦେବା କୌଣସି ମନସ୍ତତ୍ତ୍ୱବିଦ୍ କିମ୍ବା ବୈଜ୍ଞାନିକମାନଙ୍କ ପକ୍ଷରେ ସମ୍ଭବ ନୁହେଁ । ତେବେ ଏହା ସତ୍ୟ ଯେ, କୌଣସି ଏକ ନିର୍ଦ୍ଦିଷ୍ଟ ମନୁଷ୍ୟ ସୃଷ୍ଟି ପାଇଁ ଏକ ନିର୍ଦ୍ଦିଷ୍ଟ ଡିମ୍ବାଣୁ ଓ ଏକ ନିର୍ଦ୍ଦିଷ୍ଟ ଶୁକ୍ରାଣୁର ସଂଯୋଗ ଏକାନ୍ତ ଆବଶ୍ୟକ । ସହସ୍ର ସହସ୍ର ମନୁଷ୍ୟ ସୃଷ୍ଟି ମଧ୍ୟରୁ ଏପରି ଗୋଟିଏ ନିର୍ଦ୍ଦିଷ୍ଟ ମନୁଷ୍ୟ ସୃଷ୍ଟି କରିବା ସମ୍ଭବ ହୋଇପାରେ । ଗର୍ଭାଧାନ ପରେ ଯେତେ ଚେଷ୍ଟାକଲେ ମଧ୍ୟ ଶିଶୁର ପ୍ରକୃତିକୁ ପରିବର୍ତ୍ତିତ କରିବା ଅସମ୍ଭବ । ନିଜର ଉତ୍ତମ ସ୍ୱାସ୍ଥ୍ୟ ଓ ଉତ୍ତମ ମନୋଭାବଦ୍ୱାରା ମାତା ଜନ୍ମ ପୂର୍ବାବସ୍ଥାରେ ଏପରି ପାରିପାର୍ଶ୍ୱିକ ପରିବେଶ ସୃଷ୍ଟି କରିପାରିବେ ଯାହାଫଳରେ ଜନ୍ମ ହୋଇନଥିବା ଶିଶୁ ଉତ୍ପାଦକ ଅଣୁ କ୍ରମଶଃ ବୃଦ୍ଧି ହୋଇ ପାରିବ । ତେବେ ଚକ୍ଷୁର ରଙ୍ଗ ଓ ଚର୍ମର ବର୍ଣ୍ଣ ପାରିପାର୍ଶ୍ୱିକ ପରିବେଶ ଦ୍ୱାରା ପ୍ରରିବର୍ତ୍ତନ ଅସମ୍ଭବ ହୋଇଥାଏ । କିନ୍ତୁ ଶିଶୁର ଚରିତ୍ର ଓ ଅନ୍ୟାନ୍ୟ ଗୁଣାବଳୀ ପାରିପାର୍ଶ୍ୱିକ ପରିସ୍ଥିତି ଦ୍ୱାରା ପ୍ରଭାବିତ ହୋଇଥାଏ । ଉପରୋକ୍ତ ପର୍ଯ୍ୟାଲୋଚନାରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଅନୁକୂଳ ପାରିପାର୍ଶ୍ୱିକ ଅବସ୍ଥାରେ ଶିଶୁର ବଂଶଗତ ପ୍ରକୃତି ବିକଶିତ ହୋଇଥାଏ ଏବଂ ପ୍ରତିକୂଳ ବାତାବରଣରେ ଏହା କ୍ଷୁଣ୍ଣ ହୋଇଥାଏ । ମନୁଷ୍ୟ ଜୀବନରେ ବଂଶାନୁଗୁଣର ପ୍ରକ୍ରିୟା ସମ୍ପର୍କରେ ଆବଶ୍ୟକୀୟ ଜ୍ଞାନ ଓ ଧାରଣା ନିମିତ୍ତ ନିମ୍ନରେ ଚାରିଟିଏ ପ୍ରଦତ୍ତ ହେଲା ।

ଗର୍ଭଧାରଣ ସମୟରେ ପ୍ରତି ପୁରୁଷ ଓ ପ୍ରତି ସ୍ତ୍ରୀ ସେମାନଙ୍କଠାରୁ ୨୩ଟି କରି କ୍ରୋମଜମ୍ ଗ୍ରହଣ କରିଥାନ୍ତି । ସମୁଦାୟ ୪୬ ଟି ।



## ଯୌନ ନିର୍ଦ୍ଧାରଣ (Sex Determination) :

ସୁଦୀର୍ଘବ୍ୟାପୀ ଗବେଷଣା ପରେ ମଧ୍ୟ ଗର୍ଭାଧାନ ପରେ ଶିଶୁ ବାଳକ ହେବ କି ବାଳିକା ହେବ ତାହା ଜଣା ପଡ଼ୁନଥିଲା । ପିତାମାତାମାନେ ଭିନ୍ନ ଭିନ୍ନ ଢଙ୍ଗରେ କଳ୍ପନା ଜଳ୍ପନା କରୁଥିଲେ ମାତ୍ର ଗବେଷଣା ପରେ ଯୌନ ନିର୍ଦ୍ଧାରଣ ଏକ ପ୍ରଧାନ ବିଷୟରୂପେ ମନୋବିଜ୍ଞାନରେ ସ୍ଥାନ ପାଇଅଛି । କ୍ରୋମୋଜମ୍‌ର ଆବିଷ୍କାର ପରେ ଜଣାଗଲା ଯେ, ଯୌନ-ନିର୍ଦ୍ଧାରଣ ଏକ ଆଭ୍ୟନ୍ତରୀଣ ପ୍ରକ୍ରିୟା । ଏହା ଗର୍ଭାଧାନ ସମୟରେ ହିଁ ସଙ୍ଗଠିତ ବା ସ୍ଥିରୀକୃତ ହୋଇଥାଏ । ପରିପକ୍ୱତା ପ୍ରାପ୍ତ ଶୁକ୍ରାଣୁ ଯେଉଁ କ୍ରୋମୋଜମଗୁଡ଼ିକ ପ୍ରଦାନ କରେ । ସେଥିମଧ୍ୟରୁ ଗୋଟିଏ ଅନ୍ୟମାନଙ୍କଠାରୁ ଗୁଣ ଓ ଆକୃତିରେ ଭିନ୍ନ ହୋଇଥାଏ । ପରିପକ୍ୱ ଡିମ୍ବାଣୁ କ୍ଷେତ୍ରରେ ମଧ୍ୟ ଏହି ପ୍ରକ୍ରିୟା ସଙ୍ଗଠିତ ହୋଇଥାଏ । ଉକ୍ତ ଭିନ୍ନ ଭିନ୍ନ କ୍ରୋମୋଜମ୍ (chromosome) ଗୁଡ଼ିକ ଯୌନ କ୍ରୋମୋଜମ୍ (Sex chromosome) ରୂପେ ଅଭିହିତ କରାଯାଏ । ଏହାକୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରାଯାଇଥାଏ । ବଡ଼ଟିକୁ 'X' କ୍ରୋମୋଜମ୍ ବୋଲି ଏବଂ ଛୋଟଟିକୁ 'Y' କ୍ରୋମୋଜମ୍ ବୁଝାଯାଏ । ଏହା ଆକୃତିରେ 'X' କ୍ରୋମୋଜମର ଏକଚତୁର୍ଥାଂଶ । ପରିପକ୍ୱ ପୁରୁଷ ଜନନ କୋଷର ଅର୍ଦ୍ଧେକ 'X' କ୍ରୋମୋଜମ ଦ୍ୱାରା ଓ ଅନ୍ୟ ଅର୍ଦ୍ଧେକ 'Y' କ୍ରୋମୋଜମ ଦ୍ୱାରା ପରିବାହିତ ହୋଇଥାଏ । ଅନ୍ୟ ପକ୍ଷରେ, ସମସ୍ତ ପରିପକ୍ୱ ଡିମ୍ବକୋଷ ବା ସ୍ତ୍ରୀ ଜନନ କୋଷ 'X' କ୍ରୋମୋଜମ ପରିବହନ କରିଥାନ୍ତି । ଏହାପରେ ଯେ କୌଣସି ପରିପକ୍ୱ ଡିମ୍ବାଣୁ (Fertilised ovum)ରେ କେବଳ ଗୋଟିଏ 'X' କ୍ରୋମୋଜମ୍ ସ୍ତ୍ରୀ ଜନନ କୋଷରୁ ଥାଏ ଏବଂ ଗୋଟିଏ 'X' କିମ୍ବା 'Y' କ୍ରୋମୋଜମ୍ ପୁରୁଷ କୋଷରୁ ଥାଏ । ଯଦି ଡିମ୍ବାଣୁ ସହିତ ଏକତ୍ର ହୋଇଥିବା ଶୁକ୍ରାଣୁ 'Y' କ୍ରୋମୋଜମ୍ ହୋଇଥାଏ, ତାର ଫଳ 'XY' ଯୌନ କ୍ରୋମୋଜମ୍‌ର ମିଳନ ହେବ । ଏ କ୍ଷେତ୍ରରେ ଶିଶୁଟି ସର୍ବଦା ପୁତ୍ର ସନ୍ତାନ ହୋଇଥାଏ । ମାତ୍ର ଶୁକ୍ରାଣୁର 'X' କ୍ରୋମୋଜମ୍ ଡିମ୍ବାଣୁ ସହିତ ମିଳିତ ହେଲେ ତାର ଫଳ 'XX' ଯୌନ କ୍ରୋମୋଜମ୍ ମିଶ୍ରଣ ହୋଇଥାଏ । ଅର୍ଥାତ୍ ଶିଶୁଟି କନ୍ୟାସନ୍ତାନ ହୋଇଥାଏ । ଉକ୍ତ ଗବେଷଣା ପୂର୍ବରୁ ସ୍ଥଳବିଶେଷରେ ଦେଖାଯାଉଥିଲା ଓ ବର୍ତ୍ତମାନ ମଧ୍ୟ ଦେଖାଯାଉ ଅଛି ଯେ, ପୁରୁଷମାନେ କନ୍ୟା ସନ୍ତାନ ଜାତ ହେବା ଯୋଗୁଁ ଓ ପୁତ୍ର ସନ୍ତାନ ନହେବା ଯୋଗୁଁ ସ୍ତ୍ରୀମାନଙ୍କ ଉପରେ ଦୋଷାରୋପ କରିଥାନ୍ତି । ମାତ୍ର ଉକ୍ତ ଗବେଷଣାରୁ ଏହା ସ୍ପଷ୍ଟ ଯେ, ପୁତ୍ର ବା କନ୍ୟା ଯେକୌଣସି ସନ୍ତାନ ଜାତ ନିମିତ୍ତ ସ୍ତ୍ରୀ ନୁହେଁ କେବଳ ପୁରୁଷହିଁ ଏକାନ୍ତ ଭାବେ ଦାୟୀ । ଯୌନ ନିର୍ଦ୍ଧାରଣ ସମ୍ପର୍କୀୟ ଆଲୋଚନା ସମ୍ପୂର୍ଣ୍ଣ ଭାବେ ପାଠକମାନଙ୍କର ବୋଧଗମ୍ୟ ହେବା ନିମିତ୍ତ ଉକ୍ତ ଚିତ୍ରଟି ପ୍ରଦାନ କରାଗଲା ।

(କ) ବଡ଼ X ସେକ୍ସ
କ୍ରୋମୋଜୋମ ସହ









(ଖ) ଛୋଟ Y ସେକ୍ସ
କ୍ରୋମୋଜୋମ ସହ

(୧) ଯଦି ଶୁକ୍ରାଣୁ X ସହ ଡିମ୍ବାଣୁରେ ପ୍ରବେଶ କରେ






(୨) ଯଦି ଶୁକ୍ରାଣୁ Y ସହ ଡିମ୍ବାଣୁରେ ପ୍ରବେଶ କରେ






**ଯମଜ ସନ୍ତାନ :**

ବ୍ୟକ୍ତିତ୍ୱ ଯେ ବଂଶାନୁଗୁଣ ଦ୍ୱାରା ପ୍ରଭାବିତ ହୋଇଥାଏ, ତାହା ଯମଜ ସନ୍ତାନ ସମ୍ପର୍କରେ ଆଲୋଚନାରୁ ସ୍ପଷ୍ଟ ଅନୁମେୟ । ଯମଜ ସନ୍ତାନ ମୁଖ୍ୟତଃ ଦୁଇ ପ୍ରକାରର, ଯଥା—ସମ ଡିମ୍ବଜ (Identical Twins or Uniovular) ଏବଂ ଡିମ୍ବଜ (Fraternal or biuvular Twins) । ପିତା ଓ ମାତା ଉଭୟଙ୍କ ଦେହରୁ ଆଗତ ଗୋଟିଏ ଲେଖାଏଁ ଜନନକୋଷ ଯେତେବେଳେ ମିଳିତ ହୁଅନ୍ତି ଓ ପ୍ରଥମ ଯୁଗ୍ମଜ (Fertilized egg or Zygote)ଟି ସଙ୍ଗଠିତ ହୁଏ । ସେହି ଭ୍ରୂଣ ବା ଯୁଗ୍ମଜଟି ଯଦି କୌଣସି କାରଣରୁ ସେହି ଗର୍ଭାଧାନ ସମୟରେ ସମଦ୍ୱିଖଣ୍ଡିତ ହୁଏ ତେବେ ମାତୃ ଗର୍ଭରୁ ସମଲିଙ୍ଗ ବିଶିଷ୍ଟ ଦୁଇଟି ସନ୍ତାନ ଜନ୍ମଲାଭ କରନ୍ତି । ସେମାନଙ୍କୁ ସମଡିମ୍ବଜ (Identical Twins) ରୂପେ ଅଭିହିତ କରାଯାଏ । ଏହି ସମଡିମ୍ବଜ ସନ୍ତାନ ଦୁଇଟି ଗୋଟିଏ ପ୍ରକାର କ୍ରୋମୋଜମର ଅଧିକାରୀ ହୋଇଥାନ୍ତି । ତେଣୁ ଏମାନଙ୍କ ମଧ୍ୟରେ ଶାରୀରିକ ଓ ମାନସିକ-ସାମ୍ୟତା ପରିଦୃଷ୍ଟ ହୋଇଥାଏ । ମାତ୍ର ଯଦି

ପିତୃ ଜନନ କୋଷ ଦୁଇଟି ମାତାର ଦୁଇଟି ଭିନ୍ନ ଭିନ୍ନ ଜନନ କୋଷ ସହିତ ଏକ ସମୟରେ ମିଳିତ ହୁଅନ୍ତି, ତେବେ ସେହି ଗର୍ଭାଧାନ ଦ୍ୱାରା ଯେଉଁ ଦୁଇଟି ସନ୍ତାନ ଜନ୍ମଲାଭ କରନ୍ତି ସେହି ଯମଜ ସନ୍ତାନଙ୍କୁ ଦ୍ୱିଡିମ୍ବଜ (Fraternal Twins) କୁହାଯାଏ । ମାତ୍ର ଏହି ଯମଜ ସନ୍ତାନଙ୍କ ମଧ୍ୟରେ ଭିନ୍ନ ଭିନ୍ନ କ୍ରୋମୋଜୋମ୍ ଥିବାରୁ ସେମାନଙ୍କର ବ୍ୟକ୍ତିତ୍ୱରେ ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ । ଉକ୍ତ ଆଲୋଚନାକୁ ଉତ୍ତମ-ରୂପେ ହୃଦୟଙ୍ଗମ କରିବାପାଇଁ ନିମ୍ନସ୍ଥ ଚିତ୍ରର ସାହାଯ୍ୟ ନିଆଯାଇପାରେ । ସମଡିମ୍ବଜ ସନ୍ତାନମାନଙ୍କର ଜନ୍ମଗତ ତଥା ବ୍ୟକ୍ତିତ୍ୱଗତ ବୈଶିଷ୍ଟ୍ୟ ଗୁଡ଼ିକରେ ଥିବା ସାମ୍ୟତା ସମ୍ପର୍କରେ ମନୋବୈଜ୍ଞାନିକମାନେ ବିଭିନ୍ନ ଗବେଷଣା ଓ ଅନୁସନ୍ଧାନ କରିଛନ୍ତି ।

ସମ ଡିମ୍ବଜ ଯମଳ ସନ୍ତାନ ସୃଷ୍ଟି ହୁଅନ୍ତି



ପ୍ରଥମ ଅବସ୍ଥାରେ ଭ୍ରୁଣ ଦୁଇ ଭାଗ ହେଲା



ମାଧ୍ୟମ କୋଷ (ଭିନ୍ନ ସ୍ତରରେ ଦୁଇଟି) ଦୁଇଟି ଶିଶୁ ମାତୃ ଗର୍ଭରେ ଗୋଟିଏ ଥଳିରେ ଅବସ୍ଥାନ କରନ୍ତି



ସମ ଡିମ୍ବଜ ଯମଳ ସନ୍ତାନ ସର୍ବଦା ସମ ଲିଙ୍ଗ ସମ୍ପନ୍ନ

ଦ୍ୱିଡିମ୍ବଜ ଯମଳ ସନ୍ତାନ ମାନେ ଦୁଇଟି ଭିନ୍ନ ଭିନ୍ନ ଡିମ୍ବାଣୁ ଓ ଦୁଇଟି ଭିନ୍ନ ଭିନ୍ନ ଶୁକ୍ରାଣୁରୁ ସୃଷ୍ଟି ହୁଅନ୍ତି ।



ଏମାନେ ମାତୃ ଗର୍ଭରେ ସାଧାରଣତଃ ଦୁଇଟି ଥଳିରେ ଥାଆନ୍ତି



ଯେହେତୁ ସେମାନେ ସମ୍ପୂର୍ଣ୍ଣରୂପେ ଭିନ୍ନ ତେଣୁ ସେମାନେ ଭିନ୍ନ ଭିନ୍ନ ଲିଙ୍ଗ ହୋଇପାରନ୍ତି



ଦୁଇଟି ବାଳକ



ଦୁଇଟି ବାଳିକା



ଗୋଟିଏ ବାଳକ ଗୋଟିଏ ବାଳିକା

ଦୁଇଟି ସମଜାତୀୟ ଶିଶୁଙ୍କୁ ଭିନ୍ନଭିନ୍ନ ପରିବେଶରେ ରଖିଲେ ସେମାନଙ୍କଠାରେ ଯେଉଁ ଭିନ୍ନତା ତଥା ବ୍ୟକ୍ତିତ୍ୱଗତ ପାର୍ଥକ୍ୟ ପରିଦୃଷ୍ଟ ହୁଏ, ତାହାକୁ ଭିତ୍ତିକରି ଗବେଷକଗଣ ଭିନ୍ନ ଭିନ୍ନ ତଥ୍ୟ ଉଦ୍‌ଘାଟନ କରିଛନ୍ତି । ମନସ୍ତତ୍ତ୍ୱବିଦ୍ ଗେସେଲ ଏବଂ ଥମ୍ପସନ୍ (Gessel and Thompson) ଦୁଇଟି ସମଜାତୀୟ ବାଳିକାଙ୍କୁ ଜନ୍ମପରଠାରୁ ପ୍ରାୟ ୧୪ବର୍ଷ ବୟସ ପର୍ଯ୍ୟନ୍ତ ଦୁଇଟି ସ୍ୱତନ୍ତ୍ର ପରିବେଶରେ ପାଳନ କରି ଶିକ୍ଷାଦ୍ୱାରା ସେମାନଙ୍କର ବ୍ୟକ୍ତିତ୍ୱକୁ ଭିନ୍ନମୁଖୀ କରାଇବା ନିମିତ୍ତ ଚେଷ୍ଟା କରିଥିଲେ । ମାତ୍ର ସେମାନଙ୍କ ପର୍ଯ୍ୟବେକ୍ଷଣ ଫଳାଫଳ ଅନୁଯାୟୀ, ଉକ୍ତ ବାଳିକା ଦ୍ୱୟଙ୍କର ବ୍ୟକ୍ତିତ୍ୱ ପ୍ରଲକ୍ଷଣ (Personality Traits)ରେ ଅନେକ ସାଦୃଶ୍ୟ ଦେଖାଯାଇଥିଲା । ଷ୍ଟିଫେନ୍‌ସ ଓ ଟମ୍‌ସନ (Stephens and Thompson)ଙ୍କର ଅନ୍ୟ ଏକ ପର୍ଯ୍ୟବେକ୍ଷଣ ଅନୁଯାୟୀ, ଦୁଇଟି ସମଜାତୀୟ ଭ୍ରାତାଙ୍କୁ ଜନ୍ମାବସ୍ଥାରୁ ପ୍ରାୟ ୧୯ ବର୍ଷ ବୟସ ପର୍ଯ୍ୟନ୍ତ ବିଭିନ୍ନ ପରିବେଶରେ ଲାଳନପାଳନ କରାଯାଇଥିଲା । ମାତ୍ର ସେମାନଙ୍କ ମଧ୍ୟରେ ଉଭୟ ମାନସିକ ଓ ଶାରୀରିକ ସାମ୍ୟତା ୧୯ ବର୍ଷ ପରେ ମଧ୍ୟ ପରିଦୃଷ୍ଟ ହୋଇଥିଲା । ତେବେ ସମଜାତୀୟ ସନ୍ତାନ ମାନଙ୍କର ବୁଦ୍ଧିଗତ ତାରତମ୍ୟ ସମ୍ପର୍କରେ ବହୁ ପରୀକ୍ଷା ନିରୀକ୍ଷା ଚାଲିଛି । ଉକ୍ତ ଗବେଷଣା ଲବ୍‌ଧ ତଥ୍ୟଗୁଡ଼ିକରୁ ବ୍ୟକ୍ତିର ବୁଦ୍ଧିମତ୍ତା ଉପରେ ବଂଶାନୁଗତ ଏବଂ ପରିବେଷ୍ଟନୀର ପ୍ରଭାବ ସମ୍ପର୍କରେ ଜଣାପଡ଼ିଥାଏ । ମନସ୍ତତ୍ତ୍ୱବିଦ୍ ନିଉମ୍ୟାନ୍ (Newman), ଫ୍ରିମ୍ୟାନ (Freeman) ଏବଂ ହୋଲ ଜିଙ୍ଗର (Holzinger) ଉକ୍ତ ବୁଦ୍ଧିମତ୍ତା ସମ୍ପର୍କରେ ବ୍ୟାପକ ଭାବେ ଗବେଷଣା ଚଳାଇଥିଲେ । ଏହି ଗବେଷଣାରେ ଗୋଟିଏ ସ୍ୱତନ୍ତ୍ର ପରିବେଶରେ ପ୍ରତିପାଳିତ ୫୦ ଯୋଡ଼ା ସମଜାତୀୟ ଯମଜ ସନ୍ତାନ ଓ ବିଭିନ୍ନ ପରିବେଶରେ ୧୯ ଯୋଡ଼ା ସମଜାତୀୟ ଜମଜ ସନ୍ତାନଙ୍କୁ ରଖି ବୁଦ୍ଧିମତ୍ତା ସମ୍ପର୍କରେ ପରୀକ୍ଷା କରାଯାଇଥିଲା । ପରିବେଶରେ ପ୍ରତିପାଳିତ ଯମଜ ସନ୍ତାନ ମାନଙ୍କର ବୁଦ୍ଧି ପରୀକ୍ଷାରୁ ଜଣାଗଲା ଯେ, ଏମାନଙ୍କ ମଧ୍ୟରେ ବୁଦ୍ଧ୍ୟଙ୍କଗତ ପାର୍ଥକ୍ୟ ହେଉଛି ୧ରୁ ୨୪ ପର୍ଯ୍ୟନ୍ତ ଏବଂ ହାରାହାରି ପାର୍ଥକ୍ୟ ହେଉଛି ୮-୨୧ । ମାତ୍ରୁସମ ପରିବେଶରେ ପ୍ରତିପାଳିତ ଯମଜସନ୍ତାନମାନଙ୍କର ବୁଦ୍ଧ୍ୟଙ୍କର ହାରାହାରି ପାର୍ଥକ୍ୟ ୫.୩୫ ବୋଲି ଜଣାଯାଇଥିଲା । ଉକ୍ତ ଗବେଷଣାରୁ ଜଣାଗଲା ଯେ ବଂଶାନୁଗୁଣ ସମାନ ହେଲେ ମଧ୍ୟ ପରିବେଷ୍ଟନୀ ଗତ ଶିକ୍ଷାଦ୍ୱାରା ଯମଜ ସନ୍ତାନମାନଙ୍କର ବୁଦ୍ଧିଶକ୍ତି ନିୟନ୍ତ୍ରଣରେ ପ୍ରଭାବିତ ହୋଇଥାଏ । ମନୋବୈଜ୍ଞାନିକ ଆନାଷ୍ଟାସି (Anastasi) ଙ୍କ ଗବେଷଣା ମଧ୍ୟ ଉକ୍ତ ତଥ୍ୟ ଉପରେ ପର୍ଯ୍ୟବସିତ । ତାଙ୍କ ମତାନୁଯାୟୀ ବଂଶାନୁଗୁଣ ସମାନ ହେଲେହେଁ ପରିବେଷ୍ଟନୀଗତ ଶିକ୍ଷାର ପ୍ରଭାବ ଫଳରେ ସମଜାତୀୟ ଜମଜ ସନ୍ତାନମାନଙ୍କର ବୁଦ୍ଧ୍ୟଙ୍କରେ ସମାନ ଅନୁପାତରେ ପାର୍ଥକ୍ୟ ପରିଦୃଷ୍ଟ ହୁଏ ।

## ପରିବେଷ୍ଟନୀ (Environment) :

ଶିଶୁର ବା ବ୍ୟକ୍ତିର ବିକାଶ କ୍ଷେତ୍ରରେ ବଂଶାନୁଗୁଣର ପ୍ରଭାବ ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ଅନୁମେୟ । ମାତ୍ର ବଂଶାନୁଗୁଣ ଯେ କେବଳ ଶିଶୁ ଉପରେ ପ୍ରଭାବ ବିସ୍ତାର କରିଥାଏ ତା' ନୁହେଁ । ଶିଶୁର ପାରିପାର୍ଶ୍ୱିକ ପରିବେଷ୍ଟନୀ ମଧ୍ୟ ଶିଶୁକୁ ଅନେକାଂଶରେ ପ୍ରଭାବିତ କରିଥାଏ । ଶିଶୁର ବିକାଶ ପାଇଁ ବଂଶାନୁଗୁଣଭଳି ପରିବେଷ୍ଟନୀର ଭୂମିକା ମଧ୍ୟ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଡାରଉଇନ୍‌ଙ୍କ ମତାନୁଯାୟୀ ଶିଶୁଠାରେ ପରିଦୃଷ୍ଟ ପାର୍ଥକ୍ୟ କେବଳ ପରିବେଷ୍ଟନୀର ପ୍ରଭାବ ଯୋଗୁଁ ସଙ୍ଗଠିତ ହୋଇପାରେ । ସାଧାରଣ ଅର୍ଥରେ କହିବାକୁ ଗଲେ ଶିଶୁର ଚତୁଃପାର୍ଶ୍ୱସ୍ଥ ଅବସ୍ଥାକୁହିଁ ପରିବେଷ୍ଟନୀ ବୁଝାଯାଇଥାଏ । ଡଗଲସ ଏବଂ ହଲ୍ (Douglas and Hall)ଙ୍କ ମତରେ ପରିବେଷ୍ଟନୀକୁ ମୁଖ୍ୟତଃ ସମ୍ପୂର୍ଣ୍ଣଭାବେ ବର୍ଣ୍ଣନା କରିବାକୁ ଗଲେ, ସମସ୍ତ ଅପ୍ରଧାନ ଏବଂ ବାହ୍ୟ କ୍ଷମତାଗୁଡ଼ିକର ପ୍ରଭାବ ଏବଂ ବ୍ୟବସ୍ଥାଗୁଡ଼ିକ ଯାହା ଜୀବନ, ପ୍ରକୃତି, ବ୍ୟବହାର ଏବଂ ବୃଦ୍ଧିବିକାଶ ଏବଂ ଜୀବନଧାରଣ କରିବାର ବ୍ୟକ୍ତିର ପରିପକ୍ୱତାକୁ ପ୍ରଭାବିତ କରେ । ସାଧାରଣ ଅର୍ଥରେ କହିବାକୁ ଗଲେ, ପରିବେଷ୍ଟନୀ ସବୁକୁ ନେଇ ସଙ୍ଗଠିତ ହୁଏ ଯାହା ଶିଶୁର ଶାରୀରିକ, ମାନସିକ, ନୈତିକ ଏବଂ ସାମାଜିକ ଜୀବନରେ ଦେଖାଯାଏ ।

ଶାରୀରିକ ପରିବେଷ୍ଟନୀ ଶିଶୁର ପାରିପାର୍ଶ୍ୱିକ ଅବସ୍ଥା ଯେଉଁଠି ଶିଶୁ ସାଧାରଣତଃ ବାସକରେ ତାକୁ ବୁଝାଏ, ମାନସିକ ପରିବେଷ୍ଟନୀ ଅର୍ଥ ଶିଶୁର ମାନସିକ ବିକାଶ ନିମିତ୍ତ ଆବଶ୍ୟକ ହେଉଥିବା ପରିବେଶ । ସମସ୍ତ ଜିନିଷ ଯାହା ତା'ର ମାନସିକ ବିକାଶରେ ଶିଶୁକୁ ସାହାଯ୍ୟ କରେ । ତାହାକୁ ନେଇ ଶିଶୁର ମାନସିକ ପରିବେଷ୍ଟନୀ ଗଠିତ । ଗୋଟିଏ ସ୍କୁଲର ମାନସିକ ପରିବେଷ୍ଟନୀ ଲାଇବ୍ରେରୀ, ପଠନ ଗୃହ, ପର୍ଯ୍ୟବେକ୍ଷଣ ଗୃହକୁ ନେଇ ସଙ୍ଗଠିତ ହୋଇଥାଏ । ତେଣୁ ଶିଶୁର ଆବଶ୍ୟକୀୟ ଏବଂ ସମ୍ପୂର୍ଣ୍ଣ ବୃଦ୍ଧି ଓ ବିକାଶ ନିମିତ୍ତ ବିଦ୍ୟାଳୟର ପରିବେଶକୁ ତିଆରି କରାଯିବା ଆବଶ୍ୟକ । ନୈତିକ ପରିବେଷ୍ଟନୀ ଶିଶୁର ନୈତିକତାକୁ ବୁଝାଏ । ପରିବେଶ ବିନା ମାନବର ବ୍ୟକ୍ତିତ୍ୱ ଉତ୍ତମ ରୂପେ ଗଠିତହେବା ଏକାନ୍ତ ଅସମ୍ଭବ । ବ୍ୟକ୍ତିତ୍ୱର ଭିତ୍ତିଭୂମି ଅନୁଷ୍ଠିତ କରାଏ । ଅନୁବଂଶ ଏବଂ ତା'ର ପରିବେଷ୍ଟନୀ ଉକ୍ତ ଭିତ୍ତିଭୂମିକୁ ନେଇ ତା'ର ବ୍ୟକ୍ତିତ୍ୱ ଗଠନ କରେ । ପରିବେଷ୍ଟନୀ ଓ ପାରିପାର୍ଶ୍ୱିକ ପରିସ୍ଥିତି ବ୍ୟକ୍ତିତ୍ୱର ଅଧିକାଂଶ ଲକ୍ଷଣ ଯଥା :— ସତ୍ୟବାଦୀତା, ସହନଶୀଳତା, ଲଜ୍ଜାଶୀଳତା ସାଧୁତା, ଧୈର୍ଯ୍ୟ ଇତ୍ୟାଦି ପ୍ରସ୍ଫୁଟିତ ଓ ପରିପ୍ରକାଶିତ ହୋଇଥାଏ ।

ମୁଖ୍ୟତଃ ପରିବେଷ୍ଟନୀ କହିଲେ ଶିଶୁର ପାରିପାର୍ଶ୍ୱିକ ପରିବେଶ ତଥା ଗୃହ, ବିଦ୍ୟାଳୟ, ସାଙ୍ଗସାଥୀକୁ ବୁଝାଯାଇଥାଏ । ଶିଶୁ ଯେଉଁ ସମାଜର ଅନ୍ତର୍ଭୁକ୍ତ ତାହାହିଁ ତାର ପରିବେଷ୍ଟନୀ । ପରିବେଷ୍ଟନୀ ବ୍ୟକ୍ତିତ୍ୱକୁ ବହୁଳ ମାତ୍ରାରେ ପ୍ରଭାବିତ କରିଥାଏ ।

କାରଣ, ଶିଶୁର ଆଚରଣ, ଆମ୍ଭର ବ୍ୟବହାର, ଗୁଲଚଳନ ତା'ର ପରିବେଶ ଅନୁଯାୟୀ ପରିବର୍ତ୍ତିତ ହୋଇଥାଏ । ସେ ପରିବାରରେ ଯେଉଁ ପ୍ରକାର କାର୍ଯ୍ୟରତ ଥାଏ ଓ ଯେଉଁକି କଥାବାର୍ତ୍ତା କରେ ବିଦ୍ୟାଳୟରେ ପ୍ରକାର କାର୍ଯ୍ୟ ଓ କଥାବାର୍ତ୍ତାରେ ନିୟୋଜିତ ହୋଇନଥାଏ । ସେହିପରି ବାହ୍ୟ ପରିବେଶରେ ମଧ୍ୟ ତା'ର ବ୍ୟବହାରରେ ପରିବର୍ତ୍ତନ ପରିଦୃଷ୍ଟ ହେବା ସ୍ୱାଭାବିକ । ଏତଦ୍ ବ୍ୟତୀତ ମଫସଲ ଶିଶୁର ବ୍ୟକ୍ତିତ୍ୱ ଓ ସହରର ଶିଶୁମାନଙ୍କ ବ୍ୟକ୍ତିତ୍ୱ ମଧ୍ୟରେ ପାର୍ଥକ୍ୟ ଦେଖାଯାଇଥାଏ । ଶିକ୍ଷିତ ଓ ଅଶିକ୍ଷିତ ବ୍ୟକ୍ତିମାନଙ୍କ ଆଚରଣରେ ମଧ୍ୟ ସେହିପରି ଭିନ୍ନତା ପରିଲକ୍ଷିତ ହୁଏ । ଉକ୍ତ ଆଲୋଚନାରୁ ସ୍ପଷ୍ଟ ଅନୁମେୟ ଯେ, ପରିବେଶର ପ୍ରକୃତି ଶିଶୁର ବ୍ୟକ୍ତିତ୍ୱ ଉପରେ ପ୍ରଭାବ ବିସ୍ତାର କରିଥାଏ । ଜାତୀୟ ସଂସ୍କୃତି ମଧ୍ୟ ଶିଶୁ ବା ବ୍ୟକ୍ତିକୁ ପ୍ରଭାବିତ କରିଥାଏ । ଦେଶ ଓ ଜାତିର ଐତିହ୍ୟ, ପରମ୍ପରା, ରୀତିନୀତି, ଆଶା ଆକାଙ୍କ୍ଷା ଶିଶୁର ବ୍ୟକ୍ତିତ୍ୱ ଗଠନ କ୍ଷେତ୍ରରେ ଅନେକ ସାହାଯ୍ୟ କରିଥାଏ । ଶିଶୁର ଜ୍ଞାନ ଅନ୍ତର୍ନିହିତ ଓ ଈଶ୍ୱରଦତ୍ତ ସତ୍ୟ ମାତ୍ର ଉପଯୁକ୍ତ ପରିବେଶ ବ୍ୟତୀରେକେ ବୁଦ୍ଧି ଓ ଜ୍ଞାନର ଉପଯୁକ୍ତ ବିକାଶ ଏକାନ୍ତ ଅସମ୍ଭବ । ଅନୁକୂଳ ପରିବେଶ ଶିଶୁର ସର୍ବାଙ୍ଗୀଣ ଉନ୍ନତି ତଥା ବିକାଶ ପାଇଁ ଖୋରାକ ଯୋଗାଇ ଥାଏ । ଶିଶୁଠାରେ ଅନ୍ତର୍ନିହିତ ଲକ୍ଷଣଗୁଡ଼ିକ ବଂଶାନୁସୃତ ହେଲେ ହେଁ ସେଗୁଡ଼ିକର ବିକାଶ ଓ ବୃଦ୍ଧି ନିମିତ୍ତ ଏକ ଉତ୍ତମ ପରିବେଶ ଏକାନ୍ତ ଆବଶ୍ୟକ । ପରିବେଶସ୍ଥ ଉପାଦାନଗୁଡ଼ିକ ମନୁଷ୍ୟର ଜନ୍ମଗତ ଶକ୍ତିକୁ ତଥା ଯୋଗ୍ୟତାକୁ ବିକଶିତ କରିବାରେ ସାହାଯ୍ୟ କଲେ ତା'ର ବୁଦ୍ଧି ଫଳାଙ୍କ କେତେକାଂଶରେ ବୃଦ୍ଧିଲାଭ କରିପାରେ । ମାତ୍ର ଏହାଦ୍ୱାରା ଶିଶୁର ବୁଦ୍ଧିଫଳାଙ୍କ ସାଧାରଣ ଶିଶୁର ବୁଦ୍ଧିଫଳାଙ୍କ ସହ ସମାନ କରିହେବ ନାହିଁ । ଏ କ୍ଷେତ୍ରରେ ଅନୁବଂଶ କେତେଗୁଡ଼ିଏ ଲକ୍ଷଣରେ ଅଭିବୃଦ୍ଧି ଓ ବିକାଶକୁ ସୀମିତ କରେ । ଶିଶୁ ପ୍ରଜନନ କୋଷରେ ଡେଙ୍ଗା ହେବାର ଲକ୍ଷଣ ଥିଲେ ମଧ୍ୟ ଉପଯୁକ୍ତ ପରିବେଶ ତଥା ପୁଷ୍ଟିକର ଖାଦ୍ୟ, ଜଳବାୟୁର ଅଭାବ ଏବଂ ଅସୁସ୍ଥତା ହେଲେ ସେ ଡେଙ୍ଗା ହୋଇନପାରେ । ପରିବେଶ ଓ ଅନୁବଂଶ ପରସ୍ପର ସମ୍ପର୍କିତ ଏବଂ ଓତଃପ୍ରୋତ ଭାବେ ଜଡ଼ିତ । ପରିବେଶ ଓ ଅନୁବଂଶର ପାରସ୍ପରିକ ପ୍ରତିକ୍ରିୟା ଫଳରେ ବ୍ୟକ୍ତି ଅଭିଜ୍ଞ ହୁଏ ଓ ସମାଜର ଆଦର୍ଶ ସଂସ୍କୃତି ଅନୁଯାୟୀ ତା'ର ସ୍ୱଭାବ ଚରିତ୍ର ଗଠନରେ ବ୍ରତୀ ହୁଏ ।

ଉତ୍ତମ ପାରିବାରିକ ପରିବେଶ ଶିଶୁର ଉତ୍ତମ ବ୍ୟକ୍ତିତ୍ୱ ଗଠନରେ ସାହାଯ୍ୟ କରିଥାଏ । କାରଣ, ପାରିବାରିକ ପ୍ରଭାବ ଜୀବନ ଉପରେ ଅଧିକ ମାତ୍ରାରେ ପ୍ରଭାବ ବିସ୍ତାର କରିଥାଏ । ପିତାମାତା ତଥା ପରିବାର ବର୍ଗ ଯଦି ଶିଶୁପ୍ରତି ଅତି ମାତ୍ରାରେ ସ୍ନେହ ପ୍ରବଣ ଓ ଯତ୍ନଶୀଳ ହୁଅନ୍ତି ତେବେ ଶିଶୁର ସ୍ୱାଧୀନ ଚିନ୍ତା ଓ କାର୍ଯ୍ୟକରିବାର କ୍ଷମତା ଲୋପପାଏ । ଫଳରେ ତା'ର ବ୍ୟକ୍ତିତ୍ୱ ଦୁର୍ବଳ ଓ ଭୀରୁ ହୋଇଥାଏ ।

ଅପର ପକ୍ଷରେ ପିତାମାତାଙ୍କର ଅଯତ୍ନଶୀଳତା ଶିଶୁକୁ ଅସାମାଜିକ, ସନ୍ଦେହ ପ୍ରବଣ, ଦୁର୍ବଳ ଓ ଔଦାସୀନ କରିପକାଏ, ତେଣୁ ପିତାମାତା ଓ ପରିବାର ବର୍ଗ ଶିଶୁର ସୁବ୍ୟକ୍ତିତ୍ୱ ଗଠନ ନିମିତ୍ତ ସୁ-ପରିବେଶ ସୃଷ୍ଟି କରିବା ବାଞ୍ଛନୀୟ ।

ଶିଶୁର ଜନ୍ମଗତ ପ୍ରବୃତ୍ତି ଓ ଅନ୍ତର୍ନିହିତ ଶକ୍ତି ତଥା ଗୁଣାବଳୀର ଉପଯୁକ୍ତ ବିକାଶ ପାଇଁ ଶିକ୍ଷାର ଭୂମିକା ଅପରିହାର୍ଯ୍ୟ । ତେଣୁ ଶିଶୁର ବ୍ୟକ୍ତିତ୍ୱ ଗଠନରେ ବିଦ୍ୟାଳୟର ପରିବେଶ ଯେ ଗୁରୁତ୍ୱପୂର୍ଣ୍ଣ ତାହା ସର୍ବଜନ ସ୍ୱୀକାର୍ଯ୍ୟ । ବିଦ୍ୟାଳୟ ପରିପ୍ରେକ୍ଷୀରେ ଶିକ୍ଷକଙ୍କର ଆଦର୍ଶ, ମଧୁର ବ୍ୟବହାର, ଶିକ୍ଷାଦାନ, କଥାବାର୍ତ୍ତା, ଶିଶୁର ହୃଦୟରେ ଗଭୀର ରେଖାପାତ କରିଥାଏ । ସହପାଠୀମାନଙ୍କର ସହାଚର୍ଯ୍ୟ ମଧ୍ୟ ଶିଶୁଠାରେ ସହଯୋଗୀ ମନୋଭାବ ବୃଦ୍ଧି କରାଇଥାଏ । ମାତ୍ର ଶିକ୍ଷକଙ୍କର ବ୍ୟବହାର ଯଦି କର୍କଶପୂର୍ଣ୍ଣ କିମ୍ବା ପରିହାସ ପୂର୍ଣ୍ଣ ହୁଏ ତେବେ ଶିଶୁର ମନୋବୃତ୍ତି ମଧ୍ୟ ତଦନୁଯାୟୀ ପରିବର୍ତ୍ତିତ ହୋଇଥାଏ । ତା' ଠାରେ ଉଦାସୀନତା, ଆକ୍ରମଣାତ୍ମକ ମନୋଭାବ ପରିଦୃଷ୍ଟ ହୁଏ । ଶିଶୁର ଅନ୍ତର୍ନିହିତ ଶକ୍ତିର ଉପଯୁକ୍ତ ବିକାଶ ପାଇଁ ଶିକ୍ଷଣ, ନିର୍ଦ୍ଦେଶନା ତଥା ସୁବିଧା ସୁଯୋଗ ଇତ୍ୟାଦିର ଭୂମିକା ଯେ କେତେ ବେଶି ତାହା ଉପରୋକ୍ତ ପର୍ଯ୍ୟାଲୋଚନାରୁ ସ୍ପଷ୍ଟ ଅନୁମେୟ । ପ୍ରତ୍ୟେକ ପରିବାର ଓ ସମାଜ ତଥା ତାର ପାରିପାର୍ଶ୍ୱିକ ପରିବେଶ ଏହା ଉତ୍ତମ ରୂପେ ଉପଲବ୍ଧି କରି ତଦନୁଯାୟୀ ଶିଶୁର ସୁବ୍ୟକ୍ତିତ୍ୱ ଗଠନ ଦିଗରେ ସହାୟକ ହେବା ଏକାନ୍ତ ବାଞ୍ଛନୀୟ ।



# ଚତୁର୍ଥ ଅଧ୍ୟାୟ

## ଶିଶୁର ବିକାଶର ବିଭିନ୍ନ ପର୍ଯ୍ୟାୟ

## (Different Stages of Child Development)

ଶିଶୁର ଜୀବନ ଗର୍ଭଧାରଣଠାରୁ ହିଁ ଆରମ୍ଭ ହୋଇଥାଏ । ଏହା ହେଉଛି ମନୁଷ୍ୟ ଜୀବନର ଗୁରୁତ୍ୱପୂର୍ଣ୍ଣ ମୁହୂର୍ତ୍ତ । ଏହି ସମୟରେ ତା'ର ସମସ୍ତ ବଂଶାନୁଗତ ଗୁଣାବଳୀ ସ୍ଥିରୀକୃତ ହୋଇଥାଏ, ଯାହାର ପରିବର୍ତ୍ତନ ସମ୍ଭବପର ହୋଇ ନଥାଏ । କେତେଗୁଡ଼ିଏ ବିକାଶମୂଳକ ଗୁଣାବଳୀକୁ ଆଖିଆଗରେ ରଖି ମନସ୍ତତ୍ତ୍ୱବିଦ୍‌ମାନେ ମନୁଷ୍ୟର ସମ୍ପୂର୍ଣ୍ଣ ଜୀବନକୁ କେତୋଟି ନିର୍ଦ୍ଦିଷ୍ଟ ପର୍ଯ୍ୟାୟରେ ବିଭକ୍ତ କରିଛନ୍ତି । ଏହି ବିଭକ୍ତିକରଣ ସତ୍ତ୍ୱେ ମନୁଷ୍ୟର ବୃଦ୍ଧି ଓ ବିକାଶ ଏକ କ୍ରମାଗତ ପ୍ରଣାଳୀ, ଏହା ସର୍ବଜନ ସ୍ୱୀକାର୍ଯ୍ୟ । ସମସ୍ତ ମନସ୍ତତ୍ତ୍ୱବିଦ୍‌ମାନଙ୍କ ଦ୍ୱାରା ଗ୍ରହଣୀୟ ହୋଇଥିବା ବିକାଶର କେତୋଟି ସ୍ତର ସମ୍ପର୍କରେ ନିମ୍ନରେ ଆଲୋଚନା କରାଗଲା ।

୧ । ଶୈଶବାବସ୍ଥା— (Infancy) (ଜନ୍ମଠାରୁ ୫ ବର୍ଷ ପର୍ଯ୍ୟନ୍ତ)

୨ । ବାଲ୍ୟାବସ୍ଥା— (Childhood)

(କ) ପ୍ରାଥମିକ ବାଲ୍ୟାବସ୍ଥା (Early Childhood) (୬ବର୍ଷଠାରୁ ୨ବର୍ଷ ପର୍ଯ୍ୟନ୍ତ)

(ଖ) ଉତ୍ତର ବାଲ୍ୟାବସ୍ଥା (Late Childhood) (୭ବର୍ଷ ଠାରୁ ୧୨ବର୍ଷ ପର୍ଯ୍ୟନ୍ତ)

୩ । କୈଶୋରାବସ୍ଥା— (Adolescence)

(କ) ପ୍ରାଥମିକ କୈଶୋରାବସ୍ଥା (Early adolescence) (୧୩ ବର୍ଷ ଠାରୁ ୧୫ବର୍ଷ ପର୍ଯ୍ୟନ୍ତ)

(ଖ) ଉତ୍ତର କୈଶୋରାବସ୍ଥା (Later Adolescence) (୧୬ବର୍ଷ ଠାରୁ ୧୯ବର୍ଷ ପର୍ଯ୍ୟନ୍ତ)

୪ । ଯୁବାବସ୍ଥା— (Adulthood)
ଏବଂ and
ବୃଦ୍ଧାବସ୍ଥା — (oldage)
} (କୋଡ଼ିଏ ବର୍ଷଠାରୁ ଏବଂ ପରେ ।)

ଉପରୋକ୍ତ ଅବସ୍ଥାଗୁଡ଼ିକ ପରସ୍ପର ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଏମାନଙ୍କ ମଧ୍ୟରେ କୌଣସି ବିଭେଦ ପରିଦୃଷ୍ଟ ହୁଏ ନାହିଁ । ମାତ୍ର ଗୋଟିଏ ଅବସ୍ଥା ବା ପର୍ଯ୍ୟାୟ ତା'ର ପରବର୍ତ୍ତୀ ପର୍ଯ୍ୟାୟର ଭିତ୍ତିଭୂମି ରୂପେ କାର୍ଯ୍ୟ କରିଥାଏ ।

## ଶୈଶବାବସ୍ଥା (Infancy) :

ଜନ୍ମଠାରୁ ଛଅବର୍ଷ ପର୍ଯ୍ୟନ୍ତ ଶିଶୁର ଶୈଶବାବସ୍ଥା । ଏହି ଅବସ୍ଥାରେ ଶିଶୁ ବୃଦ୍ଧି ଅତ୍ୟନ୍ତ କ୍ଷିପ୍ର ହୋଇଥାଏ । ଜନ୍ମର ପ୍ରଥମ ବର୍ଷରେ ବାଳକମାନଙ୍କର ଉଚ୍ଚତା ପ୍ରାୟ ୨୫ ସେ: ମି ଓ ଦ୍ୱିତୀୟ ବର୍ଷରେ ବୃଦ୍ଧି ପ୍ରାୟ ୧୨.୫ ସେ: ମି ହୋଇଥାଏ । ଜନ୍ମପରେ ଶିଶୁର ମୁଣ୍ଡ ଓ ମୁଖମଣ୍ଡଳ ତୁଳନାରେ ଶରୀର ଓ ଅନ୍ୟାନ୍ୟ ଅଙ୍ଗ ପ୍ରତ୍ୟଙ୍ଗର ଅଧିକ ମାତ୍ରାରେ ବୃଦ୍ଧି ଘଟିଥାଏ । ଦୁଇମାସ ଅତିକ୍ରମ କରିଥିବା ଭ୍ରୂଣର ଏବଂ ମସ୍ତିଷ୍କ ଭାଗର ସମଗ୍ର ଶରୀରର ଏକ ଚତୁର୍ଥାଂଶ ସଙ୍ଗେ ସଙ୍ଗେ ଜନ୍ମ ଲାଭ କରିଥିବା ଶିଶୁର ମୁଣ୍ଡ ଓ ମୁଖମଣ୍ଡଳର ଉଚ୍ଚତା ମଧ୍ୟ ସମଗ୍ର ଶରୀରର ଏକ ଚତୁର୍ଥାଂଶ 'ଅଟେ । କିନ୍ତୁ ଜଣେ ବୟସ୍କ ବ୍ୟକ୍ତିଙ୍କର ମୁଣ୍ଡ ଏବଂ ମୁଖମଣ୍ଡଳର ଉଚ୍ଚତା ମିଶି ସମ୍ପୂର୍ଣ୍ଣ ଶରୀର ଏକ ଅଷ୍ଟମାଂଶ ହୋଇଥାଏ । ଶାରୀରିକ ବୃଦ୍ଧି ଶିଶୁକୁ କର୍ମତତ୍ପର କରାଇଥାଏ । ଏତଦ୍ ବ୍ୟତୀତ ଶିଶୁର ଅବୟବଗୁଡ଼ିକ ଅଧିକ ଦୃଢ଼ ଓ କାର୍ଯ୍ୟକ୍ଷମ ହୋଇଥାନ୍ତି । ଶିଶୁ ଜନ୍ମଲାଭ କରିବା ସମୟରେ ତା'ର ସ୍ନାୟୁ ବିଭାଗ ପୂର୍ଣ୍ଣମାତ୍ରାରେ ଗଠିତ ହୋଇଥାଏ ସତ, ମାତ୍ର ଏହା ସମ୍ପୂର୍ଣ୍ଣ କାର୍ଯ୍ୟ କ୍ଷମତା ପ୍ରାପ୍ତ ହୋଇପାରି ନଥାଏ । ଶିଶୁର ଶାରୀରିକ ଅଭିବୃଦ୍ଧି ହେବାଦ୍ୱାରା ବାହ୍ୟ ପ୍ରାକୃତିକ ପରିବେଶ ସହିତ ସେ ଉଦ୍ଦୀପନା ପ୍ରକାଶ କରିବାରେ ସମର୍ଥ ହୋଇଥାଏ । ଜନ୍ମହେବା ସମୟରେ ଶିଶୁର ମସ୍ତିଷ୍କର ଓଜନ ସମଗ୍ର ଶରୀରର ଓଜନର ୧୦% ଭାଗ ହୋଇଥାଏ । ମାତ୍ର ଜଣେ ବୟସ୍କ ବ୍ୟକ୍ତିଙ୍କ ମସ୍ତିଷ୍କର ଓଜନ ତାଙ୍କ ସମଗ୍ର ଓଜନର ୨% ଭାଗ ହୋଇଥାଏ । ଜନ୍ମଲାଭ ପୂର୍ବରୁ ଶିଶୁର ଯେଉଁସବୁ ଅଙ୍ଗ ପ୍ରତ୍ୟଙ୍ଗ ଅପରିପକ୍ୱ ଥାଏ ସେଗୁଡ଼ିକ ପରିପକ୍ୱ ହୋଇଥାଏ । ତା' ସଙ୍ଗେ ସଙ୍ଗେ ଶିଶୁର ମସ୍ତିଷ୍କ ଆସ୍ତେ ଆସ୍ତେ କାର୍ଯ୍ୟକ୍ଷମ ହୋଇଥାଏ ଓ ଇନ୍ଦ୍ରିୟମାନଙ୍କର ବୃଦ୍ଧି ମଧ୍ୟ କ୍ଷିପ୍ର ହୋଇଥାଏ । ତେଣୁ ଶୈଶବାବସ୍ଥା ଶେଷବେଳକୁ ଶିଶୁ ଦେଖିବା, ଶୁଣିବା, ଆଘ୍ରାଣ କରିବା, ହସିବା ଇତ୍ୟାଦି କାର୍ଯ୍ୟ କରିପାରିଥାଏ । ଏତଦ୍ବ୍ୟତୀତ ଶରୀରର ଅବୟବ-ଗୁଡ଼ିକର ସଞ୍ଚାଳନ ଓ ନିୟନ୍ତ୍ରଣ କାର୍ଯ୍ୟ କରିପାରିବାକୁ ସକ୍ଷମ ହୋଇଥାଏ । ସେ ହସ ଓ କାନ୍ଦ ଦ୍ୱାରା ତା'ର ପରିବେଶ ସହ ଉଦ୍ଦୀପନା ପରିପ୍ରକାଶ କରେ । ସେ ପ୍ରଥମେ ପ୍ରଥମେ ମା, ବାପ, କହିବାକୁ ଶିଖିଥାଏ । ପ୍ରାୟ ଦେଢ଼ ବର୍ଷରୁ ୩ବର୍ଷ ମଧ୍ୟରେ ଶିଶୁ ଭାଷା ଶିକ୍ଷା କରିବା ସଙ୍ଗେ ସଙ୍ଗେ ନିଜର ସାଧାରଣ ଭାବକୁ କିୟଦଂଶରେ ପ୍ରକାଶ କରିପାରିଥାଏ । ଏ ଅବସ୍ଥାରେ ଶିଶୁ ମା' ସହିତ ରହିବାକୁ ଖୁବ୍ ଭଲପାଏ ଓ ତାଙ୍କ

ବ୍ୟତିରେକେ ସେ ଦୁଃଖଭାବ ପ୍ରକାଶ କରିଥାଏ । ଆସ୍ତେ ଆସ୍ତେ ସେ ପରିବାର ସହିତ ଓ ପରେ ପାଖ ପଡ଼ୋଶୀଙ୍କ ସହିତ ମିଶିବାକୁ ପ୍ରୟାସୀ ହୋଇଥାଏ ।

**(କ) ପ୍ରାଥମିକ ବାଲ୍ୟାବସ୍ଥା (Early Childhood) :**

ଶିଶୁର ୩ ବର୍ଷଠାରୁ ୬ ବର୍ଷ ପର୍ଯ୍ୟନ୍ତ ପ୍ରାଥମିକ ବାଲ୍ୟାବସ୍ଥା । ଶିଶୁ ଏହି ସମୟରେ ସ୍କୁଲକୁ ଯିବାପାଇଁ ପ୍ରସ୍ତୁତ ହୋଇଥାଏ । ଏତିକବେଳେ ଶିଶୁର ଶାରୀରିକ ଓ ମାନସିକ ବିକାଶ ଦ୍ରୁତ ହୋଇଥାଏ । ୩ ବର୍ଷ ବୟସ ବେଳକୁ ଶିଶୁ ଅଧିକ ସ୍ୱାସ୍ଥ୍ୟବାନ ହୋଇଥାଏ ଓ ତା'ର ମାଂସପେଶୀର ବିକାଶ ଘଟିଥାଏ । ଶିଶୁ ଖେଳିବା ଚାଲିବା କାର୍ଯ୍ୟ କରିବା ଦ୍ୱାରା ତା'ର ମାଂସପେଶୀ ଦୃଢ଼ ଓ ବୃଦ୍ଧିପ୍ରାପ୍ତ ହୋଇଥାଏ । ଶିଶୁ ଖେଳିବା, ଦୌଡ଼ିବା, ଡେଇଁବା, ଚାଲିବା ଇତ୍ୟାଦି କାର୍ଯ୍ୟରେ ନିଜକୁ ନିୟୋଜିତ କରିବା ଦ୍ୱାରା ଅଙ୍ଗ ପ୍ରତ୍ୟଙ୍ଗ ଚାଳନା କରିଥାଏ । ଏହି ସମୟରେ ଶିଶୁର ଶବ୍ଦ ସମ୍ପଦ ସମ୍ବନ୍ଧୀୟ ଜ୍ଞାନ ଅଧିକ ହୋଇଥାଏ । ସେ ଶିଖିଥିବା ଶବ୍ଦଗୁଡ଼ିକୁ ଅର୍ଥପୂର୍ଣ୍ଣ ଖଣ୍ଡିଆ ବାକ୍ୟରେ ବ୍ୟବହାର କରି ନିଜର ଭାବକୁ ପରିପ୍ରକାଶ କରେ । ପରିବେଶ ଓ ପରିସ୍ଥିତି ସହିତ ପିତାମାତାଙ୍କର ପ୍ରଯତ୍ନ ଦ୍ୱାରା ଶିଶୁର ଭାଷା ଜ୍ଞାନର ଉନ୍ନତି ପରିଲକ୍ଷିତ ହୋଇଥାଏ । କେବଳ ମାତୃଭାଷାରେ ସେ ଜ୍ଞାନ ଲାଭ କରିବାକୁ ସକ୍ଷମ ହୋଇଥାଏ । ଅନ୍ୟଭାଷା ଶିକ୍ଷାଦେବା ଦ୍ୱାରା ଶିଶୁ ଅସୁବିଧାର ସମ୍ମୁଖୀନ ହୋଇଥାଏ । ତେଣୁ ଏହା ଅସମୀଚୀନ ବିବେଚିତ ହୋଇଥାଏ । ଶିଶୁ ମୂଳତଃ ଅନୁକରଣ ପ୍ରିୟ ହୋଇଥାଏ । ସେ ବାଲ୍ୟାବସ୍ଥାରେ ଶିଖିଥିବା ଦକ୍ଷତାଗୁଡ଼ିକ ଉପରେ ନିଜର ପ୍ରାଧାନ୍ୟ ଅଧିକମାତ୍ରାରେ ବିସ୍ତାର କରିପାରିଥାଏ । ୬ବର୍ଷ ବୟସର ଶିଶୁ ନିଜେ ଭଲଭାବେ ଖାଇପାରେ, ନିଜେ ପୋଷାକ ପିନ୍ଧିପାରେ, ନିଜଦେହ, ମୁଣ୍ଡ ଇତ୍ୟାଦିର ଯତ୍ନ ନେଇପାରେ ଏବଂ ସମସ୍ତ ବର୍ଣ୍ଣଗୁଡ଼ିକ ଓ ୧ ରୁ ୨୦ ପର୍ଯ୍ୟନ୍ତ ନମ୍ବର ଲେଖିବାକୁ ସକ୍ଷମ ହୋଇଥାଏ । ପଡ଼ୋଶୀ ଖେଳସାଥୀ ଯୋଗାଡ଼ କରିବାରେ ସେ ଆଗ୍ରହୀ ହୋଇଥାଏ । ଏହା ତାକୁ ଅଧିକ ସାମାଜିକ କରିଥାଏ । ବ୍ୟକ୍ତିତ୍ୱ ବିକାଶରେ ଏହା ଗୋଟିଏ ସଙ୍କଟପୂର୍ଣ୍ଣ ଅବସ୍ଥା ଏବଂ ଏହି କ୍ଷେତ୍ରରେ ଘରର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ରାଗ, ଭୟ, ଲାଜ, ଈର୍ଷା, ସ୍ନେହ ଏବଂ ଆଗ୍ରହ ପ୍ରାଥମିକ ବାଲ୍ୟାବସ୍ଥାର ମୁଖ୍ୟ ଆବେଗ । ପ୍ରାଥମିକ ବାଲ୍ୟାବସ୍ଥାରେ ଶିଶୁ ତା'ର ପାରିପାର୍ଶ୍ୱିକ ପରିବେଷ୍ଟନୀ ଓ ବିଦ୍ୟାଳୟ ପରିବେଶ ସହିତ ସମ୍ପର୍କ ପ୍ରତିଷ୍ଠା କରିଥାଏ । ଫଳରେ ତା'ର ସାମାଜିକ ଅଭିଜ୍ଞତା ଓ ଜ୍ଞାନ ପରିସର ବୃଦ୍ଧିପ୍ରାପ୍ତ ହୋଇଥାଏ ।

**(ଖ) ଉତ୍ତର ବାଲ୍ୟାବସ୍ଥା (Late Childhood) :**

୬ବର୍ଷ ଠାରୁ ୧୨ ବର୍ଷ ପର୍ଯ୍ୟନ୍ତ ଶିଶୁର ଉତ୍ତର-ବାଲ୍ୟାବସ୍ଥାରୂପେ ବିବେଚିତ ହୋଇଥାଏ । ପ୍ରାଥମିକ ଶିକ୍ଷାବର୍ଷ ରୂପେ ଏହି ଅବସ୍ଥା ସୁସ୍ଥତ । ଏହି ଅବସ୍ଥାରେ

ଶାରୀରିକ ବୃଦ୍ଧିପ୍ରାପ୍ତି ସ୍ଥିର ରହେ । ଶିଶୁର ବହିରଙ୍ଗର ଅଙ୍ଗ, ମାଂସପେଶୀ, ମୁଣ୍ଡ ଇତ୍ୟାଦି ପରିପକ୍ୱ ହୋଇଥାଏ । ଶିଶୁ ଆବଶ୍ୟକୀୟ ମାନସିକ କାର୍ଯ୍ୟ କରିବାପାଇଁ ସକ୍ଷମ ହୋଇଥାଏ । ତାର ଉଭୟ ନିରୀକ୍ଷଣ ଶକ୍ତି ଓ ବିଚାରଶକ୍ତି ବୃଦ୍ଧିପ୍ରାପ୍ତ ହୋଇଥାଏ । ବିଦ୍ୟାଳୟକୁ ଗଲେ ସେ ଅଧିକ ଭାଷାଜ୍ଞାନ ଲାଭକରେ । ଏତଦ୍‌ବ୍ୟତୀତ ତା'ର ଶାରୀରିକ ଓ ମାନସିକ ସ୍ଥିରତା ମଧ୍ୟ ସଙ୍ଗଠିତ ହୋଇଥାଏ । ସେମାନଙ୍କର ପଢ଼ିବା ନିମିତ୍ତ ଆଗ୍ରହ ମୁଖ୍ୟତଃ ସାମାଜିକ, ଅର୍ଥନୈତିକ ଏବଂ ଶିକ୍ଷାଗତ ପ୍ରଭାବ ଉପରେ ନିର୍ଭର କରେ । ଶିଶୁମାନେ ଉଭୟ କୌତୂହଳ ପୂର୍ଣ୍ଣ ଏବଂ ପ୍ରକୃତ ସାହିତ୍ୟ ପ୍ରତି ଆଗ୍ରହୀ ହୋଇଥାନ୍ତି । ସେମାନେ କାଳ୍ପନିକ, ଦୁଃସାହସିକ କାର୍ଯ୍ୟ ସମ୍ବଳିତ, ରୋମାଞ୍ଚକର ଗଳ୍ପ ଶୁଣିବାକୁ ଭଲ ପାଆନ୍ତି । ସେମାନେ ହାସ୍ୟ, ବ୍ୟଙ୍ଗ, ଦୁଃସାହସ, କ୍ରୀଡ଼ା ଇତ୍ୟାଦି ତଥ୍ୟ ସମ୍ବଳିତ ଗଳ୍ପ ଶୁଣିବା ପାଇଁ ଅଧିକ ଆଗ୍ରହ ପ୍ରକାଶ କରିଥାନ୍ତି । ସେମାନେ ଗଠନମୂଳକ ଓ ଉତ୍ପାଦନକ୍ଷମ କାର୍ଯ୍ୟ କରିବାରେ ମଧ୍ୟ ଆଗ୍ରହୀ ହୋଇଥାନ୍ତି । ସେ ଯାହାହେଉ ଏ ଅବସ୍ଥାରେ ଶିଶୁର ଆଗ୍ରହରେ ପରିବର୍ତ୍ତନ ଦେଖାଯାଇଥାଏ । ପରିପକ୍ୱତା ଓ ଶିକ୍ଷଣର ପ୍ରଭାବଦ୍ୱାରା ଶିଶୁର ଆବେଗ କିୟଦଂଶରେ ମାର୍ଜିତ ମଧ୍ୟ ହୋଇଥାଏ । ଭଲପାଇବା, ଘୃଣା କରିବା, ଭୟକରିବା ଇତ୍ୟାଦି ଆବେଗମାନ ତା'ର ଅନୁଭୂତି ପରିସରକୁ ଆସିଥାଏ ଏବଂ ଏଗୁଡ଼ିକ ଦୀର୍ଘସ୍ଥାୟୀ ହୋଇଥାଏ । ତେବେ ତାର ବାହ୍ୟ ପରିପ୍ରକାଶକୁ ସେ ଆୟତ୍ତାଧୀନ କରିପାରିଥାଏ । ପ୍ରାଥମିକ ଅବସ୍ଥାରେ ବିଦ୍ୟାଳୟ ପରିପ୍ରେକ୍ଷୀରେ ଶିଶୁ ଦଳବଦ୍ଧଭାବେ ଖେଳିବାକୁ ଓ ବୁଲିବାକୁ ଆଗ୍ରହୀ ହୋଇଥାଏ । ଏକାକୀ ଖେଳିବା ପାଇଁ ସେ ଆଦୌ ପସନ୍ଦ କରେ ନାହିଁ । ସେ ସର୍ବଦା ତା'ର ସମବୟସ୍କ ଓ ସହପାଠୀମାନଙ୍କ ଗହଣରେ ରହିବାକୁ ପସନ୍ଦ କରେ । ଏ ଅବସ୍ଥାରେ ବାଳିକାମାନେ ବାଳିକାମାନଙ୍କ ସହିତ ଓ ବାଳକମାନେ କେବଳ ବାଳକମାନଙ୍କ ସହିତ ସମ୍ପର୍କ ରଖିଥାନ୍ତି । ସେମାନେ ଖେଳିବାପାଇଁ, ସିନେମା ଦେଖିବାପାଇଁ ଦଳଗଠନ କରିଥାନ୍ତି । ଏ କ୍ଷେତ୍ରରେ ସେମାନଙ୍କ ମଧ୍ୟରେ ଝଗଡ଼ା ମଧ୍ୟ ଦେଖାଦେଇଥାଏ । ଦଳଗତ ମନୋଭାବ ସେମାନଙ୍କ ମଧ୍ୟରେ ଦୃଢ଼ଥିବାରୁ ସେମାନେ ଅନେକ ସମୟରେ ପିତାମାତାଙ୍କର ଅବାଧ୍ୟ ହୋଇଥାନ୍ତି । ତେଣୁ ଏହି ଅବସ୍ଥାରେ ଶିଶୁର ବ୍ୟବହାର ପ୍ରତି ସତର୍କ ଦୃଷ୍ଟି ରଖିବା ପିତାମାତାଙ୍କର ପ୍ରଧାନ କର୍ତ୍ତବ୍ୟ ହେବା ବାଞ୍ଛନୀୟ ।

### (ଗ) କୈଶୋରାବସ୍ଥା (Adolescence) :

ଉକ୍ତ କୈଶୋରାବସ୍ଥାକୁ ମୂଳତଃ ଦୁଇଭାଗରେ ବିଭକ୍ତ କରାଯାଇଥାଏ । ପ୍ରଥମତଃ, ପ୍ରାଥମିକ କୈଶୋରାବସ୍ଥା ଏବଂ ଦ୍ୱିତୀୟତଃ ଉତ୍ତର କୈଶୋରାବସ୍ଥା, ନିମ୍ନରେ ସେଗୁଡ଼ିକୁ ବିଶଦ୍ ଭାବେ ଆଲୋଚନା କରାଗଲା ।

୧୩ ବର୍ଷଠାରୁ ୧୫ ବର୍ଷ ପର୍ଯ୍ୟନ୍ତ ବୟସକୁ ଶିଶୁର ପ୍ରାଥମିକ କୈଶୋରାବସ୍ଥା ରୂପେ ଏବଂ ୧୬ ବର୍ଷଠାରୁ ୧୯ ବର୍ଷ ପର୍ଯ୍ୟନ୍ତ ବୟସକୁ ଶିଶୁର ଉତ୍ତର କୈଶୋରାବସ୍ଥା ରୂପେ ଗ୍ରହଣ କରାଯାଇଅଛି । ମନୁଷ୍ୟ ଜୀବନରେ ବାଲ୍ୟାବସ୍ଥାଠାରୁ ଯୌବନାବସ୍ଥା ଏକ ସନ୍ଧିସନ୍ଧ ଅଧ୍ୟାୟ । ଶିଶୁର ଯୌବନାବସ୍ଥାରେ ସେ ପରିପକ୍ୱତା ଲାଭ କରେ । ଏହା ଫଳରେ ଶିଶୁଠାରେ ଅନେକ ଅଙ୍ଗଗତ ପରିବର୍ତ୍ତନ ପରିଦୃଷ୍ଟ ହୋଇଥାଏ । ମାତ୍ର ଏହି ପରିବର୍ତ୍ତନ ଗୋଟିଏ ନିର୍ଦ୍ଦିଷ୍ଟ ବୟସରେ ସଙ୍ଘଟିତ ହୁଏ ନାହିଁ । ବାଳିକାମାନେ ୧୧ ବର୍ଷରୁ ୧୬ ବର୍ଷ ମଧ୍ୟରେ ଯୌବନାବସ୍ଥାରେ ପଦାର୍ପଣ କଲାବେଳେ ବାଳକମାନେ ୧୩ ବର୍ଷରୁ ୧୮ ବର୍ଷ ମଧ୍ୟରେ ଯୌବନାବସ୍ଥା ପ୍ରାପ୍ତ ହୋଇଥାନ୍ତି । ସ୍ୱାସ୍ଥ୍ୟ, ଜଳବାୟୁ, ପରିବେଶ ବା ପରିବେଷ୍ଟନୀରେ ଯୌନ ସମ୍ପର୍କୀୟ ମାନଦଣ୍ଡ ଇତ୍ୟାଦି କାରଣ ଉପରେ ଯୌବନାବସ୍ଥାର ପ୍ରକାଶ ମୁଖ୍ୟତଃ ନିର୍ଭରଶୀଳ । ଶିଶୁର ବୟଃପ୍ରାପ୍ତି ପରେ ହିଁ ସେ ଯୌବନାବସ୍ଥା ପ୍ରାପ୍ତହୁଏ ଓ ଏହା ସଙ୍ଗେ ସଙ୍ଗେ କୈଶୋରାବସ୍ଥା ଶେଷ ହୋଇଥାଏ । ଯୌବନାବସ୍ଥା ଓ ବାଲ୍ୟବସ୍ଥା ମଧ୍ୟରେ ଯେଉଁ ଅବସ୍ଥା ଶିଶୁ ଅତିକ୍ରମ କରେ ତାହାହିଁ କୈଶୋରାବସ୍ଥା ପଦବାଚ୍ୟ । ଯୌବନାବସ୍ଥାର ପ୍ରକାଶ ବିଭିନ୍ନ କାରଣ ଉପରେ ନିର୍ଭର କରୁଥିବାରୁ ପ୍ରତ୍ୟେକ ଶିଶୁ ଏକ ସମୟରେ ପରିପକ୍ୱତା ଲାଭ କରିନଥାନ୍ତି । ଶୀଘ୍ର ପରିପକ୍ୱତା ଲାଭ କରୁଥିବା ଶିଶୁର ଉଚ୍ଚତା ତାର ବୟସ ତୁଳନାରେ ଅଧିକ ହୋଇଥାଏ । ଏହାଛଡ଼ା ବୟଃପ୍ରାପ୍ତ ସଙ୍ଗେ ସଙ୍ଗେ ଶିଶୁର ଉଚ୍ଚତା ଓ ଓଜନରେ ପରିବର୍ତ୍ତନ ଦେଖାଯାଏ । ଶିଶୁ ଅଧିକ ବଳଶାଳୀ ହୋଇଥାଏ । ଉଭୟ ବାଳକ ଓ ବାଳିକାମାନଙ୍କର ଇନ୍ଦ୍ରିୟ, ହାଡ଼ ଓ ମାଂସପେଶୀ ଅଧିକ ଶକ୍ତିଶାଳୀ ହୋଇଥାନ୍ତି । ପରୀକ୍ଷା କରି ଦେଖାଯାଇଅଛି ଯେ, ବାଳକମାନଙ୍କ ଅପେକ୍ଷା ବାଳିକାମାନେ ଖୁବ୍ ଶୀଘ୍ର ବୃଦ୍ଧିପ୍ରାପ୍ତ ହୋଇଥାନ୍ତି । ଏହି ସମୟରେ ଉଭୟ ବାଳକ ଓ ବାଳିକାମାନଙ୍କ ଶରୀରରେ ଅନେକ ପରିବର୍ତ୍ତନ ଦୃଷ୍ଟିଗୋଚର ହୋଇଥାଏ । ଦେହ ଓ ମୁଖର ଆକାରରେ ପରିବର୍ତ୍ତନ ଓ ସ୍ୱରରେ ମଧ୍ୟ ପରିବର୍ତ୍ତନ ଦେଖାଯାଏ । କାଖତଳେ ଲୋମ ଦେଖାଯାଇଥାଏ । ଏହାଛଡ଼ା ବାଳିକାମାନଙ୍କର ଋତୁସ୍ରାବ ଆରମ୍ଭ ହୁଏ । ଏହି ଅବସ୍ଥାରେ ବାଳକ ବାଳିକାମାନେ କେବଳ ସେମାନଙ୍କ ଗୋଷ୍ଠୀ ସହିତ ସମ୍ପର୍କ ନରଖି ପରସ୍ପର ପ୍ରତି ଆକୃଷ୍ଟ ହୋଇଥାନ୍ତି । ଏହିପରି ପୂର୍ବ କୈଶୋରାବସ୍ଥାରେ ଶିଶୁଠାରେ ପରିପକ୍ୱତା ସହିତ ଶାରୀରିକ ପରିବର୍ତ୍ତନ ପରିଲକ୍ଷିତ ହୋଇଥାଏ ।

ପର କୈଶୋରାବସ୍ଥାରେ ବୁଦ୍ଧିର ଅଭିବୃଦ୍ଧି ଶେଷ ସୀମାରେ ଉପନୀତ ହୋଇଥାଏ । ତେବେ ପରୀକ୍ଷଣରୁ ଜଣାଯାଇଛି ଯେ, ବୟଃପ୍ରାପ୍ତିର ପ୍ରାରମ୍ଭିକ ଅବସ୍ଥାରେ ବୁଦ୍ଧିର ବିକାଶରେ ସାମାନ୍ୟ ଅବନତି ଦେଖାଯାଇଥାଏ । ଏହି ବୁଦ୍ଧିରେ ମଧ୍ୟ ତାରତମ୍ୟ ଦେଖାଯାଏ । ପରୀକ୍ଷା କରି ଦେଖାଯାଉଛି ଯେ, ଶୀଘ୍ର ପରିପକ୍ୱତା ଲାଭ କରୁଥିବା ଶିଶୁ ଅନ୍ୟମାନଙ୍କ ଅପେକ୍ଷା ଅଧିକ ବୁଦ୍ଧିମାନ ହୋଇଥାଏ । କାରଣ,

ବୟଃପ୍ରାପ୍ତି ପରେ ଶିଶୁ ମାନସିକ ପରିପକ୍ୱତା ମଧ୍ୟ ଲାଭ କରିଥାଏ ଏବଂ ତାର ଏକାଗ୍ରତା ଓ ସ୍ମରଣ ଶକ୍ତି ଦୃଢ଼ହୁଏ ।

ଶିଶୁଠାରେ ବିଭିନ୍ନ ପ୍ରକାର ଆବେଗ ଦ୍ରୁତମାତ୍ରାରେ ଦେଖାଯାଏ । ଫଳତଃ ସେମାନେ ଚଞ୍ଚଳ, ଚିନ୍ତାଶୀଳ ଓ ଅସ୍ଥିର ହୋଇପଡ଼ନ୍ତି । ସାମାନ୍ୟ କଥାରେ ଅତ୍ୟନ୍ତ କ୍ରୋଧଭାବ ଓ ଦୁଃଖଭାବ ସେମାନଙ୍କଠାରେ ପରିଲକ୍ଷିତ ହୋଇଥାଏ । ସେମାନେ ଏହି ସମୟରେ ଆତ୍ମପ୍ରକାଶ କରିବା ନିମିତ୍ତ ଅଧିକ ଆଗ୍ରହୀ ହୋଇଥାନ୍ତି । ପିତା, ମାତା ବା ଶିକ୍ଷକଙ୍କ କଠୋରତା ସେମାନଙ୍କ ମନରେ ବୀତସ୍ପୃହ ଭାବ ଉନ୍ମେଷ କରିଥାଏ । ଏତଦ୍‌ବ୍ୟତୀତ ସେମାନେ ସ୍ୱାଧୀନ ମନୋଭାବ ପୋଷଣ କରିଥାନ୍ତି । ତେଣୁ ପରିବେଶ ଓ ପରିସ୍ଥିତି ନେଇ ସେମାନଙ୍କୁ ସଂଯତ କରାଇବା କିମ୍ବା ସ୍ୱାଧୀନତା ଦେବା ପିତାମାତା ଓ ଶିକ୍ଷକଙ୍କର କର୍ତ୍ତବ୍ୟ ହେବା ଆବଶ୍ୟକ । ଉକ୍ତ ଅବସ୍ଥାରେ ବାଳକ-ବାଳିକାମାନେ ମୁଖ୍ୟତଃ ପ୍ରଦର୍ଶନାତ୍ମକ ମନୋଭାବ ପ୍ରକାଶ କରନ୍ତି । ତେବେ ବାଳିକାମାନେ ଏ କ୍ଷେତ୍ରରେ ବାଳକମାନଙ୍କ ଅପେକ୍ଷା ଅଧିକ ମାତ୍ରାରେ ଆଗ୍ରହୀ ହେବାର ଦେଖାଯାଏ । ଅନେକ କିଶୋର ଧର୍ମ ଓ ଦର୍ଶନରେ ଆଗ୍ରହ ପ୍ରକାଶ କରନ୍ତି । ମାତ୍ର ଏହା ମୂଳରେ ସନ୍ଦେହଥାଏ । ପରୋପକାର ଓ ସେବା ମନୋଭାବ ମଧ୍ୟ ଦେଖାଯାଇଥାଏ । ସେମାନେ ସୁସ୍ଥ ଓ ଆଦର୍ଶ ସମାଜ ଗଠନ କରିବା ପାଇଁ ପ୍ରୟାସୀ ହୋଇଥାନ୍ତି । ତେବେ ଚରିତ୍ରରେ ଅସ୍ଥିରତା ଦୃଷ୍ଟିଗୋଚର ହୋଇଥାଏ । ସେମାନଙ୍କ ମାନସିକ ଭାରସାମ୍ୟ ରକ୍ଷିବା ନିମିତ୍ତ ଶିକ୍ଷକ ଓ ପିତାମାତା ସତର୍କ ଦୃଷ୍ଟିରଖିବା ସର୍ବାଦୌ କାମ୍ୟ ।

**ବିକାଶର ବିଭିନ୍ନ ସ୍ତର ଓ ଶିକ୍ଷା :—**

ଜଣେ ଶିକ୍ଷା ଧାରାର ସ୍ରଷ୍ଟା କେବଳ ବିକାଶର ବିଭିନ୍ନ ସ୍ତର ସମ୍ପର୍କୀୟ ଜ୍ଞାନ ଲାଭ କଲେ ଯଥେଷ୍ଟ ହେବନାହିଁ । ବିକାଶ ବିଭିନ୍ନ ସ୍ତରରେ ଶିକ୍ଷାର କି ପ୍ରକାର ପ୍ରଭାବ ରହିଛି ଓ ରହିବା ଆବଶ୍ୟକ ତାହା ମଧ୍ୟ ଜାଣିବା ନିହାତି ଆବଶ୍ୟକ । ତେଣୁ ବିକାଶର ବିଭିନ୍ନ ପର୍ଯ୍ୟାୟରେ ଶିକ୍ଷାର ଆବଶ୍ୟକତା ସମ୍ପର୍କରେ ବିଶଦ ଆଲୋଚନା କରାଗଲା ।

ପ୍ରତ୍ୟେକ ଶିଶୁଠାରେ କିଛି ନା କିଛି ପ୍ରତିଭା ଅନ୍ତର୍ନିହିତ ଥାଏ । ଶିଶୁଠାରେ ଅନ୍ତର୍ନିହିତ ପ୍ରତିଭାର ବିକାଶ ନିମିତ୍ତ ଉପଯୁକ୍ତ ପରିବେଶ ଓ ସୁବିଧା ସୁଯୋଗ ନିହାତି ଆବଶ୍ୟକ । ତେଣୁ ପ୍ରତ୍ୟେକ ଅଭିଭାବକ ଶିଶୁର ଗୁଣାବଳୀକୁ ପ୍ରସ୍ଫୁଟିତ କରିବା ପାଇଁ ପ୍ରଯତ୍ନଶୀଳ ହେବା ନିହାତି ଆବଶ୍ୟକ । କୌଣସି ଉତ୍ତମ କାର୍ଯ୍ୟରେ ଶିଶୁ ଲିପ୍ତ ରହିବା ସମୟରେ ତାକୁ ବାଧାଦେବା ଅନୁଚିତ । ଏପରି ସ୍ଥଳରେ ଶିଶୁ ଖରାପ କାର୍ଯ୍ୟ କରିବାକୁ ପଶ୍ଚାତ୍‌ପଦ ହୁଏନାହିଁ । କେତେକ କ୍ଷେତ୍ରରେ ଦେଖାଯାଏ ଯେ ପିତାମାତା ନିଜ ଇଚ୍ଛାନୁଯାୟୀ ଶିଶୁକୁ ଗଠନ କରିବାରେ ବ୍ୟଗ୍ର ହୁଅନ୍ତି । ଏହାଦ୍ୱାରା ନିଜର ଅସଂପୂର୍ଣ୍ଣ ଇଚ୍ଛାକୁ ଶିଶୁଦ୍ୱାରା ସମ୍ପୂର୍ଣ୍ଣ କରିବାରେ ପ୍ରୟାସୀ ହୋଇଥାନ୍ତି ।

ମାତ୍ର ମନୋବିଜ୍ଞାନବିତ୍‌ଙ୍କ ମତାନୁଯାୟୀ, ସେମାନେ ଯଦି ମନୋବିତ୍ ଜ୍ଞାନ ସମ୍ମତ ପଥ ଅବଲମ୍ବନ କରନ୍ତି ତେବେ ସଫଳ ହୋଇପାରନ୍ତି ।

## ଶୈଶବାବସ୍ଥା ଓ ଶିକ୍ଷା :

ପରୀକ୍ଷଣରୁ ଜଣାଯାଉଛି ଯେ, ଗର୍ଭାବସ୍ଥାରୁ ହିଁ ଶିଶୁର ଶିକ୍ଷା ଆରମ୍ଭ ହୋଇଥାଏ । ଗର୍ଭବତୀ ନାରୀର ସ୍ୱାସ୍ଥ୍ୟ, ଅନୁଭୂତି, ଅଭିଜ୍ଞତାର ପ୍ରଭାବ ଶିଶୁଠାରେ ବହୁ ମାତ୍ରାରେ ପରିଲକ୍ଷିତ ହୋଇଥାଏ । ଏପରିକି ଶିଶୁର ଆକୃତି, ପ୍ରକୃତି, ବର୍ଣ୍ଣ ମଧ୍ୟ ପ୍ରଭାବିତ ହୋଇଥାଏ । ତେଣୁ ଗର୍ଭାବସ୍ଥାରେ ମା'ର ସ୍ୱାସ୍ଥ୍ୟ ପ୍ରତି ଯତ୍ନନେବା ଓ ଜନ୍ମପରେ ଶିଶୁର ଯତ୍ନନେବା ସର୍ବଦୌ ବାଞ୍ଛନୀୟ । ଶିଶୁକୁ ଅବହେଳା ନ କରି ତା'କୁ ସ୍ନେହ ଓ ଆଦର ଯତ୍ନରେ ବଢ଼ାଇବା ପ୍ରତ୍ୟେକ ମା'ର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟହେବା ଆବଶ୍ୟକ । ମାତ୍ର, ଅତ୍ୟଧିକ ସ୍ନେହ ସ୍ଥଳବିଶେଷରେ ଶିଶୁପାଇଁ କ୍ଷତିକାରକ ହୋଇଥାଏ । ଗୁରୁଜନମାନେ ତା' ଆଗରେ ଆଦର୍ଶ ବ୍ୟବହାର କରିବା ସଙ୍ଗେ ସଙ୍ଗେ ତାକୁ ସମସ୍ତ ଉପଯୋଗୀ କାର୍ଯ୍ୟରେ ଲିପ୍ତ କରାଇବା ବିଧେୟ । ରୁକ୍ଷ ବ୍ୟବହାର କରିବା ମଧ୍ୟ ଅଗ୍ରହଣୀୟ । ଶିଶୁକୁ ଖେଳିବା, ବୁଲିବାରେ ସ୍ୱାଧୀନତା ଦେବା ଉଚିତ୍ । ଶିଶୁକୁ ବିଭିନ୍ନ ଖେଳ ମାଧ୍ୟମରେ ଅକ୍ଷର ଶିକ୍ଷା ଓ ଗଣିତ ଶିକ୍ଷା ମଧ୍ୟ ଦିଆଯାଇପାରେ । ଏତଦ୍‌ବ୍ୟତୀତ ଏ ସମୟରେ ଶିଶୁ କବିତା ଆବୃତ୍ତି କରିବାକୁ ଭଲ ପାଉଥିବାରୁ ତାକୁ ଶ୍ରେଷ୍ଠ ଶ୍ରେଷ୍ଠ କବିତା ଶିଖାଇଦେବା ଆବଶ୍ୟକ ।

## ବାଲ୍ୟାବସ୍ଥା ଓ ଶିକ୍ଷା :

ବାଲ୍ୟାବସ୍ଥାରେ ଶିଶୁର କାର୍ଯ୍ୟକଳାପ ସ୍ୱୟଂସମ୍ପୂର୍ଣ୍ଣ । ତାହା ଉପରେ ନିର୍ଭର କରିବାପାଇଁ ଶିଶୁମନରେ ସ୍ପୃହା ନ ଥାଏ । ତେଣୁ ସେ ଗୁରୁଜନମାନଙ୍କ ଉପରେ ନିର୍ଭର ନ କରି ଅନେକ କାର୍ଯ୍ୟ ନିଜେ କରିବାରେ ବ୍ରତୀ ହୋଇଥାଏ । ଶିଶୁର ଭବିଷ୍ୟତ ଏହି ଅବସ୍ଥାରୁ ହିଁ ଜଣାପଡ଼ିଥାଏ । ସେ ଏ ଅବସ୍ଥାରେ ଅଧିକ ସହିଷ୍ଣୁ ଓ କର୍ମତତ୍ପର ହୋଇଥାଏ । ବିଦ୍ୟାଳୟରେ ପ୍ରବେଶ କରିବା ଫଳରେ ସେ ଆନୁଷ୍ଠାନିକ ଭାବେ ସାଙ୍ଗସାଥୀ ମେଳରେ ରହି ଶିକ୍ଷାଲାଭ କରିଥାଏ । ମୁଖ୍ୟତଃ ଶିଶୁ ଭାଷା ଓ ଗଣିତ ଶିକ୍ଷାକରିଥାଏ । ଏ ଅବସ୍ଥାରେ ଶିଶୁକୁ ସୃଜନଶୀଳ କରାଇବା ପାଇଁ ଶିକ୍ଷକ ତଥା ଅଭିଭାବକ ଦୃଷ୍ଟିଦେବା ନିହାତି ଆବଶ୍ୟକ । ଖେଳ ମାଧ୍ୟମରେ ଉଦ୍ଦେଶ୍ୟପୂର୍ଣ୍ଣ ଭାବେ କାର୍ଯ୍ୟ ସାଧନ କରିବାରେ ଯେପରି ପିଲାମାନେ ଦକ୍ଷ ହୁଅନ୍ତି ସେଥିପ୍ରତି ଶିକ୍ଷକ ଯତ୍ନବାନ ହେବା ବିଧେୟ ।

## କୈଶୋରାବସ୍ଥା ଓ ଶିକ୍ଷା :

କୈଶୋରାବସ୍ଥାରେ ଶିଶୁଠାରେ ଅଧିକ ମାତ୍ରାରେ ଦୈହିକ ପରିବର୍ତ୍ତନ ପରିଦୃଷ୍ଟ ହୁଏ । ତେଣୁ ଏ ଅବସ୍ଥାରେ ମାନସିକ ଓ ଶାରୀରିକ ଉଭୟ ଶିକ୍ଷା ଶିଶୁପାଇଁ ଆବଶ୍ୟକ

ହୋଇପଡ଼େ । ବିଦ୍ୟାଳୟ ପରିପ୍ରେକ୍ଷୀରେ ଶିଶୁର ଦୈହିକ ବିକାଶ ନିମିତ୍ତ ଖେଳ, କସରତ ପାଇଁ ସୁଯୋଗ ଓ ସ୍ୱାସ୍ଥ୍ୟ ପରୀକ୍ଷା ପାଇଁ ସୁବିଧା ଯୋଗାଇବା ଶିକ୍ଷକଙ୍କର ପ୍ରଧାନ କର୍ତ୍ତବ୍ୟ ହେବା ଉଚିତ । ଏହାଛଡ଼ା ଶିଶୁ ଏ ସମୟରେ ଅଧିକ ଭ୍ରମଣପ୍ରିୟ ହେବାର ଦେଖାଯାଏ ଏବଂ ବିଭିନ୍ନ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ସାଧନରେ ଆତ୍ମସନ୍ତୋଷ ଲାଭକରେ । ତେଣୁ ଶିଶୁର ଏସବୁ ଆବଶ୍ୟକତା ପୂରଣ କରିବା ପାଇଁ ଶିକ୍ଷକ ପ୍ରଯତ୍ନଶୀଳ ହେବା ବିଧେୟ । କୈଶୋରାବସ୍ଥାରେ ଶିଶୁ ଯୌନଚେତନା ପ୍ରାପ୍ତହୋଇଥାଏ, ଅର୍ଥାତ୍ ଶିଶୁ ବୟଃପ୍ରାପ୍ତି ବା ପରିପକ୍ୱତା ଲାଭକରେ । ଏହି ଅବସ୍ଥାରେ ଶିଶୁକୁ ଉପଯୁକ୍ତ ଶିକ୍ଷା ନଦିଆଗଲେ ଶିଶୁର ପ୍ରବୃତ୍ତି କୁମାର୍ଗରେ ପରିଚାଳିତ ହେବାର ସମ୍ଭାବନା ଯଥେଷ୍ଟ ଥାଏ । ଶିଶୁ ଏ ସମୟରେ ବାସ୍ତବବାଦୀ ଓ ଆଦର୍ଶବାଦୀ ମଧ୍ୟ ହୋଇପଡ଼ିଥାଏ । ତେଣୁ ବିଭିନ୍ନ ମହାପୁରୁଷଙ୍କ ଜୀବନଧାରା ବା ଆଦର୍ଶ ଦ୍ୱାରା ଶିଶୁ ଯେପରି ଅନୁପ୍ରାଣିତ ହୁଏ ସେଥିନିମିତ୍ତ ଶିକ୍ଷକ ମହାପୁରୁଷମାନଙ୍କ ଆଦର୍ଶ ଜୀବନ ସହିତ ସେମାନଙ୍କୁ ପରିଚିତ କରାଇ ସେମାନଙ୍କୁ ସତ୍‌ମାର୍ଗରେ ପରିଚାଳିତ କରାଇବାରେ ବ୍ରତୀ ହେବା ନିହାତି ଆବଶ୍ୟକ ।

### କିଶୋରମାନଙ୍କ ପ୍ରତି ଆଦର୍ଶ ଶିକ୍ଷକଙ୍କ କର୍ତ୍ତବ୍ୟ :

କିଶୋରାବସ୍ଥା ଜୀବନରେ ଏକ ଘଡ଼ିସନ୍ଧି ଅଧ୍ୟାୟ । ଏ ସମୟରେ ମନୁଷ୍ୟର ପ୍ରବୃତ୍ତି ସ୍ୱତଃ କୁମାର୍ଗରେ ପରିଚାଳିତ ହୋଇଥାଏ । ତେଣୁ ଶିଶୁକୁ ସୁମାର୍ଗରେ ପରିଚାଳିତ କରାଇବା ପାଇଁ ଆଦର୍ଶ ଶିକ୍ଷକ ଯତ୍ନବାନ ହେବା ସ୍ପୃହଣୀୟ । ସେ କିଶୋରଜୀବନ ସମ୍ପର୍କରେ ସମୁଚିତ ଜ୍ଞାନ ଅର୍ଜନ କରିବା ସଙ୍ଗେ ସଙ୍ଗେ ତା' ପ୍ରତି ସମ୍ବେଦନଶୀଳ ହେବା ଆବଶ୍ୟକ । ସହାନୁଭୂତି ବ୍ୟତିରେକେ ଶିଶୁକୁ କୁ-ମାର୍ଗରୁ ସୁ-ମାର୍ଗକୁ ନେବା ଅସମ୍ଭବ । ଶିକ୍ଷକ ନିଜେ ଜଣେ ଆଦର୍ଶ ବ୍ୟକ୍ତିହେବା ଉଚିତ୍ । ସେ କିଶୋରକୁ ଯୌନ ବିଜ୍ଞାନ ସମ୍ପର୍କୀୟ ଜ୍ଞାନ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଖେଳ କସରତ ଦ୍ୱାରା ତା'ର ଶକ୍ତିକୁ ନିୟନ୍ତ୍ରଣ କରିବା ଆବଶ୍ୟକ । କିଶୋରକୁ ସଙ୍ଗଠନମୂଳକ କାର୍ଯ୍ୟରେ ନିଯୋଗ କରିବା ସଙ୍ଗେ ସଙ୍ଗେ ତାକୁ ଆତ୍ମପ୍ରକାଶ ନିମିତ୍ତ ଯଥେଷ୍ଟ ସ୍ୱାଧୀନତା ଦେବା ଆବଶ୍ୟକ । ସେମାନଙ୍କ ଆବେଗକୁ ନିୟନ୍ତ୍ରଣ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ଧର୍ମ ଓ ନୀତିଗତ ଉପଦେଶ ଦେବା ମଧ୍ୟ ଶିକ୍ଷକଙ୍କର କର୍ତ୍ତବ୍ୟ ହେବା ଉଚିତ । ସର୍ବୋପରି କିଶୋରକୁ ସାର୍ବଜନୀନ ଭ୍ରାତୃଭାବ ପୋଷଣ ପୂର୍ବକ ଜାତୀୟତାବାଦର ପୃଷ୍ଠପୋଷକ ହୋଇ ଆଦର୍ଶ ନାଗରିକ ହେବା ପାଇଁ ସମୁଚିତ ଶିକ୍ଷା ଦେବା ସଙ୍ଗେ ସଙ୍ଗେ ତାକୁ ଉତ୍ତମ ମାର୍ଗରେ ପରିଚାଳିତ କରାଇବା ଶିକ୍ଷକଙ୍କର ପ୍ରଧାନ କର୍ତ୍ତବ୍ୟ ହେବା ବାଞ୍ଛନୀୟ ।



# ପଞ୍ଚମ ଅଧ୍ୟାୟ

## ଶିଶୁର ଦୈହିକ ବା ଶାରୀରିକ ବିକାଶ

ମନୁଷ୍ୟର ଶାରୀରିକ ବୃଦ୍ଧି ଏକ କ୍ରମାଗତ ଓ ନିରବଚ୍ଛିନ୍ନ ପ୍ରକ୍ରିୟା । ଏହି ବିକାଶ ପ୍ରତ୍ୟେକ ମନୁଷ୍ୟ ଜୀବନରେ ଅବଶ୍ୟମ୍ଭାବୀ । ଶିଶୁଠାରେ ବିଭିନ୍ନ ପ୍ରକାର ବିକାଶ ଓ ବୃଦ୍ଧି ସଙ୍ଘଟିତ ହୋଇଥାଏ । ମାନସିକ ବିକାଶ, ଆବେଗିକ ବିକାଶ ବ୍ୟତୀତ ଶାରୀରିକ ବିକାଶ ମଧ୍ୟ ମନୁଷ୍ୟ ଜୀବନ ପାଇଁ ଏକାନ୍ତ ଆବଶ୍ୟକ ହୋଇଥାଏ । ସ୍ଥୂଳତଃ ଶିଶୁର ଆକାର, ଓଜନ, ବଳ, ଅଙ୍ଗ ପ୍ରତ୍ୟଙ୍ଗର ସୁପରିଚାଳନା ଇତ୍ୟାଦିର କ୍ରମବୃଦ୍ଧିକୁ ଶାରୀରିକ ବିକାଶ ବୋଲି ଅଭିହିତ କରାଯାଏ । କେବଳ ଜନ୍ମଲାଭ ପରଠାରୁ ଯେ ଶିଶୁଠାରେ ଶାରୀରିକ ବୃଦ୍ଧି ଓ ବିକାଶ ସଙ୍ଘଟିତ ହୋଇଥାଏ ତା' ନୁହେଁ, ମାତୃଗର୍ଭସ୍ଥ ଶିଶୁଠାରେ ଶାରୀରିକ ବୃଦ୍ଧି ଓ ବିକାଶ ପ୍ରକ୍ରିୟା ଆରମ୍ଭ ହୋଇଥାଏ । ଶାରୀରିକ ବିକାଶ ଜୀବନରେ ଖୁବ୍ ପ୍ରଭାବ ପକାଇଥାଏ । ତେଣୁ ଶିଶୁର ମାନସିକ, ଆବେଗିକ ତଥା ବୌଦ୍ଧିକ ବିକାଶ ଏହା ଉପରେ ନିର୍ଭରଶୀଳ ଓ ଏହା ସହିତ ଘନିଷ୍ଠ ଭାବେ ସମ୍ପୃକ୍ତ । ଦୈହିକ ବିକାଶ ସମ୍ପର୍କୀୟ ଉପଯୁକ୍ତ ତଥା ଆବଶ୍ୟକୀୟ ଜ୍ଞାନ ଦ୍ୱାରା ହିଁ ଶିକ୍ଷାର ଉଦ୍ଦେଶ୍ୟ ସାଧିତ ହୋଇଥାଏ । ଶିଶୁର ଉପଯୁକ୍ତ ଶାରୀରିକ ବିକାଶ ନିମିତ୍ତ ପରିବାର ମୁଖ୍ୟତଃ ଦାୟୀ ହେଲେ ହେଁ ବିଦ୍ୟାଳୟରେ ପ୍ରବେଶ ପରେ ଶିଶୁର ବିକାଶ କାର୍ଯ୍ୟ ଅଧିକାଂଶରେ ବିଦ୍ୟାଳୟ ଦ୍ୱାରା ସାଧିତ ହୋଇଥାଏ । ବିଦ୍ୟାଳୟ ପରିପ୍ରେକ୍ଷୀରେ ଶିକ୍ଷକଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ଶିଶୁର ଓଜନ ଶାରୀରିକ ବିକାଶ ଓ ବୃଦ୍ଧି ସମ୍ପର୍କୀୟ ସାଧାରଣ ଜ୍ଞାନ ଅର୍ଜନ କରିବା ତାଙ୍କର ପ୍ରଧାନ କର୍ତ୍ତବ୍ୟ ।

**ଉଚ୍ଚତା ଏବଂ ଉଚ୍ଚତାର ବୃଦ୍ଧି** :—

ପୂର୍ବବର୍ତ୍ତୀ ଅଧ୍ୟାୟ ବଂଶାନୁଗୁଣ ଓ ପରିବେଷ୍ଟନୀ'ରେ ମାତୃଗର୍ଭରେ ମାନବ ଜୀବନ କିପରି ଆରମ୍ଭ ହୁଏ ସେ ବିଷୟରେ ବିଶଦ୍ ଆଲୋଚନା କରାଯାଇଛି । ମାତୃ-

ଗର୍ଭରେ ୯ମାସ ରହିବା ପରେ ଶିଶୁ ଭୂମିଷ୍ଠ ହୋଇଥାଏ ଓ ଏହି ୯ମାସ ମଧ୍ୟରେ ତା'ର ପୂର୍ଣ୍ଣ ବିକାଶ ପ୍ରାପ୍ତି ହୋଇଥାଏ । ଗର୍ଭାବସ୍ଥାରେ ଶାରୀରିକ ବୃଦ୍ଧି ଓ ବିକାଶଦ୍ୱାରା ଓଜନବର୍ଦ୍ଧନ ହୋଇ ୭/୨ ପାଉଣ୍ଡ ଓଜନର ଶିଶୁ ହୋଇଥାଏ । ଜନ୍ମପରେ ପ୍ରଥମ ଦଶଦିନ ମଧ୍ୟରେ ୭/୨ ପାଉଣ୍ଡ ଓଜନର ଶିଶୁ ଶୁଖିଯାଇ ପ୍ରାୟ ୪ ଆଉନ୍ସ କମିଯାଏ ଏବଂ ପୁନର୍ବାର ସପ୍ତାହକ ବେଳକୁ ପୂର୍ବାବସ୍ଥାକୁ ଫେରି ଆସିଥାଏ । ଖାଦ୍ୟ, ଜଳବାୟୁ, ପରିବେଶ ଇତ୍ୟାଦି ଅନୁକୂଳ ହେଲେ ଶିଶୁର ସ୍ୱାସ୍ଥ୍ୟର ଉନ୍ନତି ଘଟିଥାଏ । ପ୍ରାୟ ପାଞ୍ଚମାସ ବେଳକୁ ଶିଶୁର ଓଜନ ଜନ୍ମବେଳ ଅପେକ୍ଷା ଦୁଇଗୁଣ ଅଧିକ ହୋଇଥାଏ ଏବଂ ବର୍ଷଟିଏ ହେବା ବେଳକୁ ଶିଶୁର ଜନ୍ମାବସ୍ଥା ଅପେକ୍ଷା ତିନିଗୁଣ ହୋଇଥାଏ ।

ଶାରୀରିକ ବୃଦ୍ଧିର ହାର ପ୍ରଥମ ଦୁଇ ବର୍ଷରେ ଅତ୍ୟନ୍ତ ଦ୍ରୁତ ହୁଏ । ଜନ୍ମବେଳେ ଶିଶୁ ସାଧାରଣତଃ ୪୮ରୁ ୫୩ ସେଣ୍ଟିମିଟର (୧୭ରୁ ୨୧ ଇଞ୍ଚ) ଲମ୍ବ ହୋଇଥାଏ । ପରୀକ୍ଷାଦ୍ୱାରା ଜଣାଯାଇଛି ଯେ ଉଚ୍ଚତା ବୟସ ବୃଦ୍ଧି ସହିତ ଗତି କରିଥାଏ । ଭାରତର ହାଫକିନ୍ ଇନଷ୍ଟିଚ୍ୟୁଟ୍, ବମ୍ବେର ପରୀକ୍ଷା ଅନୁଯାୟୀ ସଦ୍ୟ ଜନ୍ମଲବ୍ଧ କରିଥିବା ବାଳକ ଶିଶୁର ଲମ୍ବା ୩୭ରୁ ୫୩ ସେଣ୍ଟିମିଟର ଓ ହାରାହାରି ଉଚ୍ଚତା ୪୫ ସେଣ୍ଟିମିଟର ବା ୧୮ ଇଞ୍ଚ । ସଦ୍ୟଜାତ ବାଳିକା ଶିଶୁର ଲମ୍ବା ୪୦ରୁ ୫୦ ସେଣ୍ଟିମିଟର ଓ ହାରାହାରି ଉଚ୍ଚତା ୪୫ ସେଣ୍ଟିମିଟର । ସେହିପରି ଭାରତୀୟ ଶିଶୁମାନଙ୍କ ଓଜନ ପ୍ରାୟ ୭.୩ ପାଉଣ୍ଡ । ପ୍ରଥମ ବର୍ଷରେ ଶିଶୁର ଓଜନ ଦ୍ରୁତ ଭାବରେ ବୃଦ୍ଧିପ୍ରାପ୍ତ ହୋଇଥାଏ । ମାତ୍ର ପରେ କ୍ରମଶଃ ଓଜନର ବୃଦ୍ଧି ଶିଥିଳ ହୋଇଯାଏ ।

ଟୁଡେନହାମ ଏବଂ ସିଣ୍ଡରଙ୍କ ମତାନୁଯାୟୀ ବାଳକବାଳିକାମାନେ ୧୮ ବର୍ଷରେ ସବୁଠାରୁ ବେଶି ଉଚ୍ଚତା ପ୍ରାପ୍ତ ହୋଇଥାନ୍ତି । ବାଳକମାନେ ସାଧାରଣତଃ ବାଳିକା-ମାନଙ୍କଠାରୁ ଅଧିକ ଉଚ୍ଚତା ବିଶିଷ୍ଟ ହୋଇଥାନ୍ତି । ତେବେ ଉଚ୍ଚତା ବୃଦ୍ଧି କ୍ଷେତ୍ରରେ ଉଭୟ ବାଳକ ଓ ବାଳିକାମାନଙ୍କ ମଧ୍ୟରେ ତାରତମ୍ୟ ପରିଦୃଷ୍ଟ ହୋଇଥାଏ । ବାଳିକାମାନଙ୍କର ଉଚ୍ଚତା ବୃଦ୍ଧିହାର ବାଳକମାନଙ୍କ ଅପେକ୍ଷା ଅଧିକ ହେଲେହେଁ ବୟଃପ୍ରାପ୍ତି ପରେ ଏହା କମିଯାଏ । ବାଳିକାମାନେ ଶୀଘ୍ର ପରିପକ୍ୱତା ଲାଭ କରୁଥିବାରୁ ଓ ବାଳକମାନେ ବିଳମ୍ବରେ ବୟଃପ୍ରାପ୍ତି ହେଉଥିବାରୁ ବାଳିକାମାନଙ୍କର ଉଚ୍ଚତା ଏକ ନିର୍ଦ୍ଦିଷ୍ଟ ସୀମାରେ ଉପନୀତ ହେଲେ ମଧ୍ୟ ବାଳକମାନେ ବଢ଼ୁଥାନ୍ତି । ଅଠର ବର୍ଷପରେ ଉଚ୍ଚତା ବୃଦ୍ଧି ଶେଷ ହୋଇଥାଏ । ଏତେବେଳକୁ ଜଣେ ବ୍ୟକ୍ତିର ଉଚ୍ଚତା ହାରାହାରି ପ୍ରାୟ ୧୭୨ ସେଣ୍ଟିମିଟର ହୋଇଥାଏ । (ବୟସ ବୃଦ୍ଧି ସଙ୍ଗେ ଓଜନ

ଓ ଉଚ୍ଚତା ବୃଦ୍ଧି ହେବା ସଙ୍ଗେ ସଙ୍ଗେ ବ୍ୟକ୍ତିର ଆକାର ଓ ବାହ୍ୟ ଚେହେରାରେ ପାର୍ଥକ୍ୟ ଦେଖାଯାଏ । ନିମ୍ନ ଚିତ୍ରରୁ ତାହା ସ୍ପଷ୍ଟ ଅନୁମେୟ । )



• ଜନ୍ମଠାରୁ ବୟଃପ୍ରାପ୍ତ ଅବସ୍ଥା ପର୍ଯ୍ୟନ୍ତ ଶାରୀରିକ ବୃଦ୍ଧି •

### ଶାରୀରିକ ବୃଦ୍ଧି ଓ ବିକାଶରେ ଦୈହିକ ପରିବର୍ତ୍ତନ :

ଶିଶୁର ଶାରୀରିକ ବୃଦ୍ଧି ତଥା ଉଚ୍ଚତା ଏବଂ ଓଜନ ବୃଦ୍ଧି ସଙ୍ଗେ ସଙ୍ଗେ ଶିଶୁଠାରେ କେତେକ ଦୈହିକ ପରିବର୍ତ୍ତନ ପରିଲକ୍ଷିତ ହୋଇଥାଏ । ତେଣୁ ଜଣେ ବୃଦ୍ଧଙ୍କଠାରୁ ଜଣେ ଶିଶୁ ଦେଖିବାକୁ ପୃଥକ ହୋଇଥାଏ । ଏତଦ୍‌ବ୍ୟତୀତ ପ୍ରତ୍ୟେକ ଶିଶୁ ପରସ୍ପରଠାରୁ ଭିନ୍ନ । କୌଣସି ଶିଶୁ ମୋଟା ତ କୌଣସି ଶିଶୁ ପତଳା, କୌଣସି ଶିଶୁ ଡେଙ୍ଗା ତ କୌଣସି ଶିଶୁ ଗେଡ଼ା ହୋଇଥାଏ । ପିତାମାତା ତଥା ବଂଶାନୁଗୁଣ ଦ୍ୱାରା ଶିଶୁ ପ୍ରାକୃତଃ ପ୍ରଭାବିତ ହୋଇଥାଏ । ଏପରିକି ପିତାମାତାଙ୍କ ମନୋଭାବର ସାମଞ୍ଜସ୍ୟ ମଧ୍ୟ ଶିଶୁଠାରେ ପରିଦୃଷ୍ଟ ହୁଏ । ଅନେକ ସମୟରେ ଶିଶୁ ପିତାମାତାଙ୍କ ସ୍ୱାସ୍ଥ୍ୟ ଅନୁଯାୟୀ ସ୍ଥୂଳ କିମ୍ବା କ୍ଷୀଣ ହୋଇଥାଏ ଏବଂ ଶିଶୁର ଶରୀରର ବର୍ଣ୍ଣ, ଚକ୍ଷୁର ରଙ୍ଗ, ଗୁଣ ଓ ସ୍ୱାସ୍ଥ୍ୟ ବେଳେବେଳେ ଠିକ୍ ବାପା କିମ୍ବା ମା'ପରି ହୋଇଥାଏ । ତେଣୁ ଶିଶୁର ହୃଷ୍ଟପୁଷ୍ଟତା କିମ୍ବା ଦୁର୍ବଳତା ତା'ର ବଂଶ ଓ ପରିବେଷ୍ଟନୀ ପ୍ରଭାବ ଯୋଗୁଁ ସଙ୍ଗଠିତ ହୁଏ ବୋଲି ବୁଝାଯାଏ । ଏତଦ୍ ବ୍ୟତୀତ ଶିଶୁର ଶାରୀରିକ ବୃଦ୍ଧି ନିମିତ୍ତ

ଅଭିଭାବକମାନେ ଆବଶ୍ୟକୀୟ ସେବାଯତ୍ନ ଓ ଖାଦ୍ୟପେୟ ପ୍ରତି ଯତ୍ନଶୀଳ ହେବା ବିଧେୟ । କାରଣ ଏ କ୍ଷେତ୍ରରେ ପ୍ରାୟ ଧନୀ ଦରିଦ୍ର ପ୍ରତ୍ୟେକ ପରିବାରରେ ତ୍ରୁଟି ଦେଖାଯାଏ । ଶିଶୁର ଖାଦ୍ୟ ସୁଷମ ହେବା ଯେଉଁଭଳି ଆବଶ୍ୟକ ତା'ର ଉପଯୁକ୍ତ ସେବା ଯତ୍ନନେବା ମଧ୍ୟ ତା'ଠାରୁ ଅଧିକ ଆବଶ୍ୟକ । ଏହାଛଡ଼ା ପରିବେଶ ଓ ପରିବେଷ୍ଟନୀ ମଧ୍ୟ ସ୍ୱାସ୍ଥ୍ୟପ୍ରଦ ହେବା ଉଚିତ୍ ।

ବୟଃବୃଦ୍ଧି ସଙ୍ଗେ ସଙ୍ଗେ ଶାରୀରିକ ବୃଦ୍ଧି ସଙ୍ଗଠିତ ହୋଇଥାଏ । ଫଳରେ ଶରୀରସ୍ଥ ଅସ୍ଥି ସମୂହର ଆକାର ବୃଦ୍ଧିପ୍ରାପ୍ତ ହୁଏ । ଏହାଛଡ଼ା ପ୍ରଥମାବସ୍ଥାରେ ନରମ ଓ ଛୋଟ ଥିବା ଅସ୍ଥିଗୁଡ଼ିକ କ୍ରମଶଃ ଶକ୍ତ ଓ ବଡ଼ ଆକାର ଧାରଣ କରେ । ବାଳକମାନଙ୍କର ଅସ୍ଥି ବାଳିକାମାନଙ୍କଠାରୁ ଅପେକ୍ଷାକୃତ ବଡ଼ହୁଏ ଓ ସେମାନଙ୍କର ଦୈହିକ ଗଠନ ମଧ୍ୟ ଦୃଢ଼ ହୋଇଥାଏ । ଗୋଟିଏ ନିର୍ଦ୍ଦିଷ୍ଟ ଧାରା ବା ନୀତି ଅନୁସାରେ ଅସ୍ଥିଗୁଡ଼ିକର ଯେପରି ବୃଦ୍ଧି ଓ ବିକାଶ ଘଟେ ସେହିପରି ବୟଃବୃଦ୍ଧି ଅନୁଯାୟୀ ଦନ୍ତୋଦ୍‌ଗମନରେ ମଧ୍ୟ ଏହି ନୀତି ଦେଖାଯାଏ । ଜନ୍ମାବସ୍ଥାରେ ଯେଉଁ ଦାନ୍ତ ଉଠିଥାଏ ସେଗୁଡ଼ିକ ୬/୭ ବର୍ଷରେ ଭାଙ୍ଗି ଯାଇ ନୂତନ ସ୍ଥାୟୀଦାନ୍ତ ଉଦ୍‌ଦାନ୍ତ ଉଦ୍‌ଗମ ହୋଇଥାଏ । ଗୋଟିଏ ପ୍ରାପ୍ତବୟସ୍କ ବ୍ୟକ୍ତିର ୩୨ଟି ଦାନ୍ତ ହୋଇଥାଏ । ଶିଶୁର ମୁଖର ଆକୃତି ଶୈଶବାବସ୍ଥାରୁ କ୍ରମଶଃ ବୃଦ୍ଧିପାଇ ବୟଃସନ୍ଧିକ୍ଷଣରେ ପୂର୍ଣ୍ଣାବସ୍ଥା ଧାରଣ କରେ । ତା'ର ନାସିକା ଦୀର୍ଘ ଓ ମୁଖ ଗହ୍ୱର ଅପେକ୍ଷାକୃତ ବିସ୍ତୃତ ମଧ୍ୟ ହୋଇଥାଏ । ଏହା ସଙ୍ଗେ ସଙ୍ଗେ ଶିଶୁର ଚପଳତା ତଥା ଶିଶୁସୁଲଭ ଗୁଣ ଅଳ୍ପେ ଅଳ୍ପେ ହ୍ରାସପାଇ ଯୁବସୁଲଭ ବା ଯୌବନସୁଲଭ ଭାବ ଦେଖାଯାଏ ।

ଶିଶୁର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ତା'ର ପେଶୀଗୁଡ଼ିକ କ୍ରମଶଃ ଦୃଢ଼ ଓ ଶକ୍ତିଶାଳୀ ହୋଇଥାନ୍ତି । ଏହାଦ୍ୱାରା ଶିଶୁମାନଙ୍କର ମାଂସପେଶୀ ଓ ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକ ଯଥା :—ପାଦ, ବାହୁ, ସ୍କନ୍ଧ ଓ କଟିବନ୍ଧ ଇତ୍ୟାଦି କାର୍ଯ୍ୟକ୍ଷମ ହୋଇଥାନ୍ତି । ଶୈଶବାବସ୍ଥାରେ ବାଳକ ଓ ବାଳିକାମାନଙ୍କ ମଧ୍ୟରେ ଶକ୍ତିଗତ ପାର୍ଥକ୍ୟ ବା ତାରତମ୍ୟ ପ୍ରାୟ ପରିଲକ୍ଷିତ ହୋଇ ନଥାଏ । ମାତ୍ର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ବାଳକମାନେ ବାଳିକାମାନଙ୍କ ଅପେକ୍ଷା ଅଧିକ ଶକ୍ତିଶାଳୀ ହେବାର ଲକ୍ଷ୍ୟ କରାଯାଏ ।

**ଆଭ୍ୟନ୍ତରୀଣ ବୃଦ୍ଧି :**

ଶିଶୁର ଶାରୀରିକ ବୃଦ୍ଧି ସଙ୍ଗେ ସଙ୍ଗେ ତା'ର ହୃଦ୍‌ଯନ୍ତ୍ର, ପରିପାକ ଯନ୍ତ୍ର ଓ ଶ୍ୱାସଯନ୍ତ୍ର ବୃଦ୍ଧିପ୍ରାପ୍ତ ହୋଇଥାଏ । ଏହାଛଡ଼ା ଏ ସମସ୍ତ କ୍ରିୟା ଯଥା :—ପାକକ୍ରିୟା, ଶ୍ୱାସକ୍ରିୟା ଓ ରକ୍ତ ସଞ୍ଚାଳନ କ୍ରିୟାରେ ପରିବର୍ତ୍ତନ ଦେଖାଯାଏ । ଦେଖାଯାଉଛି ଯେ ବାଳିକାମାନଙ୍କର ଶ୍ୱାସଯନ୍ତ୍ର ବା ଫୁସ୍‌ଫୁସ୍ ଅପେକ୍ଷାକୃତ କ୍ଷୁଦ୍ର ଓ ଏହାର କାର୍ଯ୍ୟକ୍ଷମତା ମଧ୍ୟ ସୀମିତ । ଗୋଟିଏ ୧୪/୧୫ ବର୍ଷ ବାଳକ କିଛି ପରିଶ୍ରମସାଧ୍ୟ କାର୍ଯ୍ୟ କଲେ ତା'ପାଇଁ ଅଧିକ ପରିମାଣର ଅମ୍ଳଜାନ ଦରକାର ହୋଇଥାଏ । ତେଣୁ ସେ ଜୋର୍‌ରେ

ଶ୍ୱାସ ଗ୍ରହଣ କରେ । ମାତ୍ର ସେ ୧୫/୨୦ ମିନିଟ୍ ସମୟ ମଧ୍ୟରେ ସାଧାରଣ ଅବସ୍ଥାକୁ ଫେରିଆସେ ମାତ୍ର । ବୃଦ୍ଧାବସ୍ଥାରେ ସେତିକି ପରିଶ୍ରମ କରି ସାଧାରଣ ଅବସ୍ଥାକୁ ଫେରି ଆସିବାକୁ ଜଣେ ବ୍ୟକ୍ତିକୁ ପ୍ରାୟ ଦୁଇ ତିନିଘଣ୍ଟା ସମୟ ଲାଗିଥାଏ ।

ଜନ୍ମପୂର୍ବରୁ ହୃତ୍ପିଣ୍ଡର ସ୍ପନ୍ଦନ କମ୍ଥାଏ, ମାତ୍ର ଜନ୍ମ ପରେ ଏହା ବୃଦ୍ଧି ପାଇଥାଏ । ସେହିପରି ଏହାର ରକ୍ତ ସଞ୍ଚାଳନ କ୍ରିୟାର ବେଗ ମଧ୍ୟ ବଢ଼ିଯାଏ । ଜନ୍ମ ସମୟରେ ଶିଶୁର ହୃତ୍ପିଣ୍ଡର ସ୍ପନ୍ଦନ ମିନିଟ୍କୁ ୧୪୦ ଥର ହେଉଥିବାବେଳେ ଜଣେ ସାଧାରଣ ବ୍ୟକ୍ତିର ହୃତ୍ସ୍ପନ୍ଦନ ମିନିଟ୍ରେ ୭୨ ଥର ହୋଇଥାଏ । ବୟଃସନ୍ଧି ବେଳକୁ ଏହା ପ୍ରତି ମିନିଟ୍ରେ ପ୍ରାୟ ୮୫ ଥର ହୋଇଥାଏ । ୧୩ ବର୍ଷ ପରେ ହୃଦଯନ୍ତ୍ରର ବୃଦ୍ଧି ବାଳକମାନଙ୍କ ଠାରେ ଦ୍ରୁତ ହୋଇଥାଏ । ରକ୍ତବାହକ ଶିରା ଓ ଧମନୀଗୁଡ଼ିକ ମଧ୍ୟ ଦ୍ରୁତ ଗତିରେ ବୃଦ୍ଧି ଲାଭ କରିଥାଏ । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ରକ୍ତଚାପ ବୃଦ୍ଧିରେ ମଧ୍ୟ ପରିବର୍ତ୍ତନ ଦେଖାଯାଏ । ୧ରୁ ୧୭ ବର୍ଷ ବୟସ୍କ ବ୍ୟକ୍ତିର ରକ୍ତଚାପ ପ୍ରାୟ ୮୦ରୁ ୮୫ ମିଲିମିଟର ହୋଇଥାଏ ଓ ବୟଃସନ୍ଧିକ୍ଷଣରେ କେବଳ ବାଳକମାନଙ୍କ କ୍ଷେତ୍ରରେ ଏହା ୧୦୦ରୁ ୧୨୫ ମିଲିମିଟର ହୋଇଥାଏ । ଏତଦ୍ବ୍ୟତୀତ ମନୁଷ୍ୟର ନାଡ଼ିର ଗତି ବୟସ ବୃଦ୍ଧି ସଙ୍ଗେ ସଙ୍ଗେ କମିଗଲେ ମଧ୍ୟ ସ୍ତ୍ରୀମାନଙ୍କର ନାଡ଼ିର ଗତି ସବୁ ବୟସରେ ଦ୍ରୁତଥାଏ ।

ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ପରିପାକଯନ୍ତ୍ରର ଆକୃତି ବୃଦ୍ଧି ପାଇଥାଏ । ତେଣୁ ଅଧିକ ପରିମାଣରେ ଖାଦ୍ୟ ପ୍ରୟୋଜନୀୟ ହୋଇଥାଏ । ଫଳତଃ ଉଦରର ଆକାର ବୃଦ୍ଧି ହୁଏ ଏବଂ ବ୍ୟକ୍ତିର କ୍ଷୁଧା ମଧ୍ୟ ବୃଦ୍ଧି ହୁଏ ।

ବ୍ୟକ୍ତିଠାରେ ଉପରୋକ୍ତ ବୃଦ୍ଧିସବୁ ସଙ୍ଗଠିତ ହେବା ସଙ୍ଗେ ସଙ୍ଗେ ତା'ର ସ୍ନାୟୁ ବିଭାଗ, ଶିରାପ୍ରଶିରା, ଗ୍ରନ୍ଥିସମୂହ, ପ୍ରଜନନ ଇନ୍ଦ୍ରିୟ ଇତ୍ୟାଦି ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହୋଇଥାଏ । ସ୍ନାୟୁତନ୍ତ୍ରର ସଂଖ୍ୟା ଜନ୍ମ ସମୟରୁ ନିର୍ଦ୍ଦିଷ୍ଟ ଥିଲେହେଁ ଏସବୁ ପ୍ରଥମାବସ୍ଥାରୁ କାର୍ଯ୍ୟକ୍ଷମ ହୋଇ ନଥାନ୍ତି । ଏଗୁଡ଼ିକ ଦୈର୍ଘ୍ୟ ଏବଂ ପ୍ରସ୍ଥରେ ବୃଦ୍ଧି ପାଆନ୍ତି । କ୍ରମଶଃ ଏଗୁଡ଼ିକର ପାରସ୍ପରିକ ସଂଯୋଗ ଘଟେ ଏବଂ ଏହି ସଂଯୋଗ ଘନିଷ୍ଠ ଓ ଜଟିଳ ହୁଏ । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଗ୍ରନ୍ଥିଗୁଡ଼ିକର ପରିବର୍ଦ୍ଧନ ହୁଏ ଓ ଅନ୍ୟାନ୍ୟ ଆଭ୍ୟନ୍ତରୀଣ ବୃଦ୍ଧି ଶିଶୁଠାରେ ପରିଲକ୍ଷିତ ହୋଇଥାଏ ।

ବୟଃପ୍ରାପ୍ତି ପରେ ଶିଶୁ ପରିପକ୍ୱତା ଲାଭକରି ଯୌବନରେ ପଦାର୍ପଣ କରେ । ଫଳରେ ବାଳକଠାରେ ପୁରୁଷୋଚିତ ଲକ୍ଷଣ ଓ ବାଳିକାଠାରେ ସ୍ତ୍ରୀ ସୁଲଭ ଲକ୍ଷଣମାନ ଦେଖାଯାଇଥାଏ । ଏହା ଫଳରେ ବାଳକ ଓ ବାଳିକା ଉଭୟଙ୍କ ଅଙ୍ଗ ପ୍ରତ୍ୟଙ୍ଗରେ ଦ୍ରୁତ ପରିବର୍ତ୍ତନ ପରିଦୃଷ୍ଟ ହୁଏ । ବାଳକମାନେ ୧୪ରୁ ୧୫ ବର୍ଷ ମଧ୍ୟରେ ଓ

ବାଳିକାମାନେ ୧୨/୧୩ ବର୍ଷ ବୟସରେ ବୟଃପ୍ରାପ୍ତି ହୋଇଥାନ୍ତି । ଏହି ସମୟରେ ବାଳିକାମାନେ ଋତୁମତୀ ହୁଅନ୍ତି । ଯଦି ୧୨ ବର୍ଷ ପୂର୍ବରୁ କୌଣସି ବାଳିକା ଋତୁମତୀ ହୁଏ, ତେବେ ତାହାକୁ "ଅକାଳପକ୍ୱ" (Precocious) ଓ ୧୬ ବର୍ଷ ପରେ ମଧ୍ୟ ରଜସ୍ୱଳା ନହେଲେ ତାହାକୁ "ରୁଦ୍ଧଯୌବନ" (Returted youth) ବୋଲି ଅଭିହିତ କରଯାଏ । ଏହାଛଡ଼ା ସେମାନଙ୍କ ଅବୟବରେ ମଧ୍ୟ ଯୌବନପ୍ରାପ୍ତିର ଅନ୍ୟାନ୍ୟ ପ୍ରତୀକ ଦେଖାଯାଏ । ବାଳକମାନଙ୍କର ଶ୍ମଶ୍ରୁ ଆଦି ଲକ୍ଷଣ ଦେଖାଯାଏ । ଏହି ସମୟରେ ସ୍ୱର ଯନ୍ତ୍ରରେ ପରିବର୍ତ୍ତନ ଆସେ । ବାଳକମାନଙ୍କର ସ୍ୱର ମୋଟା ଓ ଗମ୍ଭୀର ହେବା ସଙ୍ଗେ ସଙ୍ଗେ ବାଳିକାମାନଙ୍କର ସ୍ୱର କୋମଳ ମିଷ୍ଟ ହୁଏ । ୧୯/୨୦ ବର୍ଷ ବେଳକୁ ବାଳକ ଓ ବାଳିକା ଉଭୟ ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇ ଯୌବନ ପ୍ରାପ୍ତ ହୁଅନ୍ତି । ଯୌବନର ପ୍ରଭାବ ଫଳରେ ଯେଉଁ କେତେଗୁଡ଼ିଏ ଦୈହିକ ପରିବର୍ତ୍ତନ ଦେଖାଦିଏ, ସେଗୁଡ଼ିକୁ ଅପ୍ରଧାନ ଯୌନ ବୈଶିଷ୍ଟ୍ୟ (Secondary sex Characteristics) ରୂପେ ଅଭିହିତ କରଯାଏ । ଏହି ସମୟରେ ଉଭୟ ନାରୀ ଓ ପୁରୁଷର ପେଶୀ ପୁଷ୍ଟ ହୋଇଥାଏ । ପୁରୁଷମାନଙ୍କର ସ୍କନ୍ଧଦେଶ ବିସ୍ତୃତ ହେବା ସଙ୍ଗେ ସଙ୍ଗେ ନାରୀମାନଙ୍କର ନିତମ୍ବ ଗୁରୁତ୍ୱର ହୋଇଥାଏ । ପୁରୁଷର ବକ୍ଷୋଦେଶ ବିସ୍ତୃତ ଓ ନାରୀର ସ୍ତନଯୁଗଳ ପରିବର୍ଦ୍ଧିତ ହୁଏ । ଏହି ସମୟ ପୁରୁଷ ଓ ନାରୀମାନଙ୍କୁ ସନ୍ତାନ ଉତ୍ପାଦନ ପାଇଁ ସାମର୍ଥ୍ୟ ପ୍ରଦାନ କରିଥାଏ । ଏହିଭଳି ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଶାରୀରିକ ବୃଦ୍ଧି ଲାଭ ହେବା ଦ୍ୱାରା ଉପରୋକ୍ତ ଦୈହିକ ପରିବର୍ତ୍ତନମାନ ପରିଦୃଷ୍ଟ ହୋଇଥାଏ ।

**ଶାରୀରିକ ବିକାଶ ଉପରେ ନିର୍ଭରଶୀଳ ବୃଦ୍ଧି ଓ ବିକାଶର ଅନ୍ୟାନ୍ୟ ଦିଗ : (Other aspects of development dependant upon physical growth)**

ମନୁଷ୍ୟ ଶରୀରର ଅନ୍ୟାନ୍ୟ ଦିଗଗୁଡ଼ିକର ବିକାଶ ଓ ବୃଦ୍ଧି ଉପରେ ଶାରୀରିକ ବିକାଶର ପ୍ରଭାବ ଯଥେଷ୍ଟ ରହିଛି, ତେଣୁ ସାଧାରଣତଃ ଦେଖାଯାଏ ଯେଉଁ ବ୍ୟକ୍ତିର ଉତ୍ତମ ସ୍ୱାସ୍ଥ୍ୟ ଏବଂ ଶାରୀରିକ ଅଙ୍ଗଗୁଡ଼ିକର ସୌନ୍ଦର୍ଯ୍ୟ ରହିଛି ତା'ର ଆତ୍ମବିଶ୍ୱାସ ଯଥେଷ୍ଟ ରହିଥାଏ । ଏ ପ୍ରକାର ଲୋକମାନେ ସମାଜର ଯେକୌଣସି ପରିବେଶ ସହ ନିଜକୁ ଖାପଖୁଆଇ ଚଳିବାରେ ଅସୁବିଧାର ସମ୍ମୁଖୀନ ହୁଅନ୍ତି ନାହିଁ । କିନ୍ତୁ ଯେଉଁମାନେ ଶାରୀରିକ ବିକଳାଙ୍ଗ ବା ଅପାରଗ ସେମାନଙ୍କୁ ସମାଜରେ ନୀଚଦୃଷ୍ଟିର ସମ୍ମୁଖୀନ ହେବାକୁ ହୋଇଥାଏ । ତେଣୁ ଉପଯୁକ୍ତ ଶାରୀରିକ ବିକାଶ ବିନା ମନୁଷ୍ୟର ନିମ୍ନଲିଖିତ ବିକାଶ ଗୁଡ଼ିକ ବାଧାପ୍ରାପ୍ତ ହୋଇଥାଏ ।

**ମାନସିକ ବିକାଶ :** —ଶରୀର ଓ ମନ ଏ ଦୁହେଁ ପରସ୍ପର ସହ ଘନିଷ୍ଠ ଭାବରେ ସମ୍ପର୍କିତ । ତେଣୁ ଯଥାର୍ଥରେ କୁହାଯାଇଛି 'Sound mind in a sound body' ଅର୍ଥାତ୍ ସୁସ୍ଥ ଶରୀରରେ ସୁସ୍ଥ ମନ ରହିଥାଏ । ସେଥିପାଇଁ ଶାରୀରିକ ବିକାଶଜନିତ କୌଣସି ତ୍ରୁଟି ରହିଲେ ତାହା ଶିଶୁର ମାନସିକ ସ୍ୱାସ୍ଥ୍ୟକୁ ସଂପୂର୍ଣ୍ଣ ଭାବରେ ନଷ୍ଟ କରିଦିଏ । ଶରୀରର ଅସୁସ୍ଥତା ମାନସିକ ଅସୁସ୍ଥତାର ମୁଖ୍ୟ କାରଣ ଅଟେ । ଉଦାହରଣ ସ୍ୱରୂପ ଯେଉଁ ଶିଶୁର ଶାରୀରିକ ବିକାଶ ଠିକ୍‌ଭାବରେ ହୋଇଥାଏ ଓ ସେ ସର୍ବଦା ସୁସ୍ଥ ତା'ର ମନ ସବୁବେଳେ ପ୍ରଫୁଲ୍ଲ ଥାଏ, କିନ୍ତୁ ଯେଉଁ ଶିଶୁର କୌଣସି ପ୍ରକାର ଶାରୀରିକ ଦୁର୍ବଳତା ଯଥା : ବଧିର, ଦୃଷ୍ଟିଶକ୍ତିହୀନତା ବା ସ୍ନାୟବିକ ଦୁର୍ବଳତା ଆଦି ରହିଥାଏ, ସେ ସର୍ବଦା ମାନସିକ ଅଶାନ୍ତି ଅନୁଭବ କରିଥାଏ ।

**ବ୍ୟକ୍ତିତ୍ୱର ଉତ୍କର୍ଷ ସାଧନ :** —ଉପଯୁକ୍ତ ଶାରୀରିକ ବିକାଶ ବ୍ୟକ୍ତିତ୍ୱର ଉତ୍କର୍ଷ ସାଧନରେ ସାହାଯ୍ୟ କରିଥାଏ । ସାଧାରଣତଃ ବିଦ୍ୟାଳୟମାନଙ୍କରେ ଦେଖାଯାଏ-ଗୋଟିଏ ଶ୍ରେଣୀରେ ଅଧ୍ୟୟନ କରୁଥିବା ସମବୟସ୍କ ପିଲାମାନଙ୍କର ଶାରୀରିକ ବିକାଶ ସମାନ ଭାବରେ ହୋଇ ନ ଥାଏ । କେଉଁ ପିଲା ଖୁବ୍ ଡେଙ୍ଗା ତ କିଏ ବୟସାନୁପାତରେ ଗେଡ଼ା ହୋଇଥାଏ । ଆଉ କେହି କେହି ମଧ୍ୟ ସାଧାରଣ ପିଲାଙ୍କଠାରୁ ଖୁବ୍ ମୋଟା ହୋଇଥାଏ । ତେଣୁ ପିଲାମାନେ ସେମାନଙ୍କୁ ଗେଡ଼ି, ମୋଟୁ ଆଦି ନାମକରଣ କରି ଡାକନ୍ତି । ଫଳରେ ଶାରୀରିକ ବିକାଶଗତ ପାର୍ଥକ୍ୟ ଯୋଗୁଁ ପିଲାମାନଙ୍କ ମନରେ ଅନ୍ତର୍ନିହିତ ହୀନତାବୋଧ (inferiority complex) ବା ନୀଚମନୋଭାବ ସୃଷ୍ଟି ହୋଇଥାଏ । ଏହାଦ୍ୱାରା ସେମାନଙ୍କର ବ୍ୟକ୍ତିତ୍ୱର ଉପଯୁକ୍ତ ବିକାଶ ହୋଇପାରେ ନାହିଁ । ସେମାନେ ନିଜ ନିଜର ଆତ୍ମ-ବିଶ୍ୱାସ ହରାଇଥାନ୍ତି । ତେଣୁ ବ୍ୟକ୍ତିର ବ୍ୟକ୍ତିତ୍ୱର ବିକାଶ ସାଧନ ପାଇଁ ଶାରୀରିକ ବିକାଶ ଉପଯୁକ୍ତ ଭାବରେ ଦରକାର ।

**ବୌଦ୍ଧିକ ବିକାଶ :** —ଉପଯୁକ୍ତ ଶାରୀରିକ ବିକାଶ ନ ହେଲେ ଶିଶୁର ଧୀଶକ୍ତିର ବିକାଶ ସାଧନ ହୋଇପାରେ ନାହିଁ । ସାଧାରଣତଃ ଦେଖାଯାଏ ଜରାଗ୍ରସ୍ତ ବା ସ୍ନାୟବିକ ଦୁର୍ବଳ ବ୍ୟକ୍ତିର ବୁଦ୍ଧ୍ୟାଙ୍କ ସୁସ୍ଥ ବ୍ୟକ୍ତିଠାରୁ କମ୍ । ତେଣୁ ଶାରୀରିକ ବିକାଶ ସହ ବୌଦ୍ଧିକ ବିକାଶର ଯଥେଷ୍ଟ ସମ୍ବନ୍ଧ ରହିଛି ।

ମୋଟା ମୋଟି ଭାବରେ ବିଚାର କଲେ ଶାରୀରିକ ବିକାଶ ହିଁ ବ୍ୟକ୍ତିର ଅନ୍ୟାନ୍ୟ ବିକାଶ ଗୁଡ଼ିକର ମୂଳପିଣ୍ଡ । ତେଣୁ ବିଦ୍ୟାଳୟମାନଙ୍କରେ ଶିଶୁମାନଙ୍କର ଶାରୀରିକ ବିକାଶ ସାଧନ ନିମନ୍ତେ ଉପଯୁକ୍ତ ଶିକ୍ଷା ବ୍ୟବସ୍ଥା ଆହୁତ କରିବା ଉଚିତ୍ ।

**ଶାରୀରିକ ବିକାଶ କ୍ଷେତ୍ରରେ ଶିକ୍ଷାର ଭୂମିକା : (Role of Education in the physical development)**

ଅନେକ ବିଶ୍ୱାସ କରନ୍ତି ଶିଶୁର ଶାରୀରିକ ବିକାଶ ନିମିତ୍ତ ଗୃହ ହିଁ ଉପଯୁକ୍ତ ସ୍ଥାନ । ଘରେ ଭଲ ଭାବରେ ଖାଇ ବିଶ୍ରାମ ନେଲେ ଶାରୀରିକ ବିକାଶ ଠିକ୍ ଭାବରେ ହୋଇପାରିବ ବୋଲି ସାଧାରଣ ଲୋକମାନେ ବିଶ୍ୱାସ କରନ୍ତି । ଅବଶ୍ୟ ଉତ୍ତମ ଖାଦ୍ୟ ସ୍ୱାସ୍ଥ୍ୟର ସୁରକ୍ଷା ନିମନ୍ତେ ନିତାନ୍ତ ଆବଶ୍ୟକ । କିନ୍ତୁ ଏପରି ପୁଷ୍ଟିକର ଖାଦ୍ୟଖାଇ ବସି ରହିଲେ ଶରୀରର ଉପଯୁକ୍ତ ଅଭିବୃଦ୍ଧି ସାଧନ ହୋଇପାରେ ନାହିଁ । ତେଣୁ ଗୃହ ବ୍ୟତିରେକେ ଶିକ୍ଷାଦାନ ପରିପ୍ରେକ୍ଷୀ ତଥା ବିଦ୍ୟାଳୟର ଭୂମିକା ମଧ୍ୟ ବେଶ ଗୁରୁତ୍ୱପୂର୍ଣ୍ଣ । ତେଣୁ ଶିକ୍ଷକ ଓ ଶିକ୍ଷୟିତ୍ରୀମାନେ ଶିଶୁର ପାରିପାର୍ଶ୍ୱିକ ଅବସ୍ଥା, ଅଭିଭାବକଙ୍କ ସ୍ୱାସ୍ଥ୍ୟ ଓ ଖାଦ୍ୟାଭ୍ୟାସ ଇତ୍ୟାଦି ସଂପର୍କରେ ଆବଶ୍ୟକୀୟ ଖବର ସଂଗ୍ରହ ପୂର୍ବକ ଶିଶୁଠାରେ ବୟଃପ୍ରାପ୍ତି ଦ୍ୱାରା ଦୃଷ୍ଟ ଖରାପ ପ୍ରକୃତି ତଥା ମାନସିକ ଅସୁସ୍ଥିଭାବକୁ ଦୂର କରିବା ନିମିତ୍ତ ଉପଯୁକ୍ତ ପଦକ୍ଷେପମାନ ନେବା ଏକାନ୍ତ ଆବଶ୍ୟକ । ତଦନୁଯାୟୀ ଶିଶୁର ବ୍ୟବହାର, କାର୍ଯ୍ୟକଳାପ ଓ ମନୋଭାବକୁ ପରିବର୍ତ୍ତନ ତଥା ସଂଶୋଧନ କରିବା ନିମିତ୍ତ ଶିକ୍ଷକ ବିଦ୍ୟାଳୟରେ ବିଭିନ୍ନ ପ୍ରକାର ସହପାଠ୍ୟକ୍ରମ କାର୍ଯ୍ୟାବଳୀ ଯଥା :— କ୍ରୀଡ଼ା ପ୍ରତିଯୋଗିତା, ନାଟ୍ୟାଭିନୟ, ସାହିତ୍ୟ ପ୍ରତିଯୋଗିତା, ଚିତ୍ରାଙ୍କନ, ଭ୍ରମଣ ଇତ୍ୟାଦି ହାତକୁ ନେବା ଉଚିତ୍ । ଶିଶୁର ଶାରୀରିକ ବୃଦ୍ଧି ଫଳରେ ତାର ବ୍ୟବହାରରେ ମଧ୍ୟ ପରିବର୍ତ୍ତନ ପରିଦୃଷ୍ଟ ହୁଏ । ସୁସ୍ଥ ଶିଶୁ ଅସୁସ୍ଥ ବା ଦୁର୍ବଳ ଶିଶୁକୁ ଓ ପରିପକ୍ୱ ଶିଶୁ ଅପରିପକ୍ୱ ଶିଶୁ ପ୍ରତି ଖରାପ ବ୍ୟବହାର ପ୍ରାୟତଃ ଦେଖାଇଥାଏ । ମାତ୍ର ଏସବୁ ଗୁଣ ବା ବ୍ୟବହାର ଗ୍ରହଣୋପଯୋଗୀ ନ ହୋଇଥିବାରୁ ଶିକ୍ଷକ ଏ ସବୁ ପ୍ରତି ସତର୍କ ରହିବା ସର୍ବାଦୌ ବାଞ୍ଛନୀୟ । ଏତଦ୍ ବ୍ୟତୀତ ଶିଶୁର ନିଜର ମନର ଭାବକୁ ପରିବର୍ତ୍ତିତ କରାଇବା ନିମିତ୍ତ ଶିକ୍ଷକ ଉପଦେଶାତ୍ମକ ପ୍ରଣାଳୀ ଅବଲମ୍ବନ କରିବା ଉଚିତ୍ । ଶିଶୁଠାରେ ବୟସାନୁପାତରେ ଦେଖାଯାଉଥିବା ଶାରୀରିକ ଅଭିବୃଦ୍ଧି ଉଭୟ ମାନସିକ ଓ ସାମାଜିକ କ୍ଷେତ୍ରରେ ପ୍ରଭାବ ବିସ୍ତାର କରିଥାଏ । ତେଣୁ ଶିକ୍ଷକ ଶିଶୁର ବୟସକୁ ତଥା ଅବସ୍ଥାକୁ ଦୃଷ୍ଟିପଥରେ ରଖି ବିଦ୍ୟାଳୟ ପରିସର ମଧ୍ୟରେ ବିଭିନ୍ନ କାର୍ଯ୍ୟକ୍ରମ ଯଥା କ୍ରୀଡ଼ା, କସରତ, ବ୍ୟାୟାମ ଓ ବିଭିନ୍ନ ପ୍ରତିଯୋଗିତା ଇତ୍ୟାଦି ମାଧ୍ୟମରେ ପ୍ରତ୍ୟେକ ଶିଶୁକୁ ସେସବୁ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରାଇବା ଉଚିତ୍ । ସବଳ, ଦୁର୍ବଳ, ପରିପକ୍ୱ, ଅପରିପକ୍ୱ-ପ୍ରତ୍ୟେକ ଶିଶୁ କାର୍ଯ୍ୟକ୍ରମ ଗୁଡ଼ିକରେ ଯେପରି କ୍ଷମତାନୁସାରେ ସକ୍ରିୟ ଅଂଶ ଗ୍ରହଣ କରିବେ, ସେଥିନିମିତ୍ତ ଶିକ୍ଷକ ସତର୍କ ଦୃଷ୍ଟି ରଖିବା ବିଧେୟ । ତେବେ ବିଭିନ୍ନ ପ୍ରତିଯୋଗିତାରେ ଅଂଶଗ୍ରହଣ କରୁଥିବା ଛାତ୍ରଛାତ୍ରୀମାନଙ୍କର ବୟସ ଓ ଅବସ୍ଥାକୁ ଆଖି ଆଗରେ ରଖି କାର୍ଯ୍ୟକ୍ରମ ପ୍ରବର୍ତ୍ତନ କଲେ ଶିକ୍ଷକଙ୍କ କାର୍ଯ୍ୟ ଫଳପ୍ରଦ ହୋଇଥାଏ ଛାତ୍ରଛାତ୍ରୀ ମାନଙ୍କର ଶାରୀରିକ ବୃଦ୍ଧି ନିମିତ୍ତ ଖେଳ ଓ କସରତ ବ୍ୟତୀତ

ହସ୍ତକର୍ମ ଶିକ୍ଷାଦେବାର ସୁବ୍ୟବସ୍ଥା କରିବା ମଧ୍ୟ ଆବଶ୍ୟକ । କାରଣ ଡାଠ କାମ, ଲୁଗାବୁଣା, ସୂଚୀକର୍ମ, ସିଲେଇ ଇତ୍ୟାଦି ହସ୍ତକର୍ମଦ୍ୱାରା ଅଙ୍ଗସ୍ଥଳନା କାର୍ଯ୍ୟ ସଂପାଦିତ ହୋଇଥାଏ । ଏସବୁ ବ୍ୟବସ୍ଥା ଶିଶୁର ବୟସ ଓ ଶକ୍ତି ଅନୁଯାୟୀ ପ୍ରବର୍ତ୍ତିତ ହେବା ବିଧେୟ । ଏ ସମସ୍ତ କାର୍ଯ୍ୟ ସଂପାଦନ କରିବାଦ୍ୱାରା ଶିଶୁ ଦଳଗତ କାର୍ଯ୍ୟ କରିବାରେ ସକ୍ଷମ ହୋଇଥାଏ । ଏହା ତାର ମାନସିକ ଓ ସାମାଜିକ ଉଭୟ ବିକାଶରେ ମଧ୍ୟ ସାହାଯ୍ୟ କରିଥାଏ । ଶାରୀରିକ ବୃଦ୍ଧି ଓ ବିକାଶ ସହିତ ଅଂଗସ୍ଥଳନାର ଉନ୍ନତି ବିଦ୍ୟାଳୟ ପରିପ୍ରେକ୍ଷୀରେ ଅତି ଉତ୍ତମ ରୂପେ ସଂଗଠିତ ହୋଇପାରେ । ତେଣୁ ଏଥି ନିମିତ୍ତ ଶିକ୍ଷକ ଛାତ୍ରଛାତ୍ରୀମାନଙ୍କୁ ସମସ୍ତ ପ୍ରକାର ସୁବିଧା ଓ ସୁଯୋଗ ଯୋଗାଇଦେବା ନିହାତି ଆବଶ୍ୟକ ।

## ଶାରୀରିକ ଅପାରଗ ଓ ବିକଳାଙ୍ଗ ଶିଶୁମାନଙ୍କ ପାଇଁ ଶିକ୍ଷା (Education for the physically handicaped) :

ଶ୍ରେଣୀକକ୍ଷର ଦୈନନ୍ଦିନ ଅଭିଜ୍ଞତାରୁ ଜଣାଯାଏ ଯେ, ଗୋଟିଏ ଶ୍ରେଣୀରେ ବିଭିନ୍ନ ଧରଣର ଛାତ୍ରଛାତ୍ରୀ ଅଧ୍ୟୟନ କରନ୍ତି । ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କ ପାଇଁ ସ୍ୱତନ୍ତ୍ର ଶିକ୍ଷା ବ୍ୟବସ୍ଥାର ପ୍ରବର୍ତ୍ତନ କରାଇବା ଯଦିଓ ଅସମ୍ଭବ ତଥାପି ଶିକ୍ଷକମାନେ ଶିଶୁର ସ୍ୱତନ୍ତ୍ର ଗୁଣ, ଅଭିରୁଚି ଓ ବୈଶିଷ୍ଟ୍ୟତାକୁ ହୃଦୟଙ୍ଗମ କରି ଶିକ୍ଷାଦାନର ବ୍ୟବସ୍ଥା କରିବା ଉଚିତ୍ । ଦେଶର ଅର୍ଥନୈତିକ ଓ ସାମାଜିକ ଅଭିବୃଦ୍ଧି ସାଧନ ନିମନ୍ତେ ମାନବିକ ସମ୍ବଳର ବିକାଶ ସାଧନ ହିଁ ଏକାନ୍ତ ଆବଶ୍ୟକ ଏବଂ ଉପଯୁକ୍ତ ଶିକ୍ଷା ମାଧ୍ୟମରେ କେବଳ ଏହା ସମ୍ଭବ । ବର୍ତ୍ତମାନ ବିକାଶଶୀଳ ଉନ୍ନତ ରାଷ୍ଟ୍ରଗୁଡ଼ିକରେ ସାଧାରଣ ଓ ପ୍ରତିଭାସଂପନ୍ନ ଛାତ୍ରଛାତ୍ରୀମାନଙ୍କ ପାଇଁ ଉପଯୁକ୍ତ ଶିକ୍ଷାର ବ୍ୟବସ୍ଥା ସଙ୍ଗେ ଅପାରଗ ଓ ବିକଳାଙ୍ଗ ଶିଶୁମାନଙ୍କ ପାଇଁ ସ୍ୱତନ୍ତ୍ର ଶିକ୍ଷାଦାନ ବ୍ୟବସ୍ଥା, ପାଠ୍ୟକ୍ରମ, ଶିକ୍ଷୋପକରଣ, ତାଲିମ-ପ୍ରାପ୍ତ ଶିକ୍ଷକ ଆଦିର ସୁବ୍ୟବସ୍ଥା କରାଯାଇ ସମାଜର ଏହି ପୃଣ୍ୟ ଓ ପତିତ ଲୋକମାନଙ୍କ ପାଇଁ ଶିକ୍ଷାଦାନର ବ୍ୟବସ୍ଥା କରାଯାଉଛି । ଏହି ବିକଳାଙ୍ଗ ଲୋକମାନଙ୍କ ପାଇଁ ମଧ୍ୟ ସରକାରୀ ଚାକିରୀ କ୍ଷେତ୍ରରେ ଅଗ୍ରାଧିକାର ଦିଆଯାଉଛି । ତେଣୁ ଏହି ଅପାରଗ ଓ ବିକଳାଙ୍ଗ ଛାତ୍ରଛାତ୍ରୀମାନେ କିଏ ଓ ସେମାନଙ୍କୁ କିପରି ଭାବରେ ସ୍ୱତନ୍ତ୍ର ବ୍ୟବସ୍ଥାନୁଯାୟୀ ଶିକ୍ଷାପ୍ରଦାନ କରି ସେମାନଙ୍କର ସାମାଜିକ ପ୍ରତିଷ୍ଠାକୁ ସୁଦୃଢ଼ କରାଯାଇପାରିବ ସେ ବିଷୟରେ ପ୍ରତ୍ୟେକ ଶିକ୍ଷକ ଜାଣିବା ସର୍ବାଦୌ ବିଧେୟ ।

## ଶାରୀରିକ ଅପାରଗ ବା ବିକଳାଙ୍ଗ ଶିଶୁ କେଉଁମାନେ ?

ସମାଜରେ ବିଭିନ୍ନ ପ୍ରକାରର ଅପାରଗ ଶିଶୁ ଦେଖାଯାଆନ୍ତି । ଯଥା : ଶିକ୍ଷଣୀୟ ମାନସିକ ଅପାରଗ ଶିଶୁ, ଆବେଗ ବିକାରଗ୍ରସ୍ତ ଶିଶୁ, ସାମାଜିକ ବିକାରଗ୍ରସ୍ତ

ଶିଶୁ, ବାକ୍ ଅପାରଗ ଶିଶୁ, ଶ୍ରୁତିଶକ୍ତିହୀନ ଶିଶୁ, ଦୃଷ୍ଟିଶକ୍ତି ହୀନ ଶିଶୁ, ସ୍ୱାସ୍ଥ୍ୟଗତ ଅପାରଗ ଶିଶୁ ଇତ୍ୟାଦି । କିନ୍ତୁ ଶାରୀରିକ ବିକଳାଙ୍ଗ ଶିଶୁମାନଙ୍କୁ ନିମ୍ନଲିଖିତ ବିଭକ୍ତିକରଣ ଅନୁଯାୟୀ ଚିହ୍ନଟ କରାଯାଏ ।

୧ । ବଧିର ବା ଶ୍ରବଣଶକ୍ତି ହୀନ ଶିଶୁ

୨ । ଅନ୍ଧ ବା ଦୃଷ୍ଟିଶକ୍ତି ହୀନ ଶିଶୁ

୩ । ସ୍ୱାସ୍ଥ୍ୟଗତ ଦୁର୍ବଳ ଶିଶୁ

(କ) ମସ୍ତିଷ୍କହୀନ

(ଖ) ପୋଲିଓ

(ଗ) ହାଡ଼ଗଣ୍ଠି ଅପାରଗ ବା ଛୋଟା

(ଘ) ଅପସ୍ମାର ବା ସର୍ବଦା ରୁଗ୍ଣ

ବିଭିନ୍ନ ଶ୍ରେଣୀର ଶାରୀରିକ ଅକ୍ଷମ ଛାତ୍ରଛାତ୍ରୀମାନଙ୍କୁ ଚିହ୍ନଟ କରିବା ପାଇଁ ଶିକ୍ଷକ ଏମାନଙ୍କର ବ୍ୟବହାରଗତ ଗୁଣଗୁଡ଼ିକର ଲକ୍ଷଣ ପ୍ରତି ସଚେତନ ହେବା ବିଧେୟ । ଏହି ଅକ୍ଷମ ଲୋକମାନଙ୍କୁ ସମାଜରେ ପ୍ରତିଷ୍ଠିତ କରାଇବା ପାଇଁ ବିଭିନ୍ନ ମନସ୍ତତ୍ତ୍ୱ-ବିତ୍‌ମାନେ ଭିନ୍ନ ଭିନ୍ନ ଗବେଷଣା କରି ସେମାନଙ୍କ ପାଇଁ ସ୍ୱତନ୍ତ୍ର ଶିକ୍ଷା ବ୍ୟବସ୍ଥାର ସୂଚନା ଦେଇ ଅଛନ୍ତି । ନିମ୍ନରେ ସେ ସମ୍ବନ୍ଧରେ, ଆଲୋଚନା କରାଗଲା ।

**ଶ୍ରବଣଶକ୍ତିହୀନ ଶିଶୁର ଗୁଣ :**

ସାଧାରଣତଃ ଗୋଟିଏ ଶ୍ରେଣୀରେ ୩୫ରୁ ୫୦ ଜଣ କିମ୍ବା ଏହାଠାରୁ ଅଧିକ ଛାତ୍ରଛାତ୍ରୀ ମଧ୍ୟ ଥାଆନ୍ତି । ଏମାନଙ୍କ ମଧ୍ୟରୁ କେତେ ଜଣଙ୍କର ବଧିରତା ଦୋଷ ଥାଏ । ଏହି ଶ୍ରେଣୀସ୍ଥ ଶିଶୁମାନେ ସାଧାରଣ ଛାତ୍ରଛାତ୍ରୀଙ୍କ ଠାରୁ ପ୍ରତ୍ୟେକ କାର୍ଯ୍ୟରେ ଅନାଗ୍ରହ ପ୍ରକାଶ କରିଥାଆନ୍ତି । ଶ୍ରେଣୀରେ ସେମାନେ ଅନ୍ୟମନସ୍କ, ମାନ୍ଦା ଓ କ୍ଳାନ୍ତ ଥିବାପରି ପରିଦୃଷ୍ଟ ହୁଅନ୍ତି । ଶିକ୍ଷକ ବା କୌଣସି ଛାତ୍ରଛାତ୍ରୀ କଥା କହିବା ବେଳେ ସେମାନଙ୍କ କଥା ଶୁଣିବା ପାଇଁ ବିକୃତ ଭଙ୍ଗୀରେ କାନକୁ ସେହି ଦିଗକୁ ଦେଇ ଥାଆନ୍ତି । ତେଣୁ ବିଦ୍ୟାଳୟରେ କର୍ଣ୍ଣ ପରୀକ୍ଷାଦ୍ୱାରା ଶିକ୍ଷକମାନେ ଏହି ଶ୍ରୁତିଶକ୍ତିହୀନ ଛାତ୍ରଛାତ୍ରୀମାନଙ୍କୁ ସର୍ବାଦୌ ନିର୍ଦ୍ଦିଷ୍ଟ କରିବା ଉଚିତ୍ । ଏମାନଙ୍କର ବୁଦ୍ଧ୍ୟାଙ୍କ (I. Q) କମ୍ ଓ ଏମାନେ ସ୍ଥୂଳ ବୁଦ୍ଧିସମ୍ପନ୍ନ । ଶ୍ରେଣୀ ସାଧାରଣ ପିଲାଙ୍କ ସହ ଶ୍ରବଣ ଶକ୍ତିହୀନ ପିଲାମାନଙ୍କୁ ଏକତ୍ର ଶିକ୍ଷାଦାନ କଲେ ଏହି ଅକ୍ଷମମାନଙ୍କର କୌଣସି ଉପକାର ହୋଇ ନଥାଏ । ତେଣୁ ବିଦ୍ୟାଳୟରେ ସ୍ୱତନ୍ତ୍ର ଶିକ୍ଷାଦାନ ବ୍ୟବସ୍ଥା ରହିବା ଉଚିତ୍ ।

## ଶିକ୍ଷାଦାନ ବ୍ୟବସ୍ଥା :

ବଧିର ଶିଶୁମାନେ ଶ୍ରେଣୀରେ ଅଧ୍ୟୟନ କରାଯାଉଥିବା ପାଠ୍ୟ ବିଷୟରୁ ବଂଚିତ ହୋଇଥାନ୍ତି । ଫଳରେ ସେମାନେ ନିଜକୁ ନ୍ୟୁନ ମନେ କରନ୍ତି ଓ ସେମାନଙ୍କର ସାମାଜିକ ବିକାଶ ମଧ୍ୟ ବାଧା ପ୍ରାପ୍ତ ହୋଇଥାଏ । ଉନ୍ନତ ରାଷ୍ଟ୍ରମାନଙ୍କରେ ଏଭଳି ଶିଶୁମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥାମାନ କରାଯାଇଛି । ବର୍ତ୍ତମାନ ଆମ ଦେଶରେ ମଧ୍ୟ ସ୍ୱତନ୍ତ୍ର ବିଦ୍ୟାଳୟ ବା ଅନ୍ଧ, ମୂକ, ବଧିର ବିଦ୍ୟାଳୟ ସ୍ଥାପନ କରାଯାଇ ବୈଜ୍ଞାନିକ ପ୍ରଣାଳୀରେ ଶିକ୍ଷାଦାନ କରିବାର ବ୍ୟବସ୍ଥା କରାଗଲାଣି ।

ବିଦ୍ୟାଳୟମାନଙ୍କରେ ବଧିର ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷାଦେବା ପାଇଁ ସ୍ୱତନ୍ତ୍ର ତାଲିମପ୍ରାପ୍ତ ଶିକ୍ଷକ ନିଯୁକ୍ତ କରାଯିବା ଉଚିତ୍ । ପୁସ୍ତକଗତ ବିଦ୍ୟା ବ୍ୟତୀତ ଖେଳ, ଇନ୍ଦ୍ରିୟାନୁଭୂତି, ସାମାଜିକ କାର୍ଯ୍ୟକ୍ରମ, ଭାଷା ଆହରଣ ଓ କଥାବାର୍ତ୍ତା କରିବା ଆଦି ପାଇଁ ଏମାନଙ୍କୁ ସୁଯୋଗ ଦେବା ବିଧେୟ । ସେମାନଙ୍କର ଶିକ୍ଷା ମୁଖ୍ୟତଃ ସେମାନଙ୍କ ବ୍ୟକ୍ତିଗତ ଅନୁଭୂତି ଉପରେ ନିର୍ଭର କରେ । ତେଣୁ କଥା କହିବା, ଓଷ୍ଠ ଚାଳନା ଓ ଅନ୍ୟର କଥା କହିବା ଭଙ୍ଗୀରୁ ସେମାନେ ଅନ୍ୟ ଜଣେ ବ୍ୟକ୍ତିର ଭାଷାକୁ ହୃଦୟଙ୍ଗମ କରିପାରନ୍ତି । ବିଭିନ୍ନ ସଙ୍କେତଦ୍ୱାରା ସଜ୍ଞାପନ ପାଇଁ ଏହି ଶିଶୁମାନଙ୍କୁ ଶିକ୍ଷା ଦେବା ଉଚିତ । ଭାଷାଶିକ୍ଷା ଦେବା ସମୟରେ ସାଧାରଣ ଶିଶୁଙ୍କ ଠାରୁ ବଧିର ଶିଶୁଙ୍କୁ ବିଶେଷ ଦୃଷ୍ଟି ପ୍ରଦାନ କରାଯିବା ଦରକାର ଏବଂ କେବଳ ଛପା ଅକ୍ଷର ମାଧ୍ୟମରେ ବିଭିନ୍ନ ଉପାୟରେ ଶିକ୍ଷକ ଶିକ୍ଷା ଦେବା ଉଚିତ୍ । ତେଣୁ କର୍ଣ୍ଣ ପରୀକ୍ଷା ପରେ ବଧିରତାର ସ୍ତର ଓ ଲକ୍ଷଣ ଅନୁଯାୟୀ ଶିକ୍ଷା ବ୍ୟବସ୍ଥା କରାଯିବା ଉଚିତ୍ । ଶିକ୍ଷକମାନେ ମଧ୍ୟ ଏହି ଶ୍ରେଣୀସ୍ଥ ଛାତ୍ରଛାତ୍ରୀମାନଙ୍କୁ ଭର୍ତ୍ସନା ନ କରି ସ୍ନେହ ଆଦର କରି ଶିକ୍ଷାଦାନ କଲେ ସେମାନେ ଉପକୃତ ହୋଇପାରିବେ । ମୋଟାମୋଟି ଭାବରେ ବିଦ୍ୟାଳୟମାନଙ୍କରେ ସ୍ୱତନ୍ତ୍ର ଶ୍ରେଣୀର ବ୍ୟବସ୍ଥା କରାଯାଇ ଶିକ୍ଷାଦାନ କରିବା ଉଚିତ୍ ।

## ଦୃଷ୍ଟିଶକ୍ତିହୀନ ଶିଶୁର ଗୁଣ :

ଶ୍ରବଣଶକ୍ତି ହୀନ ଶିଶୁଙ୍କ ପରି ସମାଜରେ ଅନେକ ଦୃଷ୍ଟିଶକ୍ତିହୀନ ଶିଶୁ ମଧ୍ୟ ରହିଛନ୍ତି । ସାଧାରଣତଃ ଦୁଇଗୋଟି ଶ୍ରେଣୀର ଦୃଷ୍ଟିହୀନ ଶିଶୁ ପରିଲକ୍ଷିତ ହୋଇଥାନ୍ତି ଯଥା :—ପୂର୍ଣ୍ଣାନ୍ଧତା ବା ଜନ୍ମାନ୍ଧ ଏବଂ ଆଂଶିକ ଦୃଷ୍ଟିଶକ୍ତିହୀନ । ଏହି ପ୍ରକାର ଦୃଷ୍ଟିଶକ୍ତି ହୀନ ଶିଶୁମାନଙ୍କୁ ଯଦି ବାଲ୍ୟକାଳରୁ ନିର୍ଣ୍ଣିତ କରାଯାଇପାରିଲେ ସେମାନଙ୍କର ଭବିଷ୍ୟତର ପଥ ସୁଗମ ହୋଇପାରେ । ବିଦ୍ୟାଳୟରେ ଉପଯୁକ୍ତ ଟେଷ୍ଟ ମାଧ୍ୟମରେ ପିଲାମାନଙ୍କର ଦୃଷ୍ଟିଶକ୍ତିହୀନତା ସମ୍ବନ୍ଧରେ ଶିକ୍ଷକମାନେ ପ୍ରଥମେ ଜାଣିବା ଦରକାର । ନଚେତ୍

ସାଧାରଣ ପିଲାଙ୍କ ସହ ଶିକ୍ଷା ପ୍ରଦାନ କଲେ ଏହି ଅପରାଗମାନଙ୍କର ବୌଦ୍ଧିକ ବିକାଶ ସମ୍ଭବ ହୁଏ ନାହିଁ ।

**ଶିକ୍ଷା ବ୍ୟବସ୍ଥା :**

ବର୍ତ୍ତମାନ ଦୃଷ୍ଟିଶକ୍ତିହୀନ ଛାତ୍ରଛାତ୍ରୀମାନଙ୍କୁ ଉପଯୁକ୍ତ ଶିକ୍ଷା ପ୍ରଦାନ କରିବା ନିମନ୍ତେ ମନସ୍ତତ୍ତ୍ୱବିତ୍ ଓ ଶିକ୍ଷାବିତ୍‌ମାନେ ଛଅ ପ୍ରକାରର ଶିକ୍ଷାଗତ ପ୍ରଶାସନିକ ବ୍ୟବସ୍ଥା କରିଅଛନ୍ତି ଯଥା : ପରିଭ୍ରମଣଶୀଳ ଓ ବିଶେଷଜ୍ଞ ଶିକ୍ଷକ, ସହଯୋଗୀ ଶିକ୍ଷା, ସଂଗଠିତ ଗୃହ ଶିକ୍ଷା, ସ୍ୱତନ୍ତ୍ର ଶ୍ରେଣୀ, ଆବାସୀ ବିଦ୍ୟାଳୟ ଓ ସାଧାରଣ ବିଦ୍ୟାଳୟ । ଏପରି ଶିକ୍ଷା ବ୍ୟବସ୍ଥାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଦୃଷ୍ଟିଶକ୍ତିହୀନ ଶିଶୁମାନଙ୍କୁ ଆତ୍ମନିର୍ଭରଶୀଳ କରାଇ ସମାଜର ଉନ୍ନତି ବିଧାନ କରାଇବା ।

କିନ୍ତୁ ଆମର ସାଧାରଣ ବିଦ୍ୟାଳୟମାନଙ୍କରେ ଦୃଷ୍ଟିଶକ୍ତିହୀନ ଶିଶୁମାନଙ୍କୁ ଶିକ୍ଷା ଦେବା ପାଇଁ କୌଣସି ବ୍ୟବସ୍ଥା କରାଯାଇ ନାହିଁ । ତଥାପି ବିଦ୍ୟାଳୟରେ ଯେଉଁ ଶିଶୁମାନଙ୍କର ଆଂଶିକ ଦୃଷ୍ଟିହୀନତା ପରିଦୃଷ୍ଟ ହୁଏ ସେମାନଙ୍କୁ ଘୃଣା ନ କରି ଅନ୍ୟ ସାଧାରଣ ପିଲାଙ୍କ ପରି ଭଲ ପାଇବା ଶିକ୍ଷକଙ୍କର ପ୍ରଧାନ କର୍ତ୍ତବ୍ୟ ହେବା ଉଚିତ୍ । ପୂର୍ଣ୍ଣାନ୍ଧମାନଙ୍କୁ ସ୍ୱତନ୍ତ୍ର ବିଦ୍ୟାଳୟରେ ଶିକ୍ଷାଦାନର ବ୍ୟବସ୍ଥା କରାଇବା ଦରକାର । ଆଂଶିକ ଦୃଷ୍ଟିଶକ୍ତିହୀନ ପିଲାମାନଙ୍କର ଚକ୍ଷୁ ପରୀକ୍ଷା କରି ସେମାନଙ୍କ ଦୃଷ୍ଟିଶକ୍ତି ଅନୁସାରେ ଶ୍ରେଣୀରେ ପ୍ରଥମ ଧାଡ଼ିରେ କି ମଝିରେ କିମ୍ବା ପଛରେ ବସିବାର ସୁଯୋଗ ଦେବା ଶିକ୍ଷକଙ୍କର କର୍ତ୍ତବ୍ୟ । ପୁନଶ୍ଚ, ସେମାନଙ୍କର ବୌଦ୍ଧିକ ବିକାଶ ନିମନ୍ତେ ଉପଯୁକ୍ତ ପରିବେଶ ସୃଷ୍ଟି କରିବା ସଙ୍ଗେ ଶିଶୁର ଅନ୍ୟାନ୍ୟ ଇନ୍ଦ୍ରିୟ ଗୁଡ଼ିକର ବ୍ୟବହାର କରାଇବା ଉଚିତ୍ । ଦୃଷ୍ଟିଶକ୍ତିହୀନ ପିଲାମାନଙ୍କର ଶୈକ୍ଷିକ ସାଫଲ୍ୟ ମନ୍ଥର ହୋଇଥିବାରୁ ସେମାନଙ୍କ ନିମନ୍ତେ ସ୍ୱତନ୍ତ୍ର ପାଠ୍ୟଦାନ ପ୍ରଣାଳୀ ଅବଲମ୍ବନ କରାଯିବା ଉଚିତ୍ ।

ଅନ୍ଧ ଶିଶୁମାନଙ୍କୁ ଶିକ୍ଷା ଦେବା ପାଇଁ ଅଧୁନା ସ୍ୱତନ୍ତ୍ର ବିଦ୍ୟାଳୟମାନ ପ୍ରତିଷ୍ଠା କରାଯାଇ ସେଠାରେ ବ୍ରେଲ୍, ସ୍ୱତନ୍ତ୍ର ଯନ୍ତ୍ର ବ୍ୟବହାର କରାଯାଇ ସେମାନଙ୍କୁ ଶିକ୍ଷାଦାନ କରାଯାଉଛି । ଏହି ବ୍ରେଲ୍ ଅକ୍ଷର ୧୮୨୯ ମସିହାରେ ପ୍ୟାରିସ୍‌ର ଏକ ଅନ୍ଧ ବିଦ୍ୟାଳୟର ଲୁଇସ୍ ବ୍ରେଲ୍ଲ ନାମକ ଏକ ଛାତ୍ରୀ ଉଦ୍ଭାବନ କରିଥିଲେ । ଅଧୁନା ଏହି ସୂତ୍ରକୁ ପରିମାର୍ଜିତ କରାଯାଇ ଦୃଷ୍ଟିହୀନ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷା ଦିଆଯାଉଛି । ବ୍ରେଲ୍ ଛଡ଼ା ଦୃଷ୍ଟିଶକ୍ତିହୀନ ପିଲାମାନଙ୍କୁ ଶ୍ରବଣ ଓ ସ୍ପର୍ଶ ସାହାଯ୍ୟକାରୀ ଯନ୍ତ୍ର ଓ ବଡ଼ ବଡ଼ ଅକ୍ଷର ମାଧ୍ୟମରେ ଶିକ୍ଷା ଦେବା ଉଚିତ୍ । ଆଂଶିକ ଦୃଷ୍ଟି ଶକ୍ତିହୀନ ପିଲାମାନଙ୍କୁ ବଡ଼ ବଡ଼ ଅକ୍ଷର ବ୍ୟବହୃତ କରାଯାଇ ଶିକ୍ଷା ଦେବା ପାଇଁ ଶିକ୍ଷକମାନେ ଚେଷ୍ଟା କରିବା ଦରକାର । ତାହା ଛଡ଼ା ଶ୍ରେଣୀରେ ଉପଯୁକ୍ତ ଆଲୋକ ବ୍ୟବସ୍ଥା ବିଦ୍ୟାଳୟ କର୍ତ୍ତୃପକ୍ଷ କରିବା ଉଚିତ୍ ।

**ସ୍ନାୟୁବିକ ଦୁର୍ବଳ ଶିଶୁର ଲକ୍ଷଣ :—**

ସ୍ନାୟୁ ଜନିତ ଦୁର୍ବଳତା ଯଥା—ପୋଲିଓ, ଯକ୍ଷ୍ମା, ଷ୍ଟ୍ରୋକ ବା ହାଡ଼ଭଗ୍ନ ଅପାରଗତା ଓ ମସ୍ତିଷ୍କହାନି ଇତ୍ୟାଦିକୁ ସ୍ନାୟୁବିକ ଦୁର୍ବଳତା ବୋଲି ଭେଷଜ ବିଜ୍ଞାନୀମାନେ ମତ ଦିଅନ୍ତି । ଏ ପ୍ରକାର ଦୁର୍ବଳତା ଶିଶୁକୁ ଶାରୀରିକ ଓ ମାନସିକ ଉଭୟ ଦିଗରେ ଅକ୍ଷମ କରିଦିଏ । ତେଣୁ ଏମାନେ ସାଧାରଣ ଶିଶୁମାନଙ୍କ ସହ ସମତାଳ ଦେଇ ଗତି କରିପାରନ୍ତି ନାହିଁ । ଆମର ସାଧାରଣ ବିଦ୍ୟାଳୟମାନଙ୍କର ଏ ପ୍ରକାର ଶିଶୁମାନଙ୍କର ପ୍ରକୃତ ଯତ୍ନ ନିଆଯାଇପାରେନାହିଁ । ତେଣୁ ଏମାନଙ୍କୁ ନିର୍ଦ୍ଧାରିତ କରାଯାଇ ସ୍ୱତନ୍ତ୍ର ସ୍ତରରେ ଶିକ୍ଷାଦାନ କରିବାର ବ୍ୟବସ୍ଥା କରାଯିବା ଉଚିତ୍ ।

**ଶିକ୍ଷାଦାନ ବ୍ୟବସ୍ଥା :—**

ସାଧାରଣ ପିଲାମାନଙ୍କଠାରୁ ସ୍ନାୟୁବିକ ଦୁର୍ବଳ ପିଲାମାନଙ୍କର ଶାରୀରିକ ଓ ମାନସିକ ଶକ୍ତି କମ୍ ହୋଇଥିବାରୁ ଏମାନେ ପ୍ରତ୍ୟେକ କାର୍ଯ୍ୟରେ ସେମାନଙ୍କଠାରୁ ନିକୃଷ୍ଟ ଅଟନ୍ତି । ତେଣୁ ବିଦ୍ୟାଳୟମାନଙ୍କରେ ଶାରୀରିକ ଚିକିତ୍ସା କରାଯାଇ ଥାଏ ପିଲାମାନଙ୍କର ବିକାଶ ନିମନ୍ତେ ବ୍ୟବସ୍ଥା ରହିବା ଉଚିତ୍ । ଏମାନଙ୍କର ମାଂସପେଶୀ ଦୁର୍ବଳ ହୋଇଥିବାରୁ ସ୍ୱତନ୍ତ୍ର ଶ୍ରେଣୀ ବ୍ୟତିରେକେ ଶିକ୍ଷାଦାନ କରିବା କଷ୍ଟକର ହୋଇଥାଏ । ସେଥିପାଇଁ ବିଦ୍ୟାଳୟରେ ସ୍ନାୟୁବିକ ଅକ୍ଷମମାନଙ୍କ ପାଇଁ ସ୍ୱତନ୍ତ୍ର ଶ୍ରେଣୀର ବ୍ୟବସ୍ଥା କରାଯିବା ଉଚିତ୍ । ଉପଯୁକ୍ତ ତାଲିମପ୍ରାପ୍ତ ଶିକ୍ଷକ ମଧ୍ୟ ପ୍ରସ୍ତୁତ କରାଯାଇ ଉନ୍ନତ ପାଠ୍ୟକ୍ରମ ଓ ପଦ୍ଧତି ସାହାଯ୍ୟରେ ଶିକ୍ଷାଦାନ କରିବା ପାଇଁ ଶିକ୍ଷା କର୍ତ୍ତୃପକ୍ଷ ଚେଷ୍ଟା କରିବା ବାଞ୍ଛନୀୟ । ସ୍ନାୟୁବିକ ଦୁର୍ବଳ ପିଲାମାନଙ୍କର ବାକ୍‌ଶକ୍ତି ଓ ଭାଷା ଅପାରଗତା ମୁଖ୍ୟତଃ ପରିଲକ୍ଷିତ ହୋଇଥାଏ । ଏମାନଙ୍କର ଦୃଷ୍ଟି ଶକ୍ତି ମଧ୍ୟ ସେତେ ପ୍ରଖର ନୁହେଁ । ତେଣୁ ବିଦ୍ୟାଳୟମାନଙ୍କରେ ଏହି ଅପାରଗ, ବିକଳାଙ୍ଗମାନଙ୍କର ଉପଯୁକ୍ତ ସାମାଜିକ ଅଭିଯାନ ନିମନ୍ତେ ସ୍ୱତନ୍ତ୍ର ଶିକ୍ଷାଦାନର ବ୍ୟବସ୍ଥା କରାଯିବା ଉଚିତ୍ ।

ଯେଉଁମାନେ ଷ୍ଟ୍ରୋକ ଓ ହାଡ଼ଭଗ୍ନ ଜନିତ ଅଚଳ ହୋଇଥାନ୍ତି ସେମାନଙ୍କ ପାଇଁ ବିଦ୍ୟାଳୟରେ ଚକ ଲାଗିଥିବା ଚଉକି—ଯେଉଁଥିରେ ସେମାନେ ବସି ସହଜରେ ଯିବା ଆସିବା କରିପାରିବେ । ଏହା ଛଡ଼ା ସ୍ୱତନ୍ତ୍ର ପାହାଚ, ବ୍ଲାକବୋର୍ଡ଼ରେ ଲେଖିବା ପାଇଁ ହାତରେ ଧରିବା ପାଇଁ ବାଡ଼, ଉତ୍କୃଷ୍ଟ ଧରଣର ଚଉକି ଓ ଟେବୁଲର ବନ୍ଦୋବସ୍ତ କରାଯିବା ଉଚିତ । ଷ୍ଟ୍ରୋକ ବା ହାଡ଼ଭଗ୍ନ ଜନିତ ଦୁର୍ବଳ ପିଲଙ୍କ ପାଇଁ ସ୍ୱତନ୍ତ୍ର ପାଠ୍ୟକ୍ରମ କିମ୍ବା ପଦ୍ଧତି ଆବଶ୍ୟକ ହୁଏ ନାହିଁ । କେବଳ ସେମାନଙ୍କ ଶିକ୍ଷଣ କ୍ଷମତାର ଗତି ଅନୁସାରେ ସ୍ୱତନ୍ତ୍ର ଶିକ୍ଷା ପ୍ରଦାନ କରିବା ବିଧେୟ ।

**ଅପସ୍ମାର ଶିଶୁର ଲକ୍ଷଣ :—**

ଦୀର୍ଘକାଳ ଜ୍ୱରଗ୍ରସ୍ତ ରହିବା ଫଳରେ ଶିଶୁର ଶାରୀରିକ ଦୁର୍ବଳତା, ଶକ୍ତିକ୍ଷୟ ଓ ମାନସିକ ଭଗ୍ନତା ସୃଷ୍ଟି ହୋଇଥାଏ ଓ ଏହା ଫଳରେ ଶିଶୁର ବୌଦ୍ଧିକ ଶକ୍ତିର ପୂର୍ଣ୍ଣ ହ୍ରାସ ହୋଇଥାଏ । ଅପସ୍ମାରଜନିତ ଦୁର୍ବଳ ଶିଶୁମାନଙ୍କର ଆକ୍ଷିପତା ପଡ଼େ ଓ ଛୁଟେ । ଅନେକ ଶିଶୁ ମଧ୍ୟ ବୋକା ପରି ବୁଦ୍ଧି ରହନ୍ତି । ଆହୁରି କେତେକ ଚେତନା-ଶୂନ୍ୟ ହୋଇ ପଡ଼ନ୍ତି । ତେଣୁ ଏପରି ଲକ୍ଷଣ ଦେଖାଯାଉଥିବା ଶିଶୁମାନଙ୍କର ଉପଯୁକ୍ତ ଶାରୀରିକ ପରୀକ୍ଷା କରାଇ ତା'ର କାରଣ ନିର୍ଦ୍ଦିଷ୍ଟ କରିବା ଶିକ୍ଷକଙ୍କର ପ୍ରଧାନ କାର୍ଯ୍ୟ । ମସ୍ତିଷ୍କରେ କ୍ଷତ ଓ ଅତ୍ୟଧିକ ଜ୍ୱର ହେତୁ ଅପସ୍ମାରଜନିତ କମ୍ପନ ଦେଖାଯାଏ । ଏପ୍ରକାର ଭଗ୍ନତା ଶିଶୁର ପାଠପଢ଼ାରେ ବ୍ୟାଘାତ ଘଟାଏ ।

**ଶିକ୍ଷା-ବ୍ୟବସ୍ଥା :—**

ଅପସ୍ମାରଜନିତ ପିଲାମାନଙ୍କ ପାଇଁ ସ୍ୱତନ୍ତ୍ର ଶ୍ରେଣୀର ବ୍ୟବସ୍ଥା କରାଗଲେ ଭଲ । କିନ୍ତୁ ସାଧାରଣ ପିଲାମାନଙ୍କ ସହ ମଧ୍ୟ ସେମାନଙ୍କୁ ଶିକ୍ଷା ପ୍ରଦାନ କରାଯାଇ-ପାରିବ । ଏଥିପାଇଁ ବିଦ୍ୟାଳୟରେ କେତେକ ସ୍ୱତନ୍ତ୍ର ପ୍ରଣାଳୀ ଅବଲମ୍ବନ କରାଯିବା ଉଚିତ୍ । ଅନେକ ସମୟରେ ଦେଖାଯାଏ କେତେକ ଶିଶୁ ନିଜର ଶାରୀରିକ ଅପାରଗତା ଯୋଗୁଁ ଆବେଗଗତ ସମସ୍ୟାର ସମ୍ମୁଖୀନ ହୋଇଥାନ୍ତି । ତେଣୁ ଏମାନଙ୍କ ପାଇଁ ସ୍ୱତନ୍ତ୍ର ଶିକ୍ଷା ବ୍ୟବସ୍ଥା ନିତାନ୍ତ ଆବଶ୍ୟକ । ଏହି ଶିକ୍ଷା ବ୍ୟବସ୍ଥା ପାଇଁ ଯେପରି ସ୍ୱତନ୍ତ୍ର ପାଠ୍ୟକ୍ରମ ପ୍ରସ୍ତୁତ କରିବାକୁ ହୋଇଥାଏ ସେହିପରି ଦୁଇ ପ୍ରକାରର ସ୍ୱତନ୍ତ୍ର ଶିକ୍ଷକ ନିଯୁକ୍ତ କରିବାକୁ ହୁଏ । କାରଣ ଏମାନଙ୍କର ବିଭିନ୍ନ ପ୍ରକାର ଦୁର୍ବଳତା ଯଥା : ବାକ୍‌ଶକ୍ତି, ଶ୍ରବଣଶକ୍ତି, ଆଦି ନଥାଏ । ଫଳରେ ସେ ଠିକ୍ ଭାବରେ କୌଣସି ବିଷୟ ବୁଝିପାରେ ନାହିଁ । ତେଣୁ ଶାରୀରିକ ଚିକିତ୍ସକ ବା ଶିକ୍ଷକ ଶିଶୁର ଶାରୀରିକ ବିକାଶର ବିଭିନ୍ନ ଦିଗ ପ୍ରତି ଧ୍ୟାନ ଦେବା ସମୟରେ ବୃତ୍ତିଗତ ଚିକିତ୍ସକ ଏମାନଙ୍କୁ ବିଭିନ୍ନ ଅଭ୍ୟାସ ବିଷୟରେ ଶିକ୍ଷା ପ୍ରଦାନ କରନ୍ତି । ସ୍ୱତନ୍ତ୍ର ଶ୍ରେଣୀ ବ୍ୟବସ୍ଥାରେ ପ୍ରତ୍ୟେକ ଶ୍ରେଣୀରେ ୮/୧୦ ଜଣ ଛାତ୍ରଛାତ୍ରୀ ରହିବା ଉଚିତ୍ । ଏହା ଫଳରେ ପ୍ରତ୍ୟେକ ଅକ୍ଷମ ପିଲାଙ୍କର ଉପଯୁକ୍ତ ଯତ୍ନ ନିଆଯାଇ ପାରିବ । ଏହି ଶିଶୁମାନଙ୍କର ଅବସର ସମୟର ସଦୁପଯୋଗ ନିମନ୍ତେ କେତେକ ସହପାଠ୍ୟକ୍ରମ କାର୍ଯ୍ୟାବଳୀର ସୁବନ୍ଦୋବସ୍ତ କରାଯିବା ଉଚିତ୍ । ବିଭିନ୍ନ ଶିକ୍ଷା ଉପକରଣ ଯଥା :—ଛବି, ମଡ଼େଲ, ମାନଚିତ୍ର, ଷ୍ଟ୍ରିପ୍‌ସ୍, ସ୍ଲାଇଡ୍ ଓ ଚଳଚ୍ଚିତ୍ର ବ୍ୟବହାର କରି ଶିକ୍ଷା ପ୍ରଦାନ କରାଗଲେ ଶିକ୍ଷା ଉପଲବ୍ଧି ଉନ୍ନତ ଧରଣର ହୁଏ ଓ ଏହି ଅପାରଗ ପିଲାମାନଙ୍କର ପାଠପଢ଼ା ଦିଗରେ ଆଗ୍ରହ ଜନ୍ମିଥାଏ ।



# ଷଷ୍ଠ ଅଧ୍ୟାୟ

## ଆବେଗାତ୍ମକ ବିକାଶ

## (Emotional Development)

ଆବେଗମୟ ସାଗରର ବେଳା ଭୂମିରେ ମନୁଷ୍ୟ ହେଉଛି କ୍ଷଣପ୍ରାପ୍ତ ଉପଲ-ଖଣ୍ଡ ମାତ୍ର । ପ୍ରତ୍ୟେକ ମାନବୀୟ କାର୍ଯ୍ୟକଳାପ ଆବେଗର ସ୍ୱାକ୍ଷର ବହନ କରିଥାଏ । ଏପରିକି ଆମର ଚିନ୍ତାଧାରା, ଚେତନ ଓ ମନୋବୃତ୍ତିର ପ୍ରତ୍ୟେକ ପର୍ଯ୍ୟାୟରେ ଆବେଗର ପ୍ରତିଫଳନ ଘଟିଥାଏ । ଆବେଗ ମଣିଷର ଜୀବନକୁ ରଙ୍ଗୀନ ଓ ଛନ୍ଦମୟ କରିଥାଏ । ମନ ଓ ଶରୀରର ସଂଯୋଗକାରୀ ଭାବରେ କାର୍ଯ୍ୟ କରିଥାଏ । ହର୍ଷ ବିଷାଦର ଲୁଚକାଳି ଖେଳ ମଧ୍ୟରେ ମାନବ ଜୀବନ ଏକ ଦୁଃସାହସିକ ଅଭିଯାନରେ ପରିଣତ ହୁଏ ।

ବିଭିନ୍ନ ପ୍ରକାର ଆବେଗ ଯଥା ଆନନ୍ଦ, ବ୍ୟର୍ଥତା, ସ୍ନେହ, ମମତା, ପ୍ରେମ, ଭୟ, ଆଶଙ୍କା, କ୍ରୋଧ, ଈର୍ଷା, ଘୃଣା, ଦୁଃଖ ଓ ଉତ୍ଫୁଲ୍ଲତା ଆଦି ଜୀବନକୁ ମନୋରମ କରିବା ସଙ୍ଗେ ସଙ୍ଗେ ଶୋକାପ୍ଳୁତ ମଧ୍ୟ କରିଥାନ୍ତି । ବିଭିନ୍ନ ପ୍ରକାର ଆବେଗର ବଶବର୍ତ୍ତୀ ହୋଇ ମନୁଷ୍ୟ କେତେବେଳେ ଦେବତା ଓ ଅନ୍ୟ କେତେବେଳେ ଦାନବ ପରି ବ୍ୟବହାର ପ୍ରଦର୍ଶନ କରିଥାଏ । ଆବେଗଗୁଡ଼ିକ କେବଳ ଯେ ବ୍ୟବହାର ଉପରେ ପ୍ରଭାବ ପକାଇଥାନ୍ତି ତା ନୁହେଁ ବରଂ ସେମାନେ ଜୀବନଧାରଣର ଶୈଳୀ, ସାମାଜିକ ସମାଯୋଜନ ଏବଂ ବ୍ୟକ୍ତିତ୍ୱର ବିକାଶକୁ ମଧ୍ୟ ନିୟନ୍ତ୍ରିତ କରିଥାନ୍ତି । ଆମ ଶିକ୍ଷା ପଦ୍ଧତିର ଏକ ପ୍ରଧାନ ଦୁର୍ବଳତା ହେଲା ଯେ ଆମେ ବୁଦ୍ଧିମତ୍ତାର ପ୍ରଶିକ୍ଷଣ ସମୟରେ ଶିଶୁର ଆବେଗିକ ଅବସ୍ଥା ଗୁଡ଼ିକୁ ଗୌଣ ମନେକରିଥାଉ । ଆବେଗଗୁଡ଼ିକୁ ଠିକ୍ ବାଟରେ ପରିଚାଳିତ କରିପାରିଲେ ମନୁଷ୍ୟ ଜୀବନରେ ଏହା ଏକ ଗଠନ ମୂଳକ ଭୂମିକା ଗ୍ରହଣ କରିପାରିବ ।

ବୟଃପ୍ରାପ୍ତ ମନୁଷ୍ୟମାନଙ୍କ ଅପେକ୍ଷା ଶିଶୁମାନଙ୍କ ଜୀବନରେ ଆବେଗ ଏକ ତୁଳନାତ୍ମକଭାବେ ଅଧିକ ଶକ୍ତିଶାଳୀ ନିୟନ୍ତ୍ରଣକାରୀ ଉପାଦାନ । ଶିଶୁର ବିଭିନ୍ନ ବିଷୟରେ ଚିନ୍ତା କରିବା ଶକ୍ତି ସୀମିତ । ତେଣୁ କେତେକ ନିର୍ଦ୍ଦିଷ୍ଟ ଆବେଗ ଯଥା ଭୟ, ବିସ୍ମୟ କ୍ରୋଧ ଓ ବିରକ୍ତି ଆଦି ମାଧ୍ୟମରେ ସେ ନିଜର ମାନସିକ ଅବସ୍ଥା ପ୍ରକାଶ କରେ । ଶିଶୁ ଓ କିଶୋରମାନଙ୍କ କ୍ଷେତ୍ରରେ ଆବେଗର ପ୍ରଭାବ ନେତିବାଚକ ବା ବିଯୁକ୍ତାତ୍ମକ ଢଙ୍ଗରେ

ପରିତ୍ୟକ୍ତ ହେଲେ ସେମାନେ ଶିକ୍ଷା ଲାଭ ପାଇଁ ଆଗ୍ରହ ପ୍ରକାଶ କରନ୍ତି ନାହିଁ, ବରଂ ସାମାଜିକ କ୍ଷେତ୍ରରେ ଉପଯୁକ୍ତ ସମାଯୋଜନ କରିବାରେ ମଧ୍ୟ ସେମାନେ ବିଫଳ ହୋଇଥାନ୍ତି । ଉଦାହରଣ ସ୍ୱରୂପ ଶିଶୁର ମନ ସର୍ବଦା ଭୟ ଓ ବିଷଣ୍ଣତା ଦ୍ୱାରା ଆକ୍ରାନ୍ତ ହେଲେ ତାର ମାନସିକ ସ୍ୱାସ୍ଥ୍ୟ ପ୍ରତିହତ ହୁଏ ଏବଂ ଫଳ ସ୍ୱରୂପ ଉତ୍କଟ ଅନ୍ତର୍ମୁଖୀତା (Introvertism) ଓ ନ୍ୟୁନତାବୋଧ (Inferiority)ର ଶିକାର ହୁଏ ।

**ଆବେଗର ସଂଜ୍ଞା ଓ ପ୍ରକୃତି :**—ଆବେଗକୁ ଜୀବ ବିଶେଷର ଏକ ଉତ୍ତେଜିତ ଅବସ୍ଥା ଭାବରେ ବର୍ଣ୍ଣନା କରାଯାଇପାରେ । ଆବେଗର ଇଂରେଜୀ ଶବ୍ଦ emotion, ମୂଳଲାଟିନ ଶବ୍ଦ emovereରୁ ସୃଷ୍ଟି, ଯାହାର ଅର୍ଥ ଉତ୍ତେଜିତ ହେବା, ବିଦ୍ରୋହ କରିବା ବା କର୍ମତତ୍ପର ହେବା । ଏହି ଉତ୍ତେଜନା ପ୍ରାବଲ୍ୟ ଆବେଗର ତୀବ୍ରତା ଅନୁସାରେ ପରିବର୍ତ୍ତିତ ହୁଏ । ପ୍ରତ୍ୟେକ ଆବେଗ ଉଭୟ ଆନନ୍ଦ ଓ କଷ୍ଟ ଦେଇଥାଏ । ମନୁଷ୍ୟ ଓ ଅନ୍ୟାନ୍ୟ ଜୀବବିଶେଷଠାରେ ଆବେଗ ସଦାସର୍ବଦା ଜୈବିକ ଓ ଶାରୀରିକ ପରିବର୍ତ୍ତନ ସହ ସଂଶ୍ଲିଷ୍ଟ । ଏହି ପରିବର୍ତ୍ତନକୁ ଦେଖି ହୁଏ ଓ ପରିମାପ ମଧ୍ୟ କରିହୁଏ । ପ୍ରତ୍ୟେକ ପ୍ରକାର ଆବେଗିକ ଅବସ୍ଥାରେ ଏକ ଅନ୍ତଃନିହିତ ଉତ୍ତେଜନା ସୃଷ୍ଟିହୁଏ ଯାହାକି ବିଭିନ୍ନ ପ୍ରକାର ଆଚରଣ ପାଇଁ ଉଦ୍ଦୀପକ ଭାବରେ କାର୍ଯ୍ୟକରେ । ଅତଏବ ଆବେଗର ପରିପ୍ରକାଶର ଭଙ୍ଗୀ ତା'ର ଉଦ୍ଦୀପକ ଓ ତୀବ୍ରତା ଉପରେ ନିର୍ଭର କରିଥାଏ ।

ମୁଖ୍ୟତଃ ତିନୋଟି ଉଦ୍ଦୀପକ ଆବେଗ ସୃଷ୍ଟି ପାଇଁ ଦାୟୀ । ସେଗୁଡ଼ିକ ହେଲା ବ୍ୟକ୍ତି, ବସ୍ତୁ ଓ ଘଟଣା । ଏଗୁଡ଼ିକୁ ବାହ୍ୟ ଉଦ୍ଦୀପକ କୁହାଯାଇପାରେ । ତା'ଛଡ଼ା ଆବେଗ କେତେକ ଅନ୍ତଃନିହିତ ଉଦ୍ଦୀପକ ଦ୍ୱାରା ମଧ୍ୟ ସୃଷ୍ଟି ହୋଇପାରେ । ସେଗୁଡ଼ିକ ହେଲା ମନୋବୃତ୍ତି, ଇଚ୍ଛା ବା କାମନା, ଆଗ୍ରହ, ଆଦର୍ଶ, ସ୍ୱାସ୍ଥ୍ୟ, ଆତ୍ମବୋଧ ଏବଂ ଆତ୍ମ ନିୟନ୍ତ୍ରଣ ଇତ୍ୟାଦି । ଯେତେ ସମୟ ପର୍ଯ୍ୟନ୍ତ ଉଦ୍ଦୀପକଟି କାର୍ଯ୍ୟ କରୁଥାଏ ସେତେବେଳେ ପର୍ଯ୍ୟନ୍ତ ଉକ୍ତ ଆବେଗ ବଳବତ୍ତର ରହିଥାଏ । ଆବେଗକୁ ହ୍ରାସ ବା ଅବଦମିତ କରିବା ପାଇଁ ଉଦ୍ଦୀପକକୁ ଦୂର କରିବା ଆବଶ୍ୟକ ହୋଇଥାଏ । ଏକ ପ୍ରକାର ଉଦ୍ଦୀପକ କୌଣସି ସମୟରେ ତୀବ୍ର ଆବେଗ ସୃଷ୍ଟି କରେ ଏବଂ ଅନ୍ୟ କୌଣସି ସମୟରେ ଧୀର ଆବେଗ ସୃଷ୍ଟି କରେ । ଏହା ଛଡ଼ା ବ୍ୟକ୍ତିବିଶେଷରେ ଏକ ନିର୍ଦ୍ଦିଷ୍ଟ ଉଦ୍ଦୀପକ ବିଭିନ୍ନ ପ୍ରକାର ଆବେଗିକ ଅବସ୍ଥା ସୃଷ୍ଟି କରିଥାଏ । କୌଣସି ଆବେଗିକ ଅବସ୍ଥାର ପରିପ୍ରକାଶ ପାଇଁ ଉଭୟ ବାହ୍ୟ ଓ ଅନ୍ତର୍ନିହିତ ଉପାଦାନ ଗୁଡ଼ିକ କାର୍ଯ୍ୟ କରିଥାନ୍ତି । ଉଦାହରଣ ସ୍ୱରୂପ ଆମର ଜଣେ ବନ୍ଧୁ ଆମକୁ ପରିହାସ କଲେ ଆମେ ତାହାକୁ ଗୁରୁତ୍ୱ ପ୍ରଦାନ କରୁନାହିଁ ଅଥଚ ଜଣେ କମ୍ ବୟସର ଅପରିଚିତ ବ୍ୟକ୍ତି ପରିହାସ କଲେ ଆମେ କ୍ରୋଧାନ୍ୱିତ ହୋଇଥାଉ ।

ଆବେଗର ଉତ୍ସ ହେଉଛି ଉତ୍ତେଜନା । କିନ୍ତୁ ବିଭିନ୍ନ ପ୍ରକାର ଆବେଗ ପାଇଁ ଉତ୍ତେଜନା ଭିନ୍ନ ଭିନ୍ନ ହୋଇଥାଏ ବା ପ୍ରକାର ଉତ୍ତେଜନା ବିଭିନ୍ନ ପ୍ରକାର ଆବେଗର ରୂପ ଗ୍ରହଣ କରିଥାଏ, ଏ ବିଷୟରେ ବିଭିନ୍ନ ମନୋବିଜ୍ଞାନୀ ନାନାପ୍ରକାର ମତପ୍ରଦାନ କରିଛନ୍ତି । ମନସ୍ତତ୍ତ୍ୱବିତ୍ ଡେକାର୍ଟସ୍ (Descartes) ଙ୍କ ମତରେ ଶିଶୁ ୬ଟି ମୂଳ ଆବେଗ ନେଇ ଜନ୍ମ ଗ୍ରହଣ କରିଥାଏ । ସେଗୁଡ଼ିକ ହେଲା ବିସ୍ମୟ, ଘୃଣା, ଦୁଃଖ, ସ୍ନେହ, ଆନନ୍ଦ ଓ କାମନା । କିନ୍ତୁ ମନୋବିଜ୍ଞାନୀ ମାକ୍ ଡୁଗାଲଙ୍କ ମତରେ ପ୍ରାୟ ୧୪ଟି ସହଜାତ ପ୍ରବୃତ୍ତିରୁ ୨୮ଟି ଆବେଗ ସୃଷ୍ଟି ହୋଇଥାଏ । କିନ୍ତୁ ଆମେରିକାସ୍ଥ ବ୍ୟବହାରବାଦୀ ମନୋବିଜ୍ଞାନୀ ଆବେଗକୁ ଏକ ସହଜାତ ପ୍ରବୃତ୍ତି ଭାବରେ ସ୍ୱୀକାର କରନ୍ତି ନାହିଁ । ବିଭିନ୍ନ ପରୀକ୍ଷା ଦ୍ୱାରା ସେ ପ୍ରମାଣ କରିଛନ୍ତି ଯେ ମନୁଷ୍ୟ ଶିଶୁ ଏକ ପ୍ରକାର ଉତ୍ତେଜନା ନେଇ ଜନ୍ମ ଗ୍ରହଣ କରିଥାଏ । ସେହି ଉତ୍ତେଜନା ବିଭିନ୍ନ ପରିସ୍ଥିତି ଓ ପରିବେଷ୍ଟନୀରେ ଶିଶୁଠାରେ ନାନାପ୍ରକାର ବ୍ୟବହାରର ଉଦ୍ରେକ କରାଏ । ବ୍ୟବହାରର ଏହି ପରିବର୍ତ୍ତିତ ଶୈଳୀକୁ ଆମେ ବିଭିନ୍ନ ପ୍ରକାର ଆବେଗ ଭାବରେ ଅଭିହିତ କରିଥାଉଁ । ସାପେକ୍ଷୀକରଣ ବା (Conditioning) ଦ୍ୱାରା ଆବେଗଗୁଡ଼ିକର ସମ୍ପ୍ରସାରଣ ଓ ନିୟନ୍ତ୍ରଣ କରାଯାଇପାରେ ।

**ସାଧାରଣ ଉତ୍ତେଜନା ଓ ଆବେଗ ମଧ୍ୟରେ ପାର୍ଥକ୍ୟ :—**

ଉତ୍ତେଜନା ଆବେଗ ସୃଷ୍ଟି କରିଥାଏ ସତ, କିନ୍ତୁ ସବୁ ଉତ୍ତେଜନାକୁ ଆବେଗ କୁହାଯାଇ ନପାରେ । ଅନ୍ୟ ପକ୍ଷରେ କେତେକ ଉତ୍ତେଜନା ଆବେଗ ସୃଷ୍ଟି ନକରି ଅନୁଭବ ସୃଷ୍ଟି କରିଥାଏ । ଅନୁଭବ ବା Feeling ଏବଂ ସମ୍ବେଦନ ବା Sensation ମଧ୍ୟ ଆବେଗ ଭଳି କୌଣସି ଏକ ଉତ୍ତେଜନାରୁ ଜନ୍ମ ନେଇଥାନ୍ତି । ସମୟ ସମୟରେ ଏକ ପ୍ରକାର ଆଭ୍ୟନ୍ତରୀଣ ଉତ୍ତେଜନା ସୃଷ୍ଟି ହୁଏ ଯାହା ଶରୀରର କୌଣସି ଏକ ଅଙ୍ଗ ବା ଜୈବିକ ଅଂଶ ସହିତ ସମ୍ପୃକ୍ତ ହୋଇ ନଥାଏ । ହଠାତ୍ କୌଣସି କାରଣ ନଥାଇ ମନୁଷ୍ୟ ଆନନ୍ଦ ଅନୁଭବ କରେ ବା ଦୁଃଖ ଅନୁଭବ କରେ । କିନ୍ତୁ ଏହି ଅନୁଭବର ମାତ୍ରା ତୀବ୍ର ହୋଇ ନଥାଏ । କିମ୍ବା ଏହା ଆବେଗାତ୍ମକ ହୁଏ ନାହିଁ । ଉତ୍ତେଜନା ସମୟ ସମୟରେ ଆନନ୍ଦଦାୟକ ଓ ସମୟ ସମୟରେ କଷ୍ଟଦାୟକ ହୋଇଥାଏ । ଆନନ୍ଦଦାୟକ ଉତ୍ତେଜନା ସୃଷ୍ଟି ହେଲେ ଆହ୍ଲାଦ ଭାବ ଅନୁଭୂତ ହୁଏ । କଷ୍ଟଦାୟକ ଉତ୍ତେଜନା ଅଶାନ୍ତି [illegible] କରିବା ବା କ୍ରୋଧ ସୃଷ୍ଟି କରିଥାଏ । କିନ୍ତୁ ଏ ପ୍ରକାର ଉତ୍ତେଜନା ଶାରୀରିକ ଆଚରଣକୁ ଯଥେଷ୍ଟ ପରିବର୍ତ୍ତନ କରି ନଥାଏ କିମ୍ବା ଅତି ଅଳ୍ପ ପରିମାଣରେ ପ୍ରଭାବିତ କରିଥାଏ । କିନ୍ତୁ ଆବେଗିକ ଅବସ୍ଥାରେ ବ୍ୟକ୍ତିର ବ୍ୟବହାର ଶୈଳୀରେ ଯଥେଷ୍ଟ ପରିବର୍ତ୍ତନ ପରିଲକ୍ଷିତ ହୁଏ ।

ଅନ୍ୟ ପକ୍ଷରେ ବିଭିନ୍ନ ପ୍ରକାର ସ୍ଥାୟୀଭାବ ବା Sentiment ପାଇଁ ଯେଉଁ ଉତ୍ତେଜନାର ଆବଶ୍ୟକ ହୁଏ ତାହାକୁ ମଧ୍ୟ ଆବେଗ କୁହାଯାଇ ନପାରେ । ଉଦାହରଣ ସ୍ୱରୂପ ଦେଶପ୍ରେମ, ପିତାମାତାଙ୍କ ପ୍ରତି ଅନୁରକ୍ତି ଓ ଶିକ୍ଷକଙ୍କ ପ୍ରତି ଭକ୍ତି ଆଦି ଏକ ପ୍ରକାର କୋମଳ ଓ ଧୀର ଉତ୍ତେଜନାରୁ ସୃଷ୍ଟି ହେଲେ ମଧ୍ୟ ଏଗୁଡ଼ିକ ଆବେଗ ଶ୍ରେଣୀଭୁକ୍ତ ନୁହନ୍ତି । ଶିକ୍ଷକ ଓ ପିତାମାତା ଆଦର କରିବା ସମୟରେ ଆମ ମନରେ ତାଙ୍କ ପ୍ରତି ଆନନ୍ଦଦାୟକ ଉତ୍ତେଜନା ସୃଷ୍ଟି ହୁଏ । କିନ୍ତୁ ସେମାନେ ଦଣ୍ଡଦେବା ସମୟରେ କଷ୍ଟ ବା କ୍ରୋଧର ଉତ୍ତେଜନା ସୃଷ୍ଟି ହୁଏ । ଏସବୁ ସତ୍ତ୍ୱେ ସେମାନଙ୍କ ପ୍ରତି ଆମ ମନରେ ଏକ ସ୍ଥାୟୀ ଭାବ ରହିଥାଏ । ସେହିପରି ନିଜ ଦେଶର ବ୍ୟକ୍ତିମାନଙ୍କର କେତେକ ଆଚରଣ ଓ ଅଭ୍ୟାସ ଆମର ମନଃପୂତ ହୋଇ ନପାରେ, କିନ୍ତୁ ଦେଶ ପ୍ରତି ଆମ ମନରେ ଏକ ସ୍ୱତନ୍ତ୍ର ଉତ୍ସର୍ଗୀକୃତ ଭାବ ରହିଥାଏ । ଏହି ପ୍ରକାର ଉତ୍ତେଜନା ଆବେଗ ନୁହେଁ । ଏଥିରୁ ପ୍ରମାଣିତ ହୁଏ ଯେ ବ୍ୟକ୍ତି ତା'ର ପରିବେଷ୍ଟନୀ ସହ ସମାଯୋଜନ ପ୍ରକ୍ରିୟାରେ ବିଭିନ୍ନ ସମୟରେ ଯେଉଁ ଉତ୍ତେଜନା ପ୍ରକାଶ କରେ ସେଥିରୁ ସମସ୍ତ ଆବେଗର ରୂପ ଗ୍ରହଣ କରେ ନାହିଁ ।

**ଆବେଗାତ୍ମକ ବିକାଶରେ ନାଳୀ ବିହୀନ ଗ୍ରନ୍ଥିର ଭୂମିକା :—** ମନୁଷ୍ୟର ବିଭିନ୍ନ ବିକାଶ ପାଇଁ ଶରୀର ମଧ୍ୟରେ ଥିବା ଅନେକଗୁଡ଼ିଏ ଗ୍ରନ୍ଥି କାର୍ଯ୍ୟ କରିଥାନ୍ତି । ସେଗୁଡ଼ିକ ସମ୍ପର୍କରେ ଆଲୋଚନା ଶରୀର ବିଜ୍ଞାନର ଅନ୍ତର୍ଭୁକ୍ତ । କିନ୍ତୁ ମନୋବିଜ୍ଞାନରେ କେତେକ ନାଳୀ ବିହୀନ ଗ୍ରନ୍ଥି ବିଷୟ ଆଲୋଚନା କରାଯାଇଥାଏ, କାରଣ ଆବେଗାତ୍ମକ ବିକାଶରେ ସେଗୁଡ଼ିକର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ବିଶେଷତଃ ଆବେଗିକ ସମୟରେ ଉକ୍ତ ଗ୍ରନ୍ଥିଗୁଡ଼ିକ ବିଭିନ୍ନ ଶାରୀରିକ ପରିବର୍ତ୍ତନ ଘଟାଇଥାନ୍ତି । ସେଗୁଡ଼ିକୁ ନାଳୀ ବିହୀନ ଗ୍ରନ୍ଥି ବା Ductless Gland ବା Endocrine Gland କୁହାଯାଏ; କାରଣ ସେଗୁଡ଼ିକ କୌଣସି ନାଳୀ ଦ୍ୱାରା ସଂଯୁକ୍ତ ନୁହନ୍ତି । ସେଥିରୁ କ୍ଷରିତ ହେଉଥିବା ରସକୁ ହରମୋହନ କୁହାଯାଏ ଏବଂ ଏହି hormones ସିଧାସଳଖ ରକ୍ତରେ ମିଶିଥାଏ । ଏହି ହରମୋନ ଶାରୀରିକ କାର୍ଯ୍ୟକଳାପକୁ ତ୍ୱରାନ୍ୱିତ ବା ମନ୍ଥର କରିଥାନ୍ତି । କେତେକ ଆବେଗିକ ଅବସ୍ଥାରେ ଏହି ଗ୍ରନ୍ଥିଗୁଡ଼ିକରୁ ହରମୋନ କ୍ଷରଣ ଅଧିକ ହେବାରୁ ଶାରୀରିକ ଶକ୍ତିର ବୃଦ୍ଧି ଘଟିଥାଏ । ନାଳୀ ବିହୀନ ଗ୍ରନ୍ଥିଗୁଡ଼ିକ ହେଲେ ଥାଇରଏଡ୍, ପାରାଥାଇରଏଡ୍, ଆଡ୍ରେନାଲ, ଗୋନାଡ୍, ପିଟୁଇଟାରି ଏବଂ ପାନକ୍ରିଜ୍ ଇତ୍ୟାଦି ।

ନାଳୀ ବିହୀନ ଗ୍ରନ୍ଥୀଗୁଡ଼ିକ ଅତି କ୍ଷୁଦ୍ର ଏବଂ ଏମାନେ ଶରୀର ଓ ମନର ମଙ୍ଗଳକାରୀ । ଏଗୁଡ଼ିକ ସ୍ୱାଭାବିକ ଭାବରେ କାର୍ଯ୍ୟ କରିବା ସମୟରେ ଶରୀର ଓ ମନ ସନ୍ତୁଳିତ ଅବସ୍ଥାରେ ରହେ । ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟରକ୍ଷା ପାଇଁ ଏହି ଗ୍ରନ୍ଥି-

ଗୁଡ଼ିକର କ୍ଷରଣରେ ସ୍ୱରସାମ୍ୟ ରକ୍ଷା ହେବା ଆବଶ୍ୟକ । ଗ୍ରନ୍ଥିଗୁଡ଼ିକ ଶରୀରର ବିଭିନ୍ନ ସ୍ଥାନରେ ଅବସ୍ଥାପିତ ହୋଇଥିଲେ ମଧ୍ୟ ସେମାନେ ପରସ୍ପର ନିର୍ଭରଶୀଳ ଓ ସେମାନଙ୍କ ମଧ୍ୟରେ ସଦା ସର୍ବଦା ପାରସ୍ପରିକ କ୍ରିୟା ଚାଲିଥାଏ ।




( ଶରୀର ମଧ୍ୟରେ ବିଭିନ୍ନ ନାଳୀ ବିହୀନ ଗ୍ରନ୍ଥିର ଅବସ୍ଥିତି )

**ଥାଇରଏଡ଼ ଗ୍ରନ୍ଥି**—ଗଳାର ସମ୍ମୁଖରେ ଅବସ୍ଥିତ ଥାଇରଏଡ଼ ଗ୍ରନ୍ଥିରୁ ଯେଉଁ ହରମୋନ କ୍ଷରଣ ହୁଏ ତା'ର ନାମ ଥାଇରକ୍ସିନ (**Thyroxin**) । ଶରୀରର ସ୍ୱାଭାବିକ କାର୍ଯ୍ୟକଳାପ ପାଇଁ ଥାଇରକ୍ସିନ ଏକ ଆବଶ୍ୟକ ହରମୋନ । ଏହି ହରମୋନଟିର ପରିମାଣ କମ୍ ହେଲେ ଅମ୍ଳଜାନ ଗ୍ରହଣ ହ୍ରାସପାଏ ଓ ଉପାପଚୟ (**metabolism**) ବାଧାପ୍ରାପ୍ତ ହୁଏ । ଥାଇରଏଡ଼ର କାର୍ଯ୍ୟ ଅସ୍ୱାଭାବିକ ଭାବରେ ବୃଦ୍ଧି ପାଇଲେ ବ୍ୟକ୍ତି ବ୍ୟଗ୍ରତା, ଅସ୍ଥିରତା ଓ କ୍ରୋଧପ୍ରବଣତା ପ୍ରଦର୍ଶନ କରେ । ଏହି

ଗ୍ରନ୍ଥିଟି ନଷ୍ଟ ହୋଇଗଲେ ବ୍ୟକ୍ତି କର୍ମବିମୁଖ, ନିର୍ବୋଧ ଏବଂ ଅସ୍ୱାଭାବିକ ଭାବେ ନିସ୍ତେଜତା ପ୍ରଦର୍ଶନ କରେ । ଶୈଶବରେ ଏହି ଗ୍ରନ୍ଥି ଉପଯୁକ୍ତ ଭାବରେ କାର୍ଯ୍ୟ ନକଲେ ଶିଶୁର ଶାରୀରିକ ବିକାଶ ଓ ବୁଦ୍ଧିମତ୍ତା ବାଧାପ୍ରାପ୍ତ ହୋଇଥାଏ ।

**ପାରା ଥାଇରଏଡ଼୍ ଗ୍ରନ୍ଥି :**—ଏହି ଗ୍ରନ୍ଥି ଥାଇରଏଡ଼ ନିକଟରେ ଅବସ୍ଥିତ ଏବଂ ଅପେକ୍ଷାକୃତ କ୍ଷୁଦ୍ରତର । ସମୁଦାୟ ୪ଟି ପାରାଥାଇରଏଡ଼୍ ଗ୍ରନ୍ଥି ଥାଏ । ଏହା କ୍ୟାଲସିୟମ୍ ପରିପାକ କରିବାରେ ସାହାଯ୍ୟ କରେ । ଆବେଗିକ ବିକାଶରେ ମଧ୍ୟ ଏହି ଗ୍ରନ୍ଥି ପ୍ରମୁଖ ଅଂଶ ଗ୍ରହଣ କରିଥାଏ । ଏହି ଗ୍ରନ୍ଥିର ଗଠନ ବା କାର୍ଯ୍ୟ କୌଣସି ପ୍ରକାରରେ କ୍ଷତିପୂର୍ଣ୍ଣ ହୋଇଥିଲେ ବ୍ୟକ୍ତି ବ୍ୟଗ୍ରତା ଓ ଆବେଗିକ ଅସ୍ଥିରତା ପ୍ରଦର୍ଶନ କରେ । ଅନ୍ୟ ପକ୍ଷରେ ଥାଇରଏଡ଼୍‌ରେ ଅଧିକ ଥାଇରକ୍ସିନ୍ ସ୍ରାବଣ ଯୋଗୁଁ ଏହି ଲକ୍ଷଣଗୁଡ଼ିକ ପ୍ରକାଶିତ ହୋଇଥାଏ । ତେଣୁ ଥାଇରଏଡ଼ ଓ ପାରାଥାଇରଏଡ଼ର କାର୍ଯ୍ୟ ପରସ୍ପର ବିପରୀତଧର୍ମୀ । ତେଣୁ ସ୍ୱାସ୍ଥ୍ୟର ସ୍ୱାଭାବିକ ଅବସ୍ଥା ବଜାୟ ରଖିବା ପାଇଁ ଉକ୍ତ ଗ୍ରନ୍ଥି ଦୁଇଟି ଭାରସାମ୍ୟ ରକ୍ଷାକରି କାର୍ଯ୍ୟକରିବା ଆବଶ୍ୟକ ହୋଇଥାଏ ।

**ଆଡ୍ରେନାଲ ଗ୍ରନ୍ଥି :**—ଆଡ୍ରେନାଲ ଗ୍ରନ୍ଥିଗୁଡ଼ିକ କ୍ଷୁଦ୍ରାକାର ଏବଂ ବୃକକ୍ (Kidney) ନିକଟରେ ଅବସ୍ଥିତ । ପ୍ରତ୍ୟେକ ଆଡ୍ରେନାଲ ଗ୍ରନ୍ଥିର ଦୁଇଟି ଅଂଶ ଥାଏ । ଏହାର ବାହ୍ୟ ଆବରଣକୁ Cortex ଏବଂ ଭିତର ଅଂଶକୁ Medulla କୁହାଯାଏ । ପ୍ରତ୍ୟେକ ଅଂଶର କାର୍ଯ୍ୟ ଓ ହରମୋନ କ୍ଷରଣ ସ୍ୱତନ୍ତ୍ର । Medullaରୁ ଯେଉଁ ହରମୋନ କ୍ଷରିତ ହୁଏ ତା'ର ନାମ adrenin । ଆମର ବିଭିନ୍ନ ଶାରୀରିକ କାର୍ଯ୍ୟ ଉପରେ ଏହାର ପ୍ରଭାବ ଗୁରୁତ୍ୱପୂର୍ଣ୍ଣ । ଏହି ହରମୋନରୁ ସ୍ୱଳ୍ପ ମାତ୍ରାରେ କିଛି ରକ୍ତ ମଧ୍ୟକୁ ପ୍ରବେଶ କରାଇଦିଆଗଲେ ଏହା ହୃଦଯନ୍ତ୍ର କ୍ରିୟାକୁ ତ୍ୱରାନ୍ୱିତ କରିବା ସଙ୍ଗେ ସଙ୍ଗେ ପାକସ୍ଥଳୀ ଓ ଅନ୍ତ୍ରରକାର୍ଯ୍ୟକୁ ମନ୍ଥର କରିଥାଏ । ଏହାଛଡ଼ା ଯକୃତ ଅଧିକ ଶର୍କରା ନିଷ୍କାସିତ କରାଇବା ସଙ୍ଗେ ସଙ୍ଗେ ମାଂସପେଶୀସ୍ଥ କ୍ଲାନ୍ତି ଦୂର କରିଥାଏ । ଏଥିରୁ ଜଣାଯାଏ ଯେ ଆବେଗିକ ଅବସ୍ଥାରେ ତ୍ୱରାନ୍ୱିତ କର୍ମପ୍ରବଣତା ଏବଂ ବର୍ଦ୍ଧିତ ଶାରୀରିକ ଶକ୍ତି ଏହି adreninର କ୍ଷରଣ ଯୋଗୁଁ ସଂଘଟିତ ହୋଇଥାଏ ।

ଆଡ୍ରେନାଲ ଗ୍ରନ୍ଥିର ବାହ୍ୟ ଅଂଶ ବା Cortexରୁ କ୍ଷରିତ ହେଉଥିବା ହରମୋନର ନାମ Cortin । ଏହା ହରମୋନର କ୍ଷରଣ ସମ୍ପୂର୍ଣ୍ଣ ବନ୍ଦ ହୋଇଗଲେ ବ୍ୟକ୍ତି ମୃତ୍ୟୁମୁଖରେ ପଡ଼ିଥାଏ । ଏହା ବର୍ଦ୍ଧିତ ମାଂସପେଶୀସ୍ଥ କାର୍ଯ୍ୟ କଳାପରେ ସାହାଯ୍ୟ କରେ । ଏହା ବ୍ୟକ୍ତିକୁ ରୋଗଜୀବାଣୁ ଆକ୍ରମଣ ଓ କ୍ଷତ ବିକ୍ଷତ ହେବାରୁ ରକ୍ଷା କରେ । ସ୍ତ୍ରୀ ମାନଙ୍କ କ୍ଷେତ୍ରରେ ଏହି ହରମୋନର ଅଭାବ ଘଟିଲେ ସେମାନଙ୍କ ଗଳାର ସ୍ୱର ପୁରୁଷ ସୁଲଭ ଓ ନିଶ, ଦାଢ଼ି ଉଠିବାର ଦେଖାଯାଏ ।

**ଗୋନାଡ୍**—ଏହା ମନୁଷ୍ୟ ଶରୀରର ମୁଖ୍ୟ ଯୌନ ଅବୟବ । ଏହା ସ୍ତ୍ରୀମାନଙ୍କ କ୍ଷେତ୍ରରେ ଡିମ୍ବକୋଷ ବା ovary ଏବଂ ପୁରୁଷମାନଙ୍କ କ୍ଷେତ୍ରରେ ଅଣ୍ଡକୋଷ ବା **testes** ଗଠନ କରିଥାଏ । ଏହାର ମୁଖ୍ୟ କାର୍ଯ୍ୟ ହେଲା ପୁନରୁତ୍ପାଦନ କୋଷ ବା **reproductive cells** ସୃଷ୍ଟି କରିବା । ତା ଛଡ଼ା ବ୍ୟକ୍ତିର ସ୍ୱାଭାବିକ ସାଧାରଣ ବିକାଶ କ୍ରିୟାରେ ମଧ୍ୟ ଏହି ଗ୍ରନ୍ଥି ଅଂଶ ଗ୍ରହଣ କରିଥାଏ । ଶୈଶବରେ ଯୌନ ହରମୋନ କ୍ରିୟାଶୀଳ ନଥାଏ, ଯୌବନାବସ୍ଥାର ପ୍ରାରମ୍ଭରେ ତାହାର କାର୍ଯ୍ୟ ଆରମ୍ଭ ହୋଇଥାଏ । ଏହି ସମୟରେ ଏହି ହରମୋନ ଯୌନ ଅଙ୍ଗ ଯୌନ ପ୍ରବୃତ୍ତିର ବିକାଶରେ ସହାୟକ ହୋଇଥାଏ । ଅତ୍ୟଧିକ ଯୌନ ଉନ୍ମାଦନା ଯୋଗୁଁ ବ୍ୟକ୍ତି ଯେଉଁ ଆଚରଣ ପ୍ରଦର୍ଶନ କରେ ତାହା ଏହି ଗ୍ରନ୍ଥି ଯୋଗୁଁ ସଂଘଟିତ ହୋଇଥାଏ ।

**ପିଟୁଇଟାରୀ ଗ୍ରନ୍ଥି**—ମସ୍ତିଷ୍କର ନିମ୍ନାଂଶରେ ଅବସ୍ଥିତ ଏହି ଗ୍ରନ୍ଥିକୁ **master gland** କୁହାଯାଏ କାରଣ ଏହା ଅନ୍ୟାନ୍ୟ ନାଳୀବିହୀନ ଗ୍ରନ୍ଥିମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ନିୟନ୍ତ୍ରିତ କରେ । ଏହି ଗ୍ରନ୍ଥିରୁ ଏକ ପ୍ରକାର ହରମୋନ କ୍ଷରିତ ହୋଇ ଅନ୍ୟାନ୍ୟ ଗ୍ରନ୍ଥିମାନଙ୍କୁ ଉଦ୍ଦୀପନା ଯୋଗାଏ । ଅନ୍ୟ ଗ୍ରନ୍ଥିମାନେ ସେମାନଙ୍କ ସ୍ୱାଭାବିକ କାର୍ଯ୍ୟ ଓ ବିକାଶ ପାଇଁ ଏହି ଗ୍ରନ୍ଥି ଉପରେ ନିର୍ଭର କରନ୍ତି । ପିଟୁଇଟାରୀ ଗ୍ରନ୍ଥିର ଏକ ଅଂଶ ଅନ୍ୟାନ୍ୟ ଗ୍ରନ୍ଥିମାନଙ୍କୁ ପରିଚାଳିତ କରୁଥିବା ସମୟରେ ଏହାର ଅନ୍ୟ ଏକ ଅଂଶ ଶାରୀରିକ ବିକାଶକୁ ଅନେକାଂଶରେ ନିୟନ୍ତ୍ରଣ କରେ ।

**ପାନକ୍ରିଜ**—ଏହି ଗ୍ରନ୍ଥି ଆଡ୍ରେନାଲ୍ ନିକଟରେ ଅବସ୍ଥିତ ଏବଂ ଏଥିରୁ କ୍ଷରିତ ହେଉଥିବା ହରମୋନର ନାମ ଇନ୍ସୁଲିନ (Insulin) । ଏହା ଆମ ଶରୀରରେ ଶକ୍ତି ଉତ୍ପାଦନ ପାଇଁ ଶର୍କରାର ଦହନରେ ସାହାଯ୍ୟ କରେ । ପାନକ୍ରିଜ ଗ୍ରନ୍ଥି ତ୍ରୁଟିପୂର୍ଣ୍ଣ ଭାବରେ କାର୍ଯ୍ୟକଲେ ଡାଏବେଟିସ (Diabetis) ଆଦି ରୋଗ ହୋଇଥାଏ । ସେହିପରି ଇନ୍ସୁଲିନ୍ ଅଧିକ ମାତ୍ରାରେ କ୍ଷରିତ ହେଲେ ଆଶଙ୍କା, ବ୍ୟଗ୍ରତା ଓ ମାନସିକ ବିଷାଦ ପରିଲକ୍ଷିତ ହୁଏ ।

## କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ଆବେଗ, ସେଗୁଡ଼ିକର ବିକାଶ ତଥା ନିୟନ୍ତ୍ରଣ

### କ୍ରୋଧ ବା ରାଗ (Anger)

**ପରିପ୍ରକାଶର ପ୍ରକୃତି ଏବଂ ପଦ୍ଧତି**—

ଉକ୍ତ ଆବେଗଟି ଆବାଳ ବୃଦ୍ଧ ବନିତା ପ୍ରତ୍ୟେକ ବ୍ୟକ୍ତିଙ୍କଠାରେ ଅବସ୍ଥା ଓ ପରିସ୍ଥିତି ବିଶେଷକୁ ନେଇ ପରିଦୃଷ୍ଟ ହୁଏ । ତେଣୁ ଏହାର ପରିମାଣ ମଧ୍ୟ ସ୍ଥଳ ବିଶେଷରେ କମ୍ ବେଶି ହୋଇଥାଏ । ଶୈଶବାବସ୍ଥାରେ ଶିଶୁର କ୍ରୋଧ ଏକ ଆକ୍ରମଣାତ୍ମକ

ଭଙ୍ଗୀରେ ପରିପ୍ରକାଶ ହୁଏ । ଶିଶୁ ତାର ଇଚ୍ଛା ବା ଅଭିଳାଷର ପରିପୂର୍ତ୍ତି ନିମିତ୍ତ ଅନ୍ୟମାନଙ୍କ ଦୃଷ୍ଟି ଆକର୍ଷିତ କରିବାକୁ ଯାଇ ଉଚ୍ଚ ସ୍ୱରରେ କାନ୍ଦନ୍ତି ଓ ଅନ୍ୟମାନଙ୍କୁ ଶାରୀରିକ ଆକ୍ରମଣ କରିଥାନ୍ତି । କ୍ରୋଧ ପରିପ୍ରକାଶ ପୂର୍ବକ ସେ ତାର ଆବଶ୍ୟକତାନୁଯାୟୀ ଦ୍ରବ୍ୟ ବା ଜିନିଷ ପାଇବା ଫଳରେ ସେ ଏହି ପ୍ରକାର ନିର୍ଦ୍ଦିଷ୍ଟ ଆକ୍ରମଣାତ୍ମକ ପ୍ରକ୍ରିୟା ଅନୁଯାୟୀ ନିଜର କ୍ରୋଧକୁ ପରିପ୍ରକାଶ କରିବାରେ ଅଭ୍ୟସ୍ତ ହୋଇପଡ଼ନ୍ତି । ଆବଶ୍ୟକତା ବା ଅଭିଳାଷର ପରିପୂରଣ ନିମିତ୍ତ ଶିଶୁଠାରେ କ୍ରମାଗତଭାବେ ପରିଦୃଷ୍ଟ ଏ ପ୍ରକାର କ୍ରୋଧପୂର୍ଣ୍ଣ ଆଚରଣକୁ ଅହେତୁକ ବଦରାଗ (Temper trontrum) ରୂପେ ଅଭିହିତ କରାଯାଏ । ଶିଶୁର ଯେ କୌଣସି ଅଭାବ ଅସୁବିଧା ହେଲେ ବା ତା'ର ଗତିରୋଧ ହେଲେ କିମ୍ବା ଖାଦ୍ୟଗ୍ରହଣ ପ୍ରକ୍ରିୟାରେ କୌଣସି ଅସୁବିଧା ପରିଦୃଷ୍ଟ ହେଲେ ତା'ଠାରେ କ୍ରୋଧର ପରିପ୍ରକାଶ ହୋଇଥାଏ । ପରବର୍ତ୍ତୀ ସମୟରେ ଶିଶୁର ଯେ କୌଣସି କାର୍ଯ୍ୟ ବା ଆଗ୍ରହ ଅଭିଳାଷ ବାଧାପ୍ରାପ୍ତ ହେଲେ ସେପରି ମାନସିକ ଅବସ୍ଥା କ୍ରୋଧର ଉଦ୍ଦୀପକ ଭାବେ କାର୍ଯ୍ୟ କରିଥାଏ । ଶିଶୁର କ୍ରୋଧ ବିଭିନ୍ନ ପ୍ରକାର ପ୍ରତିକ୍ରିୟା ମାଧ୍ୟମରେ ପରିପ୍ରକାଶ ହୁଏ । ଯଥା :—ସେ ଗୋଇଠାମାରେ, ପାଟିକରେ, କ୍ରନ୍ଦନ କରେ ଇତ୍ୟାଦି ।

କ୍ରୋଧର ପରିମାଣ ଓ ପ୍ରକାଶିତ ହେବାର ମାଧ୍ୟମ ଶିଶୁର ବୟସ, ଶିକ୍ଷା ଓ ଅଭିଜ୍ଞତା ଉପରେ ନିର୍ଭରଶୀଳ । ଶୈଶବାବସ୍ଥାରେ କ୍ରୋଧ ଏକ ଆକ୍ରମଣାତ୍ମକ ପ୍ରତିକ୍ରିୟା ମାଧ୍ୟମରେ ଯେଉଁ ବ୍ୟକ୍ତି ବା ବସ୍ତୁ ମାନସିକ ଅବସ୍ଥା ବା ଆବେଗ ସୃଷ୍ଟି ପାଇଁ ଦାୟୀ ତା ପ୍ରତି ଉଦ୍ଦିଷ୍ଟ ଥାଏ । ମାତ୍ର ବୟସ୍କ ବ୍ୟକ୍ତି କ୍ରୋଧ ଦ୍ୱାରା ବଶ ହେଲେ ଗାଳିଗୁଲଜ କରିଥାନ୍ତି । ଅଶ୍ଳୀଳ ବାକ୍ୟ, ସମାଲୋଚନା ତଥା ଔଦ୍ଧତ୍ୟ ପ୍ରକାଶ କରିଥାନ୍ତି । ନିଜର ଆବଶ୍ୟକତା ବା ଅଭିଳାଷର ପରିପୂରଣ ନିମିତ୍ତ ପ୍ରତ୍ୟେକ ବ୍ୟକ୍ତି ଅହେତୁକ ବଦ୍‌ରାଗର ଆଶ୍ରୟ ନେଇଥାନ୍ତି । ଆବେଗକୁ ନିୟନ୍ତ୍ରଣ କରାନଗଲେ ଏପରି ଆଚରଣ ଅଭ୍ୟାସଗତ ହୋଇଯାଏ । ଶିକ୍ଷା ଓ ବୟସବୃଦ୍ଧି ଫଳରେ ଉକ୍ତ ଆବେଗ ବା ବଦରାଗର ପ୍ରକାଶଭଙ୍ଗୀ ପରିମାର୍ଜିତ ହୋଇଥାଏ । ଶିଶୁ କଥା କହିବା ପୂର୍ବରୁ ଯଦି ଏପରି ଆଚରଣ ଦେଖାଏ ତେବେ ସେ କି ଅଭାବ ଅନୁଭବ କରୁଛି ତାହା, ନିର୍ଣ୍ଣୟ କରିବା ପିତାମାତାଙ୍କ ପକ୍ଷେ ସମ୍ଭବ ହୋଇନଥାଏ । ଫଳତଃ ସେମାନେ ବିଭିନ୍ନ ସନ୍ଦେହ, ଅନିଶ୍ଚିତତା ମଧ୍ୟରେ ରହିବା ସଙ୍ଗେ ସଙ୍ଗେ କ୍ରୋଧକୁ ପ୍ରଶମନ କରିବା ନିମିତ୍ତ କୌଣସି ପନ୍ଥା ନିର୍ଦ୍ଧାରଣ କରି ପାରିନଥାନ୍ତି । ଫଳତଃ ଶିଶୁର ଏପରି ଆଚରଣ କ୍ରମଶଃ ବୃଦ୍ଧି ପାଇ ଭବିଷ୍ୟତରେ ନିରାକରଣ ହେବା ମଧ୍ୟ ସାଧ୍ୟାତୀତ ହୋଇପଡ଼େ । ଶିଶୁର ଭାଷାଜ୍ଞାନ ବୃଦ୍ଧି ଫଳରେ ସେ ତାର କ୍ରୋଧ କଥା ମାଧ୍ୟମରେ ପରିପ୍ରକାଶ କରିବାକୁ ସକ୍ଷମ ହୁଏ । ତେଣୁ ତାର ବ୍ୟବହାର କମ୍ ଆକ୍ରମଣାତ୍ମକ ହୁଏ । ମାତ୍ର ଶିଶୁର ଅବାଧ୍ୟତା ଏବଂ ଶାରୀରିକ ପ୍ରତିରୋଧ ସୂଚକ ବ୍ୟବହାର ଅବ୍ୟାହତ ଥାଏ । ଶ୍ରେଷ୍ଠ ଶିଶୁ ରାଗିଲେ ଚାଞ୍ଚଲ୍ୟପୂର୍ଣ୍ଣ

ବ୍ୟବହାର ଦେଖାଏ । ମାତ୍ର ବୟସ୍କ ବ୍ୟକ୍ତି କ୍ରୋଧାନ୍ୱିତ ହେଲେ ଅବଜ୍ଞାସୂଚକ ବ୍ୟବହାର ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ତା'ର ଭାଷା ମଧ୍ୟ ଅବଜ୍ଞାସୂଚକ ହୋଇଥାଏ । ମାତ୍ର ସେମାନଙ୍କର ଭାଷା ଅତ୍ୟଧିକ କଠୋର ହେଲେ ହେଁ ପରିମାର୍ଜିତ ହୋଇଥାଏ । ଏ ଅବସ୍ଥାରେ ସେମାନେ ବ୍ୟଙ୍ଗ ଓ ବିଦ୍ରୂପାତ୍ମକ ଭାଷା ବ୍ୟବହାର କରିଥାନ୍ତି । କେତେକ ସ୍ଥଳରେ ଅଧିକ ବୟସର ଛାତ୍ରଛାତ୍ରୀମାନେ ବିଦ୍ରୋହାତ୍ମକ ଆଚରଣ ପ୍ରଦର୍ଶନ ପୂର୍ବକ ନିଜର କ୍ରୋଧକୁ ପରିପ୍ରକାଶ କରିଥାଆନ୍ତି ।

**କ୍ରୋଧର ଆବଶ୍ୟକତା ଓ ତାର ନିୟନ୍ତ୍ରଣ** :—କ୍ରୋଧରୂପକ ଆବେଗ ଦ୍ୱାରା ଶିଶୁ ଅପ୍ରୀତିକର ପରିବେଶ ସୃଷ୍ଟି କଲେ ହେଁ ତା'ର କେତେକ ବ୍ୟାବହାରିକ ମୂଲ୍ୟଅଛି । କ୍ରୋଧଦ୍ୱାରା ଶିଶୁ ଆକ୍ରମଣାତ୍ମକ ଆଚରଣ ଦେଖାଉଥିବାରୁ ଭୟକୁ ଏଡ଼ିଦେବା-ପାଇଁ ଏହା ବ୍ୟବହୃତ ହୋଇଥାଏ । କ୍ରୋଧାନ୍ୱିତ ହେଲେ ବ୍ୟକ୍ତିର ଆଲସ୍ୟପରାୟଣ ଭାବ ଦୂରହୋଇଯାଏ । ମନରେ କ୍ରୋଧ ରହିଲେ ତା' ମନରୁ ଭୟଭାବ ସ୍ୱତଃ ଅପସରିଯାଏ ।

ଉଦ୍ଦୀପକ ଦ୍ୱାରା ସୃଷ୍ଟି କ୍ରୋଧ, ସେହି ଉଦ୍ଦୀପକର ବିନାଶ ଦ୍ୱାରାହିଁ ପରିବର୍ତ୍ତିତ ହୋଇଥାଏ । କ୍ରୋଧକୁ ବଶୀଭୂତ କରିବା ନିମିତ୍ତ ଉଦ୍ଦିଷ୍ଟ ଉଦ୍ଦୀପକକୁ ପରିହାରପୂର୍ବକ ଅନ୍ୟ ଉଦ୍ଦୀପକ ପ୍ରତି ମନୋନିବେଶ କରିବା ଏକାନ୍ତ ଆବଶ୍ୟକ । ତେଣୁ ଅଭିଭାବକ ଓ ପିତାମାତା ଶିଶୁର ଦୈନନ୍ଦିନ ଜୀବନରେ ଏହି ନୀତିଟିକୁ ପ୍ରୟୋଗ କରିବା ବାଞ୍ଛନୀୟ । କାରଣ କୁହାଯାଏ ଯେ "ରାଗିବାବେଳେ ବା କ୍ରୋଧାନ୍ୱିତ ହେବାବେଳେ ଦଶ (୧୦) ପର୍ଯ୍ୟନ୍ତ ଗଣିଲେ କ୍ରୋଧର ମାତ୍ରା ହ୍ରାସ ପାଇଥାଏ, ଅର୍ଥାତ୍ କ୍ରୋଧର କାରଣକୁ ଏଡ଼ାଇ ଅନ୍ୟ ଉଦ୍ଦୀପକ ପ୍ରତି ମନୋନିବେଶ କଲେ କ୍ରୋଧ ଜନ୍ମାଉଥିବା ଉଦ୍ଦୀପକ ହୋଇପାରି ନଥାଏ । ସ୍ଥଳବିଶେଷରେ କ୍ରୋଧ ଜନ୍ମେ । ସମୟ ସମୟରେ ଅହେତୁକ ତିରସ୍କାର ଓ ଅନାବଶ୍ୟକ ଆଦେଶ ଶିଶୁଠାରେ କ୍ରୋଧଭାବ ଜନ୍ମାଇଥାଏ । କେତେବେଳେ ଶିଶୁର ଅନୁରୋଧ ବା ଆବଶ୍ୟକତାକୁ ପ୍ରତ୍ୟାଖ୍ୟାନ କରିବା ଦ୍ୱାରା କ୍ରୋଧଭାବ ଉଦ୍ରେକ ହୋଇଥାଏ । ଏସବୁ ପରିସ୍ଥିତି ପ୍ରତି ସତର୍କ ଦୃଷ୍ଟିରଖିବା ଉଭୟ ପିତାମାତା ଓ ଶିକ୍ଷକଙ୍କର ପ୍ରଧାନ କର୍ତ୍ତବ୍ୟ । ଶିଶୁକୁ ସାମାଜିକ କରିବା ନିମିତ୍ତ ଆବଶ୍ୟକ ସ୍ଥଳେ ବ୍ୟବହାର ସମ୍ପର୍କରେ ସମାଲୋଚନା କରିବା ଆବଶ୍ୟକ ହୋଇଥାଏ । ତେବେ ଶିଶୁକୁ ଅନ୍ୟ ଆନନ୍ଦଦାୟକ କାର୍ଯ୍ୟରେ ନିଯୁକ୍ତ କରିବା ଓ ଆନନ୍ଦାତ୍ମକ ପ୍ରତିକ୍ରିୟା ସୃଷ୍ଟି କରିପାରୁଥିବା ଉଦ୍ଦୀପକ ବ୍ୟବହାର କରିବା ଏକାନ୍ତ ଆବଶ୍ୟକ । ଯେଉଁ କାରଣ ଦ୍ୱାରା ଯେଉଁ ପରିପ୍ରେକ୍ଷୀରେ କ୍ରୋଧର ଉଦ୍ରେକ ଘଟିଥାଏ, ସେହି କାରଣର ସମ୍ପୂର୍ଣ୍ଣ ଅବଧାରଣା ଦ୍ୱାରା ବ୍ୟକ୍ତିର କ୍ରୋଧ ପ୍ରଶମନ ହୋଇପାରିଥାଏ । କ୍ରୋଧର କାରଣକୁ ଉତ୍ତମ ରୂପେ ହୃଦୟଙ୍ଗମ କରି ତାହାକୁ ଦୂରୀଭୂତ କଲେ ବ୍ୟକ୍ତି ବା ଶିଶୁର କ୍ରୋଧ ଉପଶମ ହୋଇପାରି

ଥାଏ । ପୂର୍ବୋକ୍ତ ଫଳରେ କ୍ରୋଧର ପରିମାଣ ବୃଦ୍ଧି ପାଇଥାଏ । ମାତ୍ର ଉତ୍ସାହଜନକ ଓ ପ୍ରଶଂସାପୂର୍ଣ୍ଣ ଏବଂ ଆନନ୍ଦଦାୟକ ବ୍ୟବହାର ବାକ୍ୟାଳାପ ଦ୍ୱାରା ଏହା ଉପଶମ ହେବା ସମ୍ଭବ ହୋଇପାରିଥାଏ ।

ଏହାପରି ଭାବେ ବ୍ୟକ୍ତି ବା ଶିଶୁର କ୍ରୋଧକୁ ସମ୍ପୂର୍ଣ୍ଣ ରୂପେ ପ୍ରଶମିତ କରି ନହେଲେ ମଧ୍ୟ ତା'ର ମନ କିୟଦଂଶରେ ଶାନ୍ତ ହୋଇଥାଏ ।

**ଭୟ (Fear):**

ଶୈଶବାବସ୍ଥାରୁ ଶିଶୁ ମନରେ ଆଶ୍ରୟ ଶୂନ୍ୟତା, ନିରାପତ୍ତାର ଅଭାବ ଇତ୍ୟାଦି ଉଦ୍ଦୀପକ ଯୋଗୁଁ "ଭୟ" ନାମ୍ନୀ ଆବେଗଟି ସୃଷ୍ଟି ହୋଇଥାଏ । ଥରେ ଯଦି ଗୋଟିଏ ଶିଶୁ ଏକ ନିର୍ଦ୍ଦିଷ୍ଟ ପରିସ୍ଥିତି ଯୋଗୁଁ ଭୟଭୀତ ହୁଏ, ତେବେ ଶିଶୁ ପରବର୍ତ୍ତୀ ଯେକୌଣସି ଅବସ୍ଥା ପରିସ୍ଥିତିରେ ଭୟଭାବ ଦ୍ୱାରା ପ୍ରଭାବିତ ହୋଇଥାଏ । ବିଶିଷ୍ଟ ମନସ୍ତତ୍ତ୍ୱ-ବିଦ୍ ଜେ: ବି: ଓ୍ୱାଟସନ୍‌ଙ୍କ ପରୀକ୍ଷଣ ଓ ମତାନୁଯାୟୀ ଏହି ଆବେଗଟି ଅନ୍ଧକାର, ମୃର୍ଚ୍ଛା ଇତ୍ୟାଦି କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ଉଦ୍ଦୀପକ ଦ୍ୱାରା ଶିଶୁ ମନରେ ଉତ୍ପନ୍ନ ହୋଇଥାଏ । ଏଥି ନିମିତ୍ତ କୌଣସି ପୂର୍ବାର୍ଜିତ ଜ୍ଞାନ, ଅଭିଜ୍ଞତା ବା ଶିକ୍ଷାର ଆବଶ୍ୟକତା ନାହିଁ । ତେଣୁ ସ୍ଥୂଳତଃ କହିବାକୁ ଗଲେ ନିରାପତ୍ତାବୋଧର ଅଭାବ ହିଁ ଭୟର ମୌଳିକ କାରଣ ଏବଂ ଏହା ସମସ୍ତ ମନସ୍ତତ୍ତ୍ୱବିଦ୍‌ମାନଙ୍କ ଦ୍ୱାରା ମଧ୍ୟ ସ୍ୱୀକାର୍ଯ୍ୟ । ଶୈଶବାବସ୍ଥାରେ ଶିଶୁର ଭୟ ଏକାନ୍ତ ଭାବେ ବସ୍ତୁଗତ । ଶିଶୁ ମନରେ ବୟସ୍କ ଆତ୍ମୀୟସ୍ୱଜନମାନଙ୍କ ଦ୍ୱାରା ଅହେତୁକ ଭୟଭାବ ସୃଷ୍ଟି ହୋଇଥାଏ । ଶିଶୁକୁ ଭୟଭୀତ କରାଇ ବଶୀଭୂତ କରାଇବାକୁ ଗୁରୁଜନମାନେ ଚେଷ୍ଟା କରିଥାନ୍ତି । ମାତ୍ର ଶିଶୁ ଗ୍ୱର-ପାଞ୍ଚବର୍ଷ ବୟସର ହୋଇଗଲେ ତା'ଠାରେ କାଳ୍ପନିକ ଭୟର ସଞ୍ଚାର ହୋଇଥାଏ । ଏହି କାଳ୍ପନିକ ଭୟ ଶିଶୁର ମନରେ ବହୁଦିନ ପର୍ଯ୍ୟନ୍ତ ଆଚ୍ଛାଦିତ ଓ ପ୍ରତିକ୍ରିୟାଶୀଳ ହୋଇଥାଏ । ଏହା ମଧ୍ୟ ଶିଶୁର ଭବିଷ୍ୟତ ଜୀବନପାଇଁ କ୍ଷତିକାରକ ହୋଇଥାଏ । ଶିଶୁ ସ୍ୱତଃ ନିଜ ଇଚ୍ଛାନୁଯାୟୀ ଜୋର ଶବ୍ଦକଲେ ନିଜେ ଭୟଭୀତ ହୁଏ ନାହିଁ । ମାତ୍ର ଯଦି କୌଣସି ଅଜ୍ଞାତ ସୂତ୍ରରୁ ଜୋର୍ ଶବ୍ଦ ହୁଏ, ତେବେ ଶିଶୁମନରେ ଭୟଭାବ ଉଦ୍ରେକ ହୋଇଥାଏ । ଶିଶୁର ଭୟ ଉଦ୍ରେକ ହେବାର କାରଣ ସମ୍ପର୍କରେ ହୋଇଥିବା ଗବେଷଣାରୁ ଜଣାଯାଇଛି ଯେ, ଜୀବଜନ୍ତୁ, ଶ୍ରୁତିକଟୁ ଶବ୍ଦ ଓ ତା' ସହିତ ସମ୍ପର୍କିତ ବସ୍ତୁ, ଉଚ୍ଚସ୍ଥାନରୁ ପତନ ବା ପତନର ଆଶଙ୍କା, ଶାରୀରିକ ଯନ୍ତ୍ରଣା, କଷ୍ଟଦାୟକ ଯନ୍ତ୍ରଣାସହ ସମ୍ପର୍କିତ ବ୍ୟକ୍ତି, ଅପରିଚିତ ବ୍ୟକ୍ତି ବା ବସ୍ତୁ ଓ ଅପରିଚିତ ତଥା ଅଜ୍ଞାତ ପରିବେଶ ଇତ୍ୟାଦି ଶିଶୁର ଭୟ ଉଦ୍ରେକ ପାଇଁ ମୁଖ୍ୟତଃ ଦାୟୀ ।" ଅର୍ଥାତ୍ ଶିଶୁମାନଙ୍କର ଭୟ ଉପରୋକ୍ତ କାରଣଗୁଡ଼ିକ ସହିତ ସଶ୍ଳିଷ୍ଟ । କୌଣସି ଉଦ୍ଦୀପକ ବା ପରିସ୍ଥିତି ଯଦି ଶିଶୁଠାରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟିକରି ଭୟ ଉତ୍ପନ୍ନ କରାଇଥାଏ, ତେବେ ଏପରି ଭୟ

ଦୀର୍ଘସ୍ଥାୟୀ ହୋଇଥାଏ । ମାତ୍ର ଯେତେବେଳେ ତା'ର ଧାରଣା ଜନ୍ମେ ଯେ ଏ ପ୍ରକାର ପରିସ୍ଥିତି ବିପଦ ଶୂନ୍ୟ, ସେତେବେଳେ ସେ ନିର୍ଦ୍ଦିଷ୍ଟ ଉଦ୍ଦୀପକ ପ୍ରତି ଭୟ ଶୂନ୍ୟ ହୋଇଯାଏ । କଳ୍ପନାପ୍ରସୂତ ଭୟ ଉତ୍ପାଦନ ପରିସ୍ଥିତି, ଭୀତି ଉତ୍ପାଦକ ବାସ୍ତବ ପରିସ୍ଥିତି ଅପେକ୍ଷା ଅଧିକ କ୍ଷତିକାରକ । କାରଣ, ଶିଶୁ ବିଭିନ୍ନ ପ୍ରକାର ବିପଜ୍ଜନକ ପରିବେଶ ଓ ପରିସ୍ଥିତିର କଳ୍ପନାକରି ମନେ ଭୟ ଓ ଆଶଙ୍କାରେ ଜଡ଼ିତ ହୋଇଯାଏ । ପ୍ରାଥମିକ ସ୍ତରରେ ଅଧ୍ୟୟନ କରିବା ବେଳେ ଶିଶୁମନରେ ଏହିପରି କାଳ୍ପନିକ କାରଣଜନିତ ଭୟଭାବ ସୃଷ୍ଟି ହୋଇଥାଏ ।

**ଭୀତିଉତ୍ପାଦକ ପରିସ୍ଥିତି :**

ବିଭିନ୍ନ ପ୍ରକାର ପରିସ୍ଥିତି ଓ ପରିବେଶ ଦ୍ୱାରା ଶିଶୁଠାରେ ଭୟଭାବ ସଞ୍ଚାର ହୋଇଥାଏ । ସେଗୁଡ଼ିକ ସମ୍ପର୍କରେ ନିମ୍ନରେ ଆଲୋଚନା କରାଗଲା । :—

(କ) ଶିଶୁ ବିପଜ୍ଜନକ ଦୁର୍ଘଟଣା ସ୍ମୃତିଦ୍ୱାରା ଭୟଭୀତ ହୋଇଥାଏ । ଦୁର୍ଘଟଣା ସହିତ ସଂପୃକ୍ତ ବ୍ୟକ୍ତି, ବସ୍ତୁ ବା ପରିବେଶ ମଧ୍ୟ ଅନେକ ସମୟରେ ଶିଶୁର ଭୟ ଜନ୍ମାଇବାର କାରଣ ହୋଇଥାନ୍ତି ।

(ଖ) ଅନେକ ସମୟରେ ଶିଶୁ ଅକରଣୀୟ, ଅବାଞ୍ଛିତ ଓ ଅସାମାଜିକ କର୍ମ କରିପକାଇଥାଏ, ଯାହାଫଳରେ ସେ ଏସବୁ ଦୁଷ୍କର୍ମ ପାଇଁ ଭୟରେ ଆତଙ୍କିତ ହୋଇରହେ । ପ୍ରଥମତଃ ପିତାମାତା କିମ୍ବା ଶିକ୍ଷକଙ୍କ ଦୃଷ୍ଟି-ଗୋଚରକୁ ଆସିବାର ଭୟ ଓ ଦ୍ୱିତୀୟତଃ ଏସବୁ ଚିନ୍ତାକରିବା ଫଳରେ ନିରାପତ୍ତାବୋଧର ଅଭାବଯୋଗୁଁ ରାତିର ଅନ୍ଧକାରରେ ଭୟଭାବଦ୍ୱାରା ଶିଶୁ ପ୍ରଭାବିତ ହୋଇଥାଏ ।

(ଗ) ପିତାମାତା, ଶିକ୍ଷକ ଓ ଅନ୍ୟାନ୍ୟ ଗୁରୁଜନମାନେ ମଧ୍ୟ ଶିଶୁର ଆଚରଣଗତ ଉଚ୍ଛୃଙ୍ଖଳତାକୁ ଶୃଙ୍ଖଳିତ କରିବାକୁ ଯାଇ ଶିଶୁକୁ ଭୟଭୀତ କରାଇଥାନ୍ତି ।

(ଘ) ଅନେକ ସମୟରେ ଅନ୍ୟ ବ୍ୟକ୍ତିମାନଙ୍କଠାରୁ ଲୋମହର୍ଷଣକାରୀ ଭୀତିପୂର୍ଣ୍ଣ କାହାଣୀ ଶୁଣି ଶିଶୁ ସ୍ୱତଃ ଭୟଭୀତ ହୋଇପଡ଼ିଥାଏ ।

ଏହିପରି ବିଭିନ୍ନ ପରିବେଶ ଓ ପରିସ୍ଥିତି ଯୋଗୁଁ ଶିଶୁମନରେ ଭୟଭାବ ସୃଷ୍ଟି ହୋଇଥାଏ । ଏହା ଶିଶୁର ସ୍ୱାଭାବିକ ବିକାଶ କ୍ଷେତ୍ରରେ ଘୋର ଅନ୍ତରାୟ ହୋଇଥାଏ । ତେବେ ମାନସିକ ପରିପକ୍ୱତା ଫଳରେ ଅଧିକାଂଶ ଭୟକୁ ଦମନ କରିବା ପାଇଁ ଶିଶୁ ଚେଷ୍ଟିତ ହୋଇଥାଏ । କିନ୍ତୁ ଏହାଦ୍ୱାରା ଶିଶୁର ଆବେଗଗୁଡ଼ିକ ସମ୍ପୂର୍ଣ୍ଣଭାବେ ବିକାଶପ୍ରାପ୍ତ ହୋଇପାରି ନ ଥାଏ ।

**ଭୟର ଆବଶ୍ୟକତା :—**

ଭୟ ଯୋଗୁଁ ଶିଶୁ ନାନା ଦୁଃସାହସିକ କର୍ମକରିବାକୁ ନିବୃତ୍ତ ହେବା ସଙ୍ଗେ ସଙ୍ଗେ ଭୀତ ଉତ୍ପାଦକ ବସ୍ତୁଠାରୁ ବା ବ୍ୟକ୍ତିଠାରୁ ଦୂରରେ ରହିବାକୁ ଚେଷ୍ଟିତ ହୋଇଥାନ୍ତି । ଏହାଦ୍ୱାରା ଅନେକ ଶିଶୁ ସ୍ୱ-ଶକ୍ତିକ୍ଷେତ୍ରରେ ଅଧିକ ନୈପୁଣ୍ୟ ଲାଭ କରିବାରେ ପ୍ରୟାସୀ ହୋଇଥାନ୍ତି । ଉତ୍ତମ କାର୍ଯ୍ୟକରି ପ୍ରଶଂସାର୍ହ ହେବାର ଅଭିଳାଷ ପୋଷଣମଧ୍ୟ କରିଥାନ୍ତି । କାରଣ, ନିଜର ସମ୍ମାନ ବା ମର୍ଯ୍ୟାଦା ନଷ୍ଟହେବା ବା ଅନ୍ୟମାନଙ୍କ ନିନ୍ଦାର ଶରବ୍ୟ ହେବା ଭୟଯୋଗୁଁ ସେମାନେ ଭଲକାର୍ଯ୍ୟ କରିବା ଦିଗରେ ବ୍ରତୀ ହୋଇଥାନ୍ତି । ଭୟଯୋଗୁଁ ବ୍ୟକ୍ତିର ବ୍ୟବହାର ତଥା ଆଚରଣ ସଂଯତ ତଥା ନିୟନ୍ତ୍ରିତ ହୋଇଥାଏ । ବ୍ୟକ୍ତି କୌଣସି ଦୁଷ୍କର୍ମ ଯଥା—କ୍ରୋଧ, ସ୍ନେହ, ଈର୍ଷା, ଘୃଣା ଇତ୍ୟାଦି ଦ୍ୱାରା ପ୍ରବର୍ତ୍ତିତ ହୋଇ ବିଚାର ଶୂନ୍ୟ ଭାବେ କଲାବେଳେ ଏହାର ଅନିଷ୍ଟକର ପରିଣାମ ସମ୍ପର୍କରେ ଭୟ ଦ୍ୱାରା ହିଁ ସଚେତନ ହୋଇ ଏଥିରୁ ନିବୃତ୍ତ ହୋଇଥାଏ । ଏଣୁ "ଭୟ" ଆବେଗଟି ସୁପରିଚାଳିତ ହେଲେ ଶିଶୁ ନିୟନ୍ତ୍ରିତ ମାର୍ଗରେ ଓ ସଂଯତଭାବେ ଜୀବନଯାପନ କରିବାକୁ ସକ୍ଷମ ହୋଇଥାଏ । ଭୟଯୋଗୁଁ ଶିଶୁ କୁ-ମାର୍ଗରେ ପରିଚାଳିତ ନହୋଇ ସୁମାର୍ଗରେ ପରିଚାଳିତ ହୋଇଥାଏ । ଏହାଦ୍ୱାରା ଶିଶୁ ବିଶିଷ୍ଟ ସାମାଜିକ ଗୁଣର ଅଧିକାରୀ ହେବା ସଙ୍ଗେ ସଙ୍ଗେ ଉତ୍ତମ, ବିଶୁଦ୍ଧ ଓ ନୀତିମୟ ଜୀବନ ଯାପନ କରିପାରିଥାଏ ।

**ଭୟର ନିୟନ୍ତ୍ରଣ :—**

ଭୟ ଶିଶୁର ବ୍ୟକ୍ତିତ୍ୱ ବିକାଶ କ୍ଷେତ୍ରରେ ଅନ୍ତରାୟ ହୋଇଥାଏ । ତେଣୁ ଶିଶୁର ଭୟ ଉଦ୍ରେକ ହେବାର କାରଣ ନିର୍ଦ୍ଧାରଣ ପୂର୍ବକ ତାକୁ ଏତାଦୃଶ ଅଭିଜ୍ଞତାରୁ ଉଦ୍ଧାର କରିବା ବାଞ୍ଛନୀୟ । ତେବେ ଶିଶୁ ମନସ୍ଥ ସମସ୍ତ ଭୟର ସମ୍ପୂର୍ଣ୍ଣ ନିରାକରଣ ସମ୍ଭବ ନୁହେଁ କି ବାଞ୍ଛନୀୟ ମଧ୍ୟ ନୁହେଁ । ବିକାଶୋନ୍ମୁଖୀ ଶିଶୁମନରେ ଅନାବଶ୍ୟକ ଓ ଅହେତୁକ ଭୟ ଯେପରି ସଞ୍ଚାର ନହୁଏ ଓ ଉତ୍ପନ୍ନ ନହୁଏ ସେଥିପାଇଁ ପିତାମାତା ଓ ଶିକ୍ଷକ ଉପଯୁକ୍ତ ସତର୍କ ଦୃଷ୍ଟି ଦେବା ଏକାନ୍ତ ଆବଶ୍ୟକ । ଭୀତ ଉତ୍ପାଦକ ପରିସ୍ଥିତିର ସମ୍ମୁଖୀନ ହୋଇ ସେପରି ପରିସ୍ଥିତିର ପ୍ରତିରୋଧ କରିବା ଶିଶୁ ପକ୍ଷରେ ଏକାନ୍ତ ଆବଶ୍ୟକ । ଫଳତଃ ଶିଶୁ ଅଧିକ ସତର୍କ ହୋଇପାରିଥାଏ । ଏତଦ୍ ବ୍ୟତୀତ ଶିଶୁର ଆଇନ୍ ଓ ଶୃଙ୍ଖଳାଜ୍ଞାନ ବୃଦ୍ଧିପ୍ରାପ୍ତ ହେବା ସଙ୍ଗେ ସଙ୍ଗେ ଆଇନ୍ ଶୃଙ୍ଖଳା ପ୍ରତି ତା'ର ଶ୍ରଦ୍ଧା ବା ସମ୍ମାନ ବୃଦ୍ଧିପାଇବ । ଉଦାହରଣ ସ୍ୱରୂପ—ରାସ୍ତାରେ ସତର୍କତା ଅବଲମ୍ବନ କରି ନଗଲେ "ଗାଡ଼ି ସହିତ ଧକ୍କା ହେବ" ଏ ଭୟ ଶିଶୁଠାରେ ଥିବା ଆବଶ୍ୟକ । କାରଣ, ଏହା ନଥିଲେ ସେ ସତର୍କ ହେବ ନାହିଁ । ଏହାଛଡା ପିତାମାତା ବା ଶିକ୍ଷକଙ୍କ-

ଠାରୁ ଦଣ୍ଡ ପାଇବାର ଭୟ ନଥିଲେ ସେ ନିଜ ଇଚ୍ଛାନୁଯାୟୀ କାର୍ଯ୍ୟ କରିବ । ତେବେ ଶିଶୁ ମନରେ ଅଯଥା ଭୟର ସଞ୍ଚାର କରିବା ଆଦୌ ବାଞ୍ଛନୀୟ ନୁହେଁ । ଶିଶୁକୁ ଅତ୍ୟଧିକ ଶାସନ କରିବା, ଶିଶୁ ପ୍ରତି ଉଦାସୀନ ରହିବା ଓ ନିର୍ମମ ବ୍ୟବହାର କରିବା, ସ୍ୱାଭାବିକ ଗତିକୁ ତା'ର ବାଧାଦେବା ଇତ୍ୟାଦି ଶିଶୁର ବୃଦ୍ଧି କ୍ଷେତ୍ରରେ ଆଦୌ ବାଞ୍ଛନୀୟ ନୁହେଁ । ଉଦ୍ଦୀପକ ଗୁଡ଼ିକର ପୂନଃସ୍ମରଣତା ଓ ପୂନର୍ବାଚନ ଦ୍ୱାରା ଶିଶୁର ମନରେ ସୃଷ୍ଟି ହେଉଥିବା ଅବାଞ୍ଛିତ ଭୟ ଦୂର ହୋଇପାରୁଥାଏ । ତେଣୁ ଶିକ୍ଷକ ଓ ଅଭିଭାବକମାନେ ଉଭୟ ବିଦ୍ୟାଳୟ ଓ ଗୃହରେ ସହୃଦୟତା ସହ ଶିଶୁମାନଙ୍କର ଯତ୍ନନେବା ଏକାନ୍ତ ଆବଶ୍ୟକ ।

**ସ୍ନେହ (Love) :—**

ଶିଶୁର ଉପଯୁକ୍ତ ଆବେଗିକ ବିକାଶ ନିମିତ୍ତ ପିତାମାତା ଓ ଆତ୍ମୀୟସ୍ୱଜନ ମାନଙ୍କ ସ୍ନେହ, ଶ୍ରଦ୍ଧା ଇତ୍ୟାଦି ଏକାନ୍ତ ଆବଶ୍ୟକ । ଏତଦ୍‌ବ୍ୟତୀତ ଶିଶୁର ଅନ୍ୟାନ୍ୟ ବିକାଶପାଇଁ ମଧ୍ୟ ସମସ୍ତଙ୍କର ବାତ୍ସଲ୍ୟପୂର୍ଣ୍ଣ ବ୍ୟବହାର ତାପାଇଁ ଅପରିହାର୍ଯ୍ୟ ହୋଇ-ପଡ଼ୁଥାଏ । ଏହାଦ୍ୱାରା ଶିଶୁ ମନ ପ୍ରଫୁଲ୍ଲ ରହେ ଓ ତା ମନରେ ନିରାପତ୍ତାବୋଧ ଜାଗ୍ରତ ହୋଇଥାଏ । ଅନ୍ୟମାନଙ୍କ ଅପେକ୍ଷା ମାନବ ଶିଶୁ ଏକାନ୍ତ ଅସହାୟ । ତେଣୁ ଗୁରୁଜନ ଓ ଆତ୍ମୀୟସ୍ୱଜନଙ୍କ ଆଦର ଯତ୍ନ ବିନା ଉନ୍ନତି କରିବା ତା'ପକ୍ଷରେ ଅସମ୍ଭବ ହୋଇଥାଏ । ଶୈଶବାବସ୍ଥାରୁ ବୟଃପ୍ରାପ୍ତି ପର୍ଯ୍ୟନ୍ତ ଉକ୍ତ ସ୍ନେହ ଶ୍ରଦ୍ଧାହିଁ ଶିଶୁଠାରେ ନିରାପତ୍ତାବୋଧ ଜାଗ୍ରତ କରାଇଥାଏ, ଏହିଭଳିଦ୍ୱାରା ଶିଶୁ ମନରେ ସ୍ୱତଃ ଆନନ୍ଦଭାବ ଉଦ୍ରେକ ହୁଏ । ପାରିବାରିକ ଶିକ୍ଷାର ପ୍ରଭାବ ଫଳରେ ସେ ପରିବାରର ଅଭାବ ଅସୁବିଧାକୁ ହୃଦୟଙ୍ଗମ କରିବାପାଇଁ ଚେଷ୍ଟା କରେ । ଉପଯୁକ୍ତ ଶିକ୍ଷା, ପ୍ରେରଣା ଓ ଉତ୍ସାହ ଦ୍ୱାରା ଶିଶୁ ମନର କୋମଳ ପ୍ରବୃତ୍ତି ଗୃହର ସୀମିତ ପରିସରକୁ ଅତିକ୍ରମ କରି ବୃହତ୍ତର ସମାଜରେ ପରିବ୍ୟାପ୍ତ ହୁଏ ଓ ଶିଶୁର ହୃଦୟ ମଧ୍ୟ ଏହାଦ୍ୱାରା ପ୍ରସାରିତ ହୋଇଥାଏ ।

"ସ୍ନେହ" ଆବେଗଟି ଶିଶୁମାନାଙ୍କଠାରେ ପ୍ରବଳ ହୋଇଥିବାରୁ ପିତମାତା ଏ ବିଷୟରେ ଦୃଷ୍ଟିଦେବା ନିହାତି ଆବଶ୍ୟକ । କାରଣ ସ୍ଥଳ ବିଶେଷରେ ଦେଖାଯାଏ ଯେ, ପିତାମାତାଙ୍କ ସ୍ନେହ, ମମତାରେ ଯଦି ସାମ୍ୟ ପରିଦୃଷ୍ଟ ହୁଏ ନାହିଁ ତେବେ ଶିଶୁମାନଙ୍କ ଠାରେ ସ୍ୱତଃ "ଈର୍ଷା" ନାମକ ଆବେଗଟି ଦେଖାଯାଇଥାଏ । ପିତାମାତାଙ୍କର ସ୍ନେହ ଯଦି ଭାଇଭଉଣୀଙ୍କ ମଧ୍ୟରେ କମ୍ ବେଶି ହୋଇଥାଏ ତେବେ କମ୍ ସ୍ନେହ ଲାଭ କରୁଛି ବୋଲି ଅନୁଭବ କରୁଥିବା ଶିଶୁ ବେଶି ସ୍ନେହ ଶ୍ରଦ୍ଧା ପାଉଥିବା ଶିଶୁ ପ୍ରତି ଈର୍ଷାନ୍ୱିତ ହୋଇପଡ଼େ । ତେଣୁ ପୁତ୍ର, କନ୍ୟା ପ୍ରତ୍ୟେକ ସନ୍ତାନ ସନ୍ତତିଙ୍କ ପ୍ରତି ସ୍ନେହ, ଶ୍ରଦ୍ଧା ଆଚରଣ ଓ ବ୍ୟବହାରରେ ନିରପେକ୍ଷ ରହିବା ପିତାମାତାଙ୍କର

ପ୍ରଧାନ କର୍ତ୍ତବ୍ୟ । ପିତାମାତା ସାମ୍ୟନୀତି ପ୍ରଦର୍ଶନ ପୂର୍ବକ ପ୍ରତ୍ୟେକ ସନ୍ତାନଙ୍କୁ ସମାନ ବ୍ୟବହାର ଓ ସ୍ନେହ ପ୍ରଦାନ କଲେ ଅଯଥାରେ ଏହି ଈର୍ଷା ରୂପକ ଆବେଗଟି ଶିଶୁଠାରେ ସଞ୍ଚାର ହେବ ନାହିଁ । ଶିକ୍ଷକ ମଧ୍ୟ ବିଦ୍ୟାଳୟ ପରିବେଷ୍ଟନୀରେ ଉକ୍ତ ସ୍ନେହ ରୂପକ ଆବେଗର ବିକାଶ ନିମନ୍ତେ ଉପଯୁକ୍ତ ସତର୍କତା ଅବଲମ୍ବନ କରିବା ବିଧେୟ ।

ଅନେକ ସ୍ଥଳରେ ଦେଖାଯାଏ ଯେ, କୌଣସି କାରଣରୁ ପିତାମାତା ଶିଶୁପ୍ରତି ଅତ୍ୟନ୍ତ ସ୍ନେହପ୍ରବଣ ହୋଇପଡ଼ନ୍ତି । ଏପରି ସ୍ନେହ ଶିଶୁପ୍ରତି କ୍ଷତିକାରକ ହୋଇଥାଏ । କାରଣ ଅଧିକ ସ୍ନେହ ଶ୍ରଦ୍ଧା ହେତୁ ପିତାମାତା ଶିଶୁକୁ ଆୟତ୍ତାଧୀନ କରି ରଖିବା ନିମନ୍ତେ କଠୋର ନୀତି ଅବଲମ୍ବନ କରି ନଥାନ୍ତି । ଫଳତଃ ଶିଶୁ ସ୍ୱେଚ୍ଛାଚାରୀ ହୋଇପଡ଼େ । ସେମାନଙ୍କ ବ୍ୟବହାରରେ ଉଚ୍ଛୃଙ୍ଖଳତା ଓ ଅସଂଯମତା ପରିଲକ୍ଷିତ ହୋଇଥାଏ । ଏଭଳି ଶିଶୁ ପ୍ରାୟ ପରନିର୍ଭରଶୀଳ ହୋଇଥାନ୍ତି । ଆତ୍ମନିର୍ଭରଶୀଳତାହିଁ ଶିକ୍ଷାର ଏକ ପ୍ରଧାନ ଲକ୍ଷ୍ୟ । ତେଣୁ ଶିକ୍ଷାର ଲକ୍ଷ୍ୟ ପୂର୍ତ୍ତି ପଥରେ ଅନ୍ତରାୟ ସୃଷ୍ଟି ହେବା ସଙ୍ଗେ ସଙ୍ଗେ ଶିଶୁର ସାମାଜିକତା ତଥା ସାମୂହିକ ବିକାଶ ବାଧାପ୍ରାପ୍ତ ହୁଏ । ତେଣୁ ପିତାମାତା, ଆତ୍ମୀୟସ୍ୱଜନ ପରିବାରରେ ଓ ବିଦ୍ୟାଳୟରେ ଶିକ୍ଷକ ଓ ଶିକ୍ଷୟିତ୍ରୀମାନେ ଶିଶୁକୁ ସ୍ନେହ କରିବା ଆବଶ୍ୟକ । ତେବେ ଏହି ସ୍ନେହ ମନୋଭାବ ନିରପେକ୍ଷ ହେବା ବିଧେୟ । ପ୍ରକାଶ୍ୟ ଭାବେ ଅନ୍ୟ ଶିଶୁକୁ ସ୍ନେହ କରିବା ଫଳରେ ଅନ୍ୟ ଶିଶୁମାନଙ୍କ ମନରେ ଈର୍ଷାଭାବ ଜାଗ୍ରତ କରାଇଥାଏ । ତା'ଛଡ଼ା ଅଧିକ ସ୍ନେହ ଶିଶୁପ୍ରତି ଯେ କ୍ଷତିକାରକ ହେବ ତାହା ସମସ୍ତେ ଅନୁଭବ କରି କାର୍ଯ୍ୟକାରୀ କରିବା ଆବଶ୍ୟକ । ଶିଶୁର ଅନାବଶ୍ୟକ ଓ ଅବାଞ୍ଛିତ ଆଚରଣ ପ୍ରତି ଶିକ୍ଷକ ଓ ପିତାମାତା ଯତ୍ନବାନ୍ ହେବା ସଙ୍ଗେ ସଙ୍ଗେ ଅନ୍ତରର ସ୍ନେହ ଶ୍ରଦ୍ଧା ଭାବକୁ ପ୍ରଶ୍ରୟ ନଦେଇ ଆବଶ୍ୟକ ଦଣ୍ଡଦେବା ବିଧେୟ ।

**ସହାନୁଭୂତି :**

ସହାନୁଭୂତି ଏକ ଅନ୍ତର୍ନିହିତ ଭାବ ଯାହାକୁ କେବଳ ଅଭିଜ୍ଞତାରୁ ଶିକ୍ଷା କରାଯାଇଥାଏ । ଅନ୍ୟ ବ୍ୟକ୍ତିର ଦୁଃଖକୁ ଉପଲବ୍ଧି କରି ନିଜସ୍ୱ ମନୋଭାବକୁ ସହାନୁଭୂତି ମାଧ୍ୟମରେ ପରିପ୍ରକାଶ କରାଯାଇଥାଏ । କାରଣ, ପ୍ରକୃତ ସହାନୁଭୂତି ହୃଦୟରେ ସଞ୍ଚାର ହେବା ଆବଶ୍ୟକ । ଏତଦ୍‌ବ୍ୟତୀତ ସହାନୁଭୂତି ପ୍ରଦର୍ଶନ ଅସମ୍ଭବ । ଅନ୍ୟର ସହାନୁଭୂତି ଅର୍ଜନ କରିବା କିମ୍ବା ଅନ୍ୟକୁ ସହାନୁଭୂତି ଦେଖାଇବା ପ୍ରାପ୍ତ ବୟସ୍କ ଶିଶୁ ପକ୍ଷରେ କଷ୍ଟକର ହୁଏ । ମାତ୍ର ଟିକେ ବେଶି ବୟସର ଶିଶୁ ଅନ୍ୟର ଦୁଃଖରେ ଦୁଃଖ ଅନୁଭବ କରିଥାନ୍ତି ଓ ସହାନୁଭୂତି ମଧ୍ୟ ଦେଖାଇଥାନ୍ତି । ମାତ୍ର ସେମାନେ ସେମାନଙ୍କ ଅନୁଭୂତିକୁ ଭାଷାରେ ପ୍ରକାଶ କରିବାକୁ ଅସମର୍ଥ ହୋଇଥାନ୍ତି । ଭାଷାରେ

ପ୍ରକାଶ କରିବାହିଁ ଆନ୍ତରିକ ଅନୁଭୂତିର ପରିପ୍ରକାଶ ନିର୍ଭର କରିଥାଏ । ଏହା ଲିଖିତ ଅଭିବ୍ୟକ୍ତି ଅପେକ୍ଷା ଗୁରୁତ୍ୱପୂର୍ଣ୍ଣ । ମାତ୍ର ବ୍ୟକ୍ତିର ଆନ୍ତରିକ ଅନୁଭୂତି ଉପରେ ପର୍ଯ୍ୟବସିତ ସହାନୁଭୂତିଶୀଳତା ଓ ବ୍ୟବହାର ଲିଖିତ ଓ ବାଚିକ ଉଭୟ ଅଭିବ୍ୟକ୍ତି ଅପେକ୍ଷା ଗୁରୁତ୍ୱପୂର୍ଣ୍ଣ । କେତେକ ବ୍ୟକ୍ତି ସାମାଜିକ ପ୍ରଥା ଯୋଗୁଁ ଓ ଅନ୍ୟର ସ୍ନେହ ପାଇବା ନିମିତ୍ତ ସହାନୁଭୂତିଶୀଳ ହୋଇଥାନ୍ତି । କିନ୍ତୁ ଏହା ଅନ୍ତର୍ନିହିତ ହୋଇନଥିବାରୁ ଏଥିରେ ଆନ୍ତରିକତା ନ ଥାଏ । ତେବେ ଯେ ଯାହା ହେଉ ସହାନୁଭୂତି ଏକ ସାମାଜିକ ଦକ୍ଷତା । ଏହି ଦକ୍ଷତା ଯେପରି ଶିଶୁ ଶୈଶବାବସ୍ଥାରୁ ଆୟତ୍ତ କରେ, ସେଥିପାଇଁ ଉପଯୁକ୍ତ ଶିକ୍ଷା ବ୍ୟବସ୍ଥା ଗ୍ରହଣ କରାଯିବା ବିଧେୟ । ସହାନୁଭୂତି ଏକ ଆବଶ୍ୟକୀୟ ସାମାଜିକ ମନୋବୃତ୍ତି ଓ ଏହା ବିନା ବ୍ୟକ୍ତି ଆତ୍ମକେନ୍ଦ୍ରିକ ହୋଇପଡ଼େ । ବିଦ୍ୟାଳୟ ପରିବେଷ୍ଟନୀରେ ଶିକ୍ଷକ ଏହି ଆବେଗର ବିକାଶ ନିମିତ୍ତ ଯତ୍ନଶୀଳ ହେବା ବିଧେୟ । ଛାତ୍ରଛାତ୍ରୀମାନେ କିପରି ସମବେଦନଶୀଳ ଓ ସହାନୁଭୂତିଶୀଳ ହେବେ, ତଥା ସେମାନଙ୍କ ବ୍ୟବହାର କିଛି ସାମାଜିକ ଅଭିରୁଚି ସମ୍ପନ୍ନ ହେବ ସେଥିପାଇଁ ଉପଯୁକ୍ତ ବାତାବରଣ ସୃଷ୍ଟି କରିବା ଶିକ୍ଷକଙ୍କର କର୍ତ୍ତବ୍ୟ ହେବା ବାଞ୍ଛନୀୟ । ଶିକ୍ଷକମାନେ ଛାତ୍ର ଛାତ୍ରୀମାନଙ୍କ ସୁଖ ଦୁଃଖରେ ସମଭାଗୀହୋଇ ସହାନୁଭୂତିଶୀଳ ହେଲେ ଛାତ୍ର ଛାତ୍ରୀମାନେ ସ୍ୱତଃ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇପାରିବେ । ତେଣୁ ଏହି ଆବେଗର ବିକାଶ ନିମିତ୍ତ ଶିକ୍ଷକ ଓ ପରିବାରବର୍ଗ ଯତ୍ନଶୀଳ ହେବା ଆବଶ୍ୟକ ।

## ଉଦ୍‌ବେଗ

ଉଦ୍‌ବେଗ ଏକ ମାନସିକ ଅସ୍ୱସ୍ତିଭାବ । ଅନାଗତ ତଥା ସମ୍ଭାବ୍ୟ ଭୟ ଯୋଗୁଁ ମନରେ ହେଉଥିବା ପ୍ରତିକ୍ରିୟା ସ୍ୱରୂପ ବ୍ୟକ୍ତି ବା ଶିଶୁଠାରେ ଉଦ୍‌ବେଗ ଜାତ ହୋଇଥାଏ । କେତେକ ମନସ୍ତତ୍ତ୍ୱବିତ୍‌ମାନଙ୍କ ମତରେ ଅହେତୁକ ଭୟ ହିଁ ଉଦ୍‌ବେଗ ପଦବାଚ୍ୟ । ବିପଦର ବାସ୍ତବ ସମ୍ଭାବନା ନଥିଲେ ମଧ୍ୟ ମନ ମଧ୍ୟରେ ଜାତ ହେଉଥିବା ଭୟର ପ୍ରତିକ୍ରିୟା ଶିଶୁଠାରେ ଉଦ୍‌ବେଗ ଜନ୍ମାଇଥାଏ । ବ୍ୟକ୍ତି ମନରେ କେଉଁ ଅବସ୍ଥାରେ ଉଦ୍‌ବେଗର ସଞ୍ଚାର ହୁଏ ସେ ସମ୍ପର୍କରେ ମନସ୍ତତ୍ତ୍ୱବିତ୍‌ମାନଙ୍କ ମଧ୍ୟରେ ମତଦ୍ୱୈଧ ପରିଦୃଷ୍ଟ ହୁଏ । କେତେକଙ୍କ ମତରେ ଶୈଶବାବସ୍ଥାରୁ ମା'ର ଅସୁସ୍ଥତା ଦୁଃଖ ଇତ୍ୟାଦି ଯୋଗୁଁ ଶିଶୁଠାରେ ଉଦ୍‌ବେଗ ଦେଖାଯାଏ । ଅନ୍ୟ କେତେକଙ୍କ ମତରେ ଶିଶୁ ମନରେ ଆତ୍ମସମ୍ମାନ ବା ମର୍ଯ୍ୟାଦାର ବିକାଶ ପରେ ହିଁ ଶିଶୁଠାରେ ଉଦ୍‌ବେଗ ଦେଖାଯାଇଥାଏ । କାରଣ, ଉଦ୍‌ବେଗ ଆଶଙ୍କା ଜନିତ । ଆବଶ୍ୟକ ହେଉଥିବା ସ୍ଥଳେ ଓ ଆତ୍ମସମ୍ମାନ କ୍ଷେତ୍ରରେ କୌଣସି ଅସୁବିଧା ବା ସମସ୍ୟା ଜନ୍ମିଲେ ଶିଶୁଠାରେ ଉଦ୍‌ବେଗର ଆବିର୍ଭାବ ଘଟିଥାଏ ।

ଅନେକ ସମୟରେ ଗୁରୁଜନ ଓ ପ୍ରାପ୍ତ ବୟସ୍କମାନେ ସାମାଜିକ ରୀତି ନିୟମ, ଆଦର୍ଶ, ପରମ୍ପରା ଇତ୍ୟାଦିର ବୋଝ ବାଳକ ବାଳିକାମାନଙ୍କ ଉପରେ ଲଦି ଦିଅନ୍ତି । ଏଗୁଡ଼ିକ ପାଳନ କରିବାର ସମ୍ଭାବ୍ୟତାରେ ଶିଶୁ ଆଶଙ୍କା ଉଜଡ଼ିତ ହୋଇପଡ଼େ । ଏତଦ୍ ବ୍ୟତୀତ କେତେକ କ୍ଷେତ୍ରରେ ଶିଶୁ ସ୍ୱ ଅଭିଳାଷ ପୂରଣ କରି ନପାରି ବ୍ୟର୍ଥତା ମଧ୍ୟରେ ରହିଥାନ୍ତି । ଏହି ବ୍ୟର୍ଥତା-ବୋଧ ଶିଶୁ ମନରେ ବିଭିନ୍ନ ପ୍ରକାର ଉଦ୍‌ବେଗ ସୃଷ୍ଟି କରିଥାଏ । ଅନେକ ସ୍ଥଳରେ ଦେଖାଯାଏ ଯେ ପିତା ମାତାଙ୍କର ଆକସ୍ମିକ ମୃତ୍ୟୁ, ରୋଗଗ୍ରସ୍ତତା କିମ୍ବା ଅନ୍ୟାନ୍ୟ ପ୍ରାକୃତିକ ବିପର୍ଯ୍ୟୟ ଯୋଗୁଁ ଶିଶୁ ନିରାପତ୍ତା ବୋଧର ଅଭାବ ଯୋଗୁଁ ଉଦ୍‌ବେଗ ପ୍ରକାଶ କରିଥାଏ ।

ତେବେ କେତେକ କ୍ଷେତ୍ରରେ ଯଥା—ପରୀକ୍ଷା, ତର୍କ ପ୍ରତିଯୋଗିତା, କ୍ରୀଡ଼ାପ୍ରତିଯୋଗିତା ଇତ୍ୟାଦିର ଅବ୍ୟବହିତ ମୁହୂର୍ତ୍ତ ପର୍ଯ୍ୟନ୍ତ ମନରେ ଯେଉଁ ଉଦ୍‌ବେଗ ସଞ୍ଚାରିତ ହୁଏ ତାହା ଏକାନ୍ତ ବାଞ୍ଛନୀୟ । ଏହି ଉଦ୍‌ବେଗ ଯୋଗୁଁ ଶିଶୁଠାରୁ ଅଳସ୍ୟତା ଓ ନିଷ୍କ୍ରିୟତା ଦୂର ହେବା ସଙ୍ଗେ ସଙ୍ଗେ ବିଭିନ୍ନ ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ଓ କର୍ମରେ ବ୍ୟାପୃତ ହେବାପାଇଁ ତା'ଠାରେ ସାହସ ଓ ଶକ୍ତିର ସଞ୍ଚାର ହୁଏ । ମାତ୍ର ଅହେତୁକ ଉଦ୍‌ବେଗ ବ୍ୟକ୍ତି ବା ଶିଶୁ ମନରେ ବ୍ୟର୍ଥତା ଓ ଉଦାସୀନତା ଆଣିଦିଏ ଓ ଏହା କ୍ଷତିକାରକ ହୋଇଥାଏ । କାରଣ, ଏହା ବ୍ୟକ୍ତିର ମାନସିକ ସ୍ୱାସ୍ଥ୍ୟକୁ କ୍ଷୁଣ୍ଣକରେ । ଶିଶୁମାନଙ୍କ ମନରୁ ଅହେତୁକ ଉଦ୍‌ବେଗ ଦୂରୀକରଣ ନିମିତ୍ତ ଶିକ୍ଷକ ଶିକ୍ଷୟିତ୍ରୀ ତଥା ପିତା ମାତା ସେମାନଙ୍କ ପ୍ରତି ସୌଜନ୍ୟପୂର୍ଣ୍ଣ ଓ ସ୍ନେହଶୀଳ ଆଚରଣ ପ୍ରଦର୍ଶନ କରିବା ଆବଶ୍ୟକ । ବିଦ୍ୟାଳୟ ପରିପ୍ରେକ୍ଷୀରେ ଏକ ବନ୍ଧୁତ୍ୱପୂର୍ଣ୍ଣ ବାତାବରଣ ସୃଷ୍ଟି କରିବା ମଧ୍ୟ ଆବଶ୍ୟକ । ପାରସ୍ପରିକ ସ୍ନେହ ମମତାପୂର୍ଣ୍ଣ ବ୍ୟବହାର ଶିଶୁର ଆତ୍ମପ୍ରତ୍ୟୟ ବୃଦ୍ଧିକରେ ଓ ତାକୁ ଆଶାବାଦୀ କରିଥାଏ । ଫଳତଃ ଉଦ୍‌ବେଗର ମାତ୍ରା ହ୍ରାସ ପାଇଥାଏ । ବିଦ୍ୟାଳୟର ପାଠ୍ୟକ୍ରମ ଶିଶୁର ରୁଚି, ଅନୁକୂଳ ଓ ତା'ର ସାମର୍ଥ୍ୟ ଅନ୍ତର୍ଭୁକ୍ତ ହେବା ଆବଶ୍ୟକ । କାରଣ ପାଠ୍ୟକ୍ରମ ତା'ର ସାମର୍ଥ୍ୟ ଓ ରୁଚି ତଥା ବହିର୍ଭୂତ ହେଲେ ତା'ପରେ ସ୍ୱତଃ ଉଦ୍‌ବେଗ ଦେଖାଯାଏ । ଶ୍ରେଣୀର ସମସ୍ତ ପ୍ରକାର ସହଯୋଗମୂଳକ କାର୍ଯ୍ୟକ୍ରମ କରାଯିବା ଆବଶ୍ୟକ । ଏହାଦ୍ୱାରା ଶିଶୁର ଉଦ୍‌ବେଗ ବୃଦ୍ଧି ପାଇନଥାଏ । ପ୍ରତିଦ୍ୱନ୍ଦିତାମୂଳକ କାର୍ଯ୍ୟକ୍ରମ ଦ୍ୱାରା ଶିଶୁଠାରେ ବିଭିନ୍ନ ପ୍ରକାର ଉଦ୍‌ବେଗ ଦେଖାଯାଇଥାଏ । ତେବେ ପାଠ୍ୟକ୍ରମ ଛଡ଼ା ବିଭିନ୍ନ ପ୍ରକାର ଆନୁସଙ୍ଗିକ କାର୍ଯ୍ୟକ୍ରମ ବିଦ୍ୟାଳୟରେ ପ୍ରବର୍ତ୍ତିତ ହେଲେ ଶିଶୁମାନେ ସାମର୍ଥ୍ୟ ଅନୁଯାୟୀ ନିଜ ନିଜ କୃତିତ୍ୱ ପ୍ରଦର୍ଶନ କରାଇବାରେ ସକ୍ଷମ ହୋଇଥାନ୍ତି । ଏତଦ୍ ବ୍ୟତୀତ ପାଠ୍ୟକ୍ରମରେ କୃତିତ୍ୱ ହାସଲରେ ବ୍ୟର୍ଥତା ଯୋଗୁଁ ଉଦ୍‌ବେଗ ପ୍ରକାଶ କରି ନଥାନ୍ତି ।

**ଆବେଗର ବିକାଶରେ ଶିକ୍ଷାର ଭୂମିକା :—**

ପରିବାର ଓ ବିଦ୍ୟାଳୟ ଉଭୟ ପରିବେଶରେ ଏପରି ବ୍ୟବସ୍ଥା ରହିବ ଯାହାଦ୍ୱାରା ଶିଶୁ ସୁଖୀହେବା ମଣିବଦଳେ ଦୁଃଖୀ ହୋଇଥାଏ । ଗୃହ ଗୃହୀମାନେ ସୁଖକର ଅପେକ୍ଷା ଅଧିକ ଅସୁଖକର ଆବେଗ ଅନୁଭୂତି ଅର୍ଜନ କରିଥାନ୍ତି —କ୍ରୋଧ, ଭୟ ଏବଂ ଈର୍ଷା । କିନ୍ତୁ ଆନନ୍ଦଦାୟକ ଆବେଗ ଗୁଡ଼ିକର ଅନୁଭୂତି ଅନ୍ୟମାନଙ୍କ ପ୍ରତି ସ୍ନେହ ଓ ବନ୍ଧୁପୂର୍ଣ୍ଣ ମନୋଭାବ ବୃଦ୍ଧି କରିବା ପାଇଁ ଶିଶୁକୁ ସାହାଯ୍ୟ କରିଥାନ୍ତି ।

ଜୀବନରେ ସବୁ ସମୟରେ ଯେ କେବଳ ଆନନ୍ଦଦାୟକ ପରିସ୍ଥିତି ଆସିବ, ତା' ନୁହେଁ ତାକୁ ଉଭୟ ଆନନ୍ଦ ଓ ନିରାନନ୍ଦମୟ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିବ । ସେ ଉକ୍ତ ନିରାନନ୍ଦମୟ ଆବେଗିକ ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ଏଭଳି ଶିକ୍ଷା କରିବା ଆବଶ୍ୟକ ଯାହାଦ୍ୱାରା ତା'ର ମାନସିକ ଭାରସାମ୍ୟ ଯେପରି ରକ୍ଷା ହୋଇ ପାରିବ । ସେ ଜୀବନରେ ସମସ୍ତ ପ୍ରତିବନ୍ଧକକୁ ଗ୍ରହଣ କରି ଶିଖିବା ଉଚିତ୍ । ଏହାଛଡା ସେ ସମସ୍ତ ପରିସ୍ଥିତି, ଘଟଣା ଓ ବ୍ୟକ୍ତି ଯେଉଁମାନେ ତା'ଠାରେ କ୍ରୋଧ ସୃଷ୍ଟି କରୁଛନ୍ତି ଓ ତା'ର କାର୍ଯ୍ୟରେ ପ୍ରତିବନ୍ଧକ ସୃଷ୍ଟି କରୁଛନ୍ତି ତାଙ୍କୁ ମଧ୍ୟ ସହ୍ୟ କରି ଶିଖିବା ଆବଶ୍ୟକ । ସେ ଯାହା ହେଉ, ତା'ର ଆନନ୍ଦ ଦାୟକ ଅଭିଜ୍ଞତା ନିରାନନ୍ଦମୟ ଅଭିଜ୍ଞତା ଅପେକ୍ଷା ଅଧିକ ହେବା ଉଚିତ୍ । କାରଣ କ୍ରମାଗତ ଦୁଃଖଦାୟକ ପରିସ୍ଥିତି ଦ୍ୱାରା ଖୁବ୍ ସାହସୀ ସମ୍ପନ୍ନ ବ୍ୟକ୍ତି ମଧ୍ୟ ଦୁଃଖରେ ଭାଙ୍ଗି ପଡ଼ିବା ଅସମ୍ଭବ ନୁହେଁ ।

ଶିଶୁମାନଙ୍କର ଆବେଗିକ ସ୍ଥିରତାକୁ ସାହାଯ୍ୟ କରିବା ନିମିତ୍ତ ନିମ୍ନଲିଖିତ ପ୍ରସ୍ତାବନା ଦିଆଗଲା ।

୧ । ଆବେଗିକ ସନ୍ଦେଶ ଉତ୍ପନ୍ନ ହେବାର କାରଣକୁ ପରିହାର କରିବା ହିଁ ଆବେଗିକ ସ୍ଥିରତା ଗ୍ରହଣରେ ଶିଶୁପାଇଁ ପ୍ରଧାନ ସାହାଯ୍ୟ ଓ ସହାୟକ । ହରଲକ୍ (Hurlock) ଶିଶୁ ପକ୍ଷରେ ପାଞ୍ଚୋଟି କାରଣ ଦର୍ଶାଇଛନ୍ତି । ଯଥା—

(କ) **ଅବସନ୍ନତା**—କ୍ଳାନ୍ତ ଶିଶୁକୁ ଶାସନ କରିବା କଷ୍ଟ ।

(ଖ) **ଖରାପ ସ୍ୱାସ୍ଥ୍ୟ**—ଖରାପ ସ୍ୱାସ୍ଥ୍ୟର ଶିଶୁ କ୍ଷଣକୋପୀ ହୋଇଥାନ୍ତି ।

(ଗ) **ଆବେଗିକ ଲୋକ ସହିତ ସମ୍ପର୍କ**—କାରଣ ପିଲାମାନେ ସେମାନଙ୍କର ବ୍ୟବହାରକୁ ନକଲ କରିଥାନ୍ତି ।

(ଘ) **ଶକ୍ତିଶାଳୀ ଇଚ୍ଛା**—ଶିଶୁ ଉପରେ ଅଧିକ ନିୟମ କଟକଣା କରାଗଲେ ସେ ଅଧିକ ବିଦ୍ରୋହୀ ହୋଇପଡ଼େ ।

(ଡ) **ଅପ୍ରସ୍ତୁତତା**—ଯଦି ଶିଶୁ ଗୋଟିଏ ଅଜଣା ପରିସ୍ଥିତିର ସମ୍ମୁଖୀନ ହୁଏ କିମ୍ବା ସେ ଯଦି କୌଣସି ପରିସ୍ଥିତିର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ନଥାଏ, ସେ ଆବେଗିକ ଉଚ୍ଛ୍ୱାସ ପରିପ୍ରକାଶ କରିଥାଏ ।

୨ । ଆବେଗଗୁଡ଼ିକ ପରିପ୍ରକାଶ କରିବା ନିମିତ୍ତ ଶିଶୁମାନେ ଶିକ୍ଷା ଗ୍ରହଣ କରିବା ଉଚିତ୍ । ଯୁବାବସ୍ଥାରେ ଉପନୀତ ଶିଶୁମାନେ ସେମାନଙ୍କର ଆବେଗକୁ ଗୋଟାଏ ପ୍ରାକୃତିକ ପଥରେ ପ୍ରକାଶ କରିଥାନ୍ତି । ମାତ୍ର ବୟଃ ପ୍ରାପ୍ତ ଶିଶୁମାନେ ସେମାନଙ୍କର ଆବେଗକୁ ସାମାଜିକ ସ୍ୱୀକୃତି ପ୍ରାପ୍ତ ଓ ଗ୍ରହଣ ଯୋଗ୍ୟ ରୀତିରେ ପ୍ରକାଶ କରନ୍ତୁ ବୋଲି ଆଶା କରାଯାଏ ।

୩ । ଶିଶୁ ନିଜର ଅନେକ ଆବେଗିକ ଅନୁଭୂତି ଗୁଡ଼ିକୁ କେବଳ ସାମାଜିକ କଟକଣା ଯୋଗୁଁ ପରିପ୍ରକାଶ କରିବା ନିମିତ୍ତ ଅନୁମତି ପାଇନଥାଏ । ଶିଶୁକୁ ତା'ର ଆବେଗ ଗୁଡ଼ିକ ଭଲଭାବରେ ପରିପ୍ରକାଶ କରିବା ନିମିତ୍ତ ସୁବିଧା ସୁଯୋଗ ଦିଆଯିବା ଉଚିତ୍ ।

୪ । ଏହା ବ୍ୟତୀତ, ନିରାନନ୍ଦମୟ ଆବେଗଗୁଡ଼ିକୁ ଉଦ୍ରେକ କରୁଥିବା ପରିସ୍ଥିତି ଗୁଡ଼ିକୁ ପ୍ରକୃତରେ ବୁଝିବା ନିମିତ୍ତ ସାହାଯ୍ୟ କରିବା ଉଚିତ୍ । ସେ ଯାହାହେଉ, ଶିଶୁର ଆବେଗିକ ବ୍ୟବହାରକୁ ବଡ଼ୁର ସଙ୍କେତ ଆଚରଣ ଦ୍ୱାରା ପରିବର୍ତ୍ତନ କରିବା ସବୁ ସମୟରେ ସମ୍ଭବ ନୁହେଁ । ଏହା ବିଜ୍ଞମୟରେ ପ୍ରମାଣିତ ହୋଇଛି ଯେ, ପ୍ରଥମେ ଆମେ ଶିଶୁର ଅସୁବିଧା ଓ ଅଭିପ୍ରାୟକୁ ବୁଝିବା ନିମିତ୍ତ ଚେଷ୍ଟା କରିବା ଉଚିତ୍ ଏବଂ ତା' ପରେ ତା'ର ଅସୁବିଧାକୁ ଦୂର କରିବା ନିମିତ୍ତ ସାହାଯ୍ୟ କରିବା ଆବଶ୍ୟକ ।

୫ । ଶିଶୁ ତାର ଆବେଗକୁ ପ୍ରକାଶ କରିବା ନିମିତ୍ତ କେବଳ ସାହାଯ୍ୟ ହେବା ଉଚିତ୍ ନୁହେଁ, ସେ ସେଗୁଡ଼ିକୁ ଆତ୍ମନିୟନ୍ତ୍ରଣାଧୀନ ମଧ୍ୟ କରିବା ଆବଶ୍ୟକ । ସେ ସେହି ଅନୁଭୂତି ଗୁଡ଼ିକୁ ଆୟତ୍ତ କରିବା ନିମିତ୍ତ ଶିକ୍ଷା ଲାଭ କରିବା ଉଚିତ୍ ଯାହା ଅନ୍ୟମାନଙ୍କୁ ଅପ୍ରସ୍ତୁତ କରିପାରେ କିମ୍ବା ଯେଉଁଗୁଡ଼ିକ ନଷ୍ଟକାରୀ ବା ଧ୍ୱଂସକାରୀ ପ୍ରକୃତିର ଅଟନ୍ତି । ଶିଶୁ ଅନ୍ୟମାନଙ୍କ ଅନୁଭୂତିକୁ ସମ୍ମାନ ଦେଇ ଶିଖିବା ହିଁ ଏହାର ମୂଳ ଲକ୍ଷ୍ୟ ।

୬ । ଶିଶୁ ଯେପରି ତା'ର ଆବେଗିକ ବ୍ୟବହାରରେ ବାହ୍ୟ ନିୟନ୍ତ୍ରଣ (External Control) ଅପେକ୍ଷା ଆଭ୍ୟନ୍ତରୀଣ ନିୟନ୍ତ୍ରଣ (Internal

Control) କୁ କ୍ରମାଗତ ଭାବେ ଅଭ୍ୟାସ କରିବ ସେଥିନିମନ୍ତେ 'ତା'କୁ ନିର୍ଦ୍ଦେଶ ଦିଆଯିବା ଉଚିତ୍ ।

୭ ଶିକ୍ଷା ଦାନ କ୍ଷେତ୍ରରେ ଶିକ୍ଷକଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ଶିଶୁର ଆବେଗିକ ବିକାଶ ନିମିତ୍ତ ସେ ଯତ୍ନଶୀଳ ହେବା ଏକାନ୍ତ ଆବଶ୍ୟକ । କାରଣ, ଶିକ୍ଷକଙ୍କର ଯତ୍ନ, ସହାନୁଭୂତି, ସ୍ନେହ, କ୍ଷମା, ଦୟା ଇତ୍ୟାଦି ଭାବ ଶିଶୁର ସୁସ୍ଥ ଆବେଗିକ ବିକାଶରେ ଖୁବ୍ ସାହାଯ୍ୟ କରିଥାଏ । ଶିଶୁର ଆବେଗିକ ବିକାଶ ସମ୍ପର୍କରେ ସମୁଚିତ ଜ୍ଞାନ ଲାଭ କରି ବିଦ୍ୟାଳୟର ପରିବେଶ ଓ ପରିସ୍ଥିତିକୁ ସୁସ୍ଥ କରିବା ଶିକ୍ଷକଙ୍କର ପ୍ରଧାନ କର୍ତ୍ତବ୍ୟ ହେବା ଆବଶ୍ୟକ । ତେଣୁ ଶିଶୁଠାରେ ସୁସ୍ଥ ଆବେଗାତ୍ମକ ବିକାଶ ନିମିତ୍ତ ଶିକ୍ଷକ ମଧ୍ୟ ଯତ୍ନଶୀଳ ହେବା ବାଞ୍ଛନୀୟ ।

୮ । ଶିଶୁର ଆବେଗକୁ କେବଳ ଶିକ୍ଷା ଦ୍ୱାରା ହିଁ ଶୃଙ୍ଖଳିତ କରାଯାଇପାରେ । ଶିକ୍ଷା ଦ୍ୱାରା ଶିଶୁର ସାମୂହିକ ବିକାଶ ସଙ୍ଗଠିତ ହୋଇଥାଏ । ଫଳତଃ ତା'ଠାରେ ବିଚାରବୋଧତା ସୃଷ୍ଟି ହୋଇଥାଏ । ସେ କେଉଁ କାର୍ଯ୍ୟ କରିଣୀୟ ଓ କେଉଁ କାର୍ଯ୍ୟ ଅକରଣୀୟ ତାହା ବୁଝିବାକୁ ସକ୍ଷମ ହୋଇଥିବାରୁ ତା'ର ଆବେଗର ଯଥାଯଥ ବିକାଶ ନିମିତ୍ତ ଶିକ୍ଷା କ୍ଷେତ୍ରରେ ସର୍ବବିଧ ପଦକ୍ଷେପ ନିଆଯିବା ବିଧେୟ ।

ଉପରୋକ୍ତ ପର୍ଯ୍ୟାଲୋଚନାରୁ ଏହା ସ୍ପଷ୍ଟ ଯେ, ଆବେଗିକ ବିକାଶ ନିମିତ୍ତ ଶିକ୍ଷାର ଭୂମିକା ତାତ୍ପର୍ଯ୍ୟପୂର୍ଣ୍ଣ । ତେଣୁ ବିଦ୍ୟାଳୟ, ପରିବାର ପ୍ରତ୍ୟେକ କ୍ଷେତ୍ରରେ ଶିଶୁର ଆବେଗାତ୍ମକ ବିକାଶ ନିମିତ୍ତ ଆବଶ୍ୟକୀୟ ପଦକ୍ଷେପ ନିଆଯିବା ବିଧେୟ ।

## ଆବେଗିକ ବିଶୃଙ୍ଖଳିତ ଭାବ ପ୍ରଦର୍ଶନ କରୁଥିବା ଛାତ୍ରମାନଙ୍କ କ୍ଷେତ୍ରରେ ବିଦ୍ୟାଳୟ ଓ ଶିକ୍ଷକଙ୍କ ଭୂମିକା ।

ବିଦ୍ୟାଳୟରେ ଆବେଗିକ ବିଶୃଙ୍ଖଳିତ ଭାବ ପ୍ରଦର୍ଶନ କରୁଥିବା ଛାତ୍ରମାନେ ଶିକ୍ଷକଙ୍କ ପାଇଁ କେତେକ ସମସ୍ୟା ସୃଷ୍ଟି କରିଥାନ୍ତି । ସେ ସାଧାରଣତଃ ଦୁଷ୍ଟ, କ୍ଷତିକାରକ, ଅଶ୍ଳୀଳ ଓ ବିରକ୍ତିକର ଆଚରଣ ମାନ ପ୍ରଦର୍ଶନ କରିଥାଏ । ସେ ପ୍ରାୟ ଆକ୍ରମଣଶୀଳ, କ୍ରୋଧୀ ଓ ଅନିଷ୍ଟକାଂକ୍ଷୀ ହୋଇଥାଏ । ସମସ୍ତ ସମୟରେ ତାର ଏପରି କାର୍ଯ୍ୟକଳାପ ସୀମା ଅତିକ୍ରମ ହେବାରୁ ତାହାକୁ ନିୟନ୍ତ୍ରଣ କରିବା କଷ୍ଟକର ବୋଧହୁଏ । ତାର ଚରିତ୍ର-ପ୍ରକୃତି ବା ମିଜାଜ ଉଗ୍ର ଓ ଅସଂଯତ ହେବାର ଦେଖାଯାଏ । ଏପରି ଛାତ୍ର-ମାନଙ୍କ ମନୋବୃତ୍ତିକୁ ବିଶ୍ଳେଷଣ କରି ଲଣ୍ଡନ ବିଶ୍ୱବିଦ୍ୟାଳୟର ବିଶିଷ୍ଟ ମନୋବିଜ୍ଞାନୀ

Burt ମତ ପ୍ରଦାନ କରିଥିଲେ ଯେ ପ୍ରଥମେ ସାମାଜିକ ସ୍ତର ନିମ୍ନର ବିପରୀତ ଧର୍ମୀ ଗୋଟିଏ ଆବେଗ ଶିଶୁମାନଙ୍କରେ ଜନ୍ମନିଏ । ପରେ ଦ୍ୱିତୀୟ ଆବେଗ, ତତ୍ପରେ ତୃତୀୟ ଏହିପରି ଭାବରେ ଗୋଟିକ ପରେ ଗୋଟିଏ ଦ୍ୱନ୍ଦ୍ୱପୂର୍ଣ୍ଣ ବିପରୀତ ଧର୍ମୀ ଆବେଗ ଜନ୍ମ ନେଇ ବିଭିନ୍ନ ପରିବର୍ତ୍ତିତ ପରିସ୍ଥିତିରେ ଶିଶୁକୁ ଉତ୍ତେଜିତ କରିଥାନ୍ତି । ଫଳ ସ୍ୱରୂପ ଛାତ୍ର ସେହି ପ୍ରକାର ବ୍ୟବହାର ପ୍ରଦର୍ଶନ କରେ । ଏହିପରି ଭାବରେ ଗଠନର ସ୍ଥଳେ ଆବେଗିକ ବିଶୃଙ୍ଖଳିତ ଛାତ୍ରର ଜୀବନ ଏକ ବିସ୍ଫୋରଣ ଶୀଳ ବୃଭଜା ଫୋଟକାର ମାଳ ସଦୃଶ ହୋଇଥାଏ ।

ଏପରି ଏକ ଶିଶୁ ଶିକ୍ଷକ ଓ ବିଦ୍ୟାଳୟ ପାଇଁ ଅସଂଖ୍ୟ ସମସ୍ୟା ସୃଷ୍ଟି କରେ । ଏପରି ଛାତ୍ରର ମନୋଭାବ ଓ ଆଚରଣକୁ ସଠିକ୍ ଭାବରେ ଅନୁଶୀଳନ କରି, ତା'ର ମଙ୍ଗଳ ତଥା ସମଗ୍ର ବିଦ୍ୟାଳୟର ମଙ୍ଗଳ ନିମିତ୍ତ ଠିକ୍ ରାସ୍ତାରେ ପରିଚାଳିତ କରିବା ଆବଶ୍ୟକ ହୋଇଥାଏ । ଏଥିପାଇଁ ଆବେଗିକ ବିଶୃଙ୍ଖଳତାର କାରଣ ବା ଉତ୍ସଗୁଡ଼ିକ ସମ୍ବନ୍ଧରେ ଜ୍ଞାନ ଆହରଣ କରିବା ପ୍ରତ୍ୟେକ ଶିକ୍ଷକଙ୍କର ଏକ ଆବଶ୍ୟକତା ।

**ଆବେଗିକ ବିଶୃଙ୍ଖଳତାର କାରଣ** :—କେତେକ ଅନ୍ତର୍ନିହିତ ଓ ବାହ୍ୟ ଉପାଦାନ ଶିଶୁଠାରେ ଏହି ପ୍ରକାର ବିଶୃଙ୍ଖଳତା ସୃଷ୍ଟି କରିଥାନ୍ତି । ସେଗୁଡ଼ିକ ନିମ୍ନରେ ଆଲୋଚନା କରାଗଲା ।

(୧) **ଜୈବିକ ଉପାଦାନ** :—କେତେକ ଶାରୀରିକ ଉପାଦାନ ଶିଶୁର ଆବେଗିକ ଆଚରଣକୁ ବିଶୃଙ୍ଖଳିତ କରିଥାଏ । ନାଳୀ ବିହୀନ ଗ୍ରନ୍ଥିର ଅନିୟମିତ ସ୍ରାବଣ ଏହାର ପ୍ରଧାନ କାରଣ । କେତେକ କ୍ଷେତ୍ରରେ ଶାରୀରିକ ଗଠନ ଓ ଶାରୀରିକ ସ୍ୱାସ୍ଥ୍ୟର ଅବସ୍ଥା ଆବେଗିକ ଭାରସାମ୍ୟ ନଷ୍ଟ କରିଥାଏ । ବହୁଦିନ ଧରି ପୀଡ଼ିତ ରହିଲେ, ଶରୀର ଉପରେ ଅତ୍ୟଧିକ ଚାପ ବା କଷ୍ଟ ପଡ଼ିଲେ ବା ଉପଯୁକ୍ତ ସୁଷମ ଖାଦ୍ୟର ଯଥେଷ୍ଟ ଅଭାବ ଘଟିଲେ ଏଭଳି ବିଶୃଙ୍ଖଳତା ପ୍ରଦର୍ଶିତ ହୋଇଥାଏ । ଫଳରେ ସ୍ୱଭାବଗତ ଅହେତୁକ ବଦରାଗ, ଆକ୍ରମଣଶୀଳତା, କଳହ ପ୍ରବଣତା, ଘୃଣା ଆଦି ଭାବର ଉଦ୍ରେକ ଘଟିଥାଏ ।

(୨) **ମାନସିକ ଉପାଦାନ** :—ସମସ୍ତ ସମୟରେ କେବଳ କେତେକ ମାନସିକ ଚାପର ବଶବର୍ତ୍ତୀ ହୋଇ ଶିଶୁ ଆବେଗିକ ବିଶୃଙ୍ଖଳତା ପ୍ରଦର୍ଶନ କରେ । କୌଣସି ପ୍ରକାରେ ଛାତ୍ରର ନିଜସ୍ୱ ଧାରଣା, ମନୋବୃତ୍ତି, ବଦ୍ଧମୂଳ ଧାରଣା, ପସନ୍ଦ ଅପସନ୍ଦ, ପ୍ରତିଦ୍ୱନ୍ଦ୍ୱିତା ପ୍ରଦର୍ଶନ ସଫଳତା ବା ବିଫଳତା ପାଇଁ ଆଶା ଓ ଆକାଂକ୍ଷା ତଥା ଅନ୍ୟାନ୍ୟ ମାନସିକ ଅବସ୍ଥା ବାଧାପ୍ରାପ୍ତହେଲେ ଛାତ୍ର ଉତ୍ତେଜିତ ହୁଏ ଏବଂ ଏପରି ସ୍ଥଳେ ଏହି ଉତ୍ତେଜନା ଭୁଲ ପଥରେ ପରିଚାଳିତ ହୋଇଥାଏ ।

**(୩) ସାମାଜିକ ଉପାଦାନ :—** ଶିଶୁର ଆବେଗାତ୍ମକ ସ୍ୱାସ୍ଥ୍ୟ ପାଇଁ ତା'ର ପରିବାରର ଆର୍ଥିକ ଓ ଆବେଗିକ ବାତାବରଣ ଏକାନ୍ତ ଗୁରୁତ୍ୱପୂର୍ଣ୍ଣ । ଯେଉଁ ପରିବାରରେ ପିତାମାତା ଆବେଗିକ ବିଶୃଙ୍ଖଳ ଜୀବନ ଅତିବାହିତ କରିଥାନ୍ତି, ସର୍ବଦା ଯୁକ୍ତିତର୍କ ଓ ବାଦାନୁବାଦ ମଧ୍ୟରେ ପରିଚାଳିତ ହେଉଥାନ୍ତି ସେଠାରେ ସର୍ବଦା ଏକ ଦ୍ୱନ୍ଦ୍ୱ ଓ ଯୁଦ୍ଧ ଭିତ୍ତିକ ବାତାବରଣ ସୃଷ୍ଟି ହୁଏ । ଏହା ଶିଶୁର ଆବେଗିକ ବିକାଶ ଉପରେ ବିପରୀତ ପ୍ରଭାବପାତ କରିଥାଏ । କୌଣସି ସ୍ୱାଭାବିକ ଶିଶୁ ଏପରି ଏକ ପରିବାରରେ ଲାଳିତ ପାଳିତ ହେଲେ ସେ ଆବେଗିକ ବିଶୃଙ୍ଖଳତା ପ୍ରଦର୍ଶନ କରିଥାଏ ।

ସେହିପରି ବିଭାଜିତ ପରିବାର ବା ଅନ୍ୟ ଭାବରେ ଆବେଗିକ ବିଶୃଙ୍ଖଳ ପରିବାରରୁ ଆସିଥିବା ଶିଶୁ ଅନୁରୂପ ଆବେଗ ପ୍ରଦର୍ଶନ କରେ । ଅନ୍ୟ ପକ୍ଷରେ ଯେଉଁ ଶିଶୁ ଏକ ସନ୍ତୁଳିତ ପାରିବାରିକ ପରିବେଷ୍ଟନୀରୁ ଆବଶ୍ୟକମତେ ସ୍ନେହ ପାଇଥାଏ, ତାଛଡ଼ା ଏକ ସୁନ୍ଦର ସ୍ୱାସ୍ଥ୍ୟର ଅଧିକାରୀ ହୋଇଥାଏ ତା ନିକଟରେ ଆବେଗିକ ଅସ୍ୱାଭାବିକତା ପ୍ରାୟ ପରିଦୃଷ୍ଟ ହୁଏ ନାହିଁ ।

ଏତଦ୍ ବ୍ୟତୀତ ସାଧାରଣ ସାମାଜିକ ପରିବେଷ୍ଟନୀ ମଧ୍ୟ ଶିଶୁର ଆବେଗିକ ବିକାଶ ଉପରେ ଅନୁକୂଳ ବା ପ୍ରତିକୂଳ ପ୍ରଭାବ ପକାଇଥାଏ । ଶିଶୁ ବାସକରୁଥିବା ସାହି, ପାଠପଢ଼ୁଥିବା ବିଦ୍ୟାଳୟ, ବନ୍ଧୁତା ସ୍ଥାପନ କରିଥିବା ସାଙ୍ଗସାଥୀ ତଥା ଅନ୍ୟାନ୍ୟ ସଂପର୍କୀୟ ବ୍ୟକ୍ତି ଶିଶୁର ସାମାଜିକ ବାତାବରଣର ଗୋଟିଏ ଗୋଟିଏ ଉପାଦାନ । ଏଥିରୁ କୌଣସି ସ୍ଥାନରେ ଶିଶୁ ସନ୍ଦେହ, ବିଚଳିତ ଭାବ, ଚଞ୍ଚଳ ଭାବ, କ୍ରୋଧଭାବ, ଈର୍ଷାଭାବ ଓ ବିଦ୍ୱେଷୀ ଗୁଣର ସଂସ୍ପର୍ଶରେ ଆସିଲେ ତାର ପ୍ରଭାବ ଶିଶୁର ଆବେଗିକ ବିକାଶକୁ ପ୍ରଭାବିତ କରିଥାଏ ।

**(୪) ଭୌଗୋଳିକ ପରିବେଷ୍ଟନୀ :—** ଶିଶୁର ଆବେଗିକ ବିକାଶ ତା'ର ବାସସ୍ଥାନର ଭୌଗୋଳିକ ପରିବେଷ୍ଟନୀ ଦ୍ୱାରା ପ୍ରଭାବିତ ହୋଇଥାଏ । ଏକ ଇଚ୍ଛାନୁରୂପ, ସ୍ୱାସ୍ଥ୍ୟକର, ସୁନ୍ଦର ପରିବେଶ ସର୍ବଦା ମାନସିକ ସ୍ୱାସ୍ଥ୍ୟ ପ୍ରତି ଅନୁକୂଳ ହୋଇଥାଏ । ଫଳରେ ଆବେଗିକ ଭାରସାମ୍ୟ ରକ୍ଷା ହେବା ସଙ୍ଗେ ସଙ୍ଗେ ଶିଶୁ ମାନସିକ ଚାପ ଓ ଉତ୍ତେଜନା ଅନୁଭବ କରେନାହିଁ । କିନ୍ତୁ ଅପର ପକ୍ଷରେ ଏକ ଅସ୍ୱାସ୍ଥ୍ୟକର ପରିବେଶ, ଅନେକ ପ୍ରକାର ଆବେଗିକ ବିଶୃଙ୍ଖଳତାର ଉତ୍ସରୂପ କାର୍ଯ୍ୟ କରିଥାଏ । ନାଳ ନର୍ଦ୍ଦମା ପୂର୍ଣ୍ଣସ୍ଥାନ, ଦୁର୍ଗନ୍ଧ ଯୁକ୍ତ ଗୃହ, ଅପରିଷ୍କାର ଗଳିରାସ୍ତା, ଜନବହୁଳ ବସ୍ତି ଏବଂ ଇଚ୍ଛାବିରୁଦ୍ଧ ଜଳବାୟୁ ଇତ୍ୟାଦି ଅନେକ ପ୍ରକାର ଅସ୍ୱାଭାବିକ ଆବେଗିକତା ସୃଷ୍ଟି କରିଥାଏ ।

**(୫) ଅର୍ଥନୈତିକ ଉପାଦାନ** :—ଆର୍ଥିକ ଅଭାବ ଆବେଗିକ ବିଶୃଙ୍ଖଳତାର ଏକ ପ୍ରଧାନ ଉତ୍ସ । ବୁଭୁକ୍ଷୁ ବ୍ୟକ୍ତି ସର୍ବଦା ଆକ୍ରମଣଶୀଳ । ଅତ୍ୟନ୍ତ ଦରିଦ୍ରାବସ୍ଥାରେ ବାସ କରୁଥିବା ଶିଶୁମାନେ ନିଜର ଆବେଗିକ ଭାରସାମ୍ୟ ରକ୍ଷା-କରିବାରେ ସକ୍ଷମ ହୋଇପାରନ୍ତି ନାହିଁ ।

ଏହିପରି ଭାବରେ ଦେଖାଯାଏ ଯେ ଶିଶୁଠାରେ ଆବେଗିକ ବିଶୃଙ୍ଖଳତାର କାରଣ ଏକ ନହୋଇ ଅନେକ ହୋଇଥାଏ । କେତେକ ଉପାଦାନ ଏକ ସମୟରେ ଶିଶୁର ମନ ଉପରେ ବିଭିନ୍ନ ଦିଗରୁ ଚାପ ପ୍ରଦାନ କଲେ ସେ ଅସ୍ୱାଭାବିକ ଭାବରେ ଉତ୍ତେଜିତ ହୁଏ ଏବଂ ବିଶୃଙ୍ଖଳ ଆଚରଣ ପ୍ରଦର୍ଶନ କରେ ।

**ଶିକ୍ଷକଙ୍କ ଭୂମିକା** :—ଏହା ବେଶ୍ ଜଣାଶୁଣା ଓ ବହୁଳ ଭାବରେ ପ୍ରମାଣିତ ଯେ ଜଣେ ଛାତ୍ରର ଆବେଗିକ ବିଶୃଙ୍ଖଳତା ସମୁଦାୟ ଶ୍ରେଣୀର ସମସ୍ତ ଛାତ୍ରଙ୍କୁ ପ୍ରଭାବିତ କରିଥାଏ ଏବଂ ପରିଶେଷରେ ବିଦ୍ୟାଳୟର ଶାନ୍ତିପୂର୍ଣ୍ଣ ବାତାବରଣ ନଷ୍ଟ ହୋଇଥାଏ । ତେଣୁ ଶିକ୍ଷକ ଯଥା ସମ୍ଭବ ଏବଂ ଯଥା ଶୀଘ୍ର ଆବେଗିକ ବିଶୃଙ୍ଖଳତା ପ୍ରଦର୍ଶନ କରୁଥିବା ଛାତ୍ରମାନଙ୍କ ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦେବା ଆବଶ୍ୟକ । ଯଦି ଶିକ୍ଷକ ଶ୍ରେଣୀ ଗୃହରେ ଏକ ଆନନ୍ଦମୟ, ସମଞ୍ଜସ, ଓ ସହଯୋଗୀ ବାତାବରଣ ସୃଷ୍ଟି କରନ୍ତି ତେବେ ଶିଶୁ ଆବେଗିକ ବିଶୃଙ୍ଖଳତା ପ୍ରଦର୍ଶନ କରିବାର କୌଣସି ସୁଯୋଗ ପ୍ରାପ୍ତ ହୁଏନାହିଁ । ତେଣୁ ଯଦି ଶିକ୍ଷା ପଦ୍ଧତି ହୃଦୟଗ୍ରାହୀ, ଶ୍ରେଣୀ କାର୍ଯ୍ୟ ଭାବୋଦ୍ଦୀପକ ହେବା ସଙ୍ଗେ ସଙ୍ଗେ ବିଦ୍ୟାଳୟରେ ସ୍ୱତନ୍ତ୍ର ଆନୁଷଙ୍ଗିକ କାର୍ଯ୍ୟକଳାପର ଉତ୍ତମ ବ୍ୟବସ୍ଥା କରାଯାଏ ତେବେ ଶିଶୁ ମନରେ ଆବେଗିକ ଅସ୍ୱାଭାବିକତା ପ୍ରତି ଅନୁଚିନ୍ତା ହ୍ରାସ ପାଇବ । ତଥାପି ମଧ୍ୟ କୌଣସି ଆବେଗିକ ବିଶୃଙ୍ଖଳ ଛାତ୍ର ଦୃଷ୍ଟିଗୋଚର ହେଲେ ତା ପାଇଁ ଶିକ୍ଷକ କେତେକ ପଦକ୍ଷେପ ଗ୍ରହଣ କରିପାରିବେ । ସେଥିରୁ କେତେକ ନିମ୍ନରେ ଆଲୋଚିତ ହେଲା ।

**(୧) ପୁନଃଶିକ୍ଷଣ** :—କୌଣସି ଏକ ଶିକ୍ଷା ପଦ୍ଧତି ଅବଲମ୍ବନ କରି ଶିକ୍ଷା ପ୍ରଦାନ କରାଯିବା ଅବସରରେ ଯଦି କେତେକ ଛାତ୍ର ଆବେଗିକ ବିଶୃଙ୍ଖଳତା ପ୍ରଦର୍ଶନ କରନ୍ତି ତେବେ ସେମାନଙ୍କ ପାଇଁ ଶିକ୍ଷାର ପଦ୍ଧତିକୁ ପରିବର୍ତ୍ତନ କରି ପୁନଶ୍ଚ ପୂର୍ବ ଅଧ୍ୟାୟକୁ ନୂତନ ପଦ୍ଧତିରେ ଶିକ୍ଷା ଦେଲେ ସୁଫଳ ମିଳିଥାଏ । ସମୟ ସମୟରେ କୌଣସି ଏକ ବିରକ୍ତିକର ପରିସ୍ଥିତି ବା ବ୍ୟକ୍ତି ସଂପର୍କରେ ଛାତ୍ରକୁ ଉତ୍ତମ ରୂପେ ବୁଝାଇପାରିଲେ ତା ମଧ୍ୟରେ ଅନେକ ପରିବର୍ତ୍ତନ ଆସିଥାଏ । ଛାତ୍ରକୁ ନିଜେ ନିଜେ ଜଟିଳ ଚିନ୍ତା କରିବାକୁ ସୁଯୋଗ ଦିଆଯିବା ଉଚିତ୍ । ଏକ ନିର୍ଦ୍ଦିଷ୍ଟ ବିରକ୍ତିକର ବା ବିତୃଷ୍ଣାଦାୟୀ ପରିସ୍ଥିତି ବା ବ୍ୟକ୍ତି ସହିତ ଉପଯୁକ୍ତ ଭାବରେ ସମଯୋଜନ

(adjustment) କରିବା ପାଇଁ ଛାତ୍ର ନିଜେ ଚେଷ୍ଟା କରିବା ଉଚିତ୍ ଓ ଏଥିପାଇଁ ସେ କୌଣସି ନୂତନ କୌଶଳ ଅବଲମ୍ବନ କରିବା ଆବଶ୍ୟକ । ଏ ବିଷୟରେ ଛାତ୍ରକୁ ଯଥାସମ୍ଭବ ସାହାଯ୍ୟ କରିବା ଆବଶ୍ୟକ । ଆବେଗିକ ପୁନଃ ଶିକ୍ଷଣ ଦ୍ୱାରା ଛାତ୍ର ପୁଣି ନୂଆକରି ନିଜର ସମସ୍ୟାକୁ ସମାଧାନ କରିବାକୁ ଚେଷ୍ଟାକରେ ।

୧ । ଅନ୍ତର୍ଦୃଷ୍ଟି :—ଶିଶୁର ଅନେକ ବିଶୃଙ୍ଖଳିତ ଆଚରଣରେ ମୂଳ ହେଉଛି ତା'ର ବିଚଳିତ ଚିନ୍ତାଧାରା । ଯଦି କୌଣସି ପ୍ରକାରରେ ବିଶୃଙ୍ଖଳିତ ଛାତ୍ର ଗଭୀର ଅନ୍ତର୍ଦୃଷ୍ଟିର ସହିତ ନିଜ ସମସ୍ୟାଟିକୁ ବିଶ୍ଳେଷଣ କରିବାର ସୁଯୋଗ ଓ ସାମର୍ଥ୍ୟ ହାସଲ କରେ, ତାହାର ଅଧିକାଂଶ କ୍ରୋଧ, ହିଂସା, ଦୁଶ୍ଚିନ୍ତା, ଉତ୍ତେଜନା ଏବଂ ବିରକ୍ତଭାବ ଦୂର ହୋଇପାରେ । ଶିଶୁର ଅନ୍ତର୍ଦୃଷ୍ଟି ପ୍ରଭାବଶାଳୀ କରିବାକୁ ହେଲେ ଘଟଣାଗୁଡ଼ିକୁ ସେଗୁଡ଼ିକର ସ୍ୱାଭାବିକତା ଓ ଅପେକ୍ଷିକ ଗୁରୁତ୍ୱ ଅନୁସାରେ ସଜାଇ ରଖିବାରେ ତାକୁ ସାହାଯ୍ୟ କରାଯିବା ଉଚିତ । ପ୍ରକୃତରେ ଉତ୍ତେଜନା ସୃଷ୍ଟି କରୁଥିବା ଘଟଣାଟିକୁ ବିଶ୍ଳେଷଣକରି ପ୍ରକୃତ କାରଣ ଅବଗତ ହେବା ଏବଂ ସଦା ସର୍ବଦା ଆସ୍ତିବାଚକ ଦିଗ ପ୍ରତି ଆକର୍ଷିତ ହେବା ଶିଶୁ ଚରିତ୍ରର ଏକ ଅଂଶ ରୂପେ ପ୍ରଦର୍ଶିତ ହେବା ଉଚିତ୍ । ଶିଶୁଠାରେ ଅନ୍ତର୍ଦୃଷ୍ଟି ଉଦ୍ରେକ କରିବାପାଇଁ ଶିକ୍ଷକଙ୍କପକ୍ଷରେ ଶିଶୁର ଉଦ୍ବେଗ, ବ୍ୟବହାର, ମନୋଭାବ, ଚିନ୍ତା ଧାରା, ଇଚ୍ଛା ପ୍ରଭୃତି ସମ୍ପର୍କରେ ବୁଝାମଣା ଓ ଜ୍ଞାନ ଅର୍ଜନ କରିବା ଉଚିତ୍ ।

(୩) ଅଶାନ୍ତ ପରିବେଶଠାରୁ ଦୂରେଇ ରଖିବା :—ଆବେଗିକ ବିଶୃଙ୍ଖଳତା ପ୍ରଦର୍ଶନ କରୁଥିବା ଛାତ୍ରମାନଙ୍କୁ ଶ୍ରେଣୀର ଗୋଟିଏ ବିଭାଗରୁ ତାହାର ଭିନ୍ନ ଅନ୍ୟ ବିଭାଗରେ ପ୍ରବେଶ କରାଇବା କିମ୍ବା ଗୋଟିଏ ବିଦ୍ୟାଳୟରୁ ଅନ୍ୟ ବିଦ୍ୟାଳୟକୁ ସ୍ଥାନାନ୍ତରିତ କରିବାଦ୍ୱାରା ସେମାନଙ୍କ ବିଶୃଙ୍ଖଳା ଅନେକ ପରିମାଣରେ ହ୍ରାସ ପାଇବା ଦେଖାଯାଏ । ଏହାଦ୍ୱାରା ଏକ ପ୍ରକାରର ସାମାଜିକ ପରିବେଷ୍ଟନୀରେ ପରିବର୍ତ୍ତନ ଘଟିଥାଏ । ନୂତନ ପରିବେଶ ବ୍ୟକ୍ତି, ଘଟଣା ବା ପରିସ୍ଥିତି ସହ ନୂତନ ଏବଂ ଉତ୍ତମ ଭାବରେ ସମାଯୋଜନା କରିବାକୁ ସୁଯୋଗ ଦେଇଥାଏ ।

(୪) ଆବେଗିକ ନିରପେକ୍ଷ ଭାବ ସୃଷ୍ଟି :—ଏକ ନିର୍ଦ୍ଦିଷ୍ଟ ବସ୍ତୁ କିମ୍ବା ଉତ୍ତେଜନା ସୃଷ୍ଟିକାରୀ ପରିସ୍ଥିତିର ବାରମ୍ବାର ପୁନରାବୃତ୍ତି ଘଟିଲେ ଉତ୍ତେଜନାର ମାତ୍ରା କମି କମି ଯାଏ, କାରଣ ଉକ୍ତ ପରିସ୍ଥିତି, ଘଟଣା ବା ବ୍ୟକ୍ତି ସହ ଘନିଷ୍ଠତା ବଢ଼ିଗଲେ, ଠିକ୍ ସେହିପରେ ଅନ୍ୟମନସ୍କତା ଯୋଗୁଁ ମଧ୍ୟ ଶିଶୁ ଅନେକ ଆବେଗ ସୃଷ୍ଟିକାରୀ ପରିସ୍ଥିତିକୁ ଏଡ଼ାଇ ଦେଇପାରେ । ଅତଏବ କୌଣସି ବ୍ୟକ୍ତି, ବସ୍ତୁ, ସ୍ଥାନ ବା ଘଟଣା ଶିଶୁର ମନୋନୀତ ନହେଲେ ମଧ୍ୟ ଘନିଷ୍ଠତା ଯୋଗୁଁ ତାହା କ୍ରମେ ଦେହସୁହା ବା ନିରପେକ୍ଷ

ଘଟଣାରେ ପରିଣତ ହୁଏ । ତେଣୁ ଶିଶୁ ଉକ୍ତ ପରିସ୍ଥିତି ପ୍ରତି ଆଉ ସମ୍ବେଦନଶୀଳ ହୁଏ ନାହିଁ । ଫଳ ସ୍ୱରୂପ ଆବେଗିକ ବିଶୃଙ୍ଖଳତାର ବିଲୟ ଘଟିଥାଏ ।

(ଙ) ଭାବ ବିରେଚନ (Catharsis) :—ଭାବ ବିରେଚନ ଅର୍ଥ ଆବେଗର ଅପସାରଣ ବା ଆବେଗିକ ଅବସ୍ଥାରୁ ମୁକ୍ତି ଲାଭ କରିବା । ସାଧାରଣତଃ ମାନସିକ ଉତ୍ତେଜନାରୁ ଆବେଗିକ ବିଶୃଙ୍ଖଳତା ସୃଷ୍ଟି ହୋଇଥାଏ । କିନ୍ତୁ ଉତ୍ତେଜନା ପ୍ରଶମିତ କରିବାପାଇଁ ଉପଯୁକ୍ତ ଉପାୟ ମିଳିଲେ ବିଶୃଙ୍ଖଳ ବ୍ୟବହାର ପ୍ରଦର୍ଶିତ ହୁଏ ନାହିଁ । ଉଦାହରଣ ସ୍ୱରୂପ ଯଦି ଜଣେ ଭୟଙ୍କର ଭାବରେ ରାଗିଥିବା ଛାତ୍ରକୁ କେବଳ ଭାଷା ବା ସମାଜ ସମ୍ମତ ଅନ୍ୟ କୌଣସି ଉପାୟରେ ତା' କ୍ରୋଧକୁ ପ୍ରକାଶ କରିବାକୁ ସୁଯୋଗ ଦିଆଯାଏ ତା' ନିକଟରେ ବିଶୃଙ୍ଖଳ ବ୍ୟବହାର ଦେଖାଯାଏ ନାହିଁ । ବିଭିନ୍ନ ପ୍ରକାର କାର୍ଯ୍ୟ ଯଥା ମୁଷ୍ଟିଯୁଦ୍ଧ, କୁସ୍ତି କସରତ ବା ବକ୍ତୃତା ପ୍ରତିଯୋଗିତା ମାଧ୍ୟମରେ ଶିଶୁ ମନର ଅନେକ ବିରକ୍ତି, କ୍ରୋଧ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଉତ୍ତେଜନା ପ୍ରଶମିତ ହୋଇଥାଏ । ଏହି ଉପାୟରେ ଅନେକ ବିଶୃଙ୍ଖଳ ଛାତ୍ର ପରବର୍ତ୍ତୀ ଜୀବନରେ ଶୃଙ୍ଖଳିତ ତଥା ଶାନ୍ତ, ଶିଷ୍ଟ ଓ ଭଦ୍ର ନାଗରିକରେ ପରିଣତ ହେବାର ଦେଖାଯାଇଛି ।

(ଚ) ଖେଳ-କସରତ ମାଧ୍ୟମରେ ଆବେଗିକ ଶିକ୍ଷା ଦାନ :—ଶିଶୁ କୌଣସି କାର୍ଯ୍ୟରେ ତା'ର ସମସ୍ତ ଶକ୍ତି, ସାମର୍ଥ୍ୟ ନିୟୋଜିତ କରେ ନାହିଁ । ତା' ନିକଟରେ ସର୍ବଦା କିଛି ନା କିଛି ବଳକା ଶକ୍ତି ସଞ୍ଚିତ ହୋଇ ରହିଥାଏ । ଏହି ବଳକା ଶକ୍ତିକୁ କୌଣସି କାର୍ଯ୍ୟରେ ନିୟୋଜିତ କରିବାର ସୁଯୋଗ ଲାଭ ନକଲେ ତାହା ମନ ଉପରେ ଚାପ ପକାଇ ଉତ୍ତେଜନା ସୃଷ୍ଟି କରେ । ଅତଏବ ଏହି ବଳକା ଶକ୍ତିର ସଦୁପଯୋଗ ନିମିତ୍ତ ବିଦ୍ୟାଳୟରେ ବିଭିନ୍ନ ପ୍ରକାର କ୍ରୀଡ଼ା ଓ ଖେଳ କସରତର ଆୟୋଜନ କରାଯିବା ଉଚିତ । ଶିଶୁର ଆବେଗିକ ବିଶୃଙ୍ଖଳତାକୁ ତା'ର କ୍ରୀଡ଼ା ନୈପୁଣ୍ୟତାରେ ପରିଣତ କରିପାରିଲେ ତାହା ତା'ର ବ୍ୟକ୍ତିତ୍ୱ ଉପରେ ଏକ ଶିକ୍ଷଣୀୟ ପ୍ରଭାବ ପକାଇଥାଏ । ଏଣୁ ଶିକ୍ଷକଙ୍କର ଏହା ଏକ ପ୍ରାଥମିକ କର୍ତ୍ତବ୍ୟ ଯେ ସେ ଆବେଗିକ ବିଶୃଙ୍ଖଳିତ ଛାତ୍ରମାନେ ଯେପରି ସମ୍ପୂର୍ଣ୍ଣ ଭାବରେ କ୍ରୀଡ଼ା କାର୍ଯ୍ୟକ୍ରମରେ ଭାଗ ନିଅନ୍ତି ସେଥିପ୍ରତି ଦୃଷ୍ଟି ରଖିବେ । ଏହା ଛଡ଼ା ଛାତ୍ରମାନେ ଯେପରି ଉତ୍ତମ ସ୍ୱାସ୍ଥ୍ୟର ଅଧିକାରୀ ହୋଇପାରିବେ ଏବଂ ସେମାନଙ୍କ ସ୍ୱାସ୍ଥ୍ୟର ଯେପରି ଅବନତି ନଘଟେ ତାହା ଲକ୍ଷ୍ୟ କରିବା ଓ ସମୟୋପଯୋଗୀ ସାହାଯ୍ୟ ଓ ଉପଦେଶ ପ୍ରଦାନ କରିବା ଶିକ୍ଷକଙ୍କ କର୍ତ୍ତବ୍ୟ । ଆବଶ୍ୟକ ହେଲେ ଏଥିପାଇଁ ପିତା ମାତା ଓ ସରକାରଙ୍କ ସାହାଯ୍ୟ ଗ୍ରହଣ କରାଯାଇପାରେ । ଶିକ୍ଷକ ପିତା ମାତାଙ୍କୁ ସେମାନଙ୍କ ସନ୍ତାନର ଶାରୀରିକ ଦୁର୍ବଳତା, ଅନିୟମିତତା, ଅମନଯୋଗୀ ତଥା ଅସୁସ୍ଥତା ବିଷୟରେ ଅବଗତ କରାଇ ଆବଶ୍ୟକୀୟ ପରାମର୍ଶ ପ୍ରଦାନ କରିବା ଆବଶ୍ୟକ ।

**(୭) ଶ୍ରେଣୀ ଗୃହରେ ଗଣତାନ୍ତ୍ରିକ ପରିବେଶ ସୃଷ୍ଟି :**—ଛାତ୍ରମାନେ ସାଧାରଣତଃ ଶିକ୍ଷକମାନଙ୍କଠାରୁ ସ୍ନେହ ଓ ସୌହାର୍ଦ୍ଦ୍ୟ ଆଶା କରିଥାନ୍ତି । ତେଣୁ ଶିକ୍ଷକ ପ୍ରତ୍ୟେକ ଛାତ୍ରର ବ୍ୟକ୍ତିତ୍ୱକୁ ସମ୍ମାନ ପ୍ରଦର୍ଶନ କରିବା ସହିତ ବ୍ୟକ୍ତିଗତ ତାରତମ୍ୟ ପ୍ରତି ଦୃଷ୍ଟି ରଖିବା ଉଚିତ୍ । ଶ୍ରେଣୀ ତଥା ବିଦ୍ୟାଳୟରେ ଶିଶୁର ମୌଳିକ ସଂବେଗମୂଳକ ଆବେଗିକ ଆବଶ୍ୟକତା ଯେପରି ପୂରଣ ହୋଇପାରିବ ତାହା ଶିକ୍ଷକଙ୍କର ଏକ ପ୍ରଧାନ କର୍ତ୍ତବ୍ୟ ।

ଏହା ସହିତ ଶ୍ରେଣୀରେ ଛାତ୍ରମାନଙ୍କୁ ନୈତିକ ତଥା ଧାର୍ମିକ ଶିକ୍ଷା ପ୍ରଦାନ କରିବା ବାଞ୍ଛନୀୟ । ଶିଶୁମାନେ କିପରି ଏକ ନିର୍ଦ୍ଦିଷ୍ଟ ମହତ୍ତ୍ୱ ଆଦର୍ଶ ଅନୁସରଣ କରିପାରିବେ, ଜଣେ ଉତ୍ତମ ଶିକ୍ଷକ ସେଥିପ୍ରତି ଦୃଷ୍ଟି ଦେଇଥାନ୍ତି । ଶିଶୁର ସାମାଜିକ ବିକାଶ ସନ୍ତୁଳିତ ହେବା ଉଚିତ୍ ଏବଂ ସେ ଅଧିକ ମାତ୍ରାରେ ଅନ୍ତର୍ମୁଖୀ ହେବା ଉଚିତ ନୁହେଁ । ନିଜ ବନ୍ଧୁମାନଙ୍କ ଗୋଷ୍ଠୀ ମଧ୍ୟରେ ଶିଶୁ ବେଶ୍ ପରିଚିତ ହେବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ପ୍ରକାର ଗୋଷ୍ଠୀଗତ କାର୍ଯ୍ୟରେ ସକ୍ରିୟ ଅଂଶ ଗ୍ରହଣ କରିବା ଉଚିତ୍ । କୌଣସି ସମୟରେ ଶିଶୁର ଏକାକୀ ବୋଧ ତା'ର ଆବେଗିକ ସ୍ୱାସ୍ଥ୍ୟ ପ୍ରତି ଅନୁକୂଳ ନୁହେଁ ।

**(୮) ଶିକ୍ଷକଙ୍କ ସୁ-ଆବେଗିକ ସ୍ୱାସ୍ଥ୍ୟର ପ୍ରଭାବ :**—ଯଦି ଜଣେ ଶିକ୍ଷକ ନିଜେ ଆବେଗିକ ବିଶୃଙ୍ଖଳାର ଶିକାର ହୋଇଥାନ୍ତି ସେ ଶିଶୁମାନଙ୍କ ଆବେଗାତ୍ମକ ବିକାଶକୁ ଉନ୍ନତ କରାଇବା ପରିବର୍ତ୍ତେ ନଷ୍ଟ କରି ଦେଇଥାନ୍ତି । ଜଣେ ଅତ୍ୟନ୍ତ କ୍ରୋଧୀ, ବଦ୍‌ରାଗୀ ଶିକ୍ଷକ ତାଙ୍କ ଛାତ୍ର ମନରେ ସେହିପରି କ୍ରୋଧ ଓ ଅଶାନ୍ତି ସୃଷ୍ଟି କରାଇଥାନ୍ତି । ତେଣୁ ପ୍ରତ୍ୟେକ ଶିକ୍ଷକ ନିଜ ଆବେଗିକ ସ୍ୱାସ୍ଥ୍ୟର ଉନ୍ନତି କରିବାକୁ ଚେଷ୍ଟିତ ହେବା ବିଧେୟ । ଶ୍ରେଣୀ ଗୃହ ମଧ୍ୟରେ କୌଣସି ପ୍ରକାର କ୍ରୋଧୀ, ବଦ୍‌ରାଗୀ ଓ ବିରକ୍ତ ଭାବକୁ ପରିହାର କରି ଗଣତାନ୍ତ୍ରିକ ଓ ଧୈର୍ଯ୍ୟଶୀଳ ଉପାୟରେ ପ୍ରତ୍ୟେକ ଛାତ୍ରର ସମ୍ମୁଖୀନ ହେବା ଉଚିତ୍ ।

**(୯) ପ୍ରାରମ୍ଭିକ ନିରାକରଣ :**—ଇଂରେଜୀରେ କଥିତ ଅଛି **Prevention is better than cure** । ଅର୍ଥାତ୍ କୌଣସି ରୋଗ ହେବା ପର୍ଯ୍ୟନ୍ତ ଅପେକ୍ଷା ନକରି ତାହା ଯେପରି ସୃଷ୍ଟି ନହୁଏ ସେଥିପ୍ରତି ଦୃଷ୍ଟି ଦେବାକୁ ହୋଇଥାଏ । ଆବେଗିକ ବିଶୃଙ୍ଖଳତା କୌଣସି ଶିଶୁଠାରେ ଦେଖାଗଲେ ତାହାକୁ ପ୍ରଥମାବସ୍ଥାରୁ ପ୍ରଶମିତ କରିବା ଆବଶ୍ୟକ । ନଚେତ୍ ଭବିଷ୍ୟତରେ ତାହା ବହୁ ଗୁରୁତର ହୋଇ ବ୍ୟକ୍ତିଠାରେ ଅସାମାଜିକ ପ୍ରବୃତ୍ତି ସୃଷ୍ଟି କରିପାରେ । ଏତଏବ ଉଭୟ ଶିକ୍ଷକ ଓ ପିତାମାତା ପ୍ରାରମ୍ଭିକ ଅବସ୍ଥାରୁ ସତର୍କତା ଅବଲମ୍ବନ କରିବା ଆବଶ୍ୟକ । କୌଣସି ଅବସ୍ଥାରେ ମଧ୍ୟ ଶିଶୁର ଆବେଗିକ ବିଶୃଙ୍ଖଳତାକୁ ଅଧିକ ଉତ୍କଟ ହେବାକୁ ସୁଯୋଗ ପ୍ରଦାନ କରାଯିବା ଉଚିତ୍ ନୁହେଁ ।

(୧୦) ମାନସିକ ଚିକିତ୍ସାଳୟକୁ ପ୍ରେରଣ :—ଆବେଗିକ ବିଶୃଙ୍ଖଳତା କୌଣସି ଶିକ୍ଷକଙ୍କର ନିୟନ୍ତ୍ରଣର ସୀମା ଅତିକ୍ରାନ୍ତ ହୋଇଥିଲେ ସେ କୌଣସି ବିଶେଷଜ୍ଞଙ୍କ ସାହାଯ୍ୟ ନେବା ଆବଶ୍ୟକ । ସମୟୋପଯୋଗୀ ଚିକିତ୍ସା ଦ୍ୱାରା ଆବେଗିକ ଅସ୍ୱାଭାବିକତା ଦୂର କରାଯାଇପାରେ ।

ଆବେଗିକ ଅସ୍ୱାଭାବିକତା ପ୍ରଦର୍ଶନ କରୁଥିବା ଛାତ୍ର ଏକାନ୍ତ ଭାବରେ ବ୍ୟକ୍ତିଗତ ଅବଧାନ ଓ ସହାନୁଭୂତି ପୂର୍ଣ୍ଣ ବୁଝାମଣା ଆବଶ୍ୟକ କରେ । ସମୟୋପଯୋଗୀ ପଥ ପ୍ରଦର୍ଶନ ଓ ଚିକିତ୍ସା ତା' ଜୀବନକୁ ନିର୍ମଳ ଓ ଶୃଙ୍ଖଳିତ କରିପାରେ । ଅବହେଳା ଓ ଅପରିଣାମଦର୍ଶୀ କାର୍ଯ୍ୟ ଦ୍ୱାରା ତା'ର ଅସ୍ୱାଭାବିକତା ବୃଦ୍ଧି ପାଏ । ଫଳରେ ସେ ଅନେକ ଶାରୀରିକ ଓ ମାନସିକ ସମସ୍ୟାର ସମ୍ମୁଖୀନ ହୁଏ । ଏହି ପରିପ୍ରେକ୍ଷୀରେ ଶିକ୍ଷକ ନିଜର ଭୂମିକା ଉତ୍ତମ ରୂପେ ହୃଦୟଙ୍ଗମ କରିବା ସର୍ବାଦୌ ଆବଶ୍ୟକ । ତେଣୁ ସେ ନିଜର ସାଧ୍ୟମତେ ଚେଷ୍ଟାକରି ଆବେଗିକ ବିଶୃଙ୍ଖଳିତ ଛାତ୍ରକୁ ଦୁର୍ଭାଗ୍ୟ କବଳରୁ ରକ୍ଷା କରିବା ଉଚିତ୍ । ଶିଶୁକୁ ତା'ର ସାମର୍ଥ୍ୟ ଓ ଦୁର୍ବଳତା ସମ୍ପର୍କରେ ଅବଗତ କରାଇ, ତା'ର ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟକୁ ଉତ୍ସାହିତ କରାଇ, ତା' ମଧ୍ୟରେ ଥିବା ବ୍ୟକ୍ତିଗତ ସ୍ୱତନ୍ତ୍ର ଗୁଣରାଜିକୁ ବିକଶିତ କରାଇ ଶିକ୍ଷକ ଛାତ୍ରର ମନୋବଳ ତଥା ଆତ୍ମ ବିଶ୍ୱାସ ବୃଦ୍ଧି କରାଇ ପାରନ୍ତି ।



# ସପ୍ତମ ଅଧ୍ୟାୟ

## ଜ୍ଞାନାତ୍ମକ ବିକାଶ

## (Congnitive Development)

ଶତାବ୍ଦୀ ଧରି ଯେତେବେଳେ ମନୋବିଜ୍ଞାନୀମାନେ ଜନ୍. ବି. ଓ୍ବାଟସନ (John B. Watson) ଙ୍କର ବ୍ୟବହାରବାଦୀ ଉପାଗମ (behaviouristic approach) ର ଅନୁସରଣ କରି ଆସୁଥିଲେ ସେତେବେଳେ ଶିଶୁର ଚିନ୍ତାଧାରା, ଭାଷା ଓ ବୌଦ୍ଧିକ କାର୍ଯ୍ୟ ସମ୍ପର୍କରେ କୌଣସି ତଥ୍ୟ ପ୍ରକାଶ ପାଇନଥିଲା । ଓ୍ବାଟସନ ଏଗୁଡ଼ିକୁ ଅନ୍ତର୍ନିହିତ ଗୁଣ ଭାବି ଗବେଷଣାର ଅନ୍ତର୍ଭୁକ୍ତ କରିନଥିଲେ । କିନ୍ତୁ କ୍ରମଶଃ ତାଙ୍କ ମୌଳିକ ଉପାଗମ (Radical approach) ରୁ ଏକ ନୂତନ ତଥ୍ୟ ଜନ୍ମ ନେଇଥିଲା । ମନୋବିଜ୍ଞାନୀମାନେ ଲକ୍ଷ୍ୟକଲେ ଶିଶୁର ବାହ୍ୟ ଆଚରଣ ଓ ପରିବେଷ୍ଟନୀ ପ୍ରତି ପ୍ରତିକ୍ରିୟା ତାର ଅନ୍ତର୍ନିହିତ ସାମର୍ଥ୍ୟ ଦ୍ୱାରା ପ୍ରଭାବିତ ହେଉଛି । ଏହି ଅନ୍ତର୍ନିହିତ ସାମର୍ଥ୍ୟ ଉପରେ ଗବେଷଣା ମାନ କରାଯିବା ପରେ କେତେକ ତଥ୍ୟ ଆବିଷ୍କୃତ ହୋଇ-ପାରିଥିଲା । ଏହି ଅନ୍ତର୍ନିହିତ ସାମର୍ଥ୍ୟ ଯୋଗୁଁ ଶିଶୁ ନିଜ ମନରେ ପୃଥିବୀ ସମ୍ପର୍କରେ ଏକ ନିଜସ୍ୱ ଧାରଣା ଗଠନ କରି ନିଜର ଅତୀତ କାର୍ଯ୍ୟକଳାପକୁ ବିଶ୍ଳେଷଣ କରେ ଏବଂ ଭବିଷ୍ୟତ ପାଇଁ ମାନସିକ ପ୍ରସ୍ତୁତ କରିଥାଏ । ଶିଶୁର ଏହି ମାନସିକ ସାମର୍ଥ୍ୟକୁ ଜ୍ଞାନାତ୍ମକ ବିକାଶ ବୁଝାଯାଇପାରେ ।

ଜ୍ଞାନାତ୍ମକ ବିକାଶ ଆଧୁନିକ ମନୋବିଜ୍ଞାନରେ ଏକ ପ୍ରମୁଖ ସ୍ଥାନ ଅଧିକାର କରିପାରିଛି । ମୌଳିକ ଭାବରେ ଜ୍ଞାନ ଅର୍ଜନର ଅର୍ଥ ହେଲା କୌଣସି ବିଷୟରେ ଜାଣିବା, ଚିନ୍ତାକରିବା, ବିଗ୍ଭର କରିବା ଏବଂ ସର୍ବଶେଷରେ ସିଦ୍ଧାନ୍ତରେ ଉପନୀତ ହେବା । ମନୋବିଜ୍ଞାନରେ ଜ୍ଞାନାର୍ଜନ ଏକ ମାନସିକ ଧାରା ଯାହା ମଧ୍ୟରେ ଚିନ୍ତନ, ସ୍ମୃତି, ବୁଦ୍ଧି, ପ୍ରତ୍ୟକ୍ଷଣ ଓ ଭାଷା ଜ୍ଞାନ ଅନ୍ତର୍ଭୁକ୍ତ । ଏହି ଜ୍ଞାନାତ୍ମକ ବିକାଶ ମନୁଷ୍ୟକୁ ଅନ୍ୟାନ୍ୟ ପଶୁମାନଙ୍କଠାରୁ ଉନ୍ନତତର କରିଥାଏ । ମନୋବିଜ୍ଞାନର ଏହି ଦିଗରେ ସୁଇସ୍ ମନୋବିଜ୍ଞାନୀ ଜନ୍ ପିଆଜେ (Jean Piaget)ଙ୍କ ଅବଦାନ ଏକକ ଭାବରେ

ଅଦ୍ୱିତୀୟ । ପିଆଜେଙ୍କର ଜ୍ଞାନାତ୍ମକ ବିକାଶ ତତ୍ତ୍ୱ ଆଧୁନିକ ମନୋବିଜ୍ଞାନର ସାଗର କୂଳରେ ଏକ ବର୍ତ୍ତିଘର ସଦୃଶ ଦଣ୍ଡାୟମାନ ।

**ପିଆଜେଙ୍କ ତତ୍ତ୍ୱ** :—ବଂଶାନୁଗୁଣ ମନୁଷ୍ୟର ଅନ୍ତର୍ନିହିତ ଜୈବିକ ସାମର୍ଥ୍ୟ ନିରୂପିତ କରିଥାଏ । ପ୍ରତ୍ୟେକ ବ୍ୟକ୍ତି ମଧ୍ୟରେ ତା'ର ଜୈବିକ ସାମର୍ଥ୍ୟ ଏକ ନିର୍ଦ୍ଦିଷ୍ଟ ମାତ୍ରାରେ ଥାଏ । ଅଭିଜ୍ଞତା ଓ ପରିବେଷ୍ଟନୀ ମନୁଷ୍ୟର ପରିପକ୍ୱତା (maturation) ସହ ସମନ୍ୱୟ ରକ୍ଷାକରି ଜ୍ଞାନାତ୍ମକ ବିକାଶର ଧାରାକୁ ତ୍ୱରାନ୍ୱିତ ବା କେତେକ କ୍ଷେତ୍ରରେ ମନ୍ଥର କରିଥାଏ । ପିଆଜେଙ୍କ ମତରେ ଉଭୟ ପରିବେଷ୍ଟନୀ ଓ ବଂଶାନୁଗୁଣ ଜ୍ଞାନାତ୍ମକ ବିକାଶକୁ ପ୍ରଭାବିତ କରିଥାନ୍ତି ।

ପିଆଜେ ସର୍ବପ୍ରଥମେ ପ୍ରାଣୀ ବିଜ୍ଞାନର ଜଣେ ଗବେଷକ ଥିଲେ । ପରେ ସେ ମନୁଷ୍ୟ ଜାତିର ସମ୍ବେଦନଶୀଳତା ଗୁଣର ବିଭିନ୍ନ ଦିଗ ଉପରେ ଆଲୋକପାତ କରିଥିଲେ । ପ୍ରାଣୀମାନଙ୍କ କ୍ଷେତ୍ରରେ ଅନୁକୂଳନ (adaptation) ଏକ ପ୍ରଧାନ କାର୍ଯ୍ୟ । ପରିବେଷ୍ଟନୀ ସହିତ ଉପଯୁକ୍ତ ଭାରସାମ୍ୟ ରକ୍ଷା କରିବା ପାଇଁ ଧାରାବାହିକ ପରିବର୍ତ୍ତନ ସହ ପ୍ରତ୍ୟେକ ଜୀବ ସମାଯୋଜନ କରିଥାନ୍ତି । ଦୁର୍ଭିକ୍ଷ ସମୟରେ ଗୋରୁଦଳ ଯେପରି ନୂତନ ଚାରଣ ଭୂମି ଅନୁସନ୍ଧାନ କରନ୍ତି ସେହିପରି ଅନେକ ଜୀବ ନିଜ ରଙ୍ଗ ପରିବର୍ତ୍ତନ କରି ନିଜକୁ ଶତ୍ରୁମାନଙ୍କ କବଳରୁ ରକ୍ଷାକରନ୍ତି । ମନୁଷ୍ୟ ମଧ୍ୟ ପରିବର୍ତ୍ତନଶୀଳ ପରିସ୍ଥିତି ସହ ସମାଯୋଜନ କରିବାପାଇଁ ବିଭିନ୍ନ ଉପାୟ ଅବଲମ୍ବନ କରିଥାଏ । କିନ୍ତୁ ଅନ୍ୟ ଜୀବ ମାନଙ୍କ ଅପେକ୍ଷା ମନୁଷ୍ୟ ନିଜର ବୁଦ୍ଧି ଅଧିକ କାର୍ଯ୍ୟକାରୀ କରିଥାଏ ।

ପିଆଜେଙ୍କ ମତରେ ଶିଶୁର ଜ୍ଞାନାତ୍ମକ ବିକାଶର ଧାରା ଦୁଇଟି ଦିଗରେ ପରିଦୃଷ୍ଟ ହୁଏ । ଗୋଟିଏ ଏକୀକରଣ ଓ ଅନ୍ୟଟି ସମାଜ ସହିତ ନିଜକୁ ଖାପ ଖୁଆଇ ଚାଲିବା ର ପ୍ରବୃତ୍ତି । ଏକୀକରଣ ଧାରାରେ ଶିଶୁ ମନରେ ପୃଥିବୀ ଓ ଏହାର ସମସ୍ତ ଜୀବଜନ୍ତୁ, ମନୁଷ୍ୟ ଆଦି ସମ୍ପର୍କରେ ପୂର୍ବରୁ ଯେଉଁ ଧାରଣା ସୃଷ୍ଟି ହୋଇଥାଏ ସେ ସେହି ମର୍ମରେ ସମସ୍ତ ବସ୍ତୁ ଓ ଘଟଣାର ବ୍ୟାଖ୍ୟା କରେ । ଦ୍ୱିତୀୟ ଧାରା ଅନୁଯାୟୀ ବାହ୍ୟ ବାସ୍ତବିକତା ସହ ନିଜ ମନର ଧାରଣା କୁ ସମାଯୋଜନ କରି ଶିଶୁ ନୂତନ ଅଭିଜ୍ଞତା ହାସଲ କରିବା ସଙ୍ଗେ ସଙ୍ଗେ ପୁରାତନ ଧାରଣା ଓ ଜ୍ଞାନ ପରିପୁଷ୍ଟ ଓ ପରିମାର୍ଜିତ କରିଥାଏ ।

ଶିଶୁ ମନରେ ପୃଥିବୀ ସମ୍ପର୍କରେ ଏକ ସ୍ୱତନ୍ତ୍ର ଧାରଣା ଜନ୍ମିଥାଏ । ସେ କେତେକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ କେତେକ ନିର୍ଦ୍ଦିଷ୍ଟ ଧରଣର ବ୍ୟବହାର ପ୍ରଦର୍ଶନ କରେ । ଶିଶୁର ଏହି ନିଜସ୍ୱ ଧାରଣା ଓ ନିଜସ୍ୱ ବ୍ୟବହାର ଧାରାକୁ ପିଆଜେ ସ୍କିମା

(Schema) ନାମରେ ଅଭିହିତ କରିଥିଲେ । ଭିନ୍ନ ଭିନ୍ନ ପରିସ୍ଥିତିରେ ଶିଶୁ ଭିନ୍ନ ଭିନ୍ନ ପ୍ରକାରର ବ୍ୟବହାର ପ୍ରଦର୍ଶନ କରେ । ତେଣୁ ପ୍ରତ୍ୟେକ ପରିସ୍ଥିତି ପାଇଁ ସ୍କିମା ପୃଥକ୍ ଧରଣର ହୋଇଥାଏ । ଶିଶୁ ମଧ୍ୟରେ ଯେତେ ସ୍କିମା ଥାଆନ୍ତି ସେଥିମଧ୍ୟରୁ କେତେ କେତେ ସରଳ ଓ ଅନ୍ୟ କେତେ ଜଟିଳ । କିନ୍ତୁ ହସ୍ତଠାରୁ ସରଳତମ ସ୍କିମା ମନୁଷ୍ୟର ଅବୟବ ମାନଙ୍କୁ କୌଣସି ଉଦ୍ଦେଶ୍ୟରେ ପରିଚାଳିତ କରିପାରେ । ମୁଠେଇ ଧରିବା, ଚୋପାଷିବା କରିବା, ଖୋଜିବା ଆଦି ଅନେକ ପ୍ରବୃତ୍ତିର ସ୍କିମା ଶିଶୁ ନିକଟରେ ଦେଖାଯାଏ । ପ୍ରତ୍ୟେକ ସ୍କିମା ଆରମ୍ଭ ବା ସୃଷ୍ଟି ସମୟରେ ଅନ୍ୟ ସ୍କିମାଠାରୁ ପୃଥକ୍ ହୋଇଥିଲେ ମଧ୍ୟ ବାହ୍ୟ ଜଗତ ସହ ପ୍ରତିକ୍ରିୟା ପ୍ରଦର୍ଶନ ସମୟରେ ଶିଶୁ ଯେଉଁ ବ୍ୟବହାର ପ୍ରଦର୍ଶନ କରେ ତାହା ବିଭିନ୍ନ ପ୍ରକାର ସ୍କିମାର ସମ୍ମିଳିତ ଏକକ ରୂପେ ପ୍ରକାଶ ଲାଭ କରିଥାଏ ।

ଶୈଶବର ପ୍ରଥମାବସ୍ଥାରେ ସ୍କିମା ଗଠିତ ହୋଇଥାଏ । ବୟସ ବୃଦ୍ଧି ସହିତ ଏହାର କ୍ରମଃ ପରିବର୍ତ୍ତନ ଘଟେ । ଫଳରେ ଶିଶୁ ପୃଥିବୀ ସମ୍ପର୍କରେ ନୂତନ ଓ ଉନ୍ନତ-ତର ଧାରଣା ପୋଷଣ କରିବାକୁ ସମର୍ଥ ହୋଇଥାଏ । ଏହି ସ୍କିମାର ପରିବର୍ତ୍ତନ ଫଳରେ ଜ୍ଞାନାତ୍ମକ ବିକାଶର ସ୍ତର ନିର୍ଣ୍ଣିତ ହୋଇଥାଏ । ଏହି ପରିବର୍ତ୍ତନ ବିଭିନ୍ନ ପିରିୟଡ୍ ବା ସମୟାନ୍ତରରେ ସଂଘଟିତ ହୁଏ । ଅର୍ଥାତ୍ ଏକ ନିର୍ଦ୍ଦିଷ୍ଟ ସମୟରେ ଶିଶୁ ମନରେ ବାହ୍ୟ ଜଗତ ପ୍ରତି ଏକ ସ୍ୱତନ୍ତ୍ର ଧାରଣା ଜାତ ହୋଇଥାଏ । ଏହି ସମୟାନ୍ତର ପାଇଁ ପିଆଜେ ହାରାହାରି ଭାବରେ ଏକ ବୟସ ସୀମା ମଧ୍ୟ ସ୍ଥିର କରିଥିଲେ । ସେ ଜ୍ଞାନାତ୍ମକ ବିକାଶକୁ ଚାରୋଟି ସମୟ ପର୍ଯ୍ୟାୟ (Period) ରେ ବିଭକ୍ତ କରିଥିଲେ । ସେଗୁଡ଼ିକ ହେଲ :—

୧) ସଂବେଦୀ-ପ୍ରେରକ ସମୟ ପର୍ଯ୍ୟାୟ (ଜନ୍ମ ଠାରୁ ଦୁଇବର୍ଷ ବୟସ ପର୍ଯ୍ୟନ୍ତ) ।

୨) ପ୍ରାକ୍-ସକ୍ରିୟାତ୍ମକ ସମୟ ପର୍ଯ୍ୟାୟ (ଦୁଇ ବର୍ଷ ଠାରୁ ସାତ ବର୍ଷ ପର୍ଯ୍ୟନ୍ତ) ।

୩) ବାସ୍ତବଧର୍ମୀ ସକ୍ରିୟାର ସମୟ ପର୍ଯ୍ୟାୟ (ସାତବର୍ଷ ଠାରୁ ଏଗାର ବର୍ଷ) ।

୪) ଆକାରିକ ସକ୍ରିୟାର ସମୟ ପର୍ଯ୍ୟାୟ(ଏଗାର ବର୍ଷଠାରୁ ପରବର୍ତ୍ତୀ ଜୀବନ) ।

ପିଆଜେ ଉକ୍ତ ବୟସ ସୀମାଗୁଡ଼ିକର ଏକ ଆନୁମାନିକ ହାରାହାରି ଗ୍ରହଣ କରିଥିଲେ । କିନ୍ତୁ ଏହି ବୟସ ସୀମା ଶିଶୁର ପରିବେଷ୍ଟନୀ ଏବଂ ବଂଶାନୁକ୍ରମ ଅନୁସାରେ ସ୍ଥଳ ବିଶେଷରେ ଭିନ୍ନ ହୋଇପାରେ ।

## (୧) ସଂବେଦୀ-ପ୍ରେରକ ସମୟ ପର୍ଯ୍ୟାୟ (Sensory-motor period)

ନୂତନ ଭାବରେ ଜନ୍ମ ହୋଇଥିବା ଶିଶୁଟିର କୌଣସି ପ୍ରକାର ଅଭିଜ୍ଞତା ନଥାଏ । କିନ୍ତୁ ସେ ସମ୍ପୂର୍ଣ୍ଣ ଅସହାୟ ନୁହେଁ । କାରଣ କେତେକ ପ୍ରତିବର୍ତ୍ତୀ-କ୍ରିୟା

(reflex-action) ତା ମଧ୍ୟରେ ଅନ୍ତର୍ନିହିତ ଥାଏ । ତେଣୁ ଜନ୍ମଠାରୁ ଦୁଇ ବର୍ଷ ବୟସ ମଧ୍ୟରେ ଚୂଷଣ (Sucking) ଓ କୌଣସି ବସ୍ତୁକୁ ମୁଠେଇ ଧରିବା ଆଦି ପ୍ରତିବର୍ତ୍ତି-କ୍ରିୟା ଶିଶୁ ପ୍ରଦର୍ଶନ କରେ । ଏହି ସମୟରେ ଶକ୍ତ ଗୋଟିଏ ସ୍ଲେଟ ଦ୍ୱାରା ଦ୍ୱାରା ଶିଶୁର ଆଣ୍ଠୁ ଉପରେ ଆଘାତ କଲେ ଶିଶୁର ଗୋଡ଼ ସ୍ୱୟଂକ୍ରିୟ ଭାବରେ ଟାଙ୍କ ହୋଇଯାଇଥାଏ । ଏହି ସମୟର ଶେଷ ଭାଗକୁ ଶିଶୁ ନିଜ ହାତରେ କୌଣସି କବାଟ ଖୋଲିବାକୁ ସମର୍ଥ ହୋଇଥାଏ । ପିଆଜେ ଏହି ଦୁଇ ବର୍ଷର ସମୟକୁ ଛଅଟି ଉପ-ପର୍ଯ୍ୟାୟରେ ବିଭକ୍ତ କରିଛନ୍ତି ।

(କ) **ପ୍ରଥମ ପର୍ଯ୍ୟାୟ**—ଶିଶୁ ଜନ୍ମ ପରଠାରୁ ପ୍ରଥମ ମାସଟି ପ୍ରଥମ ପର୍ଯ୍ୟାୟର ଅନ୍ତର୍ଭୁକ୍ତ । ଏହି ସମୟ ମଧ୍ୟରେ ଶିଶୁ କେବଳ ଅନ୍ତର୍ନିହିତ ପ୍ରତିବର୍ତ୍ତି-କ୍ରିୟା ଗୁଡ଼ିକ ପ୍ରଦର୍ଶନ କରେ । ଏହି କ୍ରିୟାଗୁଡ଼ିକ କ୍ରମଶଃ ସୁଗମ, ନିୟମିତ ଓ ଧାରାବାହିକ ହୋଇଯାଏ । ଅଧିକାଂଶ ସମୟରେ ଶିଶୁ ପ୍ରତିବର୍ତ୍ତି-ବ୍ୟାୟାମ କରୁଥିବାର ଦେଖାଯାଏ । ଏକମାସ ପରେ ଶିଶୁର ଅଙ୍ଗଚାଳନା କ୍ରମଶଃ ସଂଗଠିତ ଓ ବିକଶିତ ହେବାର ଦେଖାଯାଏ । ଏହି ସମୟରେ ଶିଶୁର ସାମାନ୍ୟ ଜ୍ଞାନାତ୍ମକ ବିକାଶ ହୋଇଥିବାର ପିଆଜେ ଲକ୍ଷ୍ୟ କରିଥିଲେ । ଶିଶୁ ପ୍ରଥମ ମାସ ମଧ୍ୟରେ ମା'ସ୍ତନର ଅଗ୍ରଭାଗ ଓ ସାଧାରଣ ଚର୍ମ ମଧ୍ୟରେ ପାର୍ଥକ୍ୟ ଜାଣିପାରେ ।

(ଖ) **ଦ୍ୱିତୀୟ ପର୍ଯ୍ୟାୟ** :—ପ୍ରଥମ ମାସଠାରୁ ଚତୁର୍ଥ ମାସ ମଧ୍ୟରେ ଶିଶୁ ଦ୍ୱିତୀୟ ପର୍ଯ୍ୟାୟ ମଧ୍ୟରେ ଗତିକରେ । ଏ ସମୟରେ ଶିଶୁ ଯେଉଁ ବ୍ୟବହାର ପ୍ରଦର୍ଶନ କରେ ତାହାକୁ ବୃତ୍ତୀୟ ପ୍ରତିକ୍ରିୟା ବା Circular reactions କୁହାଯାଇ ପାରେ । କେତେକ ଘଟଣା ଓ ପରିବର୍ତ୍ତିତ ପରିସ୍ଥିତିର ସମାହାରରେ ବୃତ୍ତୀୟ ପ୍ରତିକ୍ରିୟା ଗଠିତ ହୋଇଥାଏ । ପ୍ରଥମେ ଶିଶୁ କୌଣସି କାର୍ଯ୍ୟ କରିବାକୁ ଯାଇ ଅସଫଳ ହୁଏ । ଉଦାହରଣ ସ୍ୱରୂପ କୌଣସି ବସ୍ତୁକୁ ଧରିବାକୁ ଚେଷ୍ଟା କରିବା ସମୟରେ ତାହା ହାତରୁ ଖସିଯିବା । ଏହି ଅସଫଳତା ଯୋଗୁଁ ଶିଶୁ ପୁନର୍ବାର ନିଜ ଅଙ୍ଗଭଙ୍ଗୀର ପୁନରାବୃତ୍ତି କରେ ଏବଂ ସେହି କାର୍ଯ୍ୟରେ ସଫଳ ହେବାକୁ ଚେଷ୍ଟାକରେ । ଏହିପରି ଛନ୍ଦମୟ ଭାବରେ ଶିଶୁ ନିଜ ବ୍ୟବହାରର ପୁନଃ ପୁନଃ ପ୍ରଦର୍ଶନ କରିଥାଏ । ଏପରି କାର୍ଯ୍ୟ ଯୋଗୁଁ ଶିଶୁ ନୂତନ କାର୍ଯ୍ୟ ଶିକ୍ଷା କରେ ।

(ଗ) **ତୃତୀୟ ପର୍ଯ୍ୟାୟ** :—ଚତୁର୍ଥରୁ ଅଷ୍ଟମ ମାସ ମଧ୍ୟରେ ଶିଶୁର ବୃତ୍ତୀୟ-ପ୍ରତିକ୍ରିୟା ମୂଳକ କାର୍ଯ୍ୟକଳାପଗୁଡ଼ିକ ଅଧିକ ସଙ୍ଗଠିତ ଓ ସାବଲୀଳ ହୋଇଥାନ୍ତି । ଏହି ପର୍ଯ୍ୟାୟରେ ଶିଶୁର ଦୃଷ୍ଟି ନିଜ ଉପରୁ ଯାଇ ପରିବେଷ୍ଟନୀ ମଧ୍ୟରେ ବିଚରଣ କରେ । ପରିବେଷ୍ଟନୀ ମଧ୍ୟରୁ ହଠାତ୍ କୌଣସି ବସ୍ତୁ ତା'ର ନିକଟବର୍ତ୍ତୀ

ହେଲେ ଶିଶୁ ସେଥିପ୍ରତି କୌତୁହଳୀ ହୋଇଥାଏ । ଉଦାହରଣ ସ୍ୱରୂପ ଅଜାଣତରେ ଶିଶୁର ହାତ ବା ଗୋଡ଼ କୌଣସି ଝୁମୁକାକୁ ଆଘାତ କଲେ ଯେଉଁ ଶବ୍ଦ ସୃଷ୍ଟି ହୁଏ ଶିଶୁଟି ସେହି ଶବ୍ଦ ଯୋଗୁଁ ଝୁମୁକା ଦରକୁ ଆକୃଷ୍ଟ ହୁଏ । ସେ ପୁଣିଥରେ ଝୁମୁକାଟିକୁ ଆଘାତକରି ତା'ର ଶବ୍ଦ ଶୁଣିବାକୁ ଇଚ୍ଛାକରେ । ଏଥିପାଇଁ ଦୁଇଟି ବ୍ୟବହାର ଶୈଳୀ ଆବଶ୍ୟକ ହୁଏ । ଗୋଟିଏ ହେଉଛି ବସ୍ତୁକୁ ମୁଠାଇ ଧରିବାର ଶୈଳୀ ଓ ଅନ୍ୟଟି ଶୁଣିବାର କାର୍ଯ୍ୟ । ଏହି ଦୁଇଟି କାର୍ଯ୍ୟର ସମନ୍ୱୟରେ ଶିଶୁ ଝୁମୁକା ବଜେଇବା ଶୈଳୀ ଆୟତ୍ତ କରେ । ଦ୍ୱିତୀୟ ପର୍ଯ୍ୟାୟରେ ପ୍ରଦର୍ଶିତ ବିଭିନ୍ନ ପ୍ରକାର ଅସଙ୍ଗଠିତ ବ୍ୟବହାର ତୃତୀୟ ପର୍ଯ୍ୟାୟରେ ସଂଗଠିତ ହୋଇଥାଏ । ଶିଶୁର ଦୃଷ୍ଟି ଓ ଅଙ୍ଗଗୁଳକ ମଧ୍ୟରେ ଏହି ପର୍ଯ୍ୟାୟରେ ସମ୍ପର୍କ ସ୍ଥାପିତ ହୁଏ । ଏହି ସମୟରେ ଶିଶୁ ତା'ର ଦୃଷ୍ଟିରେ ପଡ଼ୁଥିବା ପ୍ରତ୍ୟେକ ବସ୍ତୁକୁ ଧରିବାକୁ ଚେଷ୍ଟାକରେ ।

**(ଘ) ଚତୁର୍ଥ ପର୍ଯ୍ୟାୟ** :—ଆଠ ମାସ ଠାରୁ ଏକ ବର୍ଷ ବୟସ ପର୍ଯ୍ୟନ୍ତ ଶିଶୁ ଚତୁର୍ଥ ପର୍ଯ୍ୟାୟ ମଧ୍ୟ ଦେଇ ଗତି କରିଥାଏ । ତୃତୀୟ ପର୍ଯ୍ୟାୟରେ ଶିଶୁ ନିଜ ନିକଟରେ ପାଉଥିବା ବସ୍ତୁକୁ ବ୍ୟବହାର କରିଥାଏ; କିନ୍ତୁ ଚତୁର୍ଥ ପର୍ଯ୍ୟାୟରେ ଶିଶୁ ଅନେକ ବସ୍ତୁ ପାଖରେ ପହଞ୍ଚିବାପାଇଁ ଚେଷ୍ଟାକରେ । ଅର୍ଥାତ୍ ଶିଶୁ ମଧ୍ୟରେ କରିବ ପ୍ରବୃତ୍ତି ବା କାର୍ଯ୍ୟ କରିବାର ଇଚ୍ଛା ସୃଷ୍ଟି ହୁଏ । ଏହି ପର୍ଯ୍ୟାୟରେ ଶିଶୁ ନିଜ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପାଇଁ ସମସ୍ତ ପ୍ରକାର ଚେଷ୍ଟାକରେ ଏବଂ ସବୁ ବାଧାବିଘ୍ନ ଦୂର କରିବାକୁ ଚେଷ୍ଟା କରିଥାଏ । ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହାସଲ କରିବାକୁ ଚେଷ୍ଟା କରୁଥିବାରୁ ପିଆଜେଙ୍କ ମତରେ ଶିଶୁ ମଧ୍ୟରେ ଏହି ପର୍ଯ୍ୟାୟରେ ବୁଦ୍ଧିମତ୍ତାର କଥିତ ଉଦ୍ରେକ ଘଟିଥାଏ ।

**(ଙ) ପଞ୍ଚମ ପର୍ଯ୍ୟାୟ** :—ବାର ମାସରୁ ଅଠର ମାସ ବୟସ ମଧ୍ୟରେ ଶିଶୁ ତା'ର ଜ୍ଞାନାତ୍ମକ ବିକାଶରେ ପଞ୍ଚମ ଉପ-ପର୍ଯ୍ୟାୟ ମଧ୍ୟରେ ଗତିକରେ । ଏହି ସମୟରେ ଶିଶୁ ନିଜ ଦ୍ୱାରା ଶିକ୍ଷା କରାଯାଇଥିବା ଉପାୟ ଅବଲମ୍ବନ କରି କୌଣସି ବସ୍ତୁ ନିକଟରେ ପହଞ୍ଚିବାକୁ ଚେଷ୍ଟାକରେ । ଫଳରେ ବସ୍ତୁ ଓ କାର୍ଯ୍ୟ ମଧ୍ୟରେ ଏକ ପ୍ରକାର ସମନ୍ୱୟ ସଂଗଠିତ ହୁଏ । ଏହି ପର୍ଯ୍ୟାୟରେ ଶିଶୁ କୌଣସି ବସ୍ତୁ ପାଇଲେ ତାକୁ ଭଲ ଭାବରେ ଦେଖି ତା'ର ରୂପ, ରଙ୍ଗ, ଓଜନ ଆଦି ବୁଝିବାକୁ ଚେଷ୍ଟାକରେ । ଫଳରେ ନୂତନ ବସ୍ତୁ ପ୍ରତି ତା' ମନରେ ଅନୁସନ୍ଧିତ୍ସା ଓ ଆଗ୍ରହ ଜାତ ହୁଏ । ଏହା ଛଡ଼ା ବାହ୍ୟ ଜଗତ ପ୍ରତି ପ୍ରତିକ୍ରିୟା ପ୍ରକାଶ କରିବାରେ ସେ ନିଜର ଅଜ୍ଞାତ ଅଭିଜ୍ଞତାକୁ କାର୍ଯ୍ୟରେ ଲଗାଏ । ଚତୁର୍ଥ ପର୍ଯ୍ୟାୟରେ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପାଇଁ ଶିଶୁ କେବଳ ତା'ର ନିକଟରେ ଥିବା ଅବଲମ୍ବନ ଗୁଡ଼ିକର ସାହାଯ୍ୟ ନେଉଥାଏ; କିନ୍ତୁ ପଞ୍ଚମ ପର୍ଯ୍ୟାୟରେ ସେ ନୂତନ ଉପାୟ ବିଷୟରେ ଚିନ୍ତାକରେ । ସଂକ୍ଷେପରେ କହିଲେ ଶିଶୁ ଏହି ପର୍ଯ୍ୟାୟରେ ପ୍ରଚେଷ୍ଟା-ପ୍ରମାଦ ଅଧ୍ୟୟନ (trial and error learning) ଶିକ୍ଷାକରେ ।

**(ଡ) ଷଷ୍ଠ ପର୍ଯ୍ୟାୟ** :—ଶିଶୁର ଅଠର ମାସଠାରୁ ଚବିଶ ମାସ ପର୍ଯ୍ୟନ୍ତ ବୟସକୁ ଷଷ୍ଠ ପର୍ଯ୍ୟାୟ ବୁଝାଯାଇ ପାରେ । ଏହି ସମୟ ମଧ୍ୟରେ ଶିଶୁ ପ୍ରଯତ୍ନ-ପ୍ରମାଦ ଉପାୟ ଅବଲମ୍ବନ ନକରି ଅନ୍ତର୍ଦୃଷ୍ଟି (insight) ଦ୍ୱାରା ସମସ୍ୟା ସମାଧାନ କରିବାକୁ ଚେଷ୍ଟାକରେ । ଏହି ନୂତନ ପ୍ରକାର ଅନ୍ତର୍ଦୃଷ୍ଟିପୂର୍ଣ୍ଣ ବ୍ୟବହାରକୁ ପ୍ରତିନିଧାନ (representation) ବୁଝାଯାଏ । ଏହି ଉପାୟରେ ଶିଶୁ ନିଜର ଶାରୀରିକ କାର୍ଯ୍ୟକୁ ନିୟନ୍ତ୍ରିତ କରି ଅନ୍ତର୍ନିହିତ ସୂଚନା ସାହାଯ୍ୟରେ ବାହ୍ୟ ବାଧା ବିଘ୍ନଗୁଡ଼ିକୁ ଦୂର କରିବାକୁ ପ୍ରଯତ୍ନ କରେ ।

ଏହିପରି ସମ୍ବେଦ୍ୟ-ପ୍ରେରକ ସମୟ ପର୍ଯ୍ୟାୟର ଛଅଟି ଉପ ପର୍ଯ୍ୟାୟ ମାଧ୍ୟମରେ ଶିଶୁ ପ୍ରତିବର୍ତ୍ତିକ୍ରିୟାରୁ ଆରମ୍ଭ କରି ସ୍ୱଚାଳିତ ଓ ପୁନଃସ୍ମରିତ କ୍ରିୟା ପର୍ଯ୍ୟନ୍ତ ବିକାଶ ଲାଭ କରିଥାଏ । ଏହାଛଡ଼ା ନିଜର ଇଚ୍ଛା ଓ ଲକ୍ଷ୍ୟ ପୂରଣ କରିବା ପାଇଁ ସେ ନିଜର ଅନ୍ତର୍ଦୃଷ୍ଟି ଓ ଅଭିଜ୍ଞତାକୁ କାର୍ଯ୍ୟରେ ଲଗାଇବା ପାଇଁ କିଛି ପରିମାଣରେ ସଫଳ ହୋଇଥାଏ ।

**(୨) ପ୍ରାକ୍-ସଂକ୍ରିୟାତ୍ମକ ସମୟ ପର୍ଯ୍ୟାୟ (The Pre-operational period)** :—ସମ୍ବେଦ୍ୟ-ପ୍ରେରକ ସମୟ ପର୍ଯ୍ୟାୟ ଶେଷବେଳକୁ ପ୍ରାକ୍ ସକ୍ରିୟାତ୍ମକ ସମୟ ପର୍ଯ୍ୟାୟ ଆରମ୍ଭ ହୋଇଯାଇଥାଏ । ଏହି ପର୍ଯ୍ୟାୟରେ ଶିଶୁ ଅଧିକ ଜଟିଳ ସମସ୍ୟା ଗୁଡ଼ିକ ମାନସିକ ପ୍ରତିନିଧାନ ଦ୍ୱାରା ସମାଧାନ କରିବାକୁ ଚେଷ୍ଟାକରିଥାଏ । ଏହି ସମୟ ମଧ୍ୟରେ ଶିଶୁର ମନରେ ବାହ୍ୟ-ଜଗତ ସମ୍ପର୍କରେ ଏକ ଧାରଣା ସୃଷ୍ଟି ହୁଏ ଏବଂ ନିଜର ବର୍ଦ୍ଧିତ ସାମର୍ଥ୍ୟ ସାହାଯ୍ୟରେ ସେ ନୂତନ ସୂଚନା ଓ ଅଭିଜ୍ଞତା ଗୁଡ଼ିକର ସମ୍ମୁଖୀନ ହୁଏ । ପ୍ରଥମେ ଏହି ଧାରଣା ଅହମ୍ କେନ୍ଦ୍ରିକ (ecocentric) ହୋଇଥାଏ । ଏକ ନିର୍ଦ୍ଦିଷ୍ଟ ବିଷୟ ପ୍ରତି ଶିଶୁ ମନରେ ଯେଉଁ ଧାରଣା ବଦ୍ଧମୂଳ ହୋଇଥାଏ ସେ ସେହି ଧାରଣା ଅନୁସାରେ କାର୍ଯ୍ୟକରେ । ଅନ୍ୟମାନଙ୍କର ସେହି ବିଷୟ ପ୍ରତି କି ଧାରଣା ରହିଛି ସେ ସମ୍ପର୍କରେ ସେ ଅନଭିଜ୍ଞ ଥାଏ । ନିଜର ଧାରଣା ଯେପରି ସମସ୍ତଙ୍କର ଧାରଣା ମଧ୍ୟ ଠିକ୍ ସେହିପରି ହୋଇଥିବାର ସେ ମନେକରେ । ଅବଶ୍ୟ ଏପରି ଅହମ୍ କେନ୍ଦ୍ରିକ ଭାବ ବନ୍ଧୁ, ବିଦ୍ୟାଳୟ ଆଦିର ସଂସ୍ପର୍ଶରେ ଆସି ଶିଶୁ ମନରୁ ଦୂର ହୋଇଥାଏ । କାରଣ ସେମାନେ ମଧ୍ୟ ନିଜ ନିଜ ମନୋଭାବ ବ୍ୟକ୍ତ କରନ୍ତି ଯାହା ପରସ୍ପରଠାରୁ ଭିନ୍ନ ହୋଇଥାଏ । ଏହି ପର୍ଯ୍ୟାୟରେ ଶିଶୁର ଚିନ୍ତାଧାରାକୁ ବୁଝିବା ପାଇଁ ପିଆଜେ 'ସଂରକ୍ଷଣ ସମସ୍ୟା' (conservation problem) ନାମକ ଏକ ଧାରଣାର ବ୍ୟାଖ୍ୟା କରିଥିଲେ ।

ତିନି ବର୍ଷରୁ ସାତ ବର୍ଷ ବୟସ ମଧ୍ୟରେ ଶିଶୁ ସଂରକ୍ଷଣ ଚିନ୍ତାଧାରା ଧାରଣ କରି ପାରେନାହିଁ । ପିଆଜେଙ୍କର ଏହି ଉଦ୍ଭାବନ ପ୍ରତି ଅନେକ ମନୋବିଜ୍ଞାନୀ ଆକୃଷ୍ଟ

ହୋଇଥିଲେ ଏବଂ ଅନେକ ପରୀକ୍ଷା ପରେ ମଧ୍ୟ ଏହି ତତ୍ତ୍ୱ ଠିକ ହୋଇଥିଲା । ସଂରକ୍ଷଣ ଚିନ୍ତାଧାରା କଣ ବୁଝିବା ପାଇଁ ଏକ ଉଦାହରଣ ଦିଆଯାଇ ପାରେ । ପଦାର୍ଥ ବିଜ୍ଞାନ ମତରେ ବିଶ୍ୱରେ ବସ୍ତୁର ପରିମାଣ ସର୍ବଦା ସମାନ । ଗୋଟିଏ ବସ୍ତୁ ବିଭିନ୍ନ ପରିସ୍ଥିତିରେ ଭିନ୍ନ ଭିନ୍ନ ରୂପରେ ପରିବର୍ତ୍ତିତ ହୋଇପାରେ ମାତ୍ର ସମସ୍ତ ବସ୍ତୁର ସାମଗ୍ରିକ ପରିମାଣ ନିର୍ଦ୍ଦିଷ୍ଟ ହୋଇଥାଏ । ଏହି ଭଳି ଏକ ଧାରଣା ମଧ୍ୟ ପ୍ରାୟ ସମସ୍ତ ପ୍ରାପ୍ତ ବୟସ୍କମାନେ ମନରେ ଧାରଣ କରିଥାନ୍ତି । ଧରିଯାଉ ଜଣେ ବ୍ୟକ୍ତି ଦଶକିଲୋ ଓଜନର ବାଲି ଗୋଟିଏ ବସ୍ତାରେ ଭର୍ତ୍ତିକରି ନେବା ସମୟରେ ବସ୍ତାଟି ଫାଟିଯାଇ ସମସ୍ତ ବାଲି ରାସ୍ତା ଉପରେ ବିଛେଇ ହୋଇ ପଡ଼ିଲା । ଏ କ୍ଷେତ୍ରରେ ବାଲିର ଆକାର ଓ ସ୍ଥାନ ପରିବର୍ତ୍ତନ ହୋଇଥିଲେ ମଧ୍ୟ ପରିମାଣ ସମାନ ରହିବ । ଅର୍ଥାତ୍ ରାସ୍ତା ଉପରେ ବିଛେଇ ହୋଇ ପଡ଼ିଥିବା ବାଲିର ପରିମାଣ ଠିକ୍ ସେହି ଦଶ କିଲୋ ବୋଲି ଯେ କେହି ପ୍ରାପ୍ତ ବୟସ୍କ କହିବେ । କିନ୍ତୁ ଆକାର ଓ ସ୍ଥାନ ପରିବର୍ତ୍ତନ ହେଲେ ମଧ୍ୟ ବସ୍ତୁର ସଂଖ୍ୟା ଓ ଦୈର୍ଘ୍ୟ ଯେ ଅପରିବର୍ତ୍ତିତ ରହେ ତାହା ପ୍ରାକ୍-ସଂକ୍ରିୟାତ୍ମକ ସମୟ ପର୍ଯ୍ୟାୟର ଶିଶୁ କେତେ ଧାରଣା କରିପାରେ ନାହିଁ । ଏହି ବୟସରେ ସଂରକ୍ଷଣର ନିୟମ ଶିଶୁ ପାଇଁ ବୋଧଗମ୍ୟ ହୁଏନାହିଁ । ଏହାର କାରଣ ବ୍ୟାଖ୍ୟା କରିବାକୁ ଯାଇ ପିଆଜେ ମତ ପ୍ରଦାନ କରିଛନ୍ତି ଯେ ଶିଶୁର ପ୍ରତ୍ୟକ୍ଷଣ (perception) ଉନ୍ନତ ହୋଇନଥିବାରୁ ସେ ବସ୍ତୁଟିଏ ଦେଖିବାମାତ୍ରେ ତା'ର ମାତ୍ର ଗୋଟିଏ ଦିଗ ଉପରେ ନଜର ଦୃଷ୍ଟି କେନ୍ଦ୍ରୀଭୂତ କରିଥାଏ । କୌଣସି ବସ୍ତୁର ଦୈର୍ଘ୍ୟ, ପ୍ରସ୍ଥ, ଉଚ୍ଚତା, ଓଜନ ଓ ରଙ୍ଗ ଆଦି ବିଭିନ୍ନ ଗୁଣ ମଧ୍ୟରୁ ମାତ୍ର ଗୋଟିଏ ବିଷୟ ଶିଶୁର ହୃଦ୍‌ବୋଧ ହୋଇଥାଏ । ସେହି ଗୁଣରେ ପରିବର୍ତ୍ତନ ଆସିଲେ ସମୁଦାୟ ବସ୍ତୁଟି ପରିବର୍ତ୍ତିତ ହୋଇଯାଇଥିବାର ଧାରଣା କରେ । ପିଆଜେଙ୍କ ମତରେ ଦୁଇ ବର୍ଷରୁ ସାତ ବର୍ଷ ମଧ୍ୟରେ ଶିଶୁକୁ ସଂରକ୍ଷଣ ଶିକ୍ଷା ଦିଆଯାଇ ନପାରେ କାରଣ ତା'ର ଜ୍ଞାନାତ୍ମକ ବିକାଶ ପ୍ରକୃଷ୍ଟ ସ୍ତରରେ ଉପନୀତ ହୋଇନଥାଏ ।

ପ୍ରାକ୍-ସଂକ୍ରିୟାତ୍ମକ ସମୟ ପର୍ଯ୍ୟାୟରେ ଶିଶୁ ଭାଷା ଶିକ୍ଷା କରିଥାଏ । ଏହା ଫଳରେ ସେ ଅତି ସରଳ ଭାଷାରେ କଥାବାର୍ତ୍ତା କରିପାରେ । କିନ୍ତୁ କାର୍ଯ୍ୟର ଅର୍ଥ ନିର୍ଣ୍ଣୟ କରିବା ତା ପକ୍ଷରେ କଠିନ ହୋଇଥାଏ । ବିଶେଷତଃ କୌଣସି କାର୍ଯ୍ୟର ବିପରୀତ କାର୍ଯ୍ୟ ସମ୍ବନ୍ଧରେ ତା'ର କୌଣସି ଜ୍ଞାନ ନଥାଏ । ଉଦାହରଣ ସ୍ୱରୂପ ଗୋଟିଏ ପଣସ୍ତ ପାତ୍ରରୁ ଏକ ନିର୍ଦ୍ଦିଷ୍ଟ ପରିମାଣର ଜଳ ଗୋଟିଏ ସଙ୍କୀର୍ଣ୍ଣ ପାତ୍ର ମଧ୍ୟକୁ ଢାଳିଦେଲେ ଶିଶୁ ଏହି ଦ୍ୱିତୀୟ ପାତ୍ରଟିରେ ଅଧିକ ଜଳ ଥିବାର ନିର୍ଣ୍ଣୟ କରେ ।

**(ଗ) ବାସ୍ତବ ଧର୍ମୀ ସଂକ୍ରିୟାର ସମୟ ପର୍ଯ୍ୟାୟ (The Period of concrete operations) :—**ସାତ ବର୍ଷ ଠାରୁ ଏଗାର ବର୍ଷ ବୟସ ମଧ୍ୟରେ

ଶିଶୁର ଚିନ୍ତାଧାରା ସଂଗଠିତ ଏବଂ ପ୍ରତ୍ୟକ୍ଷ ବିକେନ୍ଦ୍ରିତ ହୋଇଥାଏ । ଶିଶୁ ଏହି ବୟସରେ ରୂପାନ୍ତର (transformation) ଓ ବିପରୀତ କାର୍ଯ୍ୟ ସମ୍ପର୍କରେ ସଚେତ ହୋଇଥାଏ । ସଂରକ୍ଷଣର ଧାରଣା ମଧ୍ୟ ଏହି ସମୟରେ ତାର ଅନୁଭୂତ ହୋଇଥାଏ । କୌଣସି କାର୍ଯ୍ୟକୁ ସୁସଙ୍ଗଠିତ ଓ ସଂଯତ ଭାବରେ ସମ୍ପାଦନ କରିପାରିବା ଏହି ସମସ୍ତ ପର୍ଯ୍ୟାୟର ବିଶେଷତ୍ୱ । ଅନେକ ପ୍ରକାର ପ୍ରତିନିଧାନ (representation) ଯଥା ଯୋଗ, ବିୟୋଗ, ଗୁଣନ, ଶ୍ରେଣୀକରଣ ଆଦି କାର୍ଯ୍ୟ କରିବାକୁ ସେ ସକ୍ଷମ ହୁଏ । ଶିଶୁ ନିଜ ମନର ଅହମ୍ କେନ୍ଦ୍ରିକ ଭାବ ତ୍ୟାଗ କରି ନିଜ ଅନୁଭୂତିର ସପକ୍ଷ ଓ ବିପକ୍ଷ କାରଣ ଗୁଡ଼ିକ ବିଚାର କରିପାରେ । ବାହ୍ୟ ଜଗତ ସମ୍ପର୍କରେ ଶିଶୁ ମନର ଧାରଣା ପରିମାର୍ଜିତ ଓ ବିସ୍ତୃତ ହୋଇଥାଏ ।

ନିଜ ପରିବେଷ୍ଟନୀରେ ଥିବା ବିଭିନ୍ନ ବସ୍ତୁ ଓ ଘଟଣା ମଧ୍ୟରେ ଥିବା ସମ୍ପର୍କ ଶିଶୁ ବୁଝି ପାରିଲେ ମଧ୍ୟ ସେ ବିଷୟରେ ଅମୂର୍ତ୍ତ ପ୍ରକଳ୍ପ (abstract hypothesis) ଗଠନ କରିପାରେ ନାହିଁ । ବାସ୍ତବ ଘଟଣା ବ୍ୟତିରେକ କାଳ୍ପନିକ ଓ ଅବାସ୍ତବ ଘଟଣା ସେମାନଙ୍କର ବୋଧଗମ୍ୟ ହୁଏନାହିଁ । ତେଣୁ ଉଦ୍ଭଟ ସମସ୍ୟାଗୁଡ଼ିକ ସମାଧାନ କରିବାକୁ ସେମାନେ ସକ୍ଷମ ହୁଅନ୍ତି ନାହିଁ । ଉଦାହରଣ ସ୍ୱରୂପ ଏହି ବୟସ ସୀମା ମଧ୍ୟରେ କୌଣସି ଶିଶୁକୁ ଆର୍କିମିଡ଼ିସଙ୍କ ଭାସମାନର ନିୟମ ବୁଝାଇଲେ ସେ ବୁଝିପାରିବ ନାହିଁ କାରଣ 'ଆପେକ୍ଷିକତା' ଶବ୍ଦ ତା ପାଇଁ ଏକ ଅବାସ୍ତବ ଧାରଣା ରୂପେ ପ୍ରତୀୟମାନ ହେବ । ଟଙ୍କାଟିଏ ପାଣିରେ ପକାଇଲେ ଏହା ବୁଡ଼ିଯାଏ । ଏହାର କାରଣ ସ୍ୱରୂପ ସେ କହିବ ଯେ ଏହା ଧାତୁରେ ନିର୍ମିତ । କିନ୍ତୁ ସେହି ଧାତୁ ନିର୍ମିତ ଜାହାଜ କିପରି ଭାସେ ତାହା ଚିନ୍ତା କରିବାର ସାମର୍ଥ୍ୟ ଏହି ବୟସର ଶିଶୁର ନଥାଏ । ଫଳରେ ଏପରି ପ୍ରଶ୍ନ ତା ପାଇଁ ଅବାସ୍ତବ ବୋଧ ହୋଇଥାଏ ।

ବାସ୍ତବ ଧର୍ମୀ ସକ୍ରିୟାର ସମୟ ପର୍ଯ୍ୟାୟର କୌଣସି ଶିଶୁ ମନରେ ପୃଥିବୀର ଏକ ବାସ୍ତବ ଚିତ୍ର ଅଙ୍କିତ ହୋଇଥାଏ । କିନ୍ତୁ କୌଣସି ସମସ୍ୟା ସମାଧାନ କରିବା ପାଇଁ ତା ନିକଟରେ ଥିବା ସମସ୍ତ ବାସ୍ତବ ତଥ୍ୟ ଯେତେବେଳେ ବିଫଳ ହୁଅନ୍ତି ସେ କ୍ରମେ ଅବାସ୍ତବ ଚିନ୍ତନ (abstract thinking) ଆରମ୍ଭ କରେ । ଏହି ଅବାସ୍ତବ ବା ଅମୂର୍ତ୍ତ ଚିନ୍ତନ ତାର ଅନେକ ସମସ୍ୟା ସମାଧାନ କରିବା ସଙ୍ଗେ ସଙ୍ଗେ ଜ୍ଞାନାତ୍ମକ ବିକାଶ ସାଧନ କରିଥାଏ । କ୍ରମଶଃ ଶିଶୁ ଆକାରିକ ସକ୍ରିୟାର ସମୟ ପର୍ଯ୍ୟାୟରେ ପହଞ୍ଚିଥାଏ ।

(୪) ଆକାରିକ ସଂକ୍ରିୟାର ସମୟ ପର୍ଯ୍ୟାୟ (The period of fomal operations) :—ପ୍ରାକ୍ ଯୌବନର ଆରମ୍ଭରୁ ମନୁଷ୍ୟ ଅମୂର୍ତ୍ତ ସ୍ତରରେ

ଚିନ୍ତନ କରିପାରିବାର ସାମର୍ଥ୍ୟ ପ୍ରଦର୍ଶନ କରେ । ଘଟଣା ଓ ବସ୍ତୁର ପର୍ଯ୍ୟବେକ୍ଷଣ କରି ସେ ନିଜସ୍ୱ ପ୍ରକଳ୍ପ **(hypothesis)** ଗଠନ କରିପାରେ, ବାସ୍ତବ ଓ କାଳ୍ପନିକ ଘଟଣା ସମ୍ପର୍କରେ ଅନୁମାନ କରିପାରେ ଏବଂ ବାହ୍ୟ ଜଗତ ସମ୍ବନ୍ଧରେ ବ୍ୟକ୍ତିଗତ ନିୟମ ପ୍ରବର୍ତ୍ତନ କରିପାରେ । ପ୍ରାୟ ଏଗାର ବର୍ଷଠାରୁ ଏହି ପର୍ଯ୍ୟାୟ ଆରମ୍ଭ ହୋଇଥାଏ । ଏହି ସ୍ତରରେ ଶିଶୁ ବିଜ୍ଞାନ ସମ୍ମତ ପ୍ରଣାଳୀରେ ପରୀକ୍ଷା କରିବାର ସାମର୍ଥ୍ୟ ହାସଲ କରିଥାନ୍ତି । ପିଆଜେଙ୍କ ଦ୍ୱାରା ପ୍ରବର୍ତ୍ତିତ ଏକ ପେଣ୍ଡୁଲମ୍ ପରୀକ୍ଷା ଦ୍ୱାରା ଆକାରିକ ସଂକ୍ରିୟାର ସମୟ ପର୍ଯ୍ୟାୟର ଶିଶୁର ସାମର୍ଥ୍ୟ ପରୀକ୍ଷା କରାଯାଇପାରେ ।

**ପରୀକ୍ଷା** :—ଏହି ପରୀକ୍ଷାରେ ପରୀକ୍ଷଣ ପାତ୍ର **(Subject)** କୁ ଏକ ପେଣ୍ଡୁଲମ୍ ପ୍ରଦାନ କରାଗଲା । ଏହି ପେଣ୍ଡୁଲମଟି ହେଉଛି ଖଣ୍ଡିଏ ଦଉଡ଼ିର ଏକ ମୁଣ୍ଡରେ ବନ୍ଧାଯାଇଥିବା ଏକ ଓଜନିଆ ବସ୍ତୁ । ଦଉଡ଼ିର ଅନ୍ୟ ମୁଣ୍ଡକୁ ଧରି ଓଜନିଆ ବସ୍ତୁକୁ ଝୁଲାଇଲେ ସେଥିରେ ଦୋଳନ ସୃଷ୍ଟି ହୁଏ । ପରୀକ୍ଷଣ ପାତ୍ରକୁ ନିଜ ଇଚ୍ଛାନୁସାରେ ଦଉଡ଼ିର ଦୈର୍ଘ୍ୟ, ବସ୍ତୁର ଓଜନ ଝୁଲଣ ପାଇଁ ବଳ ପ୍ରୟୋଗ ପରିବର୍ତ୍ତନ କରିବାର ସ୍ୱାଧୀନତା ପ୍ରଦାନ କରାଗଲା । ଏହାଦ୍ୱାରା ତାକୁ ପ୍ରମାଣ କରିବାକୁ ହେବ ଯେ କେଉଁ କାରଣରୁ ପେଣ୍ଡୁଲମ୍‌ର ଦୋଳନ କ୍ଷିପ୍ରତର ହୁଏ । ଏହା ପଦାର୍ଥ ବିଜ୍ଞାନର ଏକ ସ୍ୱୀକୃତ ନିୟମ ଯେ ଦଉଡ଼ିର ଦୈର୍ଘ୍ୟ କମ୍‌ହେଲେ ଦୋଳନ କ୍ଷିପ୍ରତର ହୁଏ, ମାତ୍ର ପରୀକ୍ଷଣ ପାତ୍ରକୁ ପରୀକ୍ଷକ ଏ ସମ୍ପର୍କରେ କୌଣସି ସୂଚନା ନଦେଇ ଉକ୍ତ ନିୟମ ନିଜେ ପ୍ରମାଣ କରିବାକୁ ନିର୍ଦ୍ଦେଶ ଦେଲେ, ଏହି ସମସ୍ୟାଟି ଶିଶୁ ଯେଉଁଭଳି ସମାଧାନ କରିବ ତାହା ତାର ଆକାରିକ ସଂକ୍ରିୟାର ସମୟ ପର୍ଯ୍ୟାୟରେ ହୋଇଥିବା ଜ୍ଞାନାତ୍ମକ ବିକାଶକୁ ସୂଚିତ କରିବ ।

ବାସ୍ତବ ଧର୍ମୀ ସଂକ୍ରିୟା ସମୟ ପର୍ଯ୍ୟାୟର ଶିଶୁମାନେ ଏହି ସମସ୍ୟାଟିକୁ ବିଧିବଦ୍ଧ ଭାବରେ ସମାଧାନ କରିବାକୁ ବିଫଳ ହେଲେ ଏବଂ ଏ ଦିଗରେ ଚେଷ୍ଟା ବନ୍ଦ କରିଦେଲେ । ସମସ୍ୟା ସମାଧାନ ପାଇଁ ସେମାନଙ୍କ ଅସଂଗଠିତ ଚେଷ୍ଟା ଯୋଗୁଁ ସେମାନେ ଉତ୍ତରର କୌଣସି ସୂତ୍ର ପାଇ ପାରିଲେ ନାହିଁ । ଅନ୍ୟ ପକ୍ଷରେ ଆକାରିକ ସଂକ୍ରିୟାର ସମୟ ପର୍ଯ୍ୟାୟର ଶିଶୁ ସମସ୍ୟାଟିକୁ ସଂଗଠିତ ଓ ଶୃଙ୍ଖଳିତ ଭାବରେ ସମାଧାନ କରିବାକୁ ପ୍ରୟାସ କରିଥିଲେ । ପ୍ରଥମେ ସେ ପେଣ୍ଡୁଲମ୍‌ର ଦୋଳନକୁ ପ୍ରଭାବିତ କରୁଥିବା ପ୍ରତ୍ୟେକ ଉପାଦାନ ବିଷୟରେ ଚିନ୍ତାକଲା । ସେ ପେଣ୍ଡୁଲମ୍‌ରେ ଲାଗିଥିବା ଦଉଡ଼ିର ଦୈର୍ଘ୍ୟ, ବସ୍ତୁଟିର ଓଜନ, ପ୍ରୟୋଗ ବଳର ପରିମାଣ, ଭୂମିଠାରୁ ଉଚ୍ଚତା ଆଦି ପ୍ରତ୍ୟେକ ଉପାଦାନ ବିଷୟରେ ଚିନ୍ତା କରିବା ପରେ ସେଗୁଡ଼ିକ ବିଶ୍ଳେଷଣ କଲା । ଏହା ପରେ ଏ ସମ୍ପର୍କରେ ସେ ନିଜ ମନରେ ଏକ ନିର୍ଦ୍ଦିଷ୍ଟ ଧାରଣା ପୋଷଣ କଲା ଯାହାକି ତା ପାଇଁ ଏକ ପ୍ରକଳ୍ପ **(hypothesis)** ରୂପେ କାର୍ଯ୍ୟକଲା । ଏହି ପ୍ରକଳ୍ପ

ଗୁଡ଼ିକୁ ସେ ଭିନ୍ନ ଢଙ୍ଗରେ ପରୀକ୍ଷା କରିବାକୁ ଲାଗିଲା । ଗୋଟିଏ ପ୍ରକଳ୍ପ ଭୁଲ ପ୍ରମାଣିତ ହେଲେ ସେ ଅନ୍ୟ ଏକ ପ୍ରକଳ୍ପ ଗଠନ କରି ତାର ପରୀକ୍ଷା ନିରୀକ୍ଷା କରୁଥିଲା । ଏହି ପରୀକ୍ଷଣ ସମୟରେ ସେ ଗୋଟିଏ ଉପାଦାନକୁ ସ୍ଥିର ରଖି ଅନ୍ୟାନ୍ୟ ଉପାଦାନରେ ପରିବର୍ତ୍ତନ ଆଣି ଏହାର ପ୍ରଭାବ ଲକ୍ଷ୍ୟ କରୁଥିଲା । ଉଦାହରଣ ସ୍ୱରୂପ ୧୦୦ ଗ୍ରାମ୍‌ର ଗୋଟିଏ ବସ୍ତୁକୁ ଫୁଟିଏ ଲମ୍ବ ଦଉଡ଼ିରେ ଝୁଲାଇ ତାର ଦୋଳନ ମାପ କରିସାରିବା ପରେ ସେହି ୧୦୦ ଗ୍ରାମ୍‌ର ବସ୍ତୁକୁ ଫୁଟିଏ ଛୋଟ ଦଉଡ଼ିରେ ଝୁଲାଇ ତା'ର ଦୋଳନ ପରୀକ୍ଷା କରିଥିଲା । ତା ମନରେ ଏହି ଧାରଣା ଆସିଥିଲା ଯେ ଯଦି କୌଣସି ଦୁଇଟି ଉପାଦାନକୁ ଏକ ସମୟରେ ପରିବର୍ତ୍ତନ କରାଯାଏ ତେବେ ପରୀକ୍ଷାରୁ କୌଣସି ସିଦ୍ଧାନ୍ତ ଅହରଣ କରାଯାଇପାରିବ ନାହିଁ । ପିଆଜେଙ୍କ ପରୀକ୍ଷାରେ ପରୀକ୍ଷଣ ପାତ୍ରଟି ୧୬ ବର୍ଷ ବୟସର ଥିଲା । ବିଭିନ୍ନ ପରୀକ୍ଷା ନିରୀକ୍ଷା ପରେ ସେ ପ୍ରମାଣ କରିଥିଲା ଯେ ଦଉଡ଼ିର ଦୈର୍ଘ୍ୟ ପେଣ୍ଡୁଲମ୍ ଦୋଳନର କ୍ଷିପ୍ରତା ପାଇଁ ଦାୟୀ ।

ଆକାରିକ ସକ୍ରିୟାର ସମସ୍ତ ପର୍ଯ୍ୟାୟ ଶିଶୁମାନଙ୍କଠାରୁ କମ୍ ବୟସର ଶିଶୁମାନେ ମଧ୍ୟ ପେଣ୍ଡୁଲମ୍ ସମସ୍ୟାଟିର ସମାଧାନ କରିପାରିବାର ଦେଖାଗଲା, ମାତ୍ର ସେମାନଙ୍କୁ ଏ ସମ୍ପର୍କରେ ନାନା ସୂଚନା ଓ ନିର୍ଦ୍ଦେଶ ପ୍ରଦାନ କରିବାର ଆବଶ୍ୟକତା ପଡ଼ିଥିଲା । କିନ୍ତୁ ଜ୍ଞାନମୂଳକ ବିକାଶର ଏହି ସର୍ବଶେଷ ସ୍ତରରେ ଶିଶୁ ଏକ ବୈଜ୍ଞାନିକ ମନୋଭାବର ଅଧିକାରୀ ହୋଇଥାଏ । ଏହି ଅବସ୍ଥାରେ ବୁଦ୍ଧି ଯେପରି ମାର୍ଜିତ ଓ ବିକଶିତ ହୋଇଥାଏ ତାହା ଭବିଷ୍ୟତରେ ବିଜ୍ଞାନ ସମ୍ମତ ଅନୁଶୀଳନ ପାଇଁ ସେତେ ଅଧିକ ସାହାଯ୍ୟ କରିଥାଏ । ଏହି ସମୟରେ ମନୁଷ୍ୟର ଜ୍ଞାନାତ୍ମକ ବିକାଶର ସ୍ତର ସର୍ବାଧିକ ହୋଇଥାଏ ଓ ବୌଦ୍ଧିକ ପ୍ରଗତି ସର୍ବଶେଷ ସୀମାରେ ପହଞ୍ଚି ଥାଏ ।

**ପିଆଜେଙ୍କ ତତ୍ତ୍ୱର ମୂଲ୍ୟାଙ୍କନ** :—ଶିକ୍ଷା ମନୋବିଜ୍ଞାନୀମାନେ ପିଆଜେଙ୍କ ଜ୍ଞାନାତ୍ମକ ବିକାଶ ତତ୍ତ୍ୱର ଶିକ୍ଷାକ୍ଷେତ୍ରରେ ଉପାଦେୟତା ପ୍ରମାଣିତ କରିଛନ୍ତି । ଏହି ତତ୍ତ୍ୱ ଅନୁସାରେ ଶିଶୁ ଅମୂର୍ତ୍ତ ଓ ଅବାସ୍ତବ ଧାରଣା ଓ ଚିନ୍ତନର ଅଧିକାରୀ ହେବା ପୂର୍ବରୁ ତାକୁ ପ୍ରଚୁର ପରିମାଣରେ ପ୍ରତ୍ୟକ୍ଷ ଅଭିଜ୍ଞତା ହାସଲ କରିବାକୁ ହୋଇଥାଏ । ତେବେ ଯାଇ ଶିଶୁର ଯକୌଣସି ସମସ୍ୟା ସମାଧାନ କରିବାକୁ ପ୍ରସ୍ତୁତ ପୂର୍ଣ୍ଣତା ଲାଭ କରିଥାଏ । ବାସ୍ତବ ଧର୍ମୀ ସକ୍ରିୟାର ସମସ୍ତ ପର୍ଯ୍ୟାୟରେ ଥିବା ସମୟରେ ଶିଶୁ ଠାରୁ ଆକାରିକ ସକ୍ରିୟାର ସମସ୍ତ ପର୍ଯ୍ୟାୟ ଜନିତ କାର୍ଯ୍ୟ ଆଶାକରିବା ଉଚିତ ନୁହେଁ । ଅତ୍ୟଧିକ ପୁସ୍ତକ ପଠନ, ଶିକ୍ଷକଙ୍କ ଭାଷଣ ବା ମୌଖିକ ପରୀକ୍ଷା ଉପରେ ପର୍ଯ୍ୟବେଶିତ ପାଠ୍ୟକ୍ରମ ପ୍ରତି ପିଆଜେ ପ୍ରତିକୂଳ ମନୋଭାବ ପ୍ରଦର୍ଶନ କରିଥିଲେ ।

ଆମେରିକାର ମନୋବିଜ୍ଞାନୀ ବ୍ରୁନର (Jerome S. Baruner) ଜ୍ଞାନାତ୍ମକ ବିକାଶ ଉପରେ ଗବେଷଣା କରି ଶିଶୁର ଚିନ୍ତନ ବିକାଶକୁ ତିନୋଟି ଅବସ୍ଥାରେ ବିଭକ୍ତ

କରିଥିଲେ । ସେଗୁଡ଼ିକ ହେଉଛି କାର୍ଯ୍ୟ (action) କଳ୍ପନାଶ୍ରିତ ପ୍ରତିମା (image) ଏବଂ ଭାଷା ବା ଶବ୍ଦ (word) । ଏହି ତିନୋଟି ଅବସ୍ଥାର ବର୍ଣ୍ଣନା ପିଆଜେଙ୍କ ସମ୍ବେଦୀ ପ୍ରେରକ, ପ୍ରତ୍ୟକ୍ଷଣ ଓ ଅମୂର୍ତ୍ତ ଚିନ୍ତାଧାରାର ବର୍ଣ୍ଣନା ସହ ସାମ୍ୟତା ରକ୍ଷା କରିଥାଏ । ପିଆଜେ ନିଜର ସିଦ୍ଧାନ୍ତଗୁଡ଼ିକ ଗ୍ରହଣ କରିବା ପାଇଁ ଯେଉଁ ବସ୍ତୁ ଓ ଉପାୟ ଓ ଧାରାର ସାହାଯ୍ୟ ନେଇଥିଲେ ସେଗୁଡ଼ିକ ଗେସେଲ (Gesell)ଙ୍କ ଅନୁସୃତ ପ୍ରଣାଳୀର ଅନୁରୂପ ଏବଂ ସେହିପରି ପ୍ରଣାଳୀ ଶିଶୁମାନଙ୍କ ବୁଦ୍ଧି ପରିମାପକ ପରୀକ୍ଷାମାନଙ୍କରେ ମଧ୍ୟ ବ୍ୟବହୃତ ହୁଏ । ତେବେ ପିଆଜେଙ୍କ ସିଦ୍ଧାନ୍ତଗୁଡ଼ିକରେ ପରିସଂଖ୍ୟାନ (Statistics)ର ବ୍ୟବହାର କମ୍ ପରିଦୃଷ୍ଟ ହୁଏ । କାରଣ ଜ୍ଞାନାତ୍ମକ ବିକାଶର ଏକ ତତ୍ତ୍ୱ ନିର୍ଣ୍ଣୟ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା ।

ସମାଜର ଦୁଃସ୍ଥ ଓ ଦରିଦ୍ର ଶ୍ରେଣୀର ପରିବାରରୁ ଆସିଥିବା ଶିଶୁମାନଙ୍କ ଜ୍ଞାନାତ୍ମକ ବିକାଶ କ୍ଷେତ୍ରରେ ପିଆଜେଙ୍କ ତତ୍ତ୍ୱ ଏକ ମୂଲ୍ୟବାନ ମାଧ୍ୟମ । ତାଙ୍କ ମତରେ ଶିଶୁର ସମ୍ପ୍ରତ୍ୟୟାତ୍ମକ ବିକାଶ (Conceptual development) ପାଇଁ ପ୍ରାତ୍ୟକ୍ଷିକ-ପ୍ରେରଣ ଅନୁଭୂତି ଏବଂ କୌଣସି ବସ୍ତୁକୁ ପ୍ରତ୍ୟକ୍ଷଣ କରିବା ଓ ତାହାକୁ କାର୍ଯ୍ୟରେ ଲଗାଇବା ମଧ୍ୟରେ ସହଯୋଗ ସାମର୍ଥ୍ୟର ବିକାଶ ଏକାନ୍ତ ଆବଶ୍ୟକ । ଅନୁନ୍ନତ ଶ୍ରେଣୀର ଶିଶୁମାନଙ୍କର ଅଭିଜ୍ଞତା ଓ ଅନୁଭୂତି ବ୍ୟାପକ ହୋଇ ନଥିବାରୁ ପାଠ୍ୟ ପୁସ୍ତକର ବିଷୟବସ୍ତୁ ଓ ଶିକ୍ଷକଙ୍କ ଭାଷଣ ସେମାନଙ୍କ ବୋଧଗମ୍ୟ ହୋଇପାରେ-ନାହିଁ । ଅତଏବ ସେମାନଙ୍କର ପାଠ୍ୟ ପ୍ରସ୍ତୁତି ପଛୁଆ ହୋଇଥାଏ । ସେମାନଙ୍କୁ କୌଣସି ବିଷୟରେ ପ୍ରତ୍ୟକ୍ଷ ଅନୁଭୂତି ଅର୍ଜନ କରିବାକୁ ସୁଯୋଗ ପ୍ରଦାନକରି ତତ୍ସମ୍ପର୍କିତ ସମସ୍ୟା ସମାଧାନ କରିବାପାଇଁ ସ୍ୱାଧୀନ ଚିନ୍ତନର ସୁବିଧା ଯୋଗାଇ ଦିଆଗଲେ ସେମାନଙ୍କର ଜ୍ଞାନାତ୍ମକ ବିକାଶ ଉପଯୁକ୍ତ ସ୍ତରକୁ ସ୍ପର୍ଶ କରିପାରିବ ।

ପିଆଜେଙ୍କ ଦ୍ୱାରା ଅନୁସୃତ ଗବେଷଣା ପ୍ରଣାଳୀ ମନୋବିଜ୍ଞାନମାନଙ୍କ ଦ୍ୱାରା ଆଦୃତ ହୋଇ ନଥାଏ । ସେ ତାଙ୍କ ଦ୍ୱାରା ବ୍ୟବହୃତ ପ୍ରଣାଳୀର ପୁଙ୍ଖାନୁପୁଙ୍ଖ ବିବରଣୀ ପ୍ରଦାନ କରି ନଥିବାରୁ ସେଗୁଡ଼ିକର ପୁନଃ ପରୀକ୍ଷଣ କ୍ଷେତ୍ରରେ କେତେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥାଏ ।

**ଶିକ୍ଷା କ୍ଷେତ୍ରରେ ଜ୍ଞାନାତ୍ମକ ବିକାଶ ତତ୍ତ୍ୱର ଉପଯୋଗୀତା :—** ପିଆଜେଙ୍କ ତତ୍ତ୍ୱ ଅନ୍ୟ ସମସ୍ତ ମନୋବିଜ୍ଞାନଙ୍କ ମତବାଦ ଅପେକ୍ଷା ସର୍ବାଧିକ ଉପଯୋଗୀ ପ୍ରମାଣିତ ହୋଇଥାଏ । କାରଣ ଶିଶୁର ମାନସିକ ବିକାଶ ସମ୍ବନ୍ଧରେ ତାଙ୍କର ବର୍ଣ୍ଣନା ଅନ୍ୟମାନଙ୍କ ଅପେକ୍ଷା ଅଧିକ ବାସ୍ତବ ଧର୍ମୀ ଓ ପ୍ରମାଣିତ । କମେନିଅସ୍ (Commenius), ରୁଷୋ (Rousseaw), ପେଷ୍ଟାଲୋଜି, (Pestalozzi) ଆଦି

ଦାର୍ଶନିକମାନେ ଏକ ପ୍ରକାର ମତ ପ୍ରଦାନ କରିଥିଲେ ମଧ୍ୟ ଶିଶୁଙ୍କ ପରୀକ୍ଷଣ ପାଇଁ ସ୍ତରରେ ଗ୍ରହଣ କରି ପିଆଜେ ଅନୁଦୈର୍ଘ୍ୟ ଅଧ୍ୟୟନ **(Longitudinal Study)** ଦ୍ୱାରା ସିଦ୍ଧାନ୍ତଗୁଡ଼ିକ ଗ୍ରହଣ କରିଥିବାରୁ ତାହା ଅଧିକ ବିଜ୍ଞାନ ସମ୍ମତ ହୋଇଥାଏ । ତେଣୁ ପିଆଜେଙ୍କ ସିଦ୍ଧାନ୍ତଗୁଡ଼ିକୁ ବିଦ୍ୟାଳୟ କାର୍ଯ୍ୟକ୍ରମ ମଧ୍ୟରେ ଅନ୍ତର୍ଭୁକ୍ତ କରାଯାଇ କିଶୋର ଛାତ୍ରମାନଙ୍କୁ ଏକ ସଙ୍ଗଠିତ ବ୍ୟକ୍ତିତ୍ୱର ଅଧିକାରୀ କରାଯାଇ ପାରିବ । ବିଦ୍ୟାଳୟ ପରିପ୍ରେକ୍ଷୀରେ ପିଆଜେଙ୍କ ତତ୍ତ୍ୱର ଉପାଦେୟତା ସମ୍ବନ୍ଧରେ ବର୍ଣ୍ଣନା କରାଗଲା ।

କେତେକ ଶିକ୍ଷାବିତ୍ ପିଆଜେଙ୍କ ମତକୁ ଶିକ୍ଷା କ୍ଷେତ୍ରରେ ଏକ ଉତ୍କଟ ଉପାଗମ **(radical approach)** ଭାବରେ ମନେକରି ଥାନ୍ତି । ସେମାନଙ୍କ ମତରେ ପିଆଜେ ଯେଉଁ ପଦ୍ଧତିର ଅବତାରଣା କରିଛନ୍ତି ତାହା ପାରମ୍ପରିକ ଶିକ୍ଷା ଦାନ ପ୍ରଣାଳୀଠାରୁ ପୃଥକ୍ । କିନ୍ତୁ ବାସ୍ତବରେ ଶିକ୍ଷାକ୍ଷେତ୍ରରେ କୌଶଳ ଓ ଜ୍ଞାନ ଆହରଣ ପାଇଁ ପିଆଜେଙ୍କ ପ୍ରଦତ୍ତ ପ୍ରଣାଳୀ ପାରମ୍ପରିକ ପଦ୍ଧତିଠାରୁ ଯଥେଷ୍ଟ ଅଧିକ ପ୍ରଭାବଶାଳୀ । ତାଙ୍କ ପଦ୍ଧତିର ମୂଳ ତତ୍ତ୍ୱ ହେଲା ଶିକ୍ଷା ଦାନ ପଦ୍ଧତି ପ୍ରତ୍ୟେକ ସ୍ତରରେ ଛାତ୍ରର ଜ୍ଞାନାତ୍ମକ ବିକାଶ ସହିତ ସମନ୍ୱୟ ରକ୍ଷା କରିବା ଉଚିତ୍ । ଅର୍ଥାତ୍ ଏକ ନିର୍ଦ୍ଦିଷ୍ଟ ବୟସରେ ଶିଶୁ ଜ୍ଞାନାତ୍ମକ ବିକାଶର ଅନୁରୂପ ପାଠ୍ୟ ଖସଡ଼ା ବିଦ୍ୟାଳୟମାନଙ୍କରେ ଅନୁସୃତ ହେବା ଉଚିତ ।

ପିଆଜେଙ୍କ ମତରେ ଶିକ୍ଷା ଦାନ ପୂର୍ବରୁ ଶିକ୍ଷକ ଚାରୋଟି ମୌଳିକ ତଥ୍ୟ ପ୍ରତି ଦୃଷ୍ଟି ଦେବା ଉଚିତ୍ । ପ୍ରଥମତଃ ଶୈଶବର ତାତ୍ପର୍ଯ୍ୟ, ଦ୍ୱିତୀୟତଃ ବିକାଶର ନିୟମ, ତୃତୀୟତଃ ଶିଶୁର ଚିନ୍ତା ଧାରାର ଗଠନ ଓ ଚତୁର୍ଥରେ ଶିଶୁର ସାମାଜିକ ପରିବେଷ୍ଟନୀ ପ୍ରତି ପ୍ରତିକ୍ରିୟା । ଏହି ତଥ୍ୟଗୁଡ଼ିକ ଅନୁଶୀଳନ ନକଲେ ଶିକ୍ଷାଦାନ ଫଳପ୍ରଦ ହୁଏନାହିଁ । ଅପର ପକ୍ଷରେ ଏହି ତଥ୍ୟ ଗୁଡ଼ିକୁ ହୃଦୟଙ୍ଗମ କଲେ ପିଆଜେଙ୍କ ସିଦ୍ଧାନ୍ତଗୁଡ଼ିକୁ ଶିକ୍ଷା କ୍ଷେତ୍ରରେ ପ୍ରୟୋଗ କରିହେବ ।

ପିଆଜେଙ୍କ ତତ୍ତ୍ୱ ଶିକ୍ଷାର ପାରମ୍ପରିକ ଲକ୍ଷ୍ୟଗୁଡ଼ିକୁ ଗ୍ରହଣ କରିଥାଏ । କେବଳ ପାରମ୍ପରିକ ପଦ୍ଧତି ଗୁଡ଼ିକର ଦୋଷ ଦୁର୍ବଳତା ଦର୍ଶାଇ ତା' ବଦଳରେ ବିଜ୍ଞାନ ସମ୍ମତ ପ୍ରଣାଳୀ ଅବଲମ୍ବନ କରିବାପାଇଁ ଏହି ତତ୍ତ୍ୱ ପରାମର୍ଶ ପ୍ରଦାନ କରିଥାଏ ।

ପିଆଜେଙ୍କ ମତରେ ଶିଶୁ ଯଦି ତା'ର ପ୍ରତ୍ୟକ୍ଷଣ ଗୁଡ଼ିକୁ ସଙ୍ଗଠିତ ରୂପରେ ଗ୍ରହଣ କରି ନପାରେ ତେବେ ଏକ ପ୍ରକାର ଅସାମଞ୍ଜସ୍ୟ ଅବସ୍ଥା ସୃଷ୍ଟି ହେବ । ଏହି ଅସାମଞ୍ଜସ୍ୟ ଅତ୍ୟଧିକ ହୋଇଥିଲେ ଶିଶୁର ମନ ଏହା ସହିତ ସମାଯୋଜନ କରିପାରେ । ଏହି ପ୍ରକାର ସମଯୋଜନ ଯୋଗୁଁ ଶିକ୍ଷା ଲାଭ କରିବା ସମ୍ଭବ ହୋଇଥାଏ । ଏହିପରି ବିଭିନ୍ନ ଅସାମଞ୍ଜସ୍ୟଗୁଡ଼ିକୁ ସମାଯୋଜନ କରିବା ପଦ୍ଧତି ମାଧ୍ୟମରେ ମାନସିକ ସାମର୍ଥ୍ୟ

ପୁନର୍ଗଠିତ ହେବା ଫଳରେ ଏକ ନୂତନ ସ୍ୱସାମ୍ୟ ବା ସନ୍ତୁଳନ ଜନ୍ମ ନିଏ । ଅତଏବ ପ୍ରତ୍ୟକ୍ଷଣ ଜନିତ ଅସାମଞ୍ଜସ୍ୟ ଶିକ୍ଷାକୁ ପ୍ରଗତିଶୀଳ କରିଥାଏ । ଅତଏବ ଶିକ୍ଷକ ଶିକ୍ଷାର ପରିବେଶକୁ ଏପରି ସଜ୍ଜିତ କରିବା ଉଚିତ୍ ଯାହା ଫଳରେ ଶିଶୁ ସମକ୍ଷରେ ପ୍ରତ୍ୟକ୍ଷଣ ଜନିତ ଅସାମଞ୍ଜସ୍ୟ ଦେଖାଦେବ । ଏହି ଅସାମଞ୍ଜସ୍ୟଗୁଡ଼ିକୁ ଆତ୍ମୀକରଣ କରିବା ଶିଶୁପାଇଁ ଏକ ସମସ୍ୟାର ରୂପ ନେବ । ଉକ୍ତ ସମସ୍ୟାର ସମାଧାନ କରିବାକୁ ଯାଇ ସେ ଜ୍ଞାନ ଲାଭ କରିବ । ଶିଶୁର ମାନସିକ ଗଠନ ସହିତ ଶିକ୍ଷା ପରିବେଶ ଓ ପାଠ୍ୟ ଖସଡ଼ା ସମ୍ପୂର୍ଣ୍ଣ ରୂପେ ଖାପ୍ ଖାଇଗଲେ ଶିଶୁ ଏଥିରୁ କୌଣସି ଶିକ୍ଷା ଲାଭ କରିପାରେ ନାହିଁ । ଅନ୍ୟ ପକ୍ଷରେ ଶିକ୍ଷା ପରିବେଶ ତାହାର ମାନସିକ ଗଠନ ସହ ଆଦୌ ମେଳ ନଥିଲେ ଶିଶୁ ଶିକ୍ଷା ଲାଭ କରିପାରେ ନାହିଁ । ଅତଏବ ଶିକ୍ଷାଗତ ପରିବେଷ୍ଟନୀ ତାହାର ଅଭିଜ୍ଞତାର ସମ୍ପୂର୍ଣ୍ଣ ସଦୃଶ ବା ଅସଦୃଶ ହେବା ଉଚିତ୍ ନୁହେଁ । ଏକ ନୂତନ ପରିସ୍ଥିତି ସହ ସମାଯୋଜନ କରିବା ସମୟରେ ତାହା କେତେକ ଜଟିଳ ପରିସ୍ଥିତିର ସମ୍ମୁଖୀନ ହେଲେ ତାକୁ ମାର୍ଗ ଦର୍ଶାଇ ଦିଆଯିବା ଉଚିତ୍ ।

ପିଆଜେ ଶିଶୁର ସମଗ୍ର ଜ୍ଞାନାତ୍ମକ ବିକାଶକୁ ଚାରିଟି ସ୍ତରରେ ବିଭକ୍ତ କରିଛନ୍ତି । ତାହା ଗୋଟିଏ ସ୍ତରର ପ୍ରାରମ୍ଭ ବା ଅଧାଂଶରେ ଥିବା ସମୟରେ ତାକୁ ଉଚ୍ଚତର ସ୍ତରର ବ୍ୟବହାର ଶିକ୍ଷାଦେଲେ ତାହା ନିଷ୍ଫଳ ହୋଇଥାଏ । ସମୟ ସମୟରେ ଶିକ୍ଷକ ତାହାଠାରୁ ତା'ର ଉଚ୍ଚତର ସ୍ତରର ପ୍ରଶ୍ନର ସଠିକ୍ ଉତ୍ତର ପାଇପାରନ୍ତି କିନ୍ତୁ ସେହି ଉତ୍ତର ତାହାର ହାର୍ଦ୍ଦିକ ବୁଝାମଣା ଉପରେ ପ୍ରତିଷ୍ଠିତ ନୁହେଁ । ନିଜ ସ୍ତରଠାରୁ ଉଚ୍ଚସ୍ତରର ପାଠ ତାହା ଆୟତ୍ତ କଲେ ମଧ୍ୟ ସେହି ସ୍ତରରେ ନ ପହଞ୍ଚିବା ପର୍ଯ୍ୟନ୍ତ ସେ ସେହି ଲବ୍ଧ ଜ୍ଞାନକୁ ବାସ୍ତବ ପରିସ୍ଥିତିରେ ଉପଯୋଗ କରିପାରେ ନାହିଁ କିମ୍ବା ଉକ୍ତ ପ୍ରଶିକ୍ଷଣର ସଫଳତା ସମ୍ଭବ ହୁଏନାହିଁ । ତେଣୁ ଶିକ୍ଷକ ତାହାର ଜ୍ଞାନାତ୍ମକ ବିକାଶର ସ୍ତର ଅନୁସାରେ ବିଭିନ୍ନ ତଥ୍ୟ ଅନୁଶୀଳନ କରାଇ ତାର ଅଭିଜ୍ଞତାକୁ ପରିପୁଷ୍ଟ କରାଇବା ଉଚିତ୍ । ଏହା ପରବର୍ତ୍ତୀ ଉଚ୍ଚତର ସ୍ତରପାଇଁ ମୂଳଭିତ୍ତି ଭାବରେ କାର୍ଯ୍ୟକରେ ।

ପିଆଜେଙ୍କ ମତରେ ଶିକ୍ଷାଦାନ ପ୍ରତ୍ୟେକ ସ୍ତରରେ ତାହାର କାର୍ଯ୍ୟକଳାପର ଅନୁରୂପ ହେବା ଉଚିତ୍ । ଶିଶୁର କଥା କହିବା, ପଢ଼ିପାରିବା ଇତ୍ୟାଦିରେ ଉନ୍ନତି ଘଟିଲେ ଜ୍ଞାନାତ୍ମକ ବିକାଶ କ୍ଷିପ୍ରତର ହୁଏନାହିଁ । ଏହା ଶିଶୁର ଆଚରଣରୁ ପ୍ରତୀୟମାନ ହୁଏ । ତେଣୁ ଶିକ୍ଷାଦାନ ଶିଶୁର ଆଚରଣ, ବ୍ୟବହାର ଓ କାର୍ଯ୍ୟକଳାପକୁ ପ୍ରଭାବିତ କରିବା ଉଚିତ୍ । କିନ୍ତୁ ଶିଶୁ ଆଚରଣ ଅନୁକରଣୀୟ ନହୋଇ ସ୍ୱତଃସ୍ଫୂର୍ତ୍ତ ହେବା ଆବଶ୍ୟକ । ତାର ଆନ୍ତରିକ ଅନ୍ତଃପ୍ରେରଣ(Motivation)ଓ ଦୀକ୍ଷା(Initiation)ରୁ ବ୍ୟବହାର ଗୁଡ଼ିକ ସୃଷ୍ଟି ହେବା ବାଞ୍ଛନୀୟ । ଶିକ୍ଷକ କେବଳ ଏପରି ପରିସ୍ଥିତି ଓ ପରିବେଷ୍ଟନୀ ସୃଷ୍ଟି କରିବେ ଯାହା ଶିଶୁର ମାନସିକ ସାମର୍ଥ୍ୟକୁ ଅଭିପ୍ରେରିତ କରିବ ।

ସେମାନଙ୍କୁ ଉପଯୁକ୍ତ ସମୟରେ ଯଥାଯଥ ଉପକରଣ ସବୁ ଯୋଗାଇଦେବା ଆବଶ୍ୟକ । ଶିକ୍ଷକ ଦଳଗତ କାର୍ଯ୍ୟକ୍ରମ ଗୁଡ଼ିକ ସଂଗଠନ ; ପରିବେଷ୍ଟନୀର ଆୟୋଜନକାରୀ ; ଶିଶୁର ଚିନ୍ତନର ପରିମାପକର୍ତ୍ତା ଓ ଉପକରଣ ଯୋଗାଣକାରୀ ଭାବରେ କାର୍ଯ୍ୟକରିବା ଉଚିତ୍ । ଶିକ୍ଷା ଦାନକୁ ଶିଶୁ-କୈନ୍ଦ୍ରିକ କରାଯିବା ଉଚିତ୍ । ଆରୋହଣ ଓ ଅବରୋହଣ ପ୍ରଣାଳୀ ଅବଲମ୍ବନ କରିବା ସଙ୍ଗେ ସଙ୍ଗେ ଶିକ୍ଷକ ଶ୍ରେଣୀ ଗୃହରେ ମାର୍ଗ ଦର୍ଶନ କାରୀ ଓ ଉଦ୍ଭାବନ କାରୀ ଶିକ୍ଷା ପ୍ରଦାନ କରିବା ଉଚିତ୍ ।

କେଉଁ କେଉଁ କାର୍ଯ୍ୟକ୍ରମ ମାଧ୍ୟମରେ ଶିଶୁର ଜ୍ଞାନାତ୍ମକ ବିକାଶର ସ୍ତରକୁ ଉନ୍ନତ ଓ ପରିମାର୍ଜିତ କରାଯାଇପାରିବ ତାହା ନିମ୍ନରେ ଆଲୋଚନା କରାଗଲା ।

(୧) ଆଦ୍ୟ ଯୌବନ ବା କିଶୋର ଅବସ୍ଥାରେ ଅନେକ ଶାରୀରିକ ପରିବର୍ତ୍ତନ ସଂଗଠିତ ହୁଏ । ଏହି ବୟସ ଶରୀର ଚର୍ଚ୍ଚାର ଉପଯୁକ୍ତ ସମୟ । ତେଣୁ ଶାରୀରିକ ଶକ୍ତିର ଉପଯୁକ୍ତ ବିନିଯୋଗ ଓ ବିକାଶ ପାଇଁ ବିଦ୍ୟାଳୟମାନଙ୍କର ବାସ୍ତବିକ କାର୍ଯ୍ୟ ସବୁ କରାଯିବା ଉଚିତ୍ । ଏହାଛଡା ଉପଯୁକ୍ତ ସମୟାନ୍ତରରେ କିଶୋର ମାନଙ୍କର ସ୍ୱାସ୍ଥ୍ୟ ପରୀକ୍ଷା କରାଯାଇ ସ୍ୱାସ୍ଥ୍ୟରକ୍ଷାର ନିୟମ ଗୁଡ଼ିକ ଶିକ୍ଷା ଦିଆଯିବା ଆବଶ୍ୟକ ।

( ) ଦୁସ୍ଥ ଓ ଅବହେଳିତ ସାମାଜିକ ପରିବେଷ୍ଟନୀରୁ ଆସିଥିବା ଛାତ୍ରମାନେ ସାଧାରଣତଃ ଆର୍ଥିକ ଦାରିଦ୍ର୍ୟର ଶିକାର ହୋଇଥାନ୍ତି । ସେମାନଙ୍କ ଶାରୀରିକ ଓ ସ୍ୱାସ୍ଥ୍ୟଗତ ବିକାଶପାଇଁ ଉପଯୁକ୍ତ ଖାଦ୍ୟର ବ୍ୟବସ୍ଥା କରାଯିବା ଆବଶ୍ୟକ । ଗୋଟିଏ ସୁସ୍ଥ ମନ କେବଳ ଗୋଟିଏ ସୁସ୍ଥ ଶରୀର ମଧ୍ୟରେ ବାସ କରିପାରେ । ଅତଏବ ବିଦ୍ୟାଳୟରେ ଶାରୀରିକ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ସବୁ ପ୍ରକାର ବ୍ୟବସ୍ଥା କରାଯିବା ଉଚିତ୍ ।

(୩) କିଶୋରାବସ୍ଥାରେ ଛାତ୍ରମାନେ କେତେକ ସମସ୍ୟା ଯୋଗୁଁ ଭାରାକ୍ରାନ୍ତ ଓ ବିଚଳିତ ହୋଇଥାନ୍ତି । ସେଥିମଧ୍ୟରୁ ଯୌନ ସମସ୍ୟା ଅନ୍ୟତମ । ତେଣୁ ଉପଯୁକ୍ତ ଯୌନ ଶିକ୍ଷା ଆଦର୍ଶବାଦ ଓ ନୈତିକତା ଶିକ୍ଷାଦେଇ ସେମାନଙ୍କ ମଧ୍ୟରେ ବିପରୀତ ଲିଙ୍ଗୀ ମାନଙ୍କପ୍ରତି ସୁସ୍ଥ ମନୋଭାବ ସୃଷ୍ଟି କରିବା ବିଧେୟ ।

(୪) ବିଦ୍ୟାଳୟର ସର୍ବ ପ୍ରଧାନ କାର୍ଯ୍ୟ ହେଲା ଛାତ୍ରକୁ ଉତ୍ତମ ଆଚରଣ ଗତ ପରିବେଷ୍ଟନୀ ଯୋଗାଇଦେବା । ଏହାଦ୍ୱାରା ସେମାନଙ୍କର ମାନସିକ ବିକାଶ ସମ୍ଭବ ହୁଏ । ଏଥିପାଇଁ ବିଦ୍ୟାଳୟରେ ପାଠାଗାର, ଆଲୋଚନା ଚକ୍ର ଓ ସମାଜ ସେବାର ସୁଯୋଗ ରହିବା ଉଚିତ । କିଶୋର ବୟସର ସମସ୍ତ ଆବଶ୍ୟକତା ପ୍ରତି ବିଦ୍ୟାଳୟ ପରିବେଶ ମଧ୍ୟରେ ଦୃଷ୍ଟି ପ୍ରଦାନ କରାଯିବା ଉଚିତ୍ ।

(୫) ଶିଶୁମାନଙ୍କ ମଧ୍ୟରେ ସୃଜନଶୀଳତାର ବିକାଶ ପାଇଁ ସମସ୍ତ ପ୍ରକାର ସୁଯୋଗ ପ୍ରଦାନ କରାଯିବା ଉଚିତ୍ । ତେଣୁ ବାଦ୍ୟ, ସଙ୍ଗୀତ, ନୃତ୍ୟ, କଳା ଓ କାରିଗରି ବିଦ୍ୟାର ସମସ୍ତ ବ୍ୟବସ୍ଥା ବିଦ୍ୟାଳୟରେ ରହିବା ଉଚିତ୍ । ବିଭିନ୍ନ ଛାତ୍ରଙ୍କର ପୃଥକ୍ ଚିନ୍ତାଧାରା ସବୁକୁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ନିଜ ବ୍ୟବହାର ଓ ଶିକ୍ଷା ଦାନ ମାଧ୍ୟମରେ ଶିକ୍ଷକ ନିଜକୁ ଏକ ଆଦର୍ଶ ରୂପେ ପ୍ରଦର୍ଶିତ କରିବା ଆବଶ୍ୟକ । ଜୀବନ ପ୍ରତି ଅସ୍ତିବାଚକ ମନୋବୃତ୍ତି ଗ୍ରହଣ କରିବାରେ ଛାତ୍ରମାନଙ୍କୁ ଶିକ୍ଷକ ଉତ୍ସାହିତ କରିବା ଉଚିତ୍ ।

(୬) ଛାତ୍ରମାନଙ୍କୁ ସେମାନଙ୍କର ସମସ୍ତ ବ୍ୟକ୍ତିଗତ, ଶିକ୍ଷାଗତ ଓ ବୈଷୟିକ ସମସ୍ୟା ସମାଧାନ କରିବା ପାଇଁ ମାର୍ଗ ଦର୍ଶନ ମିଳିବା ଉଚିତ୍ ।

ପିଆଜେ ତାଙ୍କ ଦ୍ୱାରା ନିର୍ଣ୍ଣୀତ ଜ୍ଞାନାତ୍ମକ ବିକାଶର ବିଭିନ୍ନ ସ୍ତର ଗୁଡ଼ିକରେ ପ୍ରଥମେ ବାସ୍ତବ ଧର୍ମୀ ସକ୍ରିୟାର ସମସ୍ତ ପର୍ଯ୍ୟାୟ ଓ ପରେ ଆକାରିକ ସକ୍ରିୟାର ସମସ୍ତ ପର୍ଯ୍ୟାୟର ଅବତାରଣା କରିଛନ୍ତି । ବାସ୍ତବ ଧର୍ମୀ ସଂକ୍ରିୟାର ସମସ୍ତ ପର୍ଯ୍ୟାୟ ଛାତ୍ରପାଇଁ ଅଭିଜ୍ଞତା ଅର୍ଜ୍ଜନ କରିବାର ସମୟ । ଏହି ସମୟରେ ଅର୍ଜ୍ଜିତ ଅନୁଭୂତି ଗୁଡ଼ିକ ପରବର୍ତ୍ତୀ ସମୟରେ ଅମୂର୍ତ୍ତ ଚିନ୍ତନକୁ ସାହାଯ୍ୟ କରେ । ଅତଏବ ପିଆଜେଙ୍କ ମତରେ ପ୍ରତ୍ୟେକ ବିଷୟରେ ପ୍ରଥମେ ବାସ୍ତବ ଅଭିଜ୍ଞତା ଅର୍ଜ୍ଜନ କରି ପରେ ସେ ବିଷୟରେ ଚିନ୍ତନ କରାଯାଇପାରେ ।

ଶେଷରେ ଏତିକି କୁହାଯାଇପାରେ ଯେ ଶିକ୍ଷା ଏକ ବସ୍ତୁ ଉତ୍ପାଦନକାରୀ ମେସିନ ନୁହେଁ । ମନୋବିଜ୍ଞାନର ଶିକ୍ଷାକ୍ଷେତ୍ରରେ ପ୍ରୟୋଗ ଏକ ପରିକଳ୍ପନା ପ୍ରସୂତ ବ୍ୟବସ୍ଥା, କୌଣସି ତତ୍ତ୍ୱ ପ୍ରଣୀତ ହେଲାପରେ ନିର୍ଦ୍ଦ୍ୱନ୍ଦରେ ତାହାକୁ ବାସ୍ତବ କ୍ଷେତ୍ରରେ ପ୍ରୟୋଗ କରିହୁଏ ନାହିଁ । ଅର୍ଥାତ୍ ଏହି ତତ୍ତ୍ୱ ଯେ ବାସ୍ତବ କ୍ଷେତ୍ରରେ ପ୍ରମାଣିତ ହେବ ତାର କୌଣସି ନିଶ୍ଚିତତା ନଥାଏ । ପିଆଜେ ତାଙ୍କ ତତ୍ତ୍ୱକୁ ଶିକ୍ଷା କ୍ଷେତ୍ରରେ ଉପଯୋଗ କରିଯିବା ଉଦ୍ଦେଶ୍ୟରେ ପ୍ରଣୟନ କରିନଥିଲେ । ଅତଏବ ଜଣେ ଶିକ୍ଷକ ତାହାକୁ ପାଠକରି ତାହା କିପରି ଭାବରେ ଶିଶୁ ଶିକ୍ଷା କ୍ଷେତ୍ରରେ ପ୍ରୟୋଗ କରାଯାଇପାରିବ ତାହା ନିର୍ଣ୍ଣୟ କରିବା ଉଚିତ୍ । ଏଥିପାଇଁ ପିଆଜେଙ୍କ ତତ୍ତ୍ୱ ଅପେକ୍ଷା ଶିକ୍ଷକଙ୍କ ଆଚରଣ ଅଧିକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ଶିଶୁ ମାନଙ୍କର ଜ୍ଞାନାତ୍ମକ ବିକାଶରେ ବ୍ୟକ୍ତିଗତ ଓ ସାଂସ୍କୃତିଗତ ପ୍ରଭେଦ ପରିଲକ୍ଷିତ ହୁଏ । ଏହି ପ୍ରଭେଦ ଗୁଡ଼ିକୁ ଶିକ୍ଷକ ଉତ୍ତମ ଭାବରେ ଅନୁଶୀଳନ କରିବା ଉଚିତ୍ । ଏହାଦ୍ୱାରା ଶିଶୁର ଅନ୍ତର୍ନିହିତ ସାମର୍ଥ୍ୟର ସର୍ବୋତ୍ତମ ବିକାଶ ଘଟିପାରେ । ମନୋବିଜ୍ଞାନର ନିୟମ ଗୁଡ଼ିକୁ ଶିକ୍ଷକ ଯାନ୍ତ୍ରିକ ଭାବରେ ପ୍ରୟୋଗ ନକରି ଛାତ୍ରର ଅଭିଜ୍ଞତା, ସାଂସ୍କୃତିକ ପରିବେଶ ଓ ମାନସିକ ସାମର୍ଥ୍ୟକୁ ବିଚାର କରି ତାର ଜ୍ଞାନାତ୍ମକ ବିକାଶର ସ୍ତର ନିର୍ଣ୍ଣୟ କରିବା ଉଚିତ୍ ।

# ଅଷ୍ଟମ ଅଧ୍ୟାୟ

## ସାମାଜିକ ଓ ନୈତିକ ବିକାଶ

## (Social and Moral Development)

ମନୁଷ୍ୟ ତା'ର ବ୍ୟକ୍ତିତ୍ୱର ସାମାଜିକତା ଗୁଣ ଯୋଗୁଁ ଇତର ପ୍ରାଣୀମାନଙ୍କଠାରୁ ଅଧିକ ସଭ୍ୟ ଓ ବୁଦ୍ଧିମାନ ଭାବେ ଗଣ୍ୟ ହୋଇଥାଏ । କେବଳ ଯେ ଅନ୍ୟ ପ୍ରାଣୀମାନଙ୍କଠାରୁ ନିଜର ଉତ୍କର୍ଷ ପ୍ରତିପାଦନ ପାଇଁ ସାମାଜିକତା ଆବଶ୍ୟକ ହୋଇଥାଏ ତା ନୁହେଁ ବରଂ ବ୍ୟକ୍ତି ନିଜର ସାମାଜିକ ଆଚରଣ ଯୋଗୁଁ ସମାଜରେ ଉତ୍ତମ ସମଯୋଜନ କରିବା ସଙ୍ଗେ ସଙ୍ଗେ ପ୍ରଭାବଶାଳୀ ସାମାଜିକ ସମ୍ପର୍କ ମଧ୍ୟ ପ୍ରତିଷ୍ଠା କରିଥାଏ । ମନୋବୃତ୍ତି, ଅଭ୍ୟାସ ଓ କୌଶଳ ଆଦି ବାଲ୍ୟ ଅବସ୍ଥାରେ ଗଠିତ ହୋଇ ପରିବେଷ୍ଟନୀ ପ୍ରତି ବ୍ୟକ୍ତିର ବୈଶଦିକ ପ୍ରତିକ୍ରିୟାର ଶୈଳୀ ନିର୍ଦ୍ଧାରଣ କରନ୍ତି । ଶିଶୁର ତା'ର ବୟସ୍କମାନଙ୍କ ପ୍ରତି ସମ୍ମାନ, କନିଷ୍ଠ ମାନଙ୍କ ପ୍ରତି ସ୍ନେହ, ବନ୍ଧୁ ମାନଙ୍କ ପ୍ରତି ସୌହାର୍ଦ୍ଦ୍ୟ, ଅପରିଚିତ ମାନଙ୍କ ପ୍ରତି ମେଳାପୀ ବ୍ୟବହାର ଇତ୍ୟାଦି ଗୁଣଗୁଡ଼ିକ ଗୃହର ପ୍ରଶିକ୍ଷଣ ଓ ବିଦ୍ୟାଳୟରେ ଶିକ୍ଷା ଲାଭ ସମୟରେ ବିକାଶ ଲାଭ କରିବା ବ୍ୟକ୍ତିତ୍ୱ ଉପରେ ନିର୍ଭର କରେ । ଏହି ସମୟରେ ବ୍ୟକ୍ତିତ୍ୱରେ ସାମାଜିକତାର ମାତ୍ରା ଯେତିକି ଅଧିକ ହୋଇଥାଏ ଶିଶୁ ତା'ର ପରିବେଷ୍ଟନୀ ସେତିକି କମ୍ ସମସ୍ୟାର ସମ୍ମୁଖୀନ ହୋଇଥାଏ । ତେଣୁ ଉଭୟ ଗୃହ ଓ ବିଦ୍ୟାଳୟ ଶିଶୁର ସାମାଜିକ ବ୍ୟକ୍ତିତ୍ୱର ବିକାଶରେ ପ୍ରମୁଖ ଅଂଶ ଗ୍ରହଣ କରିଥାନ୍ତି ।

ସାମାଜିକ ବିକାଶ ଦୃଷ୍ଟିକୋଣରୁ ବିଚାର କଲେ ଶିଶୁର ବାଲ୍ୟ ଜୀବନ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ଏହି ସମୟ ମଧ୍ୟରେ ତା'ର ସାମାଜୀକରଣ ଆରମ୍ଭ ହୋଇଥାଏ ଏବଂ ପରିବେଶରେ ଥିବା ବ୍ୟକ୍ତିମାନଙ୍କ ସହିତ ପାରସ୍ପରିକ କ୍ରିୟା ମାଧ୍ୟମରେ ସେ ଯେଉଁ ସାମାଜିକ ଅଭ୍ୟାସ ଓ ମନୋବୃତ୍ତି ଗୁଡ଼ିକ ଆହରଣ କରେ ତାହା ତା'ର ଆଜୀବନ ପରିଦୃଷ୍ଟ ହୁଏ । ଅତଏବ ଶିଶୁର ସାମାଜିକ ବ୍ୟକ୍ତିତ୍ୱ କିପରି ବିକଶିତ ହୁଏ ଏବଂ କେଉଁ କେଉଁ ଉପାଦାନ ଏହାର ଅନ୍ତର୍ଭୁକ୍ତ ସେ ସଂପର୍କୀୟ ଜ୍ଞାନ ଶିକ୍ଷକମାନଙ୍କ ପାଇଁ ଏକାନ୍ତ ଅପରିହାର୍ଯ୍ୟ ।

ଜନ୍ମ ସମୟରେ ଶିଶୁ ସାମାଜିକ; ଅସାମାଜିକ କିମ୍ବା ସମାଜ ବିରୋଧୀ ନଥାଏ । ପରବର୍ତ୍ତୀ କାଳରେ ସେ ଯେଉଁ ପରିବେଷ୍ଟନୀ ଓ ଅଭିଜ୍ଞତା ମଧ୍ୟଦେଇ ଗତିକରେ ସର୍ବଶେଷରେ ତା'ର ବ୍ୟକ୍ତିତ୍ୱ ସେହି ଅନୁସାରେ ଗଠିତ ହୋଇଥାଏ । ପ୍ରାକ୍ ବିଦ୍ୟାଳୟ ପ୍ରବେଶ ସମୟକୁ ଶିଶୁର ଆତ୍ମକୈନ୍ଦ୍ରିକ ଭାବ ପ୍ରାୟ ନଥାଏ । ବରଂ ସେ ନିଜ ପରିବେଷ୍ଟନୀର ବସ୍ତୁ, ବ୍ୟକ୍ତି ଓ ଘଟଣାମାନଙ୍କ ପ୍ରତି ଆଗ୍ରହ ପ୍ରକାଶ କରିଥାଏ । ଦଳୀୟ କାର୍ଯ୍ୟକ୍ରମ ଗୁଡ଼ିକରେ ସେ ଅଂଶ ଗ୍ରହଣ କରେ । କୌଣସି ବସ୍ତୁକୁ ସମସ୍ତଙ୍କ ମଧ୍ୟରେ ବଣ୍ଟନ କରିବା, ସହଯୋଗ, ବନ୍ଧୁତା, ସାମାଜିକ ପାରସ୍ପରିକ କ୍ରିୟା, ନେତୃତ୍ୱ ଆଦି ସ୍ୱରଚିକ ଗୁଣଗୁଡ଼ିକ ତା'ର ବ୍ୟବହାରରେ ପରିଦୃଷ୍ଟ ହୁଏ । ପୂର୍ବୋକ୍ତ ବିଭିନ୍ନ ଉପାଦାନ ସହ ଶିଶୁର ଅଭିଜ୍ଞତା ବର୍ଦ୍ଧିତ ହେବା ସଙ୍ଗେ ସଙ୍ଗେ ଏହି ଗୁଣଗୁଡ଼ିକ ବଦ୍ଧମୂଳ ହୋଇଥାନ୍ତି ।

ଶିଶୁର ସାମାଜିକ ବିକାଶକୁ ପ୍ରଭାବିତ କରୁଥିବା ଉପାଦାନ ଗୁଡ଼ିକ ମଧ୍ୟରୁ ବିଦ୍ୟାଳୟର ଭୂମିକା ସ୍ୱତନ୍ତ୍ର । ବିଦ୍ୟାଳୟ ମୌଳିକ ଭାବରେ ଗୋଟିଏ ସାମାଜିକ ଅନୁଷ୍ଠାନ । ଏହାକୁ ଏକ କ୍ଷୁଦ୍ର ସମାଜ କହିଲେ ଅତ୍ୟୁକ୍ତି ହେବନାହିଁ । ତେଣୁ ସମସ୍ତ ସାମାଜିକ ସଦ୍‌ଗୁଣ ଧାରଣ କରି ବିଦ୍ୟାଳୟ ବାହ୍ୟ ସମାଜର ଏକ ନମୁନା ରୂପେ କାର୍ଯ୍ୟ କରିପାରେ । ବିଦ୍ୟାଳୟ ଶିଶୁ ପାଇଁ କେତେ ପ୍ରଭାବଶାଳୀ ହୋଇପାରିବ ତାହା ଶିକ୍ଷକଙ୍କ ଉପରେ ନିର୍ଭର କରେ ।

**ନୈତିକ ବିକାଶ ଓ ତାର ଅର୍ଥ** :—ଠିକ୍ ଓ ଭୁଲର ବିଚାର ମନୁଷ୍ୟର ଏକ ପ୍ରଧାନ ବୈଶିଷ୍ଟ୍ୟ । ପଶୁ ଓ ନିମ୍ନ ସ୍ତରର ପ୍ରାଣୀମାନଙ୍କ ଠାରେ ଏହି ଗୁଣଟି ଦୃଷ୍ଟିଗୋଚର ହୁଏନାହିଁ । ଠିକ୍ ଭୁଲ ଜାଣିବା ପାଇଁ ମନୁଷ୍ୟ ନିଜର ବିଚାର ଶକ୍ତି ପ୍ରୟୋଗ କରେ । ନିଜର ନୈତିକ ଉଦ୍ଦୀପନା ଏହି ବିଚାର ଶକ୍ତିର ମୌଳିକ ଉତ୍ସ । ଶାରୀରିକ ଓ ମାନସିକ ବିକାଶ ସହିତ ପ୍ରଶିକ୍ଷଣ ଓ ଅଭିଜ୍ଞତା ମନୁଷ୍ୟର ନୈତିକତାର ମାନକୁ ଉନ୍ନତ କରିଥାଏ । ଦୈନନ୍ଦିନ ଜୀବନର ବିଭିନ୍ନ ପ୍ରକାର ଅନୁଭୂତିରୁ ମନୁଷ୍ୟ ଭଲ ମନ୍ଦ ସମ୍ପର୍କରେ ଧାରଣା ସଂଗ୍ରହ କରେ । ସେ ଅନୁଭୂତି ଯୋଗେ ଜାଣିପାରେ କେଉଁଟି ସମାଜ ଦ୍ୱାରା ଗୃହୀତ ଓ କେଉଁଟି ଅସାମାଜିକ । ଚରିତ୍ର ନିର୍ମାଣ ପ୍ରଥମେ ପରିବାର ଓ ପରେ ପାରିପାର୍ଶ୍ୱିକ ଅବସ୍ଥା ଦ୍ୱାରା ପ୍ରଭାବିତ ହୁଏ । ସାଧୁତା, ସଙ୍ଗଠିତ କାର୍ଯ୍ୟକଳାପ ସତ୍ୟବାଦୀତା, ନ୍ୟାୟପରାୟଣତା ଏବଂ ଯୌନ ଏବଂ ଅନ୍ୟାନ୍ୟ ବିଷୟରେ ଆତ୍ମ ସଂଯମତା ଆଦି ଗୁଣ ଶିଶୁ ସମାଜ ସହିତ ପାରସ୍ପରିକ କ୍ରିୟା ଯୋଗୁଁ ଅର୍ଜନ କରେ । ଶିଶୁ ନିକଟରେ ଥିବା ପରିବାର ଓ ସମାଜର ବ୍ୟକ୍ତିମାନଙ୍କର କାର୍ଯ୍ୟକଳାପ ତା'ର ବ୍ୟବହାରକୁ ପ୍ରଭାବିତ କରେ ।

ନୈତିକ ବ୍ୟବହାର ପ୍ରଦର୍ଶନ ପାଇଁ ଶିଶୁକୁ କେତେକ ଆବେଗ ନିୟନ୍ତ୍ରଣ କରିବାକୁ ପଡ଼େ ଏବଂ କେତେକ ଆନନ୍ଦ ଓ ଲାଭ ପ୍ରଦାୟକ କାର୍ଯ୍ୟକଳାପକୁ ଅବଦମନ କରିବାକୁ ହୁଏ । କିନ୍ତୁ ଜୀବନର ପାର୍ଥିବ ଆନନ୍ଦ ଓ ସନ୍ତୁଷ୍ଟି ଲାଭ ଆଶାରେ ସମୟ ଓ ସୁଯୋଗ ଦେଖି ଶିଶୁ ସାମାଜିକ ନିୟନ୍ତ୍ରଣର ସୀମା ରେଖା ଅତିକ୍ରମ କରିଯିବାକୁ ଚେଷ୍ଟାକରେ । ଏହିପରି ପରସ୍ପର ବିପରୀତ ଧର୍ମୀ ମନୋଭାବର ଉପସ୍ଥିତି ଯୋଗୁଁ ଚରିତ୍ର ନିର୍ମାଣ ପଦ୍ଧତି ଅପେକ୍ଷାକୃତ ଧୀର ଓ କଠିନ ହୋଇଥାଏ । ତେଣୁ ସାବଧାନତା ସହକାରେ ଓ କ୍ରମାଗତ ଭାବରେ ଜୀବନରେ ଠିକ୍ ନିଷ୍ପତ୍ତି ଗ୍ରହଣ କରିବା ପାଇଁ ଶିଶୁକୁ ଆବଶ୍ୟକମତେ ସାହାଯ୍ୟ କରାଯିବା ଉଚିତ୍ । ଜଟିଳ ସମସ୍ୟା ଗୁଡ଼ିକର ସମାଧାନ ପାଇଁ ବିବେକର ଜାଗ୍ରତ ମନୁଷ୍ୟକୁ ସାହାଯ୍ୟ କରେ । ଗୃହରେ ଓ ବିଦ୍ୟାଳୟରେ ଉଚ୍ଚ ଓ ମହତ୍ ଚରିତ୍ରର ଉଦାହରଣ ପ୍ରଦାନ କରି ଶିଶୁର ନୈତିକ ମାନ ଉନ୍ନତ କରାଯାଇପାରେ । ଏହାଦ୍ୱାରା ତା ମନରେ ପବିତ୍ର ଇଚ୍ଛା ଓ ସାମାଜିକ ଲକ୍ଷ୍ୟ ସୃଷ୍ଟି ହୁଏ । ସାଧାରଣତଃ ମନୁଷ୍ୟ ମାନଙ୍କ ଚରିତ୍ରରେ ନୈତିକତାର ଦୁଇଟି ସ୍ତର ରହୁଥିବାରୁ ତାହାର ପ୍ରଭାବରେ ଶିଶୁର ଚରିତ୍ର ଗଠନ ଦ୍ୱନ୍ଦ ଓ ଜଟିଳତାର ସମ୍ମୁଖୀନ ହୁଏ । ଆମେ ଯାହା କହୁ ତାହା କାର୍ଯ୍ୟରେ କରୁନା । ବ୍ୟକ୍ତିଗତ ଓ ସାମାଜିକ ଜୀବନରେ ଆମେ ପୃଥକ୍ ବ୍ୟବହାର ପ୍ରଦର୍ଶନ କରୁ । ଆମ ବ୍ୟବହାରର ଦୁଇ ପ୍ରକାର ରୂପକୁ ଶିଶୁ ପ୍ରଥମେ ଆଶ୍ଚର୍ଯ୍ୟର ସହିତ ଅନୁଶୀଳନ କରେ ଓ ପରେ ଅନୁକରଣ କରିବାକୁ ଚେଷ୍ଟାକରେ । ଫଳରେ ପରେ ବିଦ୍ୟାଳୟରେ ଦିଆଯାଉଥିବା ନୈତିକ ଶିକ୍ଷା ତା ପାଇଁ ଉପହାସର ଉପାଦାନ ହୋଇଥାଏ ।

ଏହା ଲକ୍ଷ୍ୟ କରାଯାଇଛି ଯେ ନୈତିକ ଚେତନା ମନୁଷ୍ୟର ଜନ୍ମଗତ ନୁହେଁ । ଜନ୍ମ ସମୟରେ ମନୁଷ୍ୟ ଶିଶୁ ନୈତିକତା ବା ଅନୈତିକତା ପ୍ରଦର୍ଶନ କରେ ନାହିଁ । ବରଂ ସେ ସମୟରେ ତାକୁ ନନୈତିକ ବା **amoral** କୁହାଯାଇପାରେ । ଅର୍ଥାତ୍ ନୈତିକତା ସହିତ ତା ବ୍ୟବହାରର କୌଣସି ସଂପର୍କ ନଥାଏ । ପର ଜୀବନରେ ସାମାଜିକ ପରିବେଷ୍ଟନୀ ମଧ୍ୟରେ ବିଭିନ୍ନ ଅନୁଭୂତ ଓ ପରିସ୍ଥିତିର ପ୍ରଭାବରେ ଶିଶୁ ନୈତିକତା ବା ଅନୈତିକତା ଶିକ୍ଷା କରିଥାଏ । ଏଥିରୁ ସ୍ପଷ୍ଟ ଜଣାପଡ଼େ ଯେ ନୈତିକତା ବା ଅନୈତିକତା ଆହରଣ କରିବା ପାଇଁ ଶିଶୁ ମଧ୍ୟରେ ବୀଜଭୂତ ଯୋଗ୍ୟତା ବା **Potential ability** ରହିଥାଏ, ସର୍ବଶେଷରେ ସେ କେଉଁ ପ୍ରକାରର ଚରିତ୍ରର ଅଧିକାରୀ ହେବ ତାହା ତାର ଅଭିଜ୍ଞତା ଓ ପ୍ରଶିକ୍ଷଣ ଉପରେ ନିର୍ଭର କରେ । ନୈତିକ ବିକାଶର ଉଭୟ ଜ୍ଞାନାତ୍ମକ ଓ କ୍ରିୟାତ୍ମକ ଦିଗଥାଏ । ତେଣୁ ଉଭୟ ଦିଗରେ ନୈତିକ ବିକାଶ ସାଧନ ପାଇଁ ଚେଷ୍ଟା କରାଯିବା ଉଚିତ୍ ।

**ସାମାଜିକ ଓ ନୈତିକ ବିକାଶ ମାଧ୍ୟମରେ ସମ୍ପର୍କ :**—ନୈତିକ ବିକାଶ ସାମାଜିକ ବିକାଶର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ । କ'ଣ ଠିକ୍ କ'ଣ ଭୁଲ ତାହା

ସାମାଜିକ ପରିପ୍ରେକ୍ଷୀରେ ବିସ୍ତୃତ କରିଯାଏ । ପ୍ରତ୍ୟେକ ସାମାଜିକ ଗୋଷ୍ଠୀର ଏକ ନୈତିକ ମାନଦଣ୍ଡ ଥାଏ । ସମାଜ ମଧ୍ୟରେ ବ୍ୟକ୍ତି ରହି ଏହି ନୈତିକ ମାନଦଣ୍ଡ ଅନୁସାରେ ନିଜର ବ୍ୟବହାରକୁ ସଙ୍ଗଠିତ ଓ ଶୃଙ୍ଖଳିତ କରିଥାଏ । ବିକାଶଲାଭ କରିବା ସହିତ ଶିଶୁ କ୍ରମଶଃ ତା'ର ସମାଜର ଲୋକ ପ୍ରଥା, ସ୍ଥିର ଓ ମୌଳିକ ମୂଲ୍ୟକୁ ଗ୍ରହଣ କରିଥାଏ ଏବଂ ସେହି ଅନୁସାରେ ନିଜର ଚରିତ୍ର ନିର୍ମାଣ କରେ । ସମାଜ ସହିତ ଉତ୍ତମ ସମଯୋଜନ ନିମିତ୍ତ ସେ ନିଜ ଇଚ୍ଛା ଓ ପ୍ରବୃତ୍ତିଗୁଡ଼ିକ ଉପରେ ଆବଶ୍ୟକୀୟ ନିୟନ୍ତ୍ରଣ ଜାରି କରେ । କିନ୍ତୁ ଯେତେବେଳେ ଅଧିକାଂଶ ବ୍ୟକ୍ତି ସମାଜର ପ୍ରଚଳିତ ପ୍ରଥାକୁ ଅବମାନନା କରନ୍ତି ଅଥଚ ସେଥିପାଇଁ ସେମାନଙ୍କୁ କୌଣସି କ୍ଷତି ସହ୍ୟ କରିବାକୁ ପଡ଼ୁନାହିଁ ବା ଦଣ୍ଡ ଭୋଗ କରିବାକୁ ପଡ଼ୁନାହିଁ ସେତେବେଳେ ଶିଶୁର ଆତ୍ମ ସଂଯମ ଓ ଆତ୍ମ ନିୟନ୍ତ୍ରଣରେ ଶିଥିଳତା ଦେଖାଦିଏ ।

ଶିଶୁର ସାମାଜିକ ଓ ନୈତିକ ବିକାଶ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ନୈତିକତାର ଇଂରାଜୀ ଶବ୍ଦ **Moral** ଲାଟିନ ଶବ୍ଦ **'Mores'**ରୁ ଉତ୍ପତ୍ତି ଲାଭ କରିଛି । ଏହାର ଅର୍ଥ ବ୍ୟବହାର, ପ୍ରଥା ବା ଲୋକାଚାର । ନୈତିକ ବିକାଶର ଦୁଇଟି ଦିଗ ରହିଛି । ଗୋଟିଏ ଅସ୍ତିବାଚକ ଓ ଅନ୍ୟଟି ନାସ୍ତିବାଚକ । ଅସ୍ତିବାଚକ ଦିଗଟି ସାମାଜିକ ବିକାଶ ସହିତ ସମ୍ପୃକ୍ତ ଓ ନାସ୍ତିବାଚକ ଦିଗଟି ସାମାଜିକ ପ୍ରଥା ଓ ରୀତି-ନୀତିର ବିରୁଦ୍ଧା-ଚରଣ କରେ । ଏ ପ୍ରକାର ଆଚରଣକୁ ଅନୈତିକ ବ୍ୟବହାର କୁହାଯାଏ । ଅନୈତିକ ଆଚରଣ ପ୍ରଦର୍ଶନ କରୁଥିବା ବ୍ୟକ୍ତି ଯେ ସମାଜର ପ୍ରଚଳିତ ପ୍ରଥା ପ୍ରତି ଅଜ୍ଞଥାଏ ତା' ନୁହେଁ ବରଂ ସେ ଇଚ୍ଛାକୃତ ଭାବେ ସାମାଜିକ ରୀତିଗୁଡ଼ିକୁ ଅବମାନନା କରେ କିମ୍ବା ସାମାଜିକ ପ୍ରଥା ପ୍ରତି ତାର ଅନୁରକ୍ତି ନଥାଏ । କିନ୍ତୁ ଅଣ-ନୈତିକ ବା ନୀତି-ବିହୀନ କାର୍ଯ୍ୟକଳାପ ଶିଶୁ ନିଜର ଅଜ୍ଞତା ଯୋଗୁଁ ପ୍ରଦର୍ଶନ କରିଥାଏ ।

ନୈତିକତା ସାମାଜିକତା ସହ ଯୁକ୍ତ ହେବାଯୋଗୁଁ ଶିଶୁ ଦାୟିତ୍ୱପୂର୍ଣ୍ଣ ଭାବରେ କାର୍ଯ୍ୟ ନିର୍ବାହ କରିଥାଏ । ମନରେ ଦାୟିତ୍ୱ ବୋଧ ସୃଷ୍ଟି ହେବା ଦ୍ୱାରା ଶିଶୁ ତା'ର ସମାଜ ବା ଗୋଷ୍ଠୀର ମଙ୍ଗଳକାରୀ କାର୍ଯ୍ୟ କରିବାପାଇଁ ଚେଷ୍ଟାକରେ । ଫଳରେ ତା'ର ବ୍ୟକ୍ତିଗତ କାମନା ଓ ଲାଭ ଗୌଣ ହୋଇଯାଏ । ଶାରୀରିକ ବିକାଶ ସହିତ ଶିଶୁର ବ୍ୟବହାରରେ ସାମାଜିକତା ଓ ନୈତିକତା ମଧ୍ୟରେ ସମ୍ପର୍କ ନିବିଡ଼ ହେବାର ପରିଲକ୍ଷିତ ହୁଏ । ତେଣୁ ଶିଶୁର ବିଭିନ୍ନ ବୟସରେ ପ୍ରଦର୍ଶିତ ସାମାଜିକ ଓ ନୈତିକ ବ୍ୟବହାରର ବର୍ଣ୍ଣନା ନିମ୍ନରେ କରାଗଲା ।

(୧) **ଶୈଶବ** :—ଶୈଶବରେ ଶିଶୁର ଚିନ୍ତାଧାରା ବିକଶିତ ହୋଇ ନଥାଏ । ତା'ର ବିବେକ ଓ ନୈତିକତାର ମାନଦଣ୍ଡ ଗଠିତ ହୋଇ ନଥାଏ । ତେଣୁ

ଠିକ୍ ଓ ଭୁଲ୍ କିମ୍ବା ଭଲ ଓ ମନ୍ଦ ମଧ୍ୟରେ ପାର୍ଥକ୍ୟ ନିର୍ଣ୍ଣୟ କରିବା ତା ପକ୍ଷରେ ସମ୍ଭବ ହୁଏ ନାହିଁ । ତେଣୁ ଏ ସମୟରେ ଶିଶୁର ବ୍ୟବହାରକୁ ନୀତି ରହିତ ନୈତିକ ନୀତି-ଶୂନ୍ୟ କୁହାଯାଇ ପାରେ । ଏହି ସମୟରେ ଶିଶୁ ଯେଉଁ କାର୍ଯ୍ୟ କରେ ସେଗୁଡ଼ିକ ଇଚ୍ଛାକୃତ ନୁହେଁ । ସମାଜ ତା' ଠାରୁ କପଟ ବ୍ୟବହାର ଆଶାକରେ ତାହା ସେ ବୁଝିପାରୁ ନଥିବାରୁ ଏ ସମୟରେ ନୈତିକତା ଓ ସାମାଜିକତାର ସମ୍ପର୍କ ପ୍ରତିଷ୍ଠା ହୋଇପାରେ ନାହିଁ । କିନ୍ତୁ ପ୍ରାୟ ଦୁଇ ବର୍ଷ ବୟସ ବେଳକୁ ଯଦି ପିତା ମାତା ଶିଶୁର ଆବଶ୍ୟକତା ପ୍ରତି ଅନୁକୂଳ ମନୋଭାବ ପ୍ରଦର୍ଶନ କରି ତା' ପାଇଁ ସ୍ନେହଶୀଳ, ପ୍ରତିକ୍ରିୟାଶୀଳ ଓ ସମ୍ବେଦନଶୀଳ ହୋଇପାରନ୍ତି ତେବେ ଶିଶୁ ପୃଥିବୀକୁ ଏକ ବନ୍ଧୁତ୍ୱପୂର୍ଣ୍ଣ ଓ ନିରାପଦ ସ୍ଥାନ ଭାବରେ ଗ୍ରହଣ କରେ । ସେ ପିତା ମାତା ତଥା ସମାଜର ଅନ୍ୟ ବ୍ୟକ୍ତିମାନଙ୍କ କାର୍ଯ୍ୟକଳାପକୁ ଆଗ୍ରହର ସହିତ ଲକ୍ଷ୍ୟ କରେ ଏବଂ ତାହା ଅନୁକରଣ କରିବା ଆରମ୍ଭକରେ । ଫଳରେ ଶିଶୁ ତାର ଅଜ୍ଞାତରେ ସମାଜରୁ ନୈତିକତାର ଶିକ୍ଷା ଲାଭ କରିଥାଏ ।

(୨) **ବିଦ୍ୟାଳୟକୁ ଯିବାର ପୂର୍ବବର୍ତ୍ତୀ ସମୟ** :—ଶିଶୁ ନୈତିକ ବ୍ୟବହାର ପ୍ରଦର୍ଶନ କରିବା ପୂର୍ବରୁ ସମାଜ ଦ୍ୱାରା ଅନୁମୋଦିତ ପ୍ରଥାଗୁଡ଼ିକ ବିଷୟରେ ଜ୍ଞାନ ଅର୍ଜନ କରିବା ଆବଶ୍ୟକ । ଏହା ସେ ପିତା ମାତା, ବୟସ୍କ, ଓ ସାଙ୍ଗସାଥୀ ମାନଙ୍କ ଠାରୁ ଅନୁକରଣ, ତଦାତ୍ମୀକରଣ (Identification) ବା ପ୍ରଶିକ୍ଷଣ ମାଧ୍ୟମରେ ଅର୍ଜନ କରିଥାଏ । ବିଦ୍ୟାଳୟକୁ ପ୍ରବେଶ କରିବା ପୂର୍ବରୁ କେତେକ ସରଳ ପରିସ୍ଥିତିରେ ଠିକ୍ ଓ ଭୁଲ ନିର୍ଣ୍ଣୟ କରିବା ସାମର୍ଥ୍ୟ ଶିଶୁ ଆହରଣ କରିଥାଏ । ପିଆଜେଙ୍କ ମତରେ ବିଦ୍ୟାଳୟ ପ୍ରବେଶ ପୂର୍ବରୁ ଶିଶୁ ଅମୂର୍ତ୍ତ ଚିନ୍ତନ କରିପାରୁ ନଥିବାରୁ ପିତା, ମାତାଙ୍କ ନିର୍ଦ୍ଦେଶ ଅନୁସାରେ ଠିକ୍ ଭୁଲର ସଂଜ୍ଞା ନିର୍ଦ୍ଧାରଣ କରିଥାଏ । ତାକୁ ତା'ର ମା ଯେଉଁ କାର୍ଯ୍ୟ କରିବାକୁ କହିଥାନ୍ତି ତାହା ନୈତିକ ଓ ଯେଉଁ କାର୍ଯ୍ୟ କରିବାକୁ ମନା କରନ୍ତି ତାହା ଅନୈତିକ ବୋଲି ସେ ମନେ କରେ । Kohlbergଙ୍କ ମତରେ ଏ ସମୟରେ ଶିଶୁର ନୈତିକ ବ୍ୟବହାର ବାହ୍ୟ ସମାଜର ପସନ୍ଦ-ନାପସନ୍ଦ, ପୁରସ୍କାର ଦଣ୍ଡ ଇତ୍ୟାଦି ଦ୍ୱାରା ନିରୂପିତ ହୋଇଥାଏ । ଅନୁରକ୍ତି ଓ ଦଣ୍ଡର ଭୟ ଦୃଷ୍ଟିରେ ରଖି ଶିଶୁ ତାର ବ୍ୟବହାର ପ୍ରଦର୍ଶନକରେ । ଯେଉଁ ବ୍ୟବହାର ତା'ର ବୟସ୍କମାନଙ୍କୁ ସନ୍ତୁଷ୍ଟ କରେ ଶିଶୁ ସେହି ବ୍ୟବହାର ବାରମ୍ବାର ପ୍ରଦର୍ଶନ କରେ ।

(୩) **ଶୈଶବର ମଧ୍ୟମାବସ୍ଥା** :—ଶୈଶବର ମଧ୍ୟମାବସ୍ଥାରେ ପହଞ୍ଚିଲେ ଶିଶୁ ନୈତିକତା ଓ ସାମାଜିକତା ମଧ୍ୟରେ ସମ୍ପର୍କ ବୁଝିପାରେ । ତେଣୁ ବିଭିନ୍ନ ପରିସ୍ଥିତିରେ ଠିକ୍ ଓ ଭୁଲ ନିର୍ଣ୍ଣୟ କରିବା ସାମର୍ଥ୍ୟ ସୃଷ୍ଟି ହୁଏ । ତା'ର ସ୍ୱଭାବ ଓ ନିର୍ଦ୍ଦିଷ୍ଟ ପ୍ରତିକ୍ରିୟା ଗୁଡ଼ିକ ସାଧାରଣ ଆଚରଣରେ ପରିବର୍ତ୍ତିତ ହୁଏ । ଆଠ କିମ୍ବା ନଅ

ବର୍ଷ ବୟସ ବେଳକୁ ଶିଶୁ ବ୍ୟବହାର ପ୍ରଦର୍ଶନର ଏକ ନିର୍ଦ୍ଦିଷ୍ଟ ଶୈଳୀ ଆୟତ୍ତ କରିଥାଏ । ଉଦାହରଣ ସ୍ୱରୂପ ବିଦ୍ୟାଳୟ ପୂର୍ବବର୍ତ୍ତୀ ବୟସରେ ଶିଶୁ ଜାଣିଥାଏ ଯେ ଅନ୍ୟର ବହି ଚୋରି କରିବା ଏକ ଭୁଲ କାର୍ଯ୍ୟ । କିନ୍ତୁ ମଧ୍ୟ-ଶୈଶବରେ ସେ-ଚୋରି ଏକ ଖରାପ କାର୍ଯ୍ୟ ଏହି ଧାରଣା ଆହରଣ କରିଥାଏ । ଏହି ସମୟରେ ଶିଶୁ ପ୍ରଚଳିତ ସାମାଜିକ ପ୍ରଥା ଅନୁସାରେ ନିଜକୁ ପରିଚାଳିତ କରିବାକୁ ଚେଷ୍ଟିତ ହୋଇଥାଏ । ଏହି ସମୟର ଶେଷ ଭାଗକୁ ଶିଶୁ ନିଜ ପିତା ମାତା ଭିନ୍ନ ଅନ୍ୟ ବ୍ୟକ୍ତିମାନଙ୍କର ସାମାଜିକ ରୀତି ନୀତି ଅନୁସରଣ କରିଥାଏ ।

(୪) **କୈଶୋରାବସ୍ଥା** :—କିଶୋର ବୟସରେ ଉପନୀତ ହେବା ସମୟକୁ ଶିଶୁର ବ୍ୟବହାରରେ ନୈତିକତା ଓ ସାମାଜିକତା ଏକ ସୂକ୍ଷ୍ମ ସଂଯୋଗ ପରିଲକ୍ଷିତ ହୁଏ । ଏହି ସମୟରେ ସମାଜ ଚାହେଁ ଯେ ଶିଶୁ ନିଜ ବିବେକ ଅନୁସାରେ ପରିଚାଳିତ ହେଉ । ତେଣୁ ଶିଶୁ ନିଜ ବ୍ୟକ୍ତିତ୍ୱ ସମ୍ପର୍କରେ ସଚେତ ହୋଇଥାଏ । ଆହୁରି ମଧ୍ୟ ଏହି ବୟସରେ ସେ ଉତ୍ତମ ଭାବରେ ଠିକ୍ ଓ ଭୁଲ୍ ବିବେଚନା କରି ପାରିବାର ସାମର୍ଥ୍ୟ ହାସଲ କରିଥାଏ । ଅଧିକାଂଶ କିଶୋର ସମାଜ ସମର୍ଥିତ ନୈତିକତା ପୂର୍ଣ୍ଣ ବ୍ୟବହାର ପ୍ରଦର୍ଶନ କରିଥାନ୍ତି । Kohlbergଙ୍କ ମତରେ କିଶୋର ପ୍ରଚଳିତ ପ୍ରଥା ପ୍ରତି ଆନୁଗତ୍ୟ ପ୍ରକାଶ କରିଥାଏ । କିନ୍ତୁ ତା ଉପରେ ଲଦି ଦିଆଯାଉଥିବା ନିୟମ ଗୁଡ଼ିକୁ ସେ ବିନା ବିଚାରରେ ଗ୍ରହଣ କରିବାକୁ ଚାହେଁ । କେଉଁ ପ୍ରଥା ଓ ନିୟମ ସେ ମାନିବ ତାହା ସେ ନିଜ ବିବେକ ଓ ବିଚାର ବୁଦ୍ଧିଦ୍ୱାରା ନିର୍ଣ୍ଣୟ କରିଥାଏ ।

କିଶୋରାବସ୍ଥାର ସର୍ବପ୍ରଧାନ ବୈଶିଷ୍ଟ୍ୟ ହେଲା କିଶୋର ସାମାଜିକ ସ୍ତରରେ ନିଜର ସ୍ୱାଧୀନ ଚିନ୍ତାଧାରା ଓ ସ୍ୱାଧୀନ ବ୍ୟବହାର ପ୍ରଦର୍ଶନ କରିବାକୁ ଚାହେଁ । ପିତା ମାତାଙ୍କ ନିୟନ୍ତ୍ରଣରୁ ନିଜକୁ ମୁକ୍ତ କରି ସେ ନିଜ ପୋଷାକ, ବନ୍ଧୁ, ଅବସର ବିନୋଦନ ନିଜେ ସ୍ୱତନ୍ତ୍ର ଭାବରେ ଉପଭୋଗ କରିବାକୁ ଚାହେଁ । ଏହାର କାରଣ ଏହି ସମୟକୁ ଶିଶୁର ମାନସିକ ଓ ନୈତିକ ବିକାଶ ଯଥେଷ୍ଟ ପ୍ରଗତି ଲାଭ କରିସାରିଥାଏ, କିନ୍ତୁ ପ୍ରତ୍ୟେକ ପିତା ମାତା ଶିଶୁକୁ ତାର ମନ ଇଚ୍ଛା ସ୍ୱାଧୀନତା ଦିଅନ୍ତି ନାହିଁ । ଯେଉଁ ପିତା ମାତା ମାନେ କଠୋର ଓ ଜିଦ୍‌ଖୋର ସେମାନେ ନିଜ ଇଚ୍ଛା ଅନୁସାରେ ପିଲାମାନଙ୍କୁ ପରିଚାଳିତ କରିବାକୁ ଚାହାନ୍ତି । ଏପରି ପରିବେଶରେ ଲାଳିତ ପାଳିତ ହୋଇଥିବା କିଶୋରକୁ ନୈତିକତା ଶିକ୍ଷାଦେଲେ ସେ ବିରକ୍ତି ପ୍ରକାଶ କରିଥାଏ । ଯଦି କିଶୋରର ପିତାମାତାଙ୍କ ଦ୍ୱାରା ଅନୁସୃତ ଆଚରଣ ବିଧି ତାର ସାଙ୍ଗସାଥୀ ଓ ସାମାଜିକ ସମ୍ପର୍କ ଅନ୍ତର୍ଭୁକ୍ତ ବ୍ୟକ୍ତି ମାନଙ୍କର ଅନୁସୃତ ଆଚରଣ ବିଧି ଠାରୁ ବିପରୀତ ହୋଇଥାଏ ତେବେ ସେ ନିଜ ପିତା ମାତାଙ୍କ ବିରୁଦ୍ଧରେ ବିଦ୍ରୋହ କରିବାର ଦେଖାଯାଏ । ଏହି ବିଦ୍ରୋହ ସେ ନିଜର

ବୈଚିତ୍ର ନିର୍ଦ୍ଦିଷ୍ଟ ଆଚରଣ ମାଧ୍ୟମରେ ପ୍ରକାଶ କରିଥାଏ । ସେଥିରୁ କେତୋଟି ହେଲା ପିତାମାତାଙ୍କ ପସନ୍ଦ ଶିକ୍ଷକରେ ବନ୍ଧୁ ନିର୍ବାଚନ; ଘରକୁ ଆସିବା ଓ ଯିବାରେ ଅନିୟମିତତା; ଓ ନିଜ ପୋଷାକ ପତ୍ର ଓ ବିପରୀତ ଲିଙ୍ଗୀର ସହିତ ଅନ୍ତଃ ବ୍ୟକ୍ତିଗତ ସମ୍ପର୍କ । ଅତଏବ କିଶୋରାବସ୍ଥାରେ ସାମାଜିକ ଓ ନୈତିକ ବିକାଶ ମଧ୍ୟରେ ଉତ୍ତମ ସଂପର୍କ ରହିବାକୁ ହେଲେ ପରିବାର ଓ ବାହ୍ୟ ସମାଜ କିଶୋର ପ୍ରତି ସନ୍ତୁଳିତ ରୂପ ପ୍ରଦର୍ଶନ କରିବା ଉଚିତ୍ । ପରିବାର ଓ ବାହ୍ୟ ସମାଜ ପରସ୍ପର ବିପରୀତ ସ୍ୱରମୂର୍ତ୍ତି ସମ୍ପନ୍ନ ହେଲେ କିଶୋରର ନୈତିକ ବିକାଶ ବାଧାପ୍ରାପ୍ତ ହୋଇ ମାନସିକ ବିକାଶକୁ ପ୍ରଭାବିତ କରିଥାଏ । ଫଳରେ କିଶୋର ଉଦ୍‌ବେଗ, ଆଶଙ୍କା ନ୍ୟୁନତାବୋଧ ଓ ବ୍ୟର୍ଥତା ବୋଧର ଲକ୍ଷଣ ପ୍ରଦର୍ଶନ କରିଥାଏ ।

## ସାମାଜିକ ଓ ନୈତିକ ବିକାଶ କ୍ଷେତ୍ରରେ ଫ୍ରଏଡ଼ ଓ ଏରିକ୍‌ସନ୍‌ଙ୍କ ତତ୍ତ୍ୱର ପ୍ରାସଙ୍ଗିକତା :—

**ଫ୍ରଏଡ଼ଙ୍କ ମତ :—**ଫ୍ରଏଡ଼ଙ୍କ ତତ୍ତ୍ୱ ବିବାଦମାନ ହେଲେ ମଧ୍ୟ ଶିଶୁର ଅନ୍ତଃମାନସିକ ପ୍ରକ୍ରିୟା ଗୁଡ଼ିକ ସମ୍ପର୍କରେ ଏକ ବିସ୍ତୃତ ବିବରଣୀ ପ୍ରଦାନ କରିଥାଏ । ସେ ଜଣେ ଶରୀର ତତ୍ତ୍ୱବିଦ୍ ଭାବରେ ପ୍ରଶିକ୍ଷଣ ଲାଭ କରିଥିଲେ । ରୋଗୀମାନଙ୍କର ବିଭିନ୍ନ ରୋଗର ଲକ୍ଷଣ ଓ ଉତ୍ପତ୍ତି ସମ୍ପର୍କରେ ଅନୁଧ୍ୟାନ କରିବା ଫଳରେ ସେ ଜାଣିବାକୁ ପାଇଲେ ଯେ ବାଲ୍ୟକାଳରୁ ବିଭିନ୍ନ ଉପାଦାନ ମଧ୍ୟରେ ଯୌନସମ୍ବନ୍ଧର ଅଭାବ ଏବଂ ସାମାଜିକ ଓ ନୈତିକ ପ୍ରଲକ୍ଷଣ ଗୁଡ଼ିକର ସଂକ୍ରମଣ ହୀନତାରୁ ବ୍ୟକ୍ତି ନାନା ପ୍ରକାର ଅସ୍ୱାଭାବିକ ବ୍ୟବହାର ପ୍ରଦର୍ଶନ କରିଥାଏ ।

ଫ୍ରଏଡ଼ଙ୍କ ତତ୍ତ୍ୱର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଲା ବ୍ୟକ୍ତିତ୍ୱର ବିଭାଜନ । ପ୍ରତ୍ୟେକ ମନୁଷ୍ୟର ବ୍ୟକ୍ତିତ୍ୱ ତିନୋଟି ଉପାଦାନ ନେଇ ଗଠିତ । ସେଗୁଡ଼ିକ ହେଲେ ଇଡ୍ (Id), ଅହମ୍ (Ego) ଏବଂ ପରମ ଅହମ୍ (Super Ego) । ଇଡ୍ ମନ ମଧ୍ୟରେ ପ୍ରାଚୀନ ଓ ପାଶବିକ ପ୍ରବୃତ୍ତି ଗୁଡ଼ିକର ରକ୍ଷାକାରୀ । ଏହା ମନୁଷ୍ୟର ଜନ୍ମଠାରୁ ଉପସ୍ଥିତ ଓ ଉପଲବ୍ଧ ହୁଏ । ଶାରୀରିକ କାମନା ଓ ଇଚ୍ଛା ଗୁଡ଼ିକର ତୁରନ୍ତ ପରିତୃପ୍ତ ନିମିତ୍ତ ଏହା ମନୁଷ୍ୟକୁ ବାଧ୍ୟ କରିଥାଏ ବ୍ୟକ୍ତିତ୍ୱର ଯୁକ୍ତିଯୁକ୍ତ ଓ ବାସ୍ତବବାଦୀ ବିଭାଗଟି ହେଉଛି ଅହମ୍ ବା Ego । ଫ୍ରଏଡ଼ଙ୍କ ମତରେ Ego ଏକ ବର୍ଷ ବୟସରେ ଉଦୟ ହୋଇଥାଏ । ଶିଶୁର ଇଡ୍ ନିଜ ଇଚ୍ଛା ମୁତାବକ ସନ୍ତୁଷ୍ଟ ଲାଭ କରିପାରେ ନାହିଁ ଏବଂ ଶିଶୁ ସାମାଜିକ ପରିବେଷ୍ଟନୀର ନିୟନ୍ତ୍ରଣ ଗୁଡ଼ିକ ଯୋଗୁଁ ଇଡ୍ ପ୍ରେରିତ ଇଚ୍ଛାନୁସାରେ କାର୍ଯ୍ୟ କରିପାରେ ନାହିଁ, ଇଡ୍ ଉପରେ ଏହି ସାମାଜିକ ନିୟନ୍ତ୍ରଣରୁ Ego ଜନ୍ମନିଏ । ଉଦାହରଣ ସ୍ୱରୂପ ଶିଶୁ ଯେତେବେଳେ କାନ୍ଦି କାନ୍ଦି ମଧ୍ୟ କୌଣସି ବସ୍ତୁ

ହାସଲ କରିନପାରେ ସେ ଅନ୍ୟାନ୍ୟ ଉପାୟ ଅବଲମ୍ବନ କରେ । ସବୁ ଶେଷରେ ତୃତୀୟ ଓ ଚତୁର୍ଥ ବର୍ଷ ବୟସ ବେଳକୁ ପରମ୍ ଅହମ୍ ବା Super Ego ଜନ୍ମନିଏ । ଏହା ବ୍ୟକ୍ତିତ୍ୱର ନୈତିକ ପ୍ରତିନିଧି ଭାବରେ କାର୍ଯ୍ୟ କରେ । ପରମ ଅହମ୍ ଜନ୍ମ ନେଲେ ପୁଅ ନିଜକୁ ପିତାଙ୍କ ସହିତ ଓ କନ୍ୟା ନିଜକୁ ମାତାଙ୍କ ସହିତ ତୁଳନା କରେ ଏବଂ କାର୍ଯ୍ୟକରିବା ସମୟରେ ଠିକ୍ ଭୁଲ ବିଚାର କରିବାର କ୍ଷମତା ପ୍ରାପ୍ତ ହୋଇଥାଏ ।

ଫ୍ରେଡ଼୍ ବିଶ୍ୱାସ କରୁଥିଲେ ଯେ ମାନବିକ ବିକାଶର ଏକ ସାର୍ବଜନୀନ ପର୍ଯ୍ୟାୟକ୍ରମ ରହିଛି । ଅର୍ଥାତ୍ ଶୈଶବ ଠାରୁ ଯୁବକାବସ୍ଥା ପର୍ଯ୍ୟନ୍ତ ପ୍ରତ୍ୟେକ ବ୍ୟକ୍ତି କେତେକ ନିର୍ଦ୍ଦିଷ୍ଟ ଅବସ୍ଥା ମଧ୍ୟ ଦେଇ ଗତି କରିଥାନ୍ତି । ମାନସିକ ଉତ୍ତେଜନା ହ୍ରାସକରି ଆନନ୍ଦ ଦାୟକ ଅନୁଭୂତି ଆହରଣ କରିବା ପାଇଁ ନିର୍ଦ୍ଦିଷ୍ଟ ଅନ୍ତର୍ନିହିତ ପ୍ରବଣତା ଦ୍ୱାରା ଏହି ଅବସ୍ଥାଗୁଡ଼ିକ ନିୟନ୍ତ୍ରିତ ହୋଇଥାଆନ୍ତି । ଏକ ନିର୍ଦ୍ଦିଷ୍ଟ ଅବସ୍ଥା ବା ପର୍ଯ୍ୟାୟରେ ଶରୀରର କୌଣସି ଏକ ସ୍ୱତନ୍ତ୍ର ଅଙ୍ଗ ବା ସ୍ଥାନରେ ସ୍ପର୍ଶକାତରତା ବିକାଶ ଲାଭ କରେ । ଏହାକୁ କାମନା ଉଦ୍ରେକକାରୀ ଅଞ୍ଚଳ ବା erogenous zone କୁହାଯାଏ । ଫ୍ରେଡ଼୍ ପ୍ରତ୍ୟେକ ଅବସ୍ଥାକୁ ମନଃ-ଯୌନ ଭିତ୍ତିକ ବା Psychosexual ଭାବରେ ବର୍ଣ୍ଣନା କରି ପ୍ରମାଣ କରିଛନ୍ତି ଯେ ବିଭିନ୍ନ ବୟସରେ ଯେଉଁ ଅଞ୍ଚଳ ଗୁଡ଼ିକରେ ଯୌନ କାମନା ଉଦ୍ରେକ ହୁଏ କିଛି ବର୍ଷପରେ ସେହି ସ୍ଥାନର ଉତ୍ତେଜନା ପ୍ରଶମିତ ମଧ୍ୟ ହୋଇଥାଏ । ଏହିପରି ଉତ୍ତେଜନାର ବିକାଶ ଓ ବିଲୟ ମଧ୍ୟଦେଇ ମନୁଷ୍ୟର ବ୍ୟକ୍ତିତ୍ୱ ବିକଶିତ ହୋଇଥାଏ । ପ୍ରତ୍ୟେକ ଅବସ୍ଥାର ଦ୍ୱନ୍ଦ ଅନ୍ୟ ଏକ ଅବସ୍ଥା ଆରମ୍ଭ ହେବା ପୂର୍ବରୁ ସମାହିତ ହୋଇଥାଏ ।

ଗୋଟିଏ ଅବସ୍ଥା ତ୍ୟାଗକରି ଅନ୍ୟ ଏକ ଅବସ୍ଥାରେ ଉପନୀତ ହେବାପାଇଁ ଶିଶୁ ଯେଉଁ ଅସୁବିଧାର ସମ୍ମୁଖୀନ ହୁଏ ତାର ଦୁଇଟି କାରଣ ରହିଛି । ପ୍ରଥମତଃ ଏକ ନିର୍ଦ୍ଦିଷ୍ଟ ଅବସ୍ଥାରେ ଅନ୍ୟମାନଙ୍କ ଆବଶ୍ୟକତାକୁ ଶିଶୁ ପୂରଣ କରିପାରେ ନାହିଁ । ଅନ୍ୟ ପକ୍ଷରେ ଶିଶୁର ନିଜ ଆବଶ୍ୟକତା ଗୁଡ଼ିକ ପୂରଣ ହୋଇ ନପାରିଲେ ତାର ମାନସିକ ସ୍ଥିତିରେ ବ୍ୟର୍ଥତା ଅନୁଭୂତ ହୁଏ । ଦ୍ୱିତୀୟତଃ ଗୋଟିଏ ଅବସ୍ଥାର ଆବଶ୍ୟକତା ଗୁଡ଼ିକ ସୁଷ୍ଠୁ ରୂପେ ପୂରଣ ହୋଇପାରିଲେ ଶିଶୁ ପରବର୍ତ୍ତୀ ଅବସ୍ଥାକୁ ଯିବାପାଇଁ ଅନିଚ୍ଛା ପ୍ରକାଶ କରେ । ଫଳରେ ବର୍ଦ୍ଧିତ ବୟସରେ ମଧ୍ୟ ପୂର୍ବର ବ୍ୟବହାର ଶୈଳୀ ଅନୁସୃତ ହୁଏ । ଫ୍ରେଡ଼୍‌ଙ୍କ ମତରେ ଶିଶୁର ବିକାଶର ପ୍ରତ୍ୟେକ ଅବସ୍ଥା ମନଃ-ଯୌନ ଭିତ୍ତିକ ପ୍ରବୃତ୍ତିଗତ ଶକ୍ତି ବା ଲିବିଡ଼ୋ (Libido) ଦ୍ୱାରା ପରିଚାଳିତ ହୁଏ । ସେ ଯୌନ ଶବ୍ଦକୁ ତାର ସାଧାରଣ ଅର୍ଥରେ ବ୍ୟବହାର କରିନଥିଲେ । ତାଙ୍କ ମତରେ ଏହା ମନୁଷ୍ୟର ସମସ୍ତ ଆନନ୍ଦ ଦାୟକ କାର୍ଯ୍ୟ ଓ ଚିନ୍ତାକୁ ସୂଚିତ କରେ । Libido ଏକ ପ୍ରକାର ଶକ୍ତି ଏବଂ ବିଭିନ୍ନ ବୟସରେ ଏହା ଭିନ୍ନ ଭିନ୍ନ ସ୍ଥାନରେ କେନ୍ଦ୍ରୀଭୂତ ହୋଇଥାଏ ।

**(୧) ମୌଖିକ ଅବସ୍ଥା (Oral Stage)** :—ଜନ୍ମ ଠାରୁ ପ୍ରାୟ ଏକ ବର୍ଷ ବୟସ ପର୍ଯ୍ୟନ୍ତ ଶିଶୁ ତା'ର ମୁଖ ମାଧ୍ୟମରେ ସମସ୍ତ ଆନନ୍ଦ ଦାୟକ ଅନୁଭୂତି ଆହରଣ କରିଥାଏ । ଚୋଷଣ ଓ ଦଂଶନ ଏହାର ଗୋଟିଏ ଗୋଟିଏ ଉଦାହରଣ । ଫ୍ରଏଡ଼ଙ୍କ ମତରେ ଯେଉଁ ବ୍ୟକ୍ତି ମଧ୍ୟରେ ଏହି ଅବସ୍ଥାର ପ୍ରବୃତ୍ତିଗୁଡ଼ିକର ସ୍ଥିତାବସ୍ଥା ବଜାୟ ରହିଥାଏ ସେମାନେ ପୃଥିବୀ ସମ୍ପର୍କରେ ବାସ୍ତବବାଦୀ ଧାରଣା ପୋଷଣ କରନ୍ତି । ସେମାନେ ବେଶ୍ ବନ୍ଧୁତ୍ୱପୂର୍ଣ୍ଣ ଓ ମେଳାପୀ ହୁଅନ୍ତି ଓ ପ୍ରତ୍ୟେକ ସମୟରେ ସମାଜର ସେବା ଆବଶ୍ୟକ କରନ୍ତି ।

**(୨) ନିଷ୍କାସନ ପ୍ରବଣ ଅବସ୍ଥା (Anal Stage)** :—ଏକ ବର୍ଷଠାରୁ ତିନି ବର୍ଷ ବୟସ ପର୍ଯ୍ୟନ୍ତ ସମୟ ମଧ୍ୟରେ Libido ଶିଶୁର ନିଷ୍କାସନକାରୀ ଅଂଶଠାରେ କେନ୍ଦ୍ରୀଭୂତ ହୋଇଥାଏ । ନିଷ୍କାସିତ ପଦାର୍ଥଗୁଡ଼ିକୁ ଉତ୍ତମ ଭାବରେ ନିର୍ଗତ କରାଇ କିମ୍ବା ବନ୍ଦକରି ଶିଶୁ ତାର ଆନନ୍ଦ ବା ବିରକ୍ତି ଭାବ ପ୍ରକାଶ କରିଥାଏ । ଏହି ସମୟରେ ଶିଶୁଠାରୁ ତାର ପିତା ମାତା ଓ ଅନ୍ୟାନ୍ୟ ବ୍ୟକ୍ତିମାନେ ଅଧିକ ଉନ୍ନତ ବ୍ୟବହାର ଦାବୀ କରନ୍ତି ଯାହାକି ତା'ର ଆନନ୍ଦଦାୟକ ଅନୁଭୂତିର ବିପରୀତ ହୋଇଥାଏ । ଫଳରେ ଶିଶୁ ମନରେ ଦ୍ୱନ୍ଦ୍ୱର ସୂତ୍ରପାତ ହୁଏ । କିନ୍ତୁ ପିତା ମାତାଙ୍କ ଦାବୀଗୁଡ଼ିକୁ ମାନିନେବା ପାଇଁ ଯଦି ଶିଶୁକୁ କୌଣସି ଦ୍ୱନ୍ଦ୍ୱର ସମ୍ମୁଖୀନ ହେବାକୁ ପଡ଼େନାହିଁ ତେବେ ଆତ୍ମ ନିୟନ୍ତ୍ରଣର ମୂଳଭିତ୍ତି ସ୍ଥାପିତ ହୋଇଥାଏ ।

**(୩) ଫାଲିକ୍ ଅବସ୍ଥା (Phallic Stage)** :—ପ୍ରାୟ ଚାରିବର୍ଷ ବୟସ ବେଳକୁ ଶରୀରର ପ୍ରଜନନ ଅଞ୍ଚଳରେ Libidoର ସମସ୍ତ ଆନନ୍ଦ ଦାୟକ ଅନୁଭୂତି କେନ୍ଦ୍ରୀଭୂତ ହୋଇଥାଏ । ଅଳ୍ପ ବୟସରେ ସଂପର୍କିତ ଲିଙ୍ଗମାନଙ୍କ ପ୍ରତି ଆଗ୍ରହ ଓ କୌତୂହଳ, ଯୌନାଙ୍ଗକୁ ସ୍ପର୍ଶକରି ଆନନ୍ଦ ଅନୁଭବ କରିବା ଓ ସାମାନ୍ୟ ବର୍ଦ୍ଧିତ ବୟସରେ ହସ୍ତ ମୈଥୁନ ଆଦି କାର୍ଯ୍ୟରେ ବ୍ୟାପୃତ ହେବା ଫଳରେ ପ୍ରଜନନ ଅଙ୍ଗର ପ୍ରାଧାନ୍ୟ ପ୍ରମାଣିତ ହୋଇଥାଏ । ଫ୍ରଏଡ଼ଙ୍କ ମତରେ ଏହି ସମୟରେ ପୁଅ ମାତାଙ୍କ ଆଡ଼କୁ ଆକର୍ଷିତ ହୁଏ ଓ ପିତାଙ୍କର କ୍ରୋଧାନ୍ୱିତ ଭାବକୁ ଭୟ କରିଥାଏ । ସେହିପରି କନ୍ୟା ପିତାଙ୍କ ଆଡ଼କୁ ଆକର୍ଷିତ ହୁଏ ଓ ମାତାଙ୍କର ଦଣ୍ଡକୁ ଭୟ କରିଥାଏ । ଏହି ଭୟ କ୍ରମଶଃ ଗଭୀର ହୁଏ ଓ ଉଦ୍‌ବେଗ ସୃଷ୍ଟି କରେ ।

**ଏରିକ୍‌ସନ୍‌ଙ୍କ ମତ** :— ଏରିକ୍‌ସନ୍, ଫ୍ରଏଡ଼ଙ୍କ ମନୋବିଶ୍ଳେଷଣାତ୍ମକ-ତତ୍ତ୍ୱକୁ ଏକ ନୂତନ ଓ ନିଜସ୍ୱ ପ୍ରଣାଳୀରେ ଉପସ୍ଥାପିତ କରିଥିଲେ । ସେ ଫ୍ରଏଡ଼ଙ୍କ ମତବାଦର ଦୁର୍ବଳତାଗୁଡ଼ିକୁ ଦୂର କରିବା ସଙ୍ଗେ ସଙ୍ଗେ କେତେକ ନୂତନ ଦିଗ ନିର୍ଦ୍ଦେଶ କରିଥିଲେ । ତାଙ୍କ ମତରେ ଜୀବଦେହଗତ ଓ ଆବେଗିକ ଶକ୍ତି ଶିଶୁର ଜନ୍ମ

ସମସ୍ୟାରୁ ଉପସ୍ଥିତ ଥାଏ ଏବଂ ମନୁଷ୍ୟର ସମସ୍ତ କାର୍ଯ୍ୟକଳାପକୁ ପ୍ରଭାବିତ କରେ । ସେ ମଧ୍ୟ ପ୍ରଚାର କରିଥିଲେ ଯେ କେତେକ ପର୍ଯ୍ୟାୟ ଓ ଅବସ୍ଥାଦେଇ ମନୁଷ୍ୟ ବିକାଶ ଲାଭ କରେ ଏବଂ ତାଙ୍କ ପ୍ରସ୍ତାବିତ କେତେକ ଅବସ୍ଥା ଫ୍ରଏଡ଼ଙ୍କ ପ୍ରସ୍ତାବିତ ଅବସ୍ଥା ସହିତ ସମାନ । ଏହା ବ୍ୟତୀତ ଫ୍ରଏଡ଼ଙ୍କଠାରୁ ଏରିକ୍‌ସନ୍‌ଙ୍କ ମତରେ କେତେକ ଭିନ୍ନତା ପରିଲକ୍ଷିତ ହୁଏ ।

ପ୍ରଥମତଃ ଏରିକ୍‌ସନ୍ ଅହମ୍ ବା Egoର କାର୍ଯ୍ୟ ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରିଥିଲେ; କିନ୍ତୁ ଫ୍ରଏଡ଼ ଇଡ୍ (id)କୁ ବ୍ୟକ୍ତିତ୍ୱର ପ୍ରଧାନ ନିୟନ୍ତ୍ରଣକାରୀ ଭାବରେ ରୂପାୟିତ କରିଲେ । ମନୁଷ୍ୟର ବିକାଶ ଉପରେ ସାମାଜିକ ଓ ନୈତିକ ପ୍ରଭାବର ଗୁରୁତ୍ୱକୁ ସ୍ୱୀକାର କରି ଏରିକ୍‌ସନ୍ ଫ୍ରଏଡ଼ଙ୍କର ମନଃ-ଯୌନଗତ ପର୍ଯ୍ୟାୟ **(Psycho Sexual Stages)** ଗୁଡ଼ିକୁ ମନଃ ସାମାଜିକ **(Psycho Social)** ପର୍ଯ୍ୟାୟ ନାମରେ ନାମିତ କରିଥିଲେ । ଦ୍ୱିତୀୟତଃ ଫ୍ରଏଡ଼ ଶିଶୁ ଉପରେ ତା'ର ପିତା-ମାତାଙ୍କ ପ୍ରଭାବକୁ ଅଧିକ ଗୁରୁତ୍ୱ ପ୍ରଦାନ କରି ଅନ୍ୟାନ୍ୟ ସାମାଜିକ ପ୍ରଭାବକୁ ପ୍ରାୟ ହେୟ ମନେକରିଥିଲେ । କିନ୍ତୁ ଏରିକ୍‌ସନ୍ ଶିଶୁର ବିକାଶ ଉପରେ ସମାଜର ଅନ୍ୟାନ୍ୟ ବ୍ୟକ୍ତି, ସାମାଜିକ ଅନୁଷ୍ଠାନ ଓ ଘର ବାହାରର ପ୍ରଭାବକୁ ସ୍ୱୀକାର କରିଥିଲେ । ତୃତୀୟତଃ ବ୍ୟକ୍ତିତ୍ୱର ବିକାଶ ସମୟରେ ସୃଷ୍ଟି ହେଉଥିବା ସଙ୍କଟଗୁଡ଼ିକୁ ଦୂରକରିବା ପାଇଁ ମିଳୁଥିବା ସୁଯୋଗ ଗୁଡ଼ିକୁ କିପରି ଉପଯୋଗ କରାଯାଇପାରିବ ,ସେ ସମ୍ପର୍କରେ ଏରିକ୍‌ସନ୍ ଆଲୋଚନା କରିଥିଲେ । ଅନ୍ୟ ପକ୍ଷରେ ଏକ ସଙ୍କଟର ସମାଧାନ କରିନପାରିଲେ ଶିଶୁ କେଉଁ ବିଲକ୍ଷଣ ଗୁଡ଼ିକ ପ୍ରଦର୍ଶନ କରେ ତା' ଉପରେ ଆଲୋକପାତ କରିଥିଲେ । ରୋଗ ସୃଷ୍ଟି ହେଲାପରେ ତା' ପାଇଁ ନିଦାନ ନିର୍ଣ୍ଣୟ କରିବା ଅପେକ୍ଷା ରୋଗ ସୃଷ୍ଟି ପୂର୍ବରୁ ତା'ର ନିରାକରଣ କରାଯିବା ଉଚିତ୍ ବୋଲି ଏରିକ୍‌ସନ୍ ମତ ପ୍ରଦାନ କରିଥିଲେ ।

ସାମାଜିକ ପରିବେଷ୍ଟନୀର ପ୍ରଭାବକୁ ସ୍ୱୀକାର କରିଥିବାରୁ ଶିଶୁର ଦୈନନ୍ଦିନ ଜୀବନରେ ସମାଜ ସହିତ ପାରସ୍ପରିକ କ୍ରିୟାପାଇଁ ଏରିକ୍‌ସନ୍‌ଙ୍କ ମତ ଫ୍ରଏଡ଼ଙ୍କ ମତ ଅପେକ୍ଷା ଅଧିକ ଗ୍ରହଣଯୋଗ୍ୟ ହୋଇଥାଏ । ତାଙ୍କ ମତରେ ବ୍ୟକ୍ତି ତା'ର ଜୀବନସାରା ବିକାଶର ମାର୍ଗରେ ଅଗ୍ରଗତି କରି ଚାଲିଥାଏ । ସେ ସମୁଦାୟ ଆଠଗୋଟି ଅବସ୍ଥା ବା ପର୍ଯ୍ୟାୟର ଅବତାରଣା କରିଥିଲେ । ଏଥିରୁ ଆମର ଆଲୋଚନା ପାଇଁ ଚାରୋଟି ଅବସ୍ଥା ଗ୍ରହଣ କରାଗଲା ।

(୧) ବିଶ୍ୱାସ ଓ ଅବିଶ୍ୱାସର ଅବସ୍ଥା :—ଏରିକ୍‌ସନ୍‌ଙ୍କ ମତରେ ବିକାଶର ମୂଳଦୁଆ ବିଶ୍ୱାସ ଓ ଆଶା ଉପରେ ପର୍ଯ୍ୟବେଶିତ । ଶିଶୁଟିଏ ପୃଥିବୀ ସ୍ପର୍ଶ କରିବାକ୍ଷଣି ଏକ ନୂତନ ପରିସ୍ଥିତି ଓ ପରିବେଶ ଅନୁଭବ କରେ । ଏହା ମାତୃଗର୍ଭର

ତୃପ୍ତତା ଓ ନିୟମିତତା ବର୍ଜିତ ହେଲେ ମଧ୍ୟ ମାତା ଶିଶୁର ସମସ୍ତ ଶାରୀରିକ ଆବଶ୍ୟକତା ପୂରଣ କରିବା ସଙ୍ଗେ ସଙ୍ଗେ ତାକୁ ଯତ୍ନର ସହିତ ଲାଳନ ପାଳନ କରିବା ଫଳରେ ତା ମନରେ ବିଶ୍ୱାସ ଓ ଆଶାର ଭାବ ଜନ୍ମିଥାଏ । ଏହାର ବିପରୀତ ହେଲେ ତା ମନରେ ଅନାସ୍ଥା ଓ ଅବିଶ୍ୱାସ ର ଭାବ ସୃଷ୍ଟି ହୁଏ । ଏହି ସମୟରେ ଶିଶୁ କେବଳ ନିଜ ମୁଖଦ୍ୱାରା ଆନନ୍ଦ ଅନୁଭବ କରେ ନାହିଁ ବରଂ ପିତା ମାତା ତାକୁ କୋଳ କରିବା, ହସିବା, କଥା-ବାର୍ତ୍ତା କରିବା ଓ ଅଙ୍ଗଭଙ୍ଗୀ ପ୍ରଦର୍ଶନ କରିବାଦ୍ୱାରା ସେ ପୃଥିବୀ ସମ୍ପର୍କରେ କିଛି ଅଭିଜ୍ଞତା ଅର୍ଜନ କରିଥାଏ । କ୍ରମେ ଶିଶୁ ନିଜ ପରିବେଶ ଉପରେ ଆସ୍ଥା ସ୍ଥାପନ କରେ ଓ ନୂତନ ପରିବେଶ ପାଇଁ ପ୍ରସ୍ତୁତ ହୋଇଥାଏ ।

(୨) **ସ୍ୱାତନ୍ତ୍ର୍ୟ ଲଜ୍ଜା ଓ ସନ୍ଦେହର ଅବସ୍ଥା** :—ଦେଢ଼ବର୍ଷ ଠାରୁ ତିନିବର୍ଷ ପର୍ଯ୍ୟନ୍ତ ବୟସ ମଧ୍ୟରେ ଶିଶୁ ଅନ୍ୟମାନଙ୍କର ଇଚ୍ଛା କରିବା ଓ ନକରିବା ନେଇ ସନ୍ଦେହରେ ପଡ଼ିଥାଏ । ଫଳରେ ଏକ ପ୍ରକାର ମାନସିକ ଦ୍ୱନ୍ଦ ସୃଷ୍ଟି ହୋଇଥାଏ । ଏହି ସମୟ ମଧ୍ୟରେ ଶିଶୁ ଅନେକ ଶାରୀରିକ କୌଶଳ ଆହରଣ କରିଥାଏ ଏବଂ ନିଜକୁ ଉକ୍ତ କୌଶଳ ଗୁଡ଼ିକ ପ୍ରଦର୍ଶନ କରିବାର ଯୋଗ୍ୟ ଭାବରେ ଗଢ଼ି ତୋଳିବାର ପ୍ରୟାସ କରିଥାଏ । ପୂର୍ବରୁ ପିତା ମାତା ଓ ଅନ୍ୟାନ୍ୟ ବ୍ୟକ୍ତିମାନଙ୍କ ଉପରେ ଥିବା ନିର୍ଭର-ଶୀଳତାରୁ ଶିଶୁ ନିଜକୁ ମୁକ୍ତ କରିବାକୁ ଇଚ୍ଛାକରେ । କିନ୍ତୁ ନିଜ ସାମର୍ଥ୍ୟ ଉପରେ ଅନାସ୍ଥା ଓ ଲଜ୍ଜା ତାକୁ ଏପରି କରିବାକୁ ନିବୃତ୍ତ କରିଥାଏ ।

(୩) **ପ୍ରଚେଷ୍ଟା ଓ ଅପରାଧର ଅବସ୍ଥା** :—ପ୍ରାୟ ତିନି ବର୍ଷରୁ ପାଞ୍ଚ ବର୍ଷ ବୟସ ମଧ୍ୟରେ ଶିଶୁ ନିଜ ଉପରେ କିଛି ଦାୟିତ୍ୱ ରହିଥିବାର ଅନୁଭବ କରେ ଏବଂ କିଛି କାର୍ଯ୍ୟ କରିବା ପାଇଁ ନିଜକୁ ସମର୍ଥ ଓ ଯୋଗ୍ୟ ବିଚାର କରେ । ଏଣୁ ସେ ସ୍ୱାଧୀନ ଭାବରେ କିଛି କାର୍ଯ୍ୟ କରିବାକୁ ଆରମ୍ଭ କରେ । କିନ୍ତୁ ତାର ଏହି କାର୍ଯ୍ୟରେ ବ୍ୟାଘାତ ସୃଷ୍ଟି ହେଲେ ତା ମନରେ ଅପରାଧ ସଂଘଟିତ କରିଥିବାର ଭାବ ଉତ୍ପନ୍ନ ହୁଏ । ବାଳକ ବାଳିକା ମାନେ ଏହି ବୟସରେ ସେମାନଙ୍କ ଯୌନଗତ ପାର୍ଥକ୍ୟ ସମ୍ପର୍କରେ ଧାରଣା ପ୍ରାପ୍ତ ହୋଇଥାନ୍ତି । ଏବଂ ଏହି ବିଷୟରେ ଅଧିକ ଆଗ୍ରହ ପ୍ରଦର୍ଶନ କରିଥାନ୍ତି ।

(୪) **ପରିଶ୍ରମ ଓ ନ୍ୟୁନତା ବୋଧର ଅବସ୍ଥା** :—ତୃତୀୟ ଅବସ୍ଥାରେ ସୃଷ୍ଟି ହୋଇଥିବା ଅପରାଧବୋଧକୁ ଦୂର କରିବାପାଇଁ ଶିଶୁ ପରବର୍ତ୍ତୀ ଅବସ୍ଥାରେ ପ୍ରତିଯୋଗୀ ମନୋଭାବ ଧାରଣ କରେ ଏବଂ ବିଦ୍ୟାଳୟ ଜୀବନର ପ୍ରାରମ୍ଭରେ ସମସ୍ତ ସଙ୍କଟକୁ ଏକ ଆହ୍ୱାନ (Challenge) ଭାବରେ ଗ୍ରହଣ କରିଥାଏ । ନିଜ ବଂଶର ଗୁରୁଜନମାନଙ୍କୁ ଆଦର୍ଶ ଭାବରେ ଗ୍ରହଣ କରି ସେ ନିଜକୁ ସେମାନଙ୍କ ସ୍ତରରେ ଉପନୀତ

କରିଇବାକୁ ଅଗ୍ରଣୀ ହୁଏ । ତେଣୁ ନିଜର ନ୍ୟୂନତା ବୋଧ ଦୂର କରିବାପାଇଁ ବିଭିନ୍ନ ବିଷୟରେ ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ଚାହେଁ ।

ଉଭୟ ଫ୍ରଏଡ୍ ଓ ଏରିକ୍‌ସନ୍‌ଙ୍କ ମତବାଦରୁ ଏହା ପ୍ରମାଣିତ ହୁଏ ଯେ ବ୍ୟକ୍ତିତ୍ୱର ବିକାଶ ବାଲ୍ୟକାଳର ସାମାଜିକ ପରିବେଷ୍ଟନୀ ଓ ଉକ୍ତ ପରିବେଷ୍ଟନୀର ନୈତିକ ପ୍ରଭାବ ଦ୍ୱାରା ନିୟନ୍ତ୍ରିତ ହୁଏ । ଶିଶୁର ସମାଜ ସହିତ ପ୍ରଥମ ସମ୍ପର୍କ, ସମାଜର ଶିଶୁ ପ୍ରତି ପ୍ରଥମ ପ୍ରତିକ୍ରିୟା, ଶିଶୁକୁ ତାର ପ୍ରାପ୍ୟ ସ୍ନେହରୁ ବଞ୍ଚିତ କରିବା ଇତ୍ୟାଦି ଶିଶୁର ସାମାଜିକ ଓ ନୈତିକତା ବିକାଶକୁ ପ୍ରଭାବିତ କରେ । ଏଥିପାଇଁ ବିକାଶର ପ୍ରତ୍ୟେକ ଅବସ୍ଥାର କିଛି କିଛି ଅବଦାନ ରହିଛି । ପ୍ରତ୍ୟେକ ଅବସ୍ଥା ବ୍ୟକ୍ତିତ୍ୱରେ ଥିବା ସାମାଜିକ ଓ ନୈତିକ ଉପାଦାନକୁ ଦୃଢ଼ ବା ଦୁର୍ବଳ କରିପାରନ୍ତି । ଏ କ୍ଷେତ୍ରରେ ଫ୍ରଏଡଙ୍କ ପ୍ରସ୍ତାବିତ ଇଡ୍, ଅହମ୍, ଓ ପରମ ଅହମ୍‌ର କାର୍ଯ୍ୟଧାରା ସ୍ୱୀକୃତ । ବ୍ୟର୍ଥତା ଓ ଅତ୍ୟଧିକ ପ୍ରଶ୍ରୟ ପ୍ରଦାନ ଦ୍ୱାରା ଶିଶୁର ବ୍ୟକ୍ତିତ୍ୱର ବିକାଶ ଏକ ନିର୍ଦ୍ଦିଷ୍ଟ ଅବସ୍ଥାରେ ସ୍ଥିର ହୋଇ-ଥାଏ । ଅର୍ଥାତ୍ ବୟସ ବୃଦ୍ଧି ହେଲେ ମଧ୍ୟ ସେ ଉକ୍ତ ଅବସ୍ଥାର ପ୍ରଲକ୍ଷଣ ଗୁଡ଼ିକ ପ୍ରଦର୍ଶନ କରେ । ଅତଏବ ଶିଶୁର ପରିବାର ଓ ପରିବେଷ୍ଟନୀ ଉଚିତ ସାମାଜିକ ଓ ନୈତିକମାନ ପ୍ରଦର୍ଶନ କରିବା ଦ୍ୱାରା ଶିଶୁକୁ ବିକାଶ ପଥରେ ପରିଚାଳିତ କରିଥାନ୍ତି ।

## ଶିଶୁର ସାମାଜିକ ବିକାଶରେ ବିଦ୍ୟାଳୟ ଓ ଶିକ୍ଷକଙ୍କ କର୍ତ୍ତବ୍ୟ :—

ଶିଶୁଠାରେ ସାମାଜିକ ଗୁଣାବଳୀର ବିକାଶ ନିମିତ୍ତ ଓ ତାକୁ ସୁ-ନାଗରିକ ରୂପେ ଗଢ଼ିବାପାଇଁ ପରିବାର, ବିଦ୍ୟାଳୟ, ସମାଜ ପ୍ରତ୍ୟେକଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏ ସମସ୍ତ ପରିବେଶରେ ଶିକ୍ଷାଦାନଦ୍ୱାରା ଶିଶୁର ସାମାଜିକ ବିକାଶ ସଙ୍ଗଠିତ ହୋଇ-ଥାଏ । ପାରିବାରିକ ଶିକ୍ଷା ଶିଶୁ ନିମିତ୍ତ ଅତ୍ୟନ୍ତ ମୂଲ୍ୟବାନ୍ । ପରିବାରହିଁ ଶିଶୁର ସର୍ବବିଧ ଉନ୍ନତି ନିମିତ୍ତ ଭିତ୍ତି ଭୂମି ଗଠନ କରିଥାଏ । ପରିବାରରେ ସମସ୍ତଙ୍କ ସହ ସହଯୋଗ ତଥା ସୁସମ୍ପର୍କ ରକ୍ଷାକରି କିପରି ଚଳିବାକୁ ହେବ ସେଥି ନିମିତ୍ତ ପିତାମାତା ତଥା ଗୁରୁଜନବର୍ଗ ଶିଶୁକୁ ଯଥୋଚିତ ଶିକ୍ଷାଦେବା ଆବଶ୍ୟକ । ପିତା ମାତାଙ୍କ ଉପଦେଶ, ନିର୍ଦ୍ଦେଶ ଓ ସର୍ବୋପରି ସେମାନଙ୍କ ପ୍ରେରଣା ଶିଶୁପାଇଁ ଅପରିହାର୍ଯ୍ୟ । ଶିଶୁର ବ୍ୟକ୍ତିତ୍ୱ ତଥା ସାମାଜିକ ମନୋଭାବର ଅଭିବୃଦ୍ଧି ନିମିତ୍ତ ଶିଶୁକୁ ଅବହେଳା ନ କରି ସ୍ନେହ, ଶ୍ରଦ୍ଧା ଦେବା ଉଚିତ୍ । ଶିଶୁର ଲାଳନ ପାଳନ ତଥା ସ୍ନେହ ମମତା ପ୍ରଦର୍ଶନରେ ଅବହେଳା ଯୋଗୁଁ ଶିଶୁର ସାମାଜିକ ବିକାଶ ବାଧାପ୍ରାପ୍ତ ହୋଇଥାଏ । ସେ ଅତ୍ୟଧିକ ସ୍ୱେଚ୍ଛାଚାରୀ ଓ ସ୍ୱାର୍ଥପର ହୋଇପଡ଼ିଥାଏ । ଫଳତଃ ନିଃସ୍ୱାର୍ଥପରତା, ସହନଶୀଳତା, ସହଯୋଗିତା ଇତ୍ୟାଦି ସାମାଜିକ ଗୁଣାବଳୀ ବିକାଶ ପ୍ରାପ୍ତ ହୋଇପାରିନଥାଏ । କଠୋର ବ୍ୟବହାର ସମସ୍ତ ସମୟରେ ମାନସିକ ଅସ୍ଥିରତା ଆଣିଦେଇଥାଏ । ଅନେକ ପିତା ମାତା

ଓ ଅଭିଭାବକ ଅଯଥା ବିପଦ ଆଶଙ୍କାରେ ଶିଶୁମାନଙ୍କୁ କୌଣସି କାର୍ଯ୍ୟ ସମ୍ପାଦନ ନିମିତ୍ତ ସ୍ୱାଧୀନତା ନଦେଇ ନିଜେ କରିଥାନ୍ତି । ଏହାଦ୍ୱାରା ଶିଶୁର ଆତ୍ମନିର୍ଭରଶୀଳତା ଗୁଣ ବାଧାପ୍ରାପ୍ତ ହୋଇଥାଏ ।

ବିଦ୍ୟାଳୟ ପରିପ୍ରେକ୍ଷୀରେ ଶିଶୁର ସାମାଜିକ ଗୁଣାବଳୀର ବିକାଶ ନିମିତ୍ତ ଉପଯୁକ୍ତ ବାତାବରଣ ସୃଷ୍ଟି ହେବା ବିଧେୟ । ଶିଶୁଠାରେ ବନ୍ଧୁତ୍ୱ, ନେତୃତ୍ୱ ସହଯୋଗ, କର୍ତ୍ତବ୍ୟପରାୟଣତା, ଦାୟିତ୍ୱ, ସହାନୁଭୂତି, ସଂଯମତା ଇତ୍ୟାଦି ସାମାଜିକ ଗୁଣ ଗୁଡ଼ିକର ବିକାଶ ନିମିତ୍ତ ବିଦ୍ୟାଳୟର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । କାରଣ କେବଳ ଉପଦେଶ ଦ୍ୱାରା ଏଗୁଡ଼ିକ ସମ୍ଭବ ନୁହେଁ । ଏଥିନିମିତ୍ତ ବିଦ୍ୟାଳୟରେ ସହପାଠ୍ୟ କାର୍ଯ୍ୟକ୍ରମ (Co-curricular activities) ରହିବା ଏକାନ୍ତ ଆବଶ୍ୟକ । କ୍ରୀଡ଼ା ପ୍ରତିଯୋଗିତା ନାଟକ ଅଭିନୟ ସମାଜ ସେବା, ଆଲୋଚନା, ପାଠ୍ୟଚକ୍ର, ଭ୍ରମଣ, ସ୍କାଉଟିଂ ବା ରେଡ୍ କ୍ରସ ଇତ୍ୟାଦି ବିଭିନ୍ନ କାର୍ଯ୍ୟକ୍ରମ ବିଦ୍ୟାଳୟରେ କରାଯିବାଦ୍ୱାରା ଶିଶୁଠାରେ ଉପରୋକ୍ତ ସାମାଜିକ ଗୁଣାବଳୀର ବିକାଶ ଘଟିଥାଏ । କାରଣ ମାନବିକ ସମ୍ପର୍କ (Human relationship) ହିଁ ସାମାଜିକତାର ଭିତ୍ତିଭୂମି । ତେଣୁ ବିଭିନ୍ନ ଗଠନମୂଳକ କାର୍ଯ୍ୟକ୍ରମ ମାଧ୍ୟମରେ ଶିଶୁମାନେ ଯେପରି ପରସ୍ପରର ପ୍ରତ୍ୟକ୍ଷ ସଂପର୍କରେ ଆସନ୍ତି ଓ ସେମାନଙ୍କ ସହ ସହଯୋଗ ରଖନ୍ତି ସେଥିନିମିତ୍ତ ବିଦ୍ୟାଳୟଗୁଡ଼ିକ ତଥା ଶିକ୍ଷକମାନେ ଦୃଷ୍ଟି ଦେବା ବାଞ୍ଛନୀୟ ।

ନିମ୍ନରେ କେତେଗୁଡ଼ିଏ ବିଶିଷ୍ଟ ସାମାଜିକ ଗୁଣ ଓ ସେଗୁଡ଼ିକର ବିକାଶ ନିମିତ୍ତ ଉପଯୁକ୍ତ କାର୍ଯ୍ୟପନ୍ଥା ସମ୍ପର୍କରେ ଆଲୋଚନା କରାଗଲା ।

**(କ) ସହାନୁଭୂତି** :—ଏହା ଏକ ସାମାଜିକ ଗୁଣ, ଅନ୍ୟର ଦୁଃଖରେ ନିଷ୍କ୍ରିୟଭାବେ ସମଦୁଃଖୀ ହେବା ପରିବର୍ତ୍ତେ ସେହି ଦୁଃଖର ଦୂରୀକରଣ ନିମିତ୍ତ ପ୍ରଚେଷ୍ଟା ହିଁ ପ୍ରକୃତରେ ସହାନୁଭୂତି ପଦବାଚ୍ୟ । ତେଣୁ ଏହା ଏକ କ୍ରିୟାଶୀଳ ଭାବ । ପରିବାରରୁ ଶିଶୁର ଶିକ୍ଷା ଆରମ୍ଭ ହୋଇଥାଏ । ଏହା ସଙ୍ଗେ ସଙ୍ଗେ ଶିଶୁର କେତେକ ସାମାଜିକ ଗୁଣର ବିକାଶ ମଧ୍ୟ ପରିବାର ଦ୍ୱାରା ସଙ୍ଗଠିତ ହୋଇଥାଏ । ସହାନୁଭୂତିଶୀଳତା ଉପଦେଶ ମଧ୍ୟରେ ସୀମାବଦ୍ଧ ନୁହେଁ । ଶିଶୁ ପରିବାରବର୍ଗଙ୍କଠାରୁ ସ୍ନେହ ମମତା ପାଇବା ସଙ୍ଗେ ସଙ୍ଗେ ବିପଦ ବା ଦୁଃଖ ସମୟରେ ଆବଶ୍ୟକତା ଅନୁଯାୟୀ ସାହାଯ୍ୟ ଓ ସହାନୁଭୂତି ପାଇଲେ ହିଁ ତା ହୃଦୟରେ ଅନ୍ୟମାନଙ୍କ ପ୍ରତି ସହାନୁଭୂତିଶୀଳତା ଜାଗ୍ରତ ହୋଇପାରିବ । ଏତଦ୍ ବ୍ୟତିରେକେ ଶିଶୁଠାରେ ଏଗୁଡ଼ିକ ବିକଶିତ ହୋଇପାରିନଥାଏ । କାରଣ, କମବୟସ୍କ ଶିଶୁ ତା'ର ପର୍ଯ୍ୟବେକ୍ଷଣ ଶକ୍ତି, କଳ୍ପନା ଶକ୍ତି ତଥା ତାର ଅନୁଭୂତି ଦ୍ୱାରା ହିଁ ଅନ୍ୟପ୍ରତି ସହାନୁଭୂତି ବା ସମବେଦନା ପ୍ରକାଶ କରିବାପାଇଁ ସଫଳ

ହୋଇଥାଏ । ଶିଶୁମାନଙ୍କ ଠାରେ ଏହି ସାମାଜିକ ଗୁଣର ବିକାଶ ନିମିତ୍ତ ଗୁରୁଜନ ବା ପ୍ରାପ୍ତବୟସ୍କମାନେ ଉପଯୁକ୍ତ ଆଦର୍ଶ ଦ୍ୱାରା ଶିଶୁମନରୁ ଘୃଣା, ଈର୍ଷା ଇତ୍ୟାଦି ଭାବ ଦୂର କରିବା ସର୍ବାଦୌ କାମ୍ୟ । ଶିଶୁ ଏହି ଗୁଣଦ୍ୱାରା ପ୍ରଥମେ ପରିଚିତ ବ୍ୟକ୍ତିମାନଙ୍କ ପ୍ରତି ବିଶ୍ୱାଶୀଳ ହୋଇଥାଏ । ମାତ୍ର ପରେ ପରିଚିତ ଓ ଅପରିଚିତ ପ୍ରତ୍ୟେକ ବ୍ୟକ୍ତିର ଦୁଃଖରେ ଦୁଃଖିତ ହେବାର ସାମର୍ଥ୍ୟ ହାସଲ କରିପାରିଥାଏ ।

(ଖ) ବନ୍ଧୁତ୍ୱ :—ପରସ୍ପର ପ୍ରତି ଅନୁରାଗ ତଥା ଭାବ ପ୍ରବଣତା ବନ୍ଧୁତ୍ୱ ସ୍ଥାପନ କରିଥାଏ । ଦୁଇ ତିନି ବର୍ଷର ଶିଶୁ ତା'ର ସମବୟସ୍କ ଶିଶୁ ସହିତ ସମ୍ପର୍କ ସ୍ଥାପନ କରିଥାଏ ଓ ଏହି ସମ୍ପର୍କ କ୍ରମେ ବନ୍ଧୁତାରେ ପରିଣତ ହୁଏ । ମୂଳତଃ ସମ ଆଗ୍ରହ, ସମ ବୟସ, ସମ ଇଚ୍ଛା, ସାମାଜିକ ଓ ଅର୍ଥନୈତିକ ସାମ୍ୟ, ପାରିବାରିକ ସମ୍ପର୍କ, ବାସସ୍ଥାନର ନିକଟବର୍ତ୍ତୀତା ଇତ୍ୟାଦି ବନ୍ଧୁତାର ଭିତ୍ତିଭୂମି ରୂପେ କାର୍ଯ୍ୟ କରିଥାନ୍ତି । ଏହି ବନ୍ଧୁତ୍ୱଦ୍ୱାରା ସ୍ନେହ, ମମତା, କରୁଣା, ସହାନୁଭୂତି, ସମବେଦନା ଇତ୍ୟାଦି ସାମାଜିକ ଗୁଣ ଶିଶୁଠାରେ ଦେଖାଯାଇଥାଏ । ଶ୍ରେଣୀରେ ଛାତ୍ରମାନଙ୍କ ସମ୍ପର୍କରେ ଅନୁଶୀଳନ ଓ ପର୍ଯ୍ୟବେକ୍ଷଣ ଦ୍ୱାରା ଜଣାଯାଇଛି ଯେ ଅନେକ ଛାତ୍ର ଏହି ବନ୍ଧୁତା ସ୍ଥାପନ ପାଇଁ ବ୍ୟଗ୍ର ଥିବାବେଳେ କେତେକ ଛାତ୍ର ବନ୍ଧୁହୀନ ଭାବେ ରହିଥାନ୍ତି । ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ ଯୋଗୁଁ ଏଭଳି ଘଟିଥାଏ । ଯେଉଁ ଶିଶୁମାନଙ୍କ ସହିତ ସମସ୍ତେ ମିଶିବାକୁ ବା ବନ୍ଧୁତ୍ୱ ସ୍ଥାପନ କରିବାକୁ ବ୍ୟଗ୍ର ହୋଇଥାନ୍ତି ସେମାନଙ୍କୁ ସର୍ବଗୁଣ ସମ୍ପନ୍ନ (Star) ଓ ବନ୍ଧୁହୀନମାନଙ୍କୁ (Isolate) କୁହାଯାଏ । ଏତଦ୍‌ବ୍ୟତୀତ କେତେକ ଶିଶୁ ଗୋଟିଏ ପିଲା ସହିତ ନିବିଡ଼ ବନ୍ଧୁତା ସ୍ଥାପନ କରିଥାନ୍ତି ଓ କେତେକ ଏକାଧିକ ସଙ୍ଗ ହୋଇଥିବାର ଦେଖାଯାଏ । ଏଗୁଡ଼ିକୁ ଯଥାକ୍ରମେ ଯୁଗ୍ମ (Pair) ଓ ବନ୍ଧୁଭାବାପନ୍ନ ଦଳରୂପେ ଅଭିହିତ କରାଯାଏ । ଏସବୁ ଭିନ୍ନତାକୁ ଲକ୍ଷ୍ୟକରି ଶିଶୁ ତଥା ଛାତ୍ରଛାତ୍ରୀମାନଙ୍କୁ ଉପଯୁକ୍ତ ପଥରେ ପରିଚାଳିତ କରିବା ନିମିତ୍ତ ଶିକ୍ଷକ ଦୃଷ୍ଟିଦେବା ବିଧେୟ । ନିଃସଙ୍ଗ ବା ଏକାକୀ (Isolate) ଶିଶୁ କିପରି ଶ୍ରେଣୀରେ ଅନ୍ୟମାନଙ୍କ ସହ ସୁସମ୍ପର୍କ ସ୍ଥାପନ କରିପାରିବ ଓ ଅନ୍ୟମାନେ ତା'କୁ ଗ୍ରହଣ କରିନେବେ ସେଥିନିମିତ୍ତ ଶିକ୍ଷକ ଉପଯୁକ୍ତ ପଦକ୍ଷେପ ନେବା ବାଞ୍ଛନୀୟ ।

ପରୀକ୍ଷଣଦ୍ୱାରା ଜଣାଯାଇଛି ଯେ ମୁଖ୍ୟତଃ ନିମ୍ନକାରଣ ଗୁଡ଼ିକ ଯୋଗୁଁ ବାଳକ ବାଳିକାମାନେ ନିଃସଙ୍ଗ ହୋଇଥାନ୍ତି । ଯଥା :—

(କ) ଅସାମାଜିକତା (Anti-Social) :—କେତେକ ଛାତ୍ରଛାତ୍ରୀ ବ୍ୟବହାରରେ ରୁକ୍ଷ ହୋଇଥାନ୍ତି । ଏମାନେ ଅସାମାଜିକତା ଗୁଣ ଯଥା ଶ୍ରେଣୀରେ ଗଣ୍ଡଗୋଳ କରିବା, ଅନ୍ୟମାନଙ୍କୁ ମାରିବା, ବହିପତ୍ର ଓ ପଢ଼ିବାପାଠ ଚୋରି କରିବା, ବହି

ଓ ଖାଦ୍ୟପେୟ ଚୋରିକରିବା ଇତ୍ୟାଦି ଗୁଣ ପ୍ରଦର୍ଶନ କରିବା ହେତୁ ଏମାନଙ୍କ ସହିତ ଅନ୍ୟମାନେ ବନ୍ଧୁତା ସ୍ଥାପନ କରିବାପାଇଁ ଅନାଗ୍ରହ ଭାବ ଦେଖାଇଥାନ୍ତି ।

(ଖ) ଉଦାସୀନ (Socially Indifferent) :—ଏଭଳି ଛାତ୍ର ଛାତ୍ରୀମାନେ ସର୍ବଦା ଚିନ୍ତାଶୀଳ, ଅନ୍ୟମନସ୍କ ଓ ବିଷର୍ଣ୍ଣଭାବ ଦେଖାଇଥାନ୍ତି । ଏମାନେ ପ୍ରାୟ ଅନ୍ତର୍ମୁଖୀ (Introvert) । ଛାତ୍ର ଛାତ୍ରୀମାନଙ୍କର କଳ୍ପନା, ଚିନ୍ତା, ଧ୍ୟାନ ସର୍ବଦା ଆତ୍ମମୁଖୀ । ଏମାନେ ବନ୍ଧୁତ୍ୱ ସ୍ଥାପନ କରି ଏକ କର୍ମ ମୁଖର ଜୀବନଯାପନ ପାଇଁ ଆଶାୟୀ ନୁହଁନ୍ତି । ତେଣୁ ସେମାନଙ୍କୁ ମାନସିକ ସ୍ୱାସ୍ଥ୍ୟ ଫେରାଇ ଆଣିବା ନିମିତ୍ତ ଶିକ୍ଷକ ସ୍ନେହ ସହାନୁଭୂତି, ସାନ୍ତ୍ୱନା ଦେଇ ଓ ବିଭିନ୍ନ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟରେ ନିୟୋଗ କରି ଏମାନଙ୍କୁ ସାମାଜିକ କରିବା ନିମିତ୍ତ ପ୍ରୟାସୀ ହେବା ଉଚିତ୍ । ଏ କ୍ଷେତ୍ରରେ ଅଭିଜ୍ଞ ମନସ୍ତତ୍ତ୍ୱବିତ୍ଙ୍କ ସାହାଯ୍ୟନେବା ଏକାନ୍ତ ଆବଶ୍ୟକ ।

(ଗ) ଅବନତ :—ବୟସ ବୃଦ୍ଧି ଅନୁସାରେ ଯେଉଁମାନେ ସାମାଜିକ ପରିପୂର୍ଣ୍ଣତା (Social Maturity) ପାଇ ନଥାନ୍ତି ସେମାନଙ୍କଠାରେ ମଧ୍ୟ ନିଃସଙ୍ଗ ମନୋଭାବ ଦେଖା ଯାଇଥାଏ ।

ଯେଉଁ ଛାତ୍ରମାନେ ବନ୍ଧୁ ପ୍ରିୟ ଓ ଯେଉଁମାନଙ୍କ ସହିତ ବନ୍ଧୁତା ସ୍ଥାପନପାଇଁ ଅନ୍ୟ ଛାତ୍ରମାନେ ବ୍ୟଗ୍ର ସେମାନଙ୍କଠାରେ କେତେକ ବିଶିଷ୍ଟ ଗୁଣ ପରିଲକ୍ଷିତ ହୋଇଥାଏ । ମୁଖ୍ୟତଃ ଶିଶୁର ସହନଶୀଳତା, ସ୍ୱାସ୍ଥ୍ୟ, କର୍ମଠତା, ନିର୍ଭରଯୋଗ୍ୟତା (Dependability), ସହଯୋଗୀତା (Co-operation) ସେବା ପରାୟଣ ମନୋଭାବ, ସ୍ନେହ ମମତା । ପ୍ରତିଯୋଜନ କ୍ଷମତା (Adaptability) ଆବେଗର ସ୍ଥିତି (Emotional Balance) ଇତ୍ୟାଦି ଗୁଣ ତାକୁ ଜନପ୍ରିୟ କରାଇବାରେ ସାହାଯ୍ୟ କରିଥାଏ ।

**ସହଯୋଗିତା ଏବଂ ପ୍ରତିଯୋଗିତା (Co-operation and Competition)** :—ସହଯୋଗିତା ଏକ ବିଶିଷ୍ଟ ସାମାଜିକ ଲକ୍ଷଣ । ଶିଶୁ ତା'ର ପରିବାର ପରିବେଶକୁ ଛାଡ଼ି ଯେତେବେଳେ ବାହ୍ୟ ପରିବେଶ ସହିତ ସମ୍ପର୍କ ପ୍ରତିଷ୍ଠା କରିବାକୁ ଆରମ୍ଭ କରେ, ସେ କ୍ରମଶଃ ଗୋଷ୍ଠୀଗତ ମନୋଭାବ ବୃଦ୍ଧି କରାଇଥାଏ । ଦଳଭୁକ୍ତ ହେବାପରେ ସ୍ୱତଃ ଶିଶୁଠାରେ ସହଯୋଗୀ ମନୋଭାବ ବୃଦ୍ଧି ହୋଇଥାଏ । ପ୍ରତିଯୋଗୀତା ସହଯୋଗୀତାର ମାତା ଏହି ଦଳଗତ ସହଯୋଗୀତା ମନୋଭାବ ଯୋଗୁଁ ଶିଶୁମାନଙ୍କୁ ପ୍ରତିଯୋଗୀତାର ସମ୍ମୁଖୀନ ହେବାକୁ ପଡ଼େ । କାରଣ, ଅନ୍ୟ ଦଳ ସହିତ ପ୍ରତିଯୋଗୀତା ପରିପୂରକ କରିବା ପାଇଁ ଶିଶୁ ତତ୍ପର ହୋଇଥାଏ । ସହଯୋଗୀତା ମନୋବୃତ୍ତି ମଧ୍ୟରୁ କେଉଁଟି ଆଗ ଦେଖାଦିଏ ତାହା ନିର୍ଦ୍ଧାରଣ କରିବା

ମଧ୍ୟ ଅସମ୍ଭବ । କାରଣ ବାଲ୍ୟାବସ୍ଥାରେ ହିଁ ଭାଇ ଭଉଣୀମାନଙ୍କ ମଧ୍ୟରେ ପରିବାର ଓ ଆତ୍ମୀୟସ୍ୱଜନଙ୍କ ଶ୍ରଦ୍ଧାଭାଜନ ହେବା ନିମିତ୍ତ ପ୍ରତିଯୋଗିତା ହୋଇଥାଏ । ତେଣୁ ଏ ପ୍ରକାର ପ୍ରତିଯୋଗିତା ଶ୍ରେଣୀ ଗୃହରେ ମଧ୍ୟ ହେବା ସମ୍ଭବ । ତେବେ ପରିବାରରୁ ମଧ୍ୟ ଶିଶୁ ସହଯୋଗିତା ସଂପର୍କରେ ଜାଣିଥାଏ । ଅଭିଜ୍ଞତା ଓ ପ୍ରଶିକ୍ଷା ଫଳରେ ପ୍ରତିଯୋଗିତା ସହଯୋଗିତାର ସ୍ଥାନ ଗ୍ରହଣ କରେ । ପ୍ରତିଯୋଗିତା ନିନ୍ଦନୀୟ ନୁହେଁ, କାରଣ ପ୍ରତିଯୋଗିତା ମନୋଭାବ ବ୍ୟକ୍ତି ଶିଶୁର ଉନ୍ନତି ଓ ସାଫଲ୍ୟତା ନିମିତ୍ତ ଚେଷ୍ଟା ଅବ୍ୟାହତ ରହିପାରେ । ତେବେ ଆବଶ୍ୟକତା ଅନୁଯାୟୀ ସମାଜରେ ପ୍ରତିଯୋଗିତା ଓ ସହଯୋଗିତା ଉଭୟ ମନୋବୃତ୍ତିର ବିକାଶ ହେବା ଆବଶ୍ୟକ । ପ୍ରତିଯୋଗିତା ମନୋଭାବର ଆବଶ୍ୟକତା ଥିଲେ ହେଁ ଏହାର ଅପକାରିତା ମଧ୍ୟ ଅନେକ । କାରଣ, ସମୟ ସମୟରେ ଏପରି ମନୋଭାବ ଶିଶୁକୁ ଇର୍ଷାପରାୟଣ ଓ ଉତ୍ତେଜିତ କରିଦେଇଥାଏ । ସେ ଅନ୍ୟ ପ୍ରତି ଇର୍ଷାନ୍ୱିତ ହୋଇପଡ଼େ । ତେଣୁ ଏ ଉଭୟ ସାମାଜିକ ବୃତ୍ତି ମଧ୍ୟରେ ସମନ୍ୱୟ ସ୍ଥାପନ କରିବା ଶିକ୍ଷକଙ୍କର ପ୍ରଧାନ କର୍ତ୍ତବ୍ୟ । ଏତଦ୍‌ବ୍ୟତୀତ ପ୍ରତିଯୋଗିତା ମନୋଭାବ ସୁସ୍ଥ ଓ ସଙ୍ଗଠନ ମୂଳକ ହେଲେ ସାମାଜିକ ସୁସ୍ଥତା ରକ୍ଷା ହୋଇପାରିବ ।

ଶିଶୁମାନଙ୍କର ହର୍ବବିଧ ଉନ୍ନତି ସଙ୍ଗେ ସଙ୍ଗେ ଉତ୍ତମ ଓ ସମାଜ ଉପଯୋଗୀ ସାମାଜିକ ଗୁଣଗୁଡ଼ିକ ଯେପରି ବିଦ୍ୟାଳୟ ଓ ପରିବାରର ସୁସ୍ଥ ବାତାବରଣ ମଧ୍ୟରେ ବିକଶିତ ହୋଇପାରିବ ସେଥିପ୍ରତି ଶିକ୍ଷକ, ପିତା ମାତା ତତ୍ପର ଓ ସଜାଗ ରହିବା ଏକାନ୍ତ ଆବଶ୍ୟକ ।



# ନବମ ଅଧ୍ୟାୟ

## ବ୍ୟକ୍ତିଗତ ତାରତମ୍ୟ

## (Individual Difference)

ପ୍ରତ୍ୟେକ ବ୍ୟକ୍ତି ଏକ ନିର୍ଦ୍ଦିଷ୍ଟ ଜୈବିକ ଓ ଶାରୀରିକ ସାଦୃଶ୍ୟ ନେଇ ଜନ୍ମ ଗ୍ରହଣ କରିଥାନ୍ତି । ପ୍ରତ୍ୟେକ ବ୍ୟକ୍ତିର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ବିକାଶକ୍ରମ ସମାନ । ପ୍ରତ୍ୟେକ ବ୍ୟକ୍ତି କେତେକ ସାଧାରଣ ମାନବିକ ଗୁଣାବଳୀର ଅଧିକାରୀ ହୋଇଥାନ୍ତି । ସମସ୍ତ ମନୁଷ୍ୟ ସେମାନଙ୍କ ଶରୀରରେ ହାତ, ଗୋଡ଼ ମୁଣ୍ଡ, ନାକ, କାନ ଆଦି ଅବୟବ ଧାରଣ କରିଥାନ୍ତି । ସମସ୍ତେ କିଛିନା କିଛି ବୁଦ୍ଧିମତ୍ତାର ଅଧିକାରୀ ହେବା ସଙ୍ଗେ ସଙ୍ଗେ ଆବେଗିକ ଅନୁଭୂତି ଏବଂ ଶାରୀରିକ ଓ ମାନସିକ ଆବଶ୍ୟକତା ଅନୁଭବ କରନ୍ତି । ଏହିପରି ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ନାନାବିଧ ସାଦୃଶ୍ୟ ପରିଲକ୍ଷିତ ହୁଏ । ଏସବୁ ସମାନତା ସତ୍ତ୍ୱେ ଏହା ସ୍ୱତଃସିଦ୍ଧ ଯେ ପୃଥିବୀର କୌଣସି ଦୁଇଟି ବ୍ୟକ୍ତି ଏକଭଳି ନୁହନ୍ତି । ଅତଏବ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଯେପରି ନାନା ସାଦୃଶ୍ୟ ଅଛି, ସେହିପରି ନାନା ବୈସାଦୃଶ୍ୟ ବା ପାର୍ଥକ୍ୟ ଅଛି । ପ୍ରତ୍ୟେକ ବ୍ୟକ୍ତି ଜୀବନରେ ପରିଲକ୍ଷିତ ଏହି ସ୍ୱାତନ୍ତ୍ର୍ୟ ବା ପାର୍ଥକ୍ୟ ସାଧାରଣତଃ ପରିମାଣଗତ ହୋଇଥାଏ; ଗୁଣାଗତ ନୁହେଁ । ମାନବର ଶାରୀରିକ, ବୌଦ୍ଧିକ, ନୈତିକ, ସାମାଜିକ ପ୍ରଲକ୍ଷଣ (Trait) ଗୁଡ଼ିକ ବିଭିନ୍ନ ବ୍ୟକ୍ତିଙ୍କ ପାଖରେ ଭିନ୍ନ ଭିନ୍ନ ପରିମାଣରେ ଦେଖାଯାଏ । ଅତଏବ ବ୍ୟକ୍ତିଗତ ତାରତମ୍ୟ ସ୍ତରଗତ ହୋଇଥାଏ, ପ୍ରକାରଗତ ନୁହେଁ ।

**ପ୍ରକୃତି (Nature)** :—ବ୍ୟକ୍ତିଗତ ତାରତମ୍ୟ କୌଣସି ଦେଶ, କାଳ, ପାତ୍ର ମଧ୍ୟରେ ସୀମାବଦ୍ଧ ନୁହେଁ । ଏହା ପ୍ରକୃତିର ଏକ ନିୟମ । ମନୋବୈଜ୍ଞାନିକମାନେ ପରୀକ୍ଷା ଦ୍ୱାରା ଏହାର ପ୍ରକୃତି ଓ ବିସ୍ତୃତି ଉପରେ ଆଲୋକପାତ କରିଛନ୍ତି । ଆଧୁନିକ ମନୋବୈଜ୍ଞାନିକ ସିଦ୍ଧାନ୍ତ ଅନୁସାରେ ଶାରୀରିକ ଓ ମାନସିକ ପ୍ରଲକ୍ଷଣ ଅନୁସାରେ ମନୁଷ୍ୟମାନଙ୍କୁ ବିଭିନ୍ନ ବର୍ଗରେ ବଣ୍ଟନ କରିବା ସମ୍ଭବ ନୁହେଁ; କିନ୍ତୁ ସାମ୍ଭାବ୍ୟ ସ୍ୱାଭାବିକତା ସୂଚକ ରେଖାଚିତ୍ର (Normal probability curve) ସାହାଯ୍ୟରେ

ମନୁଷ୍ୟଠାରେ ଥିବା ସମସ୍ତ ଶାରୀରିକ, ମାନସିକ, ଆବେଗିକ ଗୁଣାଗୁଣର ପରିମାପକରି ସେମାନେ କେଉଁ ସ୍ତରର ବ୍ୟକ୍ତି ତାହା ନିର୍ଣ୍ଣୟ କରିବା ସହଜ ।



ସମ୍ଭାବ୍ୟ ସ୍ୱାଭାବିକତା ସୂଚକ ରେଖା ଚିତ୍ର
(NORMAL PROBABILITY CURVE)

ସୂଚକ ରେଖାଚିତ୍ରଟି ଘଣ୍ଟି ସଦୃଶ ଏବଂ ଏହା ଦୁଇ ପଟକୁ ସମାନ ଭାବରେ ଢାଲୁ । ମନୁଷ୍ୟମାନଙ୍କ ବୁଦ୍ଧିମତ୍ତାର ପରିମାପ ନେଇ ଏପରି ରେଖାଚିତ୍ର ଅଙ୍କନ କଲେ ଦେଖାଯାଏ ଯେ ଏକ ହାରାହାରି **(average)** ବୁଦ୍ଧିମତ୍ତାର ବ୍ୟକ୍ତିଙ୍କ ସଂଖ୍ୟା ସର୍ବାଧିକ । ଏହି ବୁଦ୍ଧିମତ୍ତା ଠାରୁ ଅଧିକ ବୁଦ୍ଧିମାନଙ୍କ ସଂଖ୍ୟା ଯେତେ କମ୍ ବୁଦ୍ଧ୍ୟଙ୍କ (୬୫) ବିଶିଷ୍ଟ ବ୍ୟକ୍ତିଙ୍କ ସଂଖ୍ୟା ମଧ୍ୟ ଠିକ୍ ସେତେ ।

ଏକ ନିର୍ଦ୍ଦିଷ୍ଟ ସ୍କେଲ ନିର୍ଣ୍ଣୟ କରାଯାଇ ସେହି ସ୍କେଲ ଅନୁସାରେ ସ୍ୱାଭାବିକତା ବା ବୁଦ୍ଧିମତ୍ତା ମାପ କରାଯାଇ ଏହି ରେଖାଚିତ୍ର ଅଙ୍କନ କରାଯାଏ । ଏହା ବ୍ୟକ୍ତିର ଦୈନନ୍ଦିନ ଜୀବନର ବ୍ୟବହାର ସହ ସଂଶ୍ଳିଷ୍ଟ ନୁହେଁ । ଯଦି ପ୍ରଥାନୁଯାୟୀ ବ୍ୟକ୍ତିର ପରିମାପ ଥଣ୍ଡା-ଉଷ୍ଣତା, ଡେଙ୍ଗା-ଗେଡ଼ା, ଗୋରା-କଳା, ଅନ୍ତର୍ମୁଖୀ-ବହିର୍ମୁଖୀ, ଧନୀ-ଦରିଦ୍ର, ସବଳ-ଦୁର୍ବଳ ଭିତ୍ତିରେ କରାଯାଏ ତେବେ ଲବ୍ଧ ସୂଚକ ଅଙ୍କଗୁଡ଼ିକୁ ନେଇ ଗ୍ରାଫ୍ ଅଙ୍କନ କଲେ ଏକ ଦ୍ୱି-ଭଙ୍ଗିଳ ରେଖାଚିତ୍ର ସୃଷ୍ଟି ହେବ ।


ଦ୍ୱି-ଭଙ୍ଗିଳ ରେଖା ଚିତ୍ର
(BIMODAL CURVE)

ଏକ ନିର୍ଦ୍ଦିଷ୍ଟ ପ୍ରଲକ୍ଷଣ **(Trait)** ଉପରକୁ ନେଲେ ପ୍ରତ୍ୟେକ ବ୍ୟକ୍ତିର ଅନ୍ୟ ବ୍ୟକ୍ତି ମାନଙ୍କଠାରୁ ଭିନ୍ନତା ପରିଲକ୍ଷିତ ହୁଏ । ତା'ଛଡ଼ା ଜଣେ ବ୍ୟକ୍ତି ମଧ୍ୟରେ ବିଭିନ୍ନ ପ୍ରଲକ୍ଷଣ ଗୁଡ଼ିକ ଭିନ୍ନ ଭିନ୍ନ ମାତ୍ରାରେ ଥିବାରୁ ସେ ନାନାପ୍ରକାର ଆଚରଣ ପ୍ରଦର୍ଶନ କରେ । ଏପରିକି ଜଣେ ବ୍ୟକ୍ତି ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟକୁ ବିଭିନ୍ନ ସମୟରେ ନାନାପ୍ରକାର ପୃଥକ୍ ଉପାୟ ଅବଲମ୍ବନ କରି ସମ୍ପନ୍ନ କରିଥାଏ । ଅତଏବ ବ୍ୟକ୍ତି ମଧ୍ୟରେ ଅନ୍ତଃ-

ତାରତମ୍ୟ (Intra-difference) ମଧ୍ୟ ରହିଛି । ଏ ସମସ୍ତ ବ୍ୟକ୍ତିଗତ ତାରତମ୍ୟ ଆଲୋଚନାର ଅନ୍ତର୍ଭୁକ୍ତ ।

ଆମେ ଲକ୍ଷ୍ୟ କରିପାରୁଥିବା ପ୍ରତ୍ୟେକ ପରିମାପ ସାପେକ୍ଷ ମାନବୀୟ ଆଚରଣରେ ବ୍ୟକ୍ତିଗତ ତାରତମ୍ୟ ରହିଥାଏ । ସରଳ ଭାବରେ କହିଲେ ମନୁଷ୍ୟର ସମସ୍ତ ବୌଦ୍ଧିକ, ବିଦ୍ୟାଗତ, ମନଃ-ଶାରୀରିକ, ସାମାଜିକ ଓ ଆର୍ଥିକ କାର୍ଯ୍ୟକଳାପରେ ବ୍ୟକ୍ତିଗତ ତାରତମ୍ୟ ପରିଲକ୍ଷିତ ହୁଏ ।

**ଶିଶୁମାନଙ୍କ ମଧ୍ୟରେ ବ୍ୟକ୍ତିଗତ ତାରତମ୍ୟ** :—ଶିକ୍ଷକ ଶ୍ରେଣୀ ଗୃହ ମଧ୍ୟରେ ଛାତ୍ର ଛାତ୍ରୀମାନଙ୍କ ଆଚରଣ ଅଧ୍ୟୟନ କଲେ ତନ୍ମଧ୍ୟରେ ବ୍ୟକ୍ତିଗତ ତାରତମ୍ୟର ଲକ୍ଷ୍ୟ କରିପାରିବେ । ବିଶେଷତଃ ସମସ୍ତ ଛାତ୍ରଙ୍କର ଶିକ୍ଷାର ବେଗ ସମାନ ନଥାଏ । କେତେକ ଉଦ୍ଦିଷ୍ଟ ସମୟ ମଧ୍ୟରେ ଦିଆଯାଇଥିବା ପାଠ୍ୟକ୍ରମ ସମାପ୍ତ କରିଥାନ୍ତି; ଏବଂ ଅନ୍ୟ କେତେକ ବାରମ୍ବାର ଚେଷ୍ଟାକରି ମଧ୍ୟ ବିଫଳ ହୋଇଥାନ୍ତି । ଏହି ସଫଳତା ବା ବିଫଳତା ଛାତ୍ରର ଅନ୍ତର୍ନିହିତ ସାମର୍ଥ୍ୟର ଭିନ୍ନତା ଯୋଗୁଁ ଅଥବା ସାମାଜିକ ଓ ଅର୍ଥନୈତିକ ପରିବେଷ୍ଟନୀର ପ୍ରଭାବ ଯୋଗୁଁ ହୋଇଥାଏ ତାହା ବ୍ୟକ୍ତିଗତ ତାରତମ୍ୟର ବିଷୟବସ୍ତୁ ।

**ବ୍ୟକ୍ତିଗତ ତାରତମ୍ୟ କ୍ଷେତ୍ରରେ ବଂଶାନୁକ୍ରମ (Heredity)ର ପ୍ରଭାବ** :—ସବୁ ପ୍ରଥମେ ମନୋବୈଜ୍ଞାନିକମାନେ ବିଶ୍ୱାସ କରୁଥିଲେ ଯେ ଜିନ୍‌ର ବିଭିନ୍ନତା ବ୍ୟକ୍ତିଗତ ତାରତମ୍ୟ ସୃଷ୍ଟି କରିବାର ପ୍ରଧାନ କାରଣ । ବିଭିନ୍ନ ବ୍ୟକ୍ତିଙ୍କ ମଧ୍ୟରେ ଥିବା ଶାରୀରିକ ପାର୍ଥକ୍ୟ ଏପରି ମତବାଦକୁ ଅଧିକ ବଳିଷ୍ଠ କରିଥିଲା । ସାଧାରଣତଃ ମନୁଷ୍ୟମାନଙ୍କର ଆଖିର ରଙ୍ଗ, ଶରୀରର ବର୍ଣ୍ଣ, ବାଳର ରଙ୍ଗ, ଉଚ୍ଚତା ଓ ଓଜନରେ ତାରତମ୍ୟ ପରିଲକ୍ଷିତ ହୁଏ । ଜିନ୍ ଓ ଶାରୀରିକ ପ୍ରଲକ୍ଷଣ ମଧ୍ୟରେ ଥିବା ସମ୍ପର୍କ ପ୍ରମାଣିତ ହୋଇସିବାପରେ ବୈଜ୍ଞାନିକମାନେ ଚିନ୍ତାକରିଥିଲେ ଯେ ଜିନ୍ ସହିତ ବୁଦ୍ଧିମତ୍ତାର ମଧ୍ୟ ସମ୍ପର୍କ ରହିଛି । କିନ୍ତୁ ଏହା ଏପର୍ଯ୍ୟନ୍ତ ପ୍ରମାଣିତ ହୋଇପାରି ନଥିବାରୁ ଜିନ୍ ଯୋଗୁଁ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ବୁଦ୍ଧିମତ୍ତାର ତାରତମ୍ୟ ଦେଖାଯାଏ ବୋଲି କହିବା ଠିକ୍ ନୁହେଁ । ଏ କ୍ଷେତ୍ରରେ ଆନାଷ୍ଟାସି (Anastasi)ଙ୍କ ମତ ଗ୍ରହଣ ଯୋଗ୍ୟ । ତାଙ୍କ ମତରେ ଜିନ୍ ବା ଶାରୀରିକ ଗଠନ ବୁଦ୍ଧିମତ୍ତା ଓ ବ୍ୟକ୍ତିତ୍ୱର ବିକାଶକୁ ନିୟନ୍ତ୍ରିତ କରେ ନାହିଁ । ଶାରୀରିକ ପ୍ରଲକ୍ଷଣଗୁଡ଼ିକ ସାମାଜିକ ବିଷୟବସ୍ତୁ ଏବଂ ବୌଦ୍ଧିକ ବ୍ୟବହାର ମନୁଷ୍ୟର ବ୍ୟକ୍ତିଗତ ।

ଦ୍ୱିତୀୟତ ଲିଙ୍ଗଗତ ପାର୍ଥକ୍ୟ ମନୁଷ୍ୟମାନଙ୍କ ମଧ୍ୟରେ ତାରତମ୍ୟ ହୋଇଥିବାର ବହୁ ମନୋବିଜ୍ଞାନୀ ମତ ପ୍ରଦାନ କରିଥିଲେ । ମାତୃଗର୍ଭରେ ସମାସ୍ଥନ

ସମୟରେ X କମ୍ବା Y ଗୁଣସୂତ୍ର (Chromosomes) ଅନୁସାରେ ସନ୍ତାନର ଲିଙ୍ଗ ନିର୍ଦ୍ଦିଷ୍ଟ ହୋଇଥାଏ ଏବଂ ସେହି ଅନୁସାରେ ଶରୀର ଗଠନ, ସ୍ୱର ଏବଂ ଅନ୍ୟାନ୍ୟ ଦେହଗତ ପାର୍ଥକ୍ୟ ସୃଷ୍ଟି ହୋଇଥାଏ । ସେହି ଅନୁସାରେ ମାଂସପେଶୀର ବଳ ଓ ପରିପକ୍ୱତା (maturity) ନିୟନ୍ତ୍ରିତ ହୋଇଥାଏ । ପ୍ରଥମେ ବିଶ୍ୱାସ କରାଯାଉଥିଲା ଯେ ଲିଙ୍ଗଗତ ପାର୍ଥକ୍ୟ ଯୋଗୁଁ ବ୍ୟକ୍ତିଗତ ତାରତମ୍ୟ ସୃଷ୍ଟି ହୋଇଥାଏ । ବାଳିକାମାନେ ପଠନରେ ଏବଂ ବାଳକମାନେ ଗଣିତରେ ଉତ୍କର୍ଷତା ପ୍ରତିପାଦନ କରିପାରିବେ; ବିଭିନ୍ନ ଅଫିସ ରୁଟିନ୍ କାର୍ଯ୍ୟରେ ମହିଳାମାନେ ଉତ୍ତମ କାର୍ଯ୍ୟ କରିବା ସମୟରେ ଯନ୍ତ୍ରପାତି ଓ ମେସିନ ସଂପୃକ୍ତ କାର୍ଯ୍ୟରେ ପୁରୁଷମାନେ ଅଧିକ କ୍ଷମତା ପ୍ରଦର୍ଶନ କରିପାରିବାର ଧାରଣା ସୃଷ୍ଟି ହୋଇଥିଲା ।

କିନ୍ତୁ ଆଧୁନିକ ମନୋବିଜ୍ଞାନୀମାନେ ବିଭିନ୍ନ ପରୀକ୍ଷାରୁ ପ୍ରମାଣିତ କରିଛନ୍ତି ଯେ ବ୍ୟକ୍ତିଗତ ତାରତମ୍ୟ କ୍ଷେତ୍ରରେ ଲିଙ୍ଗ ଭେଦର ପ୍ରଭାବ ଅତି ନଗଣ୍ୟ । ଅନ୍ୟ ଏକ ଶ୍ରେଣୀର ମନୋବିଜ୍ଞାନୀ ଏକ ଭୃତୀୟ ପ୍ରକାର ମତବାଦର ପ୍ରବର୍ତ୍ତକ । ସେମାନଙ୍କ ବଂଶ, କୁଳଆଦି ବା ରକ୍ତ ସଂପର୍କ ବ୍ୟକ୍ତିଗତ ତାରତମ୍ୟ ପାଇଁ ଦାୟୀ । ବ୍ରିଟିଶ ମନୋବିଜ୍ଞାନୀ ଗାଲ୍‌ଟନ (Galton) ୯୭୭ ଜଣ ପ୍ରତିଭାବାନ ବ୍ୟକ୍ତିଙ୍କ ବଂଶାନୁକ୍ରମ ପରୀକ୍ଷା କରି ଦେଖିଥିଲେ ଯେ ସେମାନେ ସମସ୍ତେ କୌଣସି ନା କୌଣସି ପ୍ରଭାବଶାଳୀ ବଂଶର ଦାୟାଦ । ଏହା ଫଳରେ ସେ ମତ ପ୍ରଦାନ କରିଥିଲେ ବ୍ୟକ୍ତିର ବୁଦ୍ଧିମତ୍ତା ଓ ପ୍ରତିଭା ତା'ର ବଂଶରୁ ଆହରଣ କରାଯାଇଥାଏ । ଏହି ମତବାଦକୁ ପରେ କାଲିକାକ୍ (Kallikak) ଓ ନନ୍ (Nunn) ନିଜ ପରୀକ୍ଷା ଦ୍ୱାରା ପୁନଃ ପ୍ରମାଣିତ କରି ଯାଇଛନ୍ତି । କିନ୍ତୁ ଆଧୁନିକ ମନୋବିଜ୍ଞାନୀମାନଙ୍କ ମତରେ ବଂଶାନୁକ୍ରମ ବୁଦ୍ଧିମତ୍ତା ଓ ବ୍ୟକ୍ତିତ୍ୱକୁ ଅନେକ ପରିମାଣରେ ପ୍ରଭାବିତ କରୁଥିଲେ ମଧ୍ୟ ଏହା ବ୍ୟକ୍ତିଗତ ତାରତମ୍ୟର ଏକମାତ୍ର କାରଣ ନୁହେଁ । ବଂଶାନୁକ୍ରମ ସହିତ ପରିବେଷ୍ଟନୀ ମଧ୍ୟ ବ୍ୟକ୍ତିତ୍ୱକୁ ପ୍ରଭାବିତ କରିଥାଏ ।

**ପରିବେଷ୍ଟନୀ ଗତ ପ୍ରଭାବ** :—ବ୍ୟକ୍ତିଗତ ତାରତମ୍ୟ କ୍ଷେତ୍ରରେ ବିଭିନ୍ନ ସାମାଜିକ ଓ ସାଂସ୍କୃତିକ ପରିବେଶର ପ୍ରଭାବ ଉପରେ ଆଧୁନିକ ସମାଜ ବିଜ୍ଞାନୀ ଓ ମନୋବିଜ୍ଞାନୀମାନେ ଆଲୋକପାତ କରିଛନ୍ତି । ଶିଶୁର ମାନସିକ ସାମର୍ଥ କିପରି ଜନ୍ମପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ପରିବେଶ ଦ୍ୱାରା ପ୍ରଭାବିତ ହୁଏ ତାହା ବିଭିନ୍ନ ପଶୁମାନଙ୍କ କ୍ଷେତ୍ରରେ ପରୀକ୍ଷା କରାଯାଇଛି । ଗର୍ଭଧାରଣ ସମୟରେ ମା'ର ଖାଦ୍ୟପେୟର ଅବ୍ୟବସ୍ଥା, ମା' ଭୋଗ କରୁଥିବା କେତେକ ରୋଗ ଏବଂ ନିଶା ଦ୍ରବ୍ୟର ବ୍ୟବହାର ଶିଶୁର ବୌଦ୍ଧିକ ବିକାଶ ଉପରେ ପ୍ରଭାବ ପକାଇଥାଏ । ତା' ଛଡ଼ା କେତେକ ସାମାଜିକ ଉପାଦାନ ଶିଶୁର ବୁଦ୍ଧିମତ୍ତାକୁ ନିୟନ୍ତ୍ରିତ କରିଥାନ୍ତି ।

ସାମାଜିକ ଉପାଦାନଗୁଡ଼ିକ ମଧ୍ୟରେ ବ୍ୟକ୍ତିର ବ୍ୟବସାୟ ବା ରୋଜଗାର ପାଇଁ କରୁଥିବା କାର୍ଯ୍ୟ ସର୍ବାପେକ୍ଷା ପ୍ରଭାବଶାଳୀ । ପ୍ରତ୍ୟେକ କାର୍ଯ୍ୟର ସ୍ୱାତନ୍ତ୍ର୍ୟ ରହିଛି ଏବଂ ସେମାନେ ପରସ୍ପରଠାରୁ ଭିନ୍ନ । ଶିଶୁମାନଙ୍କ ଉପରେ ସେମାନଙ୍କ ପିତା ମାତାଙ୍କ କାର୍ଯ୍ୟ ଓ ବ୍ୟବସାୟର ପ୍ରଭାବ ପଡ଼ିଥାଏ । ଟର୍‌ମାନ (Terman) ଏବଂ ମେରିଲ୍ (Merril) ବିଭିନ୍ନ ବୃତ୍ତିରେ ଓ ବ୍ୟବସାୟ କରୁଥିବା ବ୍ୟକ୍ତିମାନଙ୍କ ସନ୍ତାନମାନଙ୍କୁ ପରୀକ୍ଷା କରି ସେମାନଙ୍କ ବୁଦ୍ଧିମତ୍ତାରେ ତାରତମ୍ୟ ରହିଥିବାର ଲକ୍ଷ୍ୟ କରିଥିଲେ । ସେମାନେ ଏଥିରୁ ସିଦ୍ଧାନ୍ତ ଗ୍ରହଣ କରିଥିଲେ ଯେ କୌଣସି କାର୍ଯ୍ୟରେ ଦକ୍ଷ ବା ବୃତ୍ତି ଅବଲମ୍ବନକାରୀ ବ୍ୟକ୍ତି (Professionals) ଏବଂ ଶାସନ କ୍ଷମତାପ୍ରାପ୍ତ ବ୍ୟକ୍ତି (Executives) ମାନଙ୍କର ସନ୍ତାନମାନେ ଉଚ୍ଚ ବୁଦ୍ଧ୍ୟଙ୍କ (I.Q) ପ୍ରଦର୍ଶନ କରୁଥିବା ସ୍ଥଳେ ଅଣକୁଶଳୀ ଶ୍ରମିକମାନଙ୍କର ସନ୍ତାନମାନେ ସର୍ବନିମ୍ନ ବୁଦ୍ଧ୍ୟଙ୍କ ପ୍ରଦର୍ଶନ କରନ୍ତି । ଏହାର ଅର୍ଥ ନୁହେଁ ଯେ ଏକ ନିର୍ଦ୍ଦିଷ୍ଟ ବୃତ୍ତି ଅବଲମ୍ବନ କରୁଥିବା ବ୍ୟକ୍ତିମାନଙ୍କର ସନ୍ତାନମାନେ ସମାନ ବୁଦ୍ଧ୍ୟଙ୍କ ପ୍ରଦର୍ଶନ କରିବେ । ତେବେ ହାରାହାରି ହିସାବରେ କେତେକ ନିର୍ଦ୍ଦିଷ୍ଟ ବୃତ୍ତିର ବ୍ୟକ୍ତିଙ୍କ ସନ୍ତାନମାନେ ଉଚ୍ଚ ବୁଦ୍ଧ୍ୟଙ୍କ ପ୍ରଦର୍ଶନ କରନ୍ତି । ଏହି ଉଚ୍ଚ ବୁଦ୍ଧ୍ୟଙ୍କ ପ୍ରଦର୍ଶନ ପଛରେ ସେମାନଙ୍କ ପିତାଙ୍କର ବଂଶାନୁଗୁଣ କାର୍ଯ୍ୟ କରେନାହିଁ ବରଂ ସେମାନଙ୍କ ଅପେକ୍ଷାକୃତ ଉନ୍ନତ ପରିବେଶ, ବଡ଼ ଧରଣର ଅଭାବବୋଧ ବା ନ୍ୟୂନତା ବୋଧର ଅନୁପସ୍ଥିତି ସେମାନଙ୍କୁ ଅଧିକ ପ୍ରତିଭାଶାଳୀ କରିଥାଏ ।

ବୁଦ୍ଧିମତ୍ତା ଉପରେ ଦ୍ୱିତୀୟ ପ୍ରକାର ସାମାଜିକ ପ୍ରଭାବ ସହର ଓ ଗ୍ରାମ୍ୟ ପରିବେଶ ଦ୍ୱାରା ପଡ଼ିଥାଏ । ଅନେକ ପରୀକ୍ଷାରୁ ଏହା ସୁସ୍ପଷ୍ଟ ଯେ ସହରାଞ୍ଚଳ ଶିଶୁମାନେ ଗ୍ରାମାଞ୍ଚଳର ଶିଶୁମାନଙ୍କ ଅପେକ୍ଷା ଉଚ୍ଚତର ବୁଦ୍ଧ୍ୟଙ୍କ ପ୍ରଦର୍ଶନ କରିଥାନ୍ତି । ଏହାର କାରଣ ସ୍ୱରୂପ ଉଲ୍ଲେଖ କରାଯାଇପାରେ ଯେ ଅଧିକ ବୁଦ୍ଧିମାନ ବ୍ୟକ୍ତିମାନେ ଗ୍ରାମରୁ ସହରକୁ ଉନ୍ନତ ବୃତ୍ତି ବା ବ୍ୟବସାୟର ଅନୁସନ୍ଧାନରେ ଚାଲିଆସିଥାନ୍ତି । ଏହାର ଅନ୍ୟ ଏକ କାରଣ ହେଲା ଗ୍ରାମ୍ୟ ପରିବେଶ ମଧ୍ୟରେ ଶିଶୁମାନଙ୍କ ବିକାଶ ପାଇଁ ସୁବିଧା ସୁଯୋଗ ସୀମିତ । ଅନ୍ୟ ପକ୍ଷରେ ସହରାଞ୍ଚଳର ପରିବେଶ ବୁଦ୍ଧିମତ୍ତାର ବିକାଶ ପାଇଁ ପ୍ରତ୍ୟେକ ପ୍ରକାର ସୁଯୋଗ ପ୍ରଦାନ କରେ । ଗ୍ରାମାଞ୍ଚଳରେ ବିଦ୍ୟାଳୟର ଅଭାବ, ଶିକ୍ଷାର ନ୍ୟୂନତମ ପ୍ରସାର ଓ ପ୍ରଥାନୁରୂପ ବାତାବରଣ ଶିଶୁର ବୁଦ୍ଧ୍ୟଙ୍କ ବିକାଶପାଇଁ ପ୍ରତିକୂଳ ପରିବେଶମାନ ସୃଷ୍ଟି କରେ । ଜନ୍ମ ସମୟରେ ସହରାଞ୍ଚଳ ଓ ଗ୍ରାମାଞ୍ଚଳର ଶିଶୁମାନଙ୍କ ବୁଦ୍ଧ୍ୟଙ୍କ ପ୍ରାୟ ସମାନ ଥିଲେ ମଧ୍ୟ ବୟସ ବୃଦ୍ଧି କ୍ରମେ ଗ୍ରାମାଞ୍ଚଳ ଛାତ୍ରମାନଙ୍କ ବୁଦ୍ଧ୍ୟଙ୍କ ହ୍ରାସ ଘଟେ ।

ଏହା ଏକ ବହୁ ପ୍ରଚଳିତ ସାମାଜିକ ଧାରଣା ଯେ ଉଚ୍ଚ ଜାତିର ଶିଶୁ ଉଚ୍ଚ ବୁଦ୍ଧ୍ୟଙ୍କ ଯୁକ୍ତ ଓ ନିମ୍ନ ଜାତିର ଶିଶୁ ନିମ୍ନ ବୁଦ୍ଧ୍ୟଙ୍କ ଯୁକ୍ତ ହୋଇଥାନ୍ତି । କୌଣସି ବିଜ୍ଞାନ ସମ୍ମତ କାରଣ ନଥିବାରୁ ଏହି ଧାରଣାକୁ ମନୋବିଜ୍ଞାନୀମାନେ ଗ୍ରହଣ କରୁନଥିଲେ ।

ମାତ୍ର ଆମେରିକାର କେତେକ ମନୋବୈଜ୍ଞାନିକ ଜାତିଗତ ପ୍ରଭେଦ ବିଷୟରେ ଗବେଷଣା କରି ପୂର୍ବତନ ମତବାଦକୁ ସମର୍ଥନ କରିଥିଲେ । ଏହି ମତବାଦକୁ ଅନେକ ମନୋବିଜ୍ଞାନୀ ବିରୋଧ କରିଥିଲେ ଏବଂ ସେମାନେ ପ୍ରମାଣ କରି ଦର୍ଶାଇଥିଲେ ଯେ ବୁଦ୍ଧିମତ୍ତାର ପାର୍ଥକ୍ୟ ଜାତିଗତ ବିଭେଦ ଯୋଗୁଁ ସୃଷ୍ଟି ହୁଏ ନାହିଁ । ଏହାର ମୂଳ କାରଣ ହେଉଛି ପରିବେଷ୍ଟନୀ । ଆଫ୍ରିକାର ନିଗ୍ରୋ, ଅନ୍ୟାନ୍ୟ ଦେଶରେ ଅବହେଳିତ ଜାତି ଓ ଆଦିମ ଅଧିବାସୀମାନେ ଅପେକ୍ଷାକୃତ ନିକୃଷ୍ଟ ପରିବେଷ୍ଟନୀରେ ବାସ କରୁଥିବାରୁ ସେମାନଙ୍କ ବୁଦ୍ଧ୍ୟଙ୍କ ସେହି ଅନୁପାତରେ ନିମ୍ନତର ହୋଇଥାଏ ।

**ବୁଦ୍ଧି (Intelligence)**—ବୁଦ୍ଧି ମନୋବିଜ୍ଞାନର ଏକ ବହୁ ଚର୍ଚ୍ଚିତ ଓ ବିବାଦମାନ ବିଷୟ । ମନୁଷ୍ୟର ବ୍ୟବହାରକୁ ପ୍ରଭାବିତ କରୁଥିବା ଅନେକ ଗୁରୁତ୍ୱ ଉପାଦାନ ମଧ୍ୟରୁ ବୁଦ୍ଧିର ଭୂମିକା ଅନନ୍ୟ । ବୁଦ୍ଧି ଶବ୍ଦର ଅର୍ଥ ଆଭିଧାନିକ ଭାବରେ ଯାହାହେଲେ ମଧ୍ୟ ଏହାର ଧାରଣା ଅସ୍ପଷ୍ଟ ଏବଂ ସନ୍ଦିଗ୍ଧ । ବିଭିନ୍ନ ମନୋବିଜ୍ଞାନୀ ଏହାକୁ ନାନାପ୍ରକାର ଅର୍ଥରେ ଗ୍ରହଣ କରିଥାନ୍ତି । ଫଳରେ ସେମାନଙ୍କ ମଧ୍ୟରେ ମତଭେଦ ଦେଖାଯାଏ । ଭଗବାନଙ୍କର କୌଣସି ନିର୍ଦ୍ଦିଷ୍ଟ ସଂଜ୍ଞା ନିର୍ଣ୍ଣୟ କରିବା ଯେପରି ଅସମ୍ଭବ ବୁଦ୍ଧିର ଅର୍ଥ ବୁଝାଇଦେବା ସେହିପରି କଷ୍ଟକର । ମନୋବିଜ୍ଞାନ ଶାସ୍ତ୍ର ବୁଦ୍ଧିକୁ ଏକ ଗଠିତ ଉପାଦାନ ଭାବରେ ଗ୍ରହଣ କଲେ ସୁଦ୍ଧା ଏହାର ସ୍ଥିତି ନିର୍ଣ୍ଣୟ କରିବାରେ ଅସଫଳ ହୋଇଛି । ଫଳତଃ ଏହି ବିଷୟଟି କମ୍ ଗ୍ରହଣୀୟ ଅଥଚ ଅଧିକ ବିବାଦମୟ ହୋଇଯାଇଛି । ସମାଲୋଚକମାନଙ୍କ ପାଖେ ଏହା ଏକ ସମୟୋପଯୋଗୀ, ପରିବର୍ତ୍ତନଶୀଳ ଓ ଅନିର୍ଦ୍ଦିଷ୍ଟ ଉପପାଦ୍ୟ ରୂପେ ପ୍ରତୀୟମାନ ହୋଇଛି । ପ୍ରତ୍ୟେକ ମନୋବିଜ୍ଞାନୀ ଏହାର ସ୍ୱତନ୍ତ୍ର ସଂଜ୍ଞା ନିର୍ଣ୍ଣୟ କରିଛନ୍ତି ଓ ପ୍ରତ୍ୟେକ ସଂଜ୍ଞା ଅପରଟି ଠାରୁ ସଂପୂର୍ଣ୍ଣ ଭିନ୍ନ ପ୍ରକାରର ହୋଇଛି । ଅନେକ ଦିନରୁ ଲୋକମାନେ ଚିନ୍ତାକରି ଆସିଛନ୍ତି ଯେ ବୁଦ୍ଧି ଏକ ବସ୍ତୁରୂପି ଏବଂ ଏହାର ପ୍ରତ୍ୟକ୍ଷଣ ସମ୍ଭବ । କିନ୍ତୁ ବାସ୍ତବରେ ଏହା ମନୁଷ୍ୟର ବିଭିନ୍ନ ବ୍ୟବହାର ମଧ୍ୟରୁ ଆହରଣ କରିଯାଇଥିବା ଏକ ତାତ୍ତ୍ୱିକ ଧାରଣା ଛଡ଼ା ଅନ୍ୟକିଛି ନୁହେଁ । ମନୁଷ୍ୟର ବ୍ୟବହାର ଅନୁଶୀଳନ କରି ଆମେ ତାହାକୁ ବୁଦ୍ଧିମାନ ବା ବୋକା ଭାବରେ ଅଭିହିତ କରିଥାଉ । ଶ୍ରେଣୀ ଗୃହ ମଧ୍ୟରେ କେତେକ ଛାତ୍ର ଶୀଘ୍ର ଶିକ୍ଷା ଲାଭ କରନ୍ତି ଓ ଅନ୍ୟ କେତେକ ବିଳମ୍ବରେ । ସମୟ ସମୟରେ ଶାରୀରିକ ଅକ୍ଷମମାନେ ଶିକ୍ଷା କ୍ଷେତ୍ରରେ ଶୀର୍ଷସ୍ଥାନ ଅଧିକାର କରୁଥିବା ସମୟରେ ସମସ୍ତ ସୁବିଧା ସୁଯୋଗ ଭୋଗୀ ଛାତ୍ରମାନେ ବିଶେଷ ଫଳ ପ୍ରଦର୍ଶନ କରିପାରନ୍ତି ନାହିଁ । ଏହାର କାରଣ ସ୍ୱରୂପ କୁହାଯାଇପାରେ ଯେ ପୂର୍ବୋକ୍ତ ଛାତ୍ରଟି ଅଧିକ ବୁଦ୍ଧିମତ୍ତାର ଅଧିକାରୀ ଏବଂ ଦ୍ୱିତୀୟ ଛାତ୍ରଟିର ବୁଦ୍ଧି କମ୍ । ନନ୍ (T. P. Nun)ଙ୍କ ମତରେ ପ୍ରତ୍ୟେକ ସମସ୍ୟା ପାଇଁ ତୁମେ ଏବଂ ମୁଁ ଦୁଇଟି ପୃଥକ୍ ବ୍ୟକ୍ତି । ଦୁଇଟି ନଦୀ ଭଳି ଦୁଇଜଣ ବ୍ୟକ୍ତି କେବେହେଲେ ଏକ ପ୍ରକାର ବ୍ୟବହାର

ପ୍ରଦର୍ଶନ କରିପାରିବେ ନାହିଁ । ଏହି ମତବାଦରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ବୁଦ୍ଧିମତ୍ତା ଯୋଗୁଁ ବ୍ୟକ୍ତିଗତ ତାରତମ୍ୟ ସୃଷ୍ଟି ହୋଇଥାଏ ।

**ବୁଦ୍ଧିର ସଂଜ୍ଞା ନିର୍ଣ୍ଣୟ—** ବୁଦ୍ଧିମତ୍ତା କଣ ? ଏହି ପ୍ରଶ୍ନ ଅନେକ ଦିନରୁ ମାନବ ହୃଦୟକୁ ଆନ୍ଦୋଳିତ କରିଆସିଛି । ବିଭିନ୍ନ ମନୋବିଜ୍ଞାନୀମାନେ ନିଜ ନିଜ ଦୃଷ୍ଟିଭଙ୍ଗୀ ନେଇ ଏହାର ସଂଜ୍ଞା ନିର୍ଣ୍ଣୟ କରିଯାଇଛନ୍ତି । କିନ୍ତୁ ଅନ୍ଧ ବ୍ୟକ୍ତି ହାତୀର ଆକାର ଅନୁମାନ କଲାଭଳି ପ୍ରତ୍ୟେକ ସଂଜ୍ଞା ବୁଦ୍ଧିର ବାସ୍ତବ ରୂପକୁ ବୁଝାଇବାକୁ ଅକ୍ଷମ ହୋଇଛନ୍ତି । ଶିକ୍ଷକମାନେ ବୁଦ୍ଧିକୁ ଛାତ୍ରର ବ୍ୟବହାର ସହ ସଂପୃକ୍ତ କରି ବ୍ୟକ୍ତିତ୍ୱ ଗଠନର ସର୍ବପ୍ରଧାନ ଅଙ୍ଗ ରୂପେ ବ୍ୟବହାର କରିବା ସମୟରେ ମନୋବିଜ୍ଞାନୀମାନେ ଏହାର ପରିମାପ କରିବା ଦିଗରେ ଅଗ୍ରସର ହୋଇଛନ୍ତି । କିନ୍ତୁ ବୁଦ୍ଧି କଣ ? ଏହି ପ୍ରଶ୍ନଟିର ସନ୍ତୋଷଜନକ ଉତ୍ତର ପ୍ରଦାନ କରିବାରେ ସମସ୍ତେ ବିଫଳ ହୋଇଛନ୍ତି । ଏହି ପରିପ୍ରେକ୍ଷୀରେ କେତେକ ବିଖ୍ୟାତ ମନୋବିଜ୍ଞାନୀଙ୍କ ଦ୍ୱାରା ପ୍ରଦତ୍ତ ସଂଜ୍ଞା ଆମର ପ୍ରଣିଧାନ ଯୋଗ୍ୟ ।

ଅଭିଧାନ ଗତ ଅର୍ଥ ଅନୁସାରେ ବୁଦ୍ଧି ହେଉଛି ଜ୍ଞାନ ଆହରଣ ଓ ତାହାକୁ କାର୍ଯ୍ୟକାରୀ କରିବାର ସାମର୍ଥ୍ୟ ।

ଆଲଫ୍ରେଡ଼ ବିନେ (Alfred Binet) ଙ୍କ ମତାନୁସାରେ ମନୁଷ୍ୟର ଉଦ୍ଦିଷ୍ଟ ଲକ୍ଷ୍ୟ ପୂରଣ, କାର୍ଯ୍ୟକାରୀ ଅନୁକୂଳନ ଓ ସଚେତନ ସଂଶୋଧନ କ୍ଷେତ୍ରରେ ବୁଦ୍ଧି ନିଜକୁ ସ୍ପଷ୍ଟ ରୂପେ ପ୍ରକାଶିତ କରେ । ଏହା ଏକ ମାନସିକ ବିନ୍ୟାସ (Set) ଗ୍ରହଣ କରିବା ଓ ରକ୍ଷା କରିବାର ସାମର୍ଥ୍ୟ । ଏହି ସାମର୍ଥ୍ୟ ମନୁଷ୍ୟକୁ ନିଜ ଲକ୍ଷ୍ୟରେ ଉପନୀତ ହେବାକୁ ଏବଂ ଆତ୍ମସମାଲୋଚନା କରିବାକୁ ସକ୍ଷମ କରିଥାଏ ।

ସାଇମନଙ୍କ ମତରେ ବୁଦ୍ଧି ହେଉଛି ବିଚାର କରିବା, ଉତ୍ତମ ଚେତନା, ପଦକ୍ଷେପ ଗ୍ରହଣ, ବିଶ୍ଳେଷଣ କରିବା ଓ ଚିନ୍ତାକରି ନିଜକୁ ପରିବେଶର ଅନୁକୂଳ ପ୍ରତିପାଦନ କରିବାର ସାମର୍ଥ୍ୟ ।

ଷ୍ଟର୍ନ (Stern) ଙ୍କ ମତରେ ବୁଦ୍ଧି ଏକ ସାମର୍ଥ୍ୟ ଯାହାଦ୍ୱାରା ମନୁଷ୍ୟ ନୂତନ ଆବଶ୍ୟକତା ଗୁଡ଼ିକ ସହିତ ସଚେତନ ଭାବରେ ସମଯୋଜନ କରିପାରେ ।

ପିଣ୍ଟନର (Pintner) ଙ୍କ ମତରେ ବୁଦ୍ଧି ହେଉଛି ଜୀବନର ନୂତନ ପରିବେଶମାନ ସହ ନିଜକୁ ଉତ୍ତମ ରୂପେ ଯୋଗ୍ୟ କରିପାରିବାର କ୍ଷମତା ।

ଥର୍ନ ଡାଇକ୍ .(Thorndike) ମତ ପ୍ରଦାନ କରିଥିଲେ ଯେ ସତ୍ୟ ଓ ବାସ୍ତବତାର ଦୃଷ୍ଟିକୋଣରୁ ଉତ୍ତମ ରୂପେ ପ୍ରତିକ୍ରିୟା ପ୍ରଦର୍ଶନ କରିପାରିବାର ସାମର୍ଥ୍ୟ ହିଁ ବୁଦ୍ଧି ।

ୱେଲସଙ୍କ ମତରେ (Wells) ବୁଦ୍ଧି ହେଉଛି ବ୍ୟବହାର ଓ କାର୍ଯ୍ୟକଳାପ ଗୁଡ଼ିକୁ ପୁନର୍ଗଠିତ ଓ ନିୟନ୍ତ୍ରିତ କରି ନୂତନ ପରିସ୍ଥିତି ସହ ଅଧିକ ସଫଳତାର ସହ ସମଯୋଜନ କରିପାରିବାର କ୍ଷମତା ।

ଟରମ୍ୟାନ୍ (L. M. Terman) ଙ୍କ ମତରେ ମନୁଷ୍ୟର ଅମୂର୍ତ୍ତ ଚିନ୍ତନ (Abstract thinking) କରିପାରିବାର ସାମର୍ଥ୍ୟ ହିଁ ବୁଦ୍ଧିମତ୍ତା ।

ଚାର୍ଲସ ସ୍ପିଅରମ୍ୟାନ (Charls Spearman) ଙ୍କ ମତରେ ମନୁଷ୍ୟର ବିଶ୍ଳେଷଣ କରିପାରିବା ଓ ପାରିତତ୍ତ୍ୱ ସଂଶ୍ଳେଷଣ କରିପାରିବାର ସାମର୍ଥ୍ୟ ହେଉଛି ବୁଦ୍ଧି ।

ସବୁଠାରୁ ଅଧିକ ଗ୍ରହଣ ଯୋଗ୍ୟ ସଂଜ୍ଞା ୱେସଲର (Wechsler) ପ୍ରଦାନ କରିଥିଲେ । ତାଙ୍କ ମତରେ ମନୁଷ୍ୟ ଉଦ୍ଦେଶ୍ୟପୂର୍ଣ୍ଣ ଭାବେ କାର୍ଯ୍ୟ କରିପାରିବାର, ଗଠନମୂଳକ ଚିନ୍ତା କରିପାରିବାର ଏବଂ ଫଳପ୍ରଦ ଭାବେ ତା'ର ପରିବେଷ୍ଟନୀ ସହ ସମଯୋଜନ କରିପାରିବାର ଯେଉଁସବୁ ପାର୍ଥିବ ସାମର୍ଥ୍ୟ ପ୍ରଦର୍ଶନ କରେ ସେଗୁଡ଼ିକର ଏକ ସମାହାର ହେଉଛି ବୁଦ୍ଧି ।

**ବୁଦ୍ଧିର ପ୍ରକୃତ ନିର୍ଣ୍ଣୟ** (Nature) :—ବୋରିଙ୍ଗ (Boring)ଙ୍କ ମତରେ ବୁଦ୍ଧିର ପରୀକ୍ଷାରୁ ଯାହା ପରିମାପ କରାଯାଏ ତାହାହିଁ ବୁଦ୍ଧି । ଏଥିରୁ ଜଣାପଡ଼େ ଯେ ବୁଦ୍ଧିର ପ୍ରକୃତ ସମ୍ପର୍କରେ ଏକ ଗ୍ରହଣଯୋଗ୍ୟ ସଠିକ ମତ ପ୍ରଦାନ କରିବା ବାସ୍ତବିକ କଷ୍ଟକର । ଅନ୍ୟ ଭାଷାରେ କହିବାକୁ ଗଲେ ମନୁଷ୍ୟ ନିଜ ବୁଦ୍ଧି ଦ୍ୱାରା ସେହି ବୁଦ୍ଧିର ସମସ୍ତ ତତ୍ତ୍ୱ ଜାଣିବାକୁ ଅସଫଳ ହୋଇଛି । କେହି କେହି ଏହାକୁ ସମସ୍ୟା ସମାଧାନକାରୀ ସାମର୍ଥ୍ୟ କହିବା ସମୟରେ ଅନ୍ୟମାନେ ଏହାକୁ ଶିକ୍ଷା କରିବାର ସାମର୍ଥ୍ୟ କହିଥାନ୍ତି । ପୁଣି କେହି କେହି ନୂତନ ପରିବେଷ୍ଟନୀ ସହ ସମଯୋଜନ କରିପାରିବାର କ୍ଷମତା ଭାବରେ ଏହାର ଅର୍ଥ ବ୍ୟାଖ୍ୟା କରିଥାନ୍ତି । ଥର୍ନଡ଼ାଇକ୍ (E L. Thorndike) ବୁଦ୍ଧିକୁ ତିନୋଟି ଶ୍ରେଣୀରେ ବିଭକ୍ତ କରିଥିଲେ । ଯଥା—ବାସ୍ତବ ବୁଦ୍ଧି, ଅମୂର୍ତ୍ତ ବୁଦ୍ଧି, ଓ ସାମାଜିକ ବୁଦ୍ଧି । ଷ୍ଟୋଡ଼ାର୍ଡ (Stoddard)ଙ୍କ ମତରେ ମନୁଷ୍ୟ ବୁଦ୍ଧି ଦ୍ୱାରା କେତେକ କାର୍ଯ୍ୟ ସାଧିତ କରିଥାଏ । ତାଙ୍କ ମତରେ ସେହି କାର୍ଯ୍ୟଗୁଡ଼ିକ ହେଲା (୧) ସଙ୍କଟର ସମ୍ମୁଖୀନ ହେବା, (୨) ଜଟିଳତାକୁ ସମାଧାନ କରିବା, (୩) ଅମୂର୍ତ୍ତ ସମ୍ପର୍କରେ ଧାରଣା କରିବା, (୪) ଆର୍ଥିକ ସମସ୍ୟାର ପ୍ରତିରୋଧ କରିବା, (୫) ଲକ୍ଷ୍ୟ ସାଧନ କରିବା, (୬) ସାମାଜିକ ମୂଲ୍ୟବୋଧ ରକ୍ଷାକରିବା ଏବଂ, (୭) ନୂତନ ସୃଷ୍ଟି କରିବା, ଏସବୁ ସହିତ ଆବେଗିକ ଅବସ୍ଥାରେ ଭାରସାମ୍ୟ ରକ୍ଷା କରିବା ମଧ୍ୟ ବୁଦ୍ଧିର କାର୍ଯ୍ୟ ।

ବୁଦ୍ଧି ମନୁଷ୍ୟର ସହଜାତ ବା ଅର୍ଜିତ ଏହା ଏକ ବହୁ ଚର୍ଚ୍ଚିତ ବିଷୟ । ସେହିପରି ଏହା ଏକ ନିର୍ଦ୍ଦିଷ୍ଟ ଆଚରଣ କିମ୍ବା କେତେଗୁଡ଼ିଏ ଆଚରଣର ସମାହାର ତାହା ଏପର୍ଯ୍ୟନ୍ତ ଅସମାଧିତ । କେତେକଙ୍କ ମତରେ ବୁଦ୍ଧି ସହଜାତ ଓ ଏକ ସ୍ଵତନ୍ତ୍ର ଆଚରଣ । ଏହା ଆବେଗିକ, ପରିବେଷ୍ଟନୀଗତ ଓ ଶିକ୍ଷା ଜନିତ ଉପାଦାନଗୁଡିକ ଦ୍ଵାରା ପ୍ରଭାବିତ ହୁଏନାହିଁ । କୌଣସି ବ୍ୟକ୍ତିର ବୁଦ୍ଧ୍ୟଙ୍କ ତାର ଜୀବନକାଳ ମଧ୍ୟରେ ଅପରିବର୍ତ୍ତିତ ରହେ ବୋଲି ସେମାନେ ମତ ପ୍ରଦାନ କରନ୍ତି । ଏହି ପରିପ୍ରେକ୍ଷୀରେ ଦ୍ଵିତୀୟ ପ୍ରକାର ମତବାଦ ହେଉଛି ଯେ ବୁଦ୍ଧି ସହଜାତ ଓ ସ୍ଵତନ୍ତ୍ର ହେଲେ ମଧ୍ୟ ଏହା ଆବେଗ, ପରିବେଷ୍ଟନୀ ଓ ଶିକ୍ଷା ଦ୍ଵାରା ପ୍ରଭାବିତ ହୋଇଥାଏ । କିନ୍ତୁ ତୃତୀୟ ଶ୍ରେଣୀର ମନୋ-ବିଜ୍ଞାନୀମାନେ ମତ ଦାନ କରିଥାନ୍ତି ଯେ ବୁଦ୍ଧି ସହଜାତ ଏବଂ ବ୍ୟକ୍ତିତ୍ଵର ଏକ ଅଂଶ-ବିଶେଷ ।

ବ୍ୟକ୍ତିଠାରେ ପରିଦୃଷ୍ଟ ହେଉଥିବା ବୁଦ୍ଧି ସମ୍ପର୍କରେ ମନସ୍ତତ୍ତ୍ଵବିଦ୍‌ମାନଙ୍କ ମତ ନାନା ପ୍ରକାର ହୋଇଥିଲେ ମଧ୍ୟ ବୁଦ୍ଧିର ପ୍ରକୃତି ଅନୁଶୀଳନ କଲେ ଆମେ ଜାଣିପାରିବା ଯେ ଜଣେ ବୁଦ୍ଧିମାନ ବ୍ୟକ୍ତି କଠିନତର ସମସ୍ୟାବଳୀର ସମାଧାନ କରିବାକୁ ସମର୍ଥ ଯାହାକି ତା'ଠାରୁ ଜଣେ ଅଳ୍ପ ବୁଦ୍ଧିମାନ ବ୍ୟକ୍ତି ପକ୍ଷରେ ଅସମ୍ଭବ ହୋଇଥାଏ । ବୁଦ୍ଧିମାନ ବ୍ୟକ୍ତି ବିଭିନ୍ନ ପ୍ରକାରର କାର୍ଯ୍ୟ କରିବାକୁ ସମର୍ଥ ହେବା ସ୍ଥଳେ ଅଳ୍ପ ବୁଦ୍ଧିମାନ ବ୍ୟକ୍ତି ଅଳ୍ପ କେତୋଟି ପ୍ରକାରର କାର୍ଯ୍ୟ କରିବାକୁ ସମର୍ଥ ହୋଇଥାଏ । ବୁଦ୍ଧିମାନ ବ୍ୟକ୍ତି ବିଭିନ୍ନ ସଙ୍କେତର ବ୍ୟବହାର, ଅମୂର୍ତ୍ତ ଧାରଣାର ଚିନ୍ତନ, ସଠିକ କାର୍ଯ୍ୟନିର୍ବାହ, କମ୍ ସମୟରେ ଅଧିକ କାର୍ଯ୍ୟ, ଲକ୍ଷ୍ୟ ପୂରଣ ଆଦି କାର୍ଯ୍ୟରେ ସଫଳତା ପ୍ରଦର୍ଶନ କରିଥାଏ ।

କିନ୍ତୁ ବୁଦ୍ଧିର ସାମାଜିକ ମୂଲ୍ୟବୋଧ ଓ ନୂତନ ସୃଷ୍ଟି କରିବାର ସାମର୍ଥ୍ୟ ନେଇ ମନୋବିଜ୍ଞାନୀମାନଙ୍କ ମଧ୍ୟରେ ମତଭେଦ ଦେଖାଯାଏ । ସାଧାରଣ ବ୍ୟକ୍ତି-ଙ୍କର ଧାରଣା ଯେ ଯାହା ବୁଦ୍ଧିମାନ କାର୍ଯ୍ୟ ତାହା ସମାଜ ସ୍ଵୀକୃତ ବା ସାମାଜିକ ଅର୍ଥାତ୍ ସମାଜ ଦ୍ଵାରା ସ୍ଵୀକୃତ ହୋଇପାରିନଥିବା କାର୍ଯ୍ୟ ବୁଦ୍ଧିମାନ କାର୍ଯ୍ୟନୁହେଁ । ମାତ୍ର ଏପରି କେତେକ ରାଜନୀତିଜ୍ଞ, ବୈଜ୍ଞାନିକ ଓ ଧାର୍ମିକ ବ୍ୟକ୍ତିଙ୍କ ବିଷୟ ବିଚାର କରାଯାଇପାରେ, ଯେଉଁମାନେ ସେମାନଙ୍କ କାର୍ଯ୍ୟପାଇଁ ଜୀବନକାଳ ମଧ୍ୟରେ ସମାଲୋଚିତ ହୋଇଥିଲେ ମଧ୍ୟ ମୃତ୍ୟୁ ପରେ ସମାଜ ଦ୍ଵାରା ସମ୍ମାନିତ ହୋଇପାରିଛନ୍ତି । ଆହୁରି ମଧ୍ୟ ଏପରି ବୁଦ୍ଧିମାନ ବ୍ୟକ୍ତି ଥାନ୍ତି ଯେଉଁମାନଙ୍କ ବ୍ୟବହାର ଓ କାର୍ଯ୍ୟକଳାପ ସାମାଜିକ ରୀତି ନୀତି ସହ ଖାପଖାଏ ନାହିଁ । ସେମାନେ ହୁଏତ ପରବର୍ତ୍ତୀ ଯୁଗର ଆଚରଣ ପ୍ରଦର୍ଶନ କରନ୍ତି । ବୁଦ୍ଧିମତ୍ତାର ସୃଷ୍ଟିକାରୀ ଗୁଣ ସମ୍ପର୍କରେ ଆଲୋଚନା କଲେ ଜଣାଯାଏ ଯେ ବୁଦ୍ଧିମାନ ବ୍ୟକ୍ତିମାନଙ୍କର ଉଦ୍ଭାବନ ଶକ୍ତି ରହିଥାଏ । ସେମାନଙ୍କ ଚିନ୍ତାଧାରା ଗଠନ

ମୂଳକ ଅଥଚ ବିକ୍ଷିପ୍ତ କିନ୍ତୁ ସାଧାରଣତଃ ଉଚ୍ଚ ବୁଦ୍ଧ୍ୟଙ୍କ କହିଲେ ଗଠନ ମୂଳକ ଏକ କେନ୍ଦ୍ରିସ୍ଥ ଚିନ୍ତନକୁ ବୁଝାଏ ।

ମାନବର ଆବେଗିକ ଅବସ୍ଥାଗୁଡ଼ିକୁ ନିରୋଧ କରିବା ବୁଦ୍ଧିର ଅନ୍ୟଏକ ପ୍ରକୃତି । କିନ୍ତୁ ମନୋବିଜ୍ଞାନ ସମ୍ମତ ପରୀକ୍ଷା ଅନୁସାରେ ମାନବିକ ଆବେଗର ନିରୋଧ କରିବା ବୁଦ୍ଧିମତ୍ତାର କାର୍ଯ୍ୟନୁହେଁ । ବିଭିନ୍ନ ବ୍ୟକ୍ତିତ୍ୱ ପରୀକ୍ଷଣ ଦ୍ୱାରା ମନୁଷ୍ୟର ପ୍ରତିରକ୍ଷା-ମୂଳକ ଆଚରଣଗୁଡ଼ିକ ମାପ କରାଯାଇପାରେ । ଏ କ୍ଷେତ୍ରରେ ବୁଦ୍ଧି ପରୀକ୍ଷା ଦ୍ୱାରା କୌଣସି ଫଳପ୍ରଦ ସିଦ୍ଧାନ୍ତ ମିଳିପାରେ ନାହିଁ ।

ସର୍ବଶେଷରେ ବୁଦ୍ଧିର ପ୍ରକୃତି ସମ୍ବନ୍ଧରେ ଏତିକି ବୁଝାଯାଇପାରେ ଯେ ଏହା ମନୋବିଜ୍ଞାନୀମାନଙ୍କ ଦ୍ୱାରା ଗଠିତ ଏକ ଉପାଦାନ ଯାହା ବ୍ୟକ୍ତିଗତ ତାରତମ୍ୟର ନିର୍ଦ୍ଦେଶକ । ଏହାର କୌଣସି ଜୈବିକ ସ୍ଥିତି ନାହିଁ । ଏହା ଏକ ବସ୍ତୁ ନୁହେଁ । ଏହା ଆଚରଣରେ ଏକ ଧାରା, ମନୁଷ୍ୟର ଚିନ୍ତନ, ବୋଧଗମ୍ୟତା, ସ୍ମରଣ, ବିଚାର, ସଙ୍ଗଠନ ଆଦି ବ୍ୟବହାର ପାଇଁ ବ୍ୟବହୃତ ଏକ ବ୍ୟାପକ ଶବ୍ଦ ହେଉଛି ବୁଦ୍ଧି । ଜ୍ଞାନ ଅର୍ଜନ କରିବା ଓ ଠୁଳ କରି ରଖିବା ଅପେକ୍ଷା ଜ୍ଞାନକୁ ବ୍ୟବହାରରେ ଲଗାଇବାକୁ ବୁଦ୍ଧି ବୁଝାଯାଏ । ଅତଏବ ବୁଦ୍ଧିମାନ ଯାହା କାର୍ଯ୍ୟରେ ଲଗାଏ ତାହାହିଁ ବୁଦ୍ଧି ।

**ବୁଦ୍ଧି ସମ୍ବନ୍ଧୀୟ ବିଭିନ୍ନ ତତ୍ତ୍ୱ** :—ବୁଦ୍ଧି କଣ ? ଏହାର ପ୍ରକୃତି କଣ ? ଏହି ପ୍ରଶ୍ନ ଗୁଡ଼ିକର ଉତ୍ତର ଦେବାପାଇଁ ମନୋବିଜ୍ଞାନୀମାନେ ବିଭିନ୍ନ ତତ୍ତ୍ୱର ଅବତାରଣା କରିଛନ୍ତି । ଏହା ଦ୍ୱାରା ସେମାନେ ବୁଦ୍ଧିର ଗଠନ ଓ ତା'ର କାର୍ଯ୍ୟାବଳୀ ଉପରେ ଆଲୋକପାତ କରିଛନ୍ତି ।

**(୧) ଏକ ଉପାଦାନ ତତ୍ତ୍ୱ** :—ଏହି ତତ୍ତ୍ୱ ଅନୁସାରେ ବୁଦ୍ଧି ହେଉଛି ସମସ୍ତ ମାନସିକ ସାମର୍ଥ୍ୟର ସମନ୍ୱିତ ଉପାଦାନ । ଏହି ସାଧାରଣ କ୍ଷମତା ବଳରେ ମନୁଷ୍ୟ ଜୀବନର ସମସ୍ତ ଦିଗରେ ବିକାଶ ଲାଭ କରେ । ବିନେ ଓ ଟର୍ମ୍ୟାନଙ୍କ ଭଳି ମନୋବିଜ୍ଞାନୀମାନେ ଏହି ତତ୍ତ୍ୱର ସମର୍ଥକ । ମାତ୍ର ଏହି ତତ୍ତ୍ୱର ଏକ ଦୁର୍ବଳତା ହେଲା ବ୍ୟକ୍ତି ବିଭିନ୍ନ କାର୍ଯ୍ୟରେ ସମାନ ନିପୁଣତା ପ୍ରଦର୍ଶନ କରେନାହିଁ । ବିଭିନ୍ନ କାର୍ଯ୍ୟାବଳୀର ବୁଦ୍ଧ୍ୟଙ୍କ ପରିମାପ କଲେ ଦେଖାଯାଏ ଯେ ଜଣେ ବ୍ୟକ୍ତି ତା'ର ପ୍ରତ୍ୟେକ ପ୍ରକାର କାର୍ଯ୍ୟରେ ସମାନ ବୁଦ୍ଧିମତ୍ତା ପ୍ରଦର୍ଶନ କରେ ନାହିଁ । ତେଣୁ ବୁଦ୍ଧି କେବେହେଲେ ଗୋଟିଏ ମାତ୍ର ସମନ୍ୱିତ ଉପାଦାନ ଭାବରେ ସମସ୍ତ କାର୍ଯ୍ୟକୁ ପ୍ରଭାବିତ କରେ ନାହିଁ ।

**(୨) ବର୍ଗୀକରଣ ତତ୍ତ୍ୱ** :—ଏହି ତତ୍ତ୍ୱ ବୁଦ୍ଧି ସମ୍ବନ୍ଧରେ ସବୁଠାରୁ ପୁରାତନ ତତ୍ତ୍ୱ ଏବଂ ଏହା ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ପ୍ରଚଳିତ ହୋଇଥିଲା । ଏହି ତତ୍ତ୍ୱ ଅନୁସାରେ ମନର ବିଭିନ୍ନ ବିଭାଗ ରହିଛି । ସେଗୁଡ଼ିକ ହେଲା ଚିନ୍ତନ, ସ୍ମରଣ,

ଭିନ୍ନତା ପ୍ରଦର୍ଶନ, କଳ୍ପନା ଇତ୍ୟାଦି । ଏହି ବିଭାଗଗୁଡ଼ିକ ପରସ୍ପର ଠାରୁ ସ୍ୱତନ୍ତ୍ର ଏବଂ ବିଭିନ୍ନ ପରିସ୍ଥିତିରେ ଏଗୁଡ଼ିକ ବିକାଶ ଲାଭ କରନ୍ତି । ବୁଦ୍ଧିର ଏହି ତତ୍ତ୍ୱ ଶିକ୍ଷାର ଏକ ନୂତନ ତତ୍ତ୍ୱକୁ ଜନ୍ମ ଦେଇଥିଲା । ସେହି ତତ୍ତ୍ୱକୁ ମାନସିକ ଶୃଙ୍ଖଳା ତତ୍ତ୍ୱ କୁହାଯାଏ । ଏହି ତତ୍ତ୍ୱକୁ ଆଧୁନିକ ମନୋବିଜ୍ଞାନୀମାନେ ଗ୍ରହଣ କରନ୍ତି ନାହିଁ କାରଣ ମନୁଷ୍ୟ ମସ୍ତିଷ୍କରେ ବିଭିନ୍ନ ବିଭାଗର ସ୍ଥିତି ନାହିଁ ।

(ଗ) ଦ୍ୱି-ଉପାଦାନ ତତ୍ତ୍ୱ (**The two-factor Theory**) :—
ଇଂରେଜ ମନୋବିଜ୍ଞାନୀ କାର୍ଲ ସ୍ପିଅରମ୍ୟାନ (**Karl Spearman**) ବୁଦ୍ଧିକୁ କେତୁକ ଗୁଡ଼ିଏ ଉପାଦାନକୁ ଉତ୍ପନ୍ନ ଅନ୍ୟ ଏକ ଉପାଦାନ ଭାବରେ ବ୍ୟାଖ୍ୟା କରିଛନ୍ତି । ବୁଦ୍ଧି ଓ ଅନ୍ୟାନ୍ୟ ଉପାଦାନଗୁଡ଼ିକ ମଧ୍ୟରେ ସେ ଅନେକ ସାମ୍ୟ ଓ ସମ୍ପର୍କ ଲକ୍ଷ୍ୟ କରିଥିଲେ । ଏହା ଉପରେ ଅନେକ ପରୀକ୍ଷା ଚଳାଇବା ପରେ ସେ ମତ ପ୍ରଦାନ କରିଥିଲେ ଯେ ସମସ୍ତ ପ୍ରକାର ବୌଦ୍ଧିକ ଆଚରଣ ମୂଳରେ ଏକ ବା କେତୋଟି ମୌଳିକ ଉପାଦାନ ନିହିତ । ଏହି ମୌଳିକ ଉପାଦାନ ବିଭିନ୍ନ ଉପାୟରେ ଏବଂ ବିଭିନ୍ନ ପ୍ରକାର କାର୍ଯ୍ୟକଳାପ ମାଧ୍ୟମରେ ଆତ୍ମପ୍ରକାଶ କରି ଗୋଟିଏ କାର୍ଯ୍ୟକୁ ଅନ୍ୟ କାର୍ଯ୍ୟଠାରୁ ପୃଥକ୍ କରିଥାଏ । ଏହି ମୌଳିକ ବା ସାଧାରଣ ଉପାଦାନ ଗୁଡ଼ିକର ମୂଳରେ ବୁଦ୍ଧି ରହିଥାଏ ଏବଂ ପ୍ରତି ଉପାଦନକୁ ସାମର୍ଥ୍ୟ ପ୍ରଦାନ କରେ । ଏହିପରି ସ୍ପିଅରମ୍ୟାନ ବୁଦ୍ଧିକୁ ମୋଟା ମୋଟି ଭାବରେ ଦୁଇଟି ଉପାଦାନର ସମଷ୍ଟି ଭାବରେ ବ୍ୟାଖ୍ୟା କରିଥିଲେ । ସାଧାରଣ ମାନସିକ ସାମର୍ଥ୍ୟକୁ ସେ (G) ଦ୍ୱାରା ସୂଚିତ କରିଥିଲେ ଏବଂ ଏହି ସାମର୍ଥ୍ୟ ଦ୍ୱାରା ଯେଉଁ ଉପାଦାନ ଗୁଡ଼ିକ କାର୍ଯ୍ୟକ୍ଷମ ହୁଅନ୍ତି ସେଗୁଡ଼ିକୁ (S) ନାମ ଦେଇଥିଲେ ।




'S' ଉପାଦାନ ଗୁଡ଼ିକ ଶିକ୍ଷା, ଅଭ୍ୟାସ ଇତ୍ୟାଦି ଦ୍ୱାରା ପ୍ରଭାବିତ ଓ ପରିମାର୍ଜିତ ହୁଏ । କିନ୍ତୁ 'G' ଉପାଦାନ ଅନ୍ତର୍ନିହିତ ଏବଂ ଏହାର ସାମର୍ଥ୍ୟ ଅପରିବର୍ତ୍ତନୀୟ । ସମସ୍ତ କାର୍ଯ୍ୟକଳାପରେ ସଫଳତା ଲାଭ ପାଇଁ 'G' ଉପାଦାନ ଉନ୍ନତ ହୋଇଥିବା ଏକାନ୍ତ ଆବଶ୍ୟକ । କିନ୍ତୁ 'S' ଉପାଦାନକୁ ସେଥିପାଇଁ ପ୍ରଶିକ୍ଷଣ ଓ ଅଭ୍ୟାସର ବଶବର୍ତ୍ତୀ ହେବାକୁ ପଡ଼ିବ । ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟପାଇଁ କେବେ ପରିମାଣରେ

'G' ଓ 'S' ଉପାଦାନ ଗୁଡ଼ିକର ସାମର୍ଥ୍ୟ ଆବଶ୍ୟକ ତାହା ଉକ୍ତ କାର୍ଯ୍ୟର ପ୍ରକୃତ ଉପରେ ନିର୍ଭର କରେ । ଅତଏବ ଭିନ୍ନ କାର୍ଯ୍ୟପାଇଁ 'G' ଓ 'S'ର ମିଶ୍ରଣର ଅନୁପାତ ଭିନ୍ନ ଭିନ୍ନ ହୋଇଥାଏ । 'S' ଉପାଦାନଟି ଶିକ୍ଷା ଓ ବାହ୍ୟ ଆବେଷ୍ଟନୀ ମଧ୍ୟରୁ ଆହରଣ କରାଯାଇଥିବାରୁ ବିଭିନ୍ନ କାର୍ଯ୍ୟରେ ଏହା ସମାନ ପରିମାଣରେ ପ୍ରତିଫଳିତ ହୁଏ ନାହିଁ ।

(୪) ବହୁ ଉପାଦାନ ତତ୍ତ୍ୱ (Multi Factor Theory) :— ଆମେରିକାସ୍ଥ ମନୋବିଜ୍ଞାନୀ ଥର୍ଣ୍ଡାଇକ୍ (E. L. Thorndike) ଜଣେ ସମନ୍ୱୟବାଦୀ ଥିଲେ ଓ ଦ୍ୱି-ଉପାଦାନ ତତ୍ତ୍ୱର ଦୁର୍ବଳତା ଦର୍ଶାଇ ନିଜର ମତବାଦ ପ୍ରଚାର କରିଥିଲେ । ତାଙ୍କ ମତରେ କେତେକ ସ୍ୱତନ୍ତ୍ର ଉଦ୍ଦୀପନା ଓ ତା'ର ମାନସିକ ପ୍ରତିକ୍ରିୟା ରହିଛି । ଏହିପରି ଉଦ୍ଦୀପନା ଓ ପ୍ରତିକ୍ରିୟା ମଧ୍ୟରେ ଅନେକ ପ୍ରକାର ସ୍ୱତନ୍ତ୍ର ସମ୍ପର୍କ ରହିଛି । ଏହି ସମ୍ପର୍କକୁ ବୁଦ୍ଧି ବୁଝାଯାଏ । ଥର୍ଣ୍ଡାଇକଙ୍କ ମତରେ ସ୍ନାୟବିକ ସଂଯୋଜନାରେ ଥିବା ପାର୍ଥକ୍ୟ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଥିବା ବୌଦ୍ଧିକ ତାରତମ୍ୟର ପ୍ରଧାନ କାରଣ । ସ୍ପିଅରମ୍ୟାନଙ୍କ ସାଧାରଣ ବୁଦ୍ଧିର ସ୍ଥିତିକୁ ଥର୍ଣ୍ଡାଇକ୍ ଅସ୍ୱୀକାର କରିଥିଲେ । ତାଙ୍କ ତତ୍ତ୍ୱ ଅନୁଯାୟୀ ପ୍ରତ୍ୟେକ ମାନସିକ କାର୍ଯ୍ୟ ପାଇଁ ଅନ୍ୟ କେତେଗୁଡ଼ିଏ ସ୍ୱତନ୍ତ୍ର ସାମର୍ଥ୍ୟର ସମନ୍ୱୟ ଆବଶ୍ୟକ ହୋଇଥାଏ । ଏହିପରି ମାନସିକ କାର୍ଯ୍ୟଗୁଡ଼ିକ ପୃଥକ୍ ଏବଂ ସେଥିପାଇଁ ଆବଶ୍ୟକ ସାମର୍ଥ୍ୟଗୁଡ଼ିକ ମଧ୍ୟ ପୃଥକ୍ । ଅତଏବ ବୌଦ୍ଧିକ କ୍ଷେତ୍ରରେ ବ୍ୟକ୍ତିଗତ ତାରତମ୍ୟ ପରିଦୃଷ୍ଟ ହୁଏ ।

ଥର୍ଣ୍ଡାଇକ୍ 'CAVD' ପରୀକ୍ଷା ପଦ୍ଧତି ନାମକ ଏକ ନିଜସ୍ୱ ପଦ୍ଧତିରେ ବୁଦ୍ଧିର ପରୀକ୍ଷଣ କାର୍ଯ୍ୟ କରିଥିଲେ । ଚାରିଟି ସ୍ତରରେ ବିଭକ୍ତ ଏହି ପରୀକ୍ଷାରେ ବାକ୍ୟ ପୂରଣ କରିବା (C), ଗଣିତ କଷିବା (A), ଶବ୍ଦଜ୍ଞାନ ପରୀକ୍ଷା (V) ଏବଂ ନିର୍ଦ୍ଦେଶ ପାଳନ କରିବା (D) ଅନ୍ତର୍ଭୁକ୍ତ । ବୁଦ୍ଧିର ଚାରିଗୋଟି ଉପାଦାନ ସେ ଚିହ୍ନିତ କରିଥିଲେ । ସେଗୁଡ଼ିକ ହେଲା—

(କ) ସ୍ତର :—ସମାଧିତ ହେବାକୁ ଥିବା ସମସ୍ୟାଟିର କଠିନତା କେଉଁ ସ୍ତରର ଅର୍ଥାତ୍ ଏହା କେତେ ପରିମାଣରେ କଷ୍ଟକର ତାହା ପ୍ରଥମ ଉପାଦାନ । ଆମେ ଆମଦ୍ୱାରା କୃତ ପ୍ରତ୍ୟେକ କାର୍ଯ୍ୟ ଏବଂ ସମାଧିତ ପ୍ରତ୍ୟେକ ସମସ୍ୟାଗୁଡ଼ିକୁ ଯଦି କଠିନତାର ବର୍ଦ୍ଧିତ କ୍ରମ ଅନୁସାରେ ସଜ୍ଜିତ କରିବା ତେବେ ଶୀର୍ଷରେ ଆମ ଦ୍ୱାରା ସମାଧିତ କଠିନ-ତମ କାର୍ଯ୍ୟଟି ରହିବ । ସେହି କାର୍ଯ୍ୟର କ୍ଲିଷ୍ଟତା ଆମ ବୁଦ୍ଧିମତ୍ତାର ସ୍ତର ନିରୂପଣ କରେ । ଏହା ବୁଦ୍ଧିର ପରିମାପ ନୁହେଁ ବରଂ ଏକ ଉପାଦାନ ।

(ଖ) ସୀମା ବା ବିସ୍ତୃତି :—ଏକ ନିର୍ଦ୍ଦିଷ୍ଟ ପରିମାଣରେ କଠିନତା ଥିବା କେତୋଟି କାର୍ଯ୍ୟ ବା ସମସ୍ୟା ଜଣେ ବ୍ୟକ୍ତି ସମାଧାନ କରିପାରିବ ତାହା ତାର ବୁଦ୍ଧିର

ବିସ୍ତୃତ ନିର୍ଣ୍ଣୟ କରେ । ଏହି ବିସ୍ତୃତି ବୁଦ୍ଧିର ସ୍ତର, ଅଭିଜ୍ଞତା, ଶିକ୍ଷା ଓ ସୁଯୋଗ ଉପରେ ନିର୍ଭର କରେ ।

(ଗ) କ୍ଷେତ୍ର :—ବ୍ୟକ୍ତି ଏକ ସମୟରେ କେତୋଟି ପରିସ୍ଥିତିର ମୁକାବିଲା କରିପାରୁଛି ତାହା ତାର ବୁଦ୍ଧିମତ୍ତାର କ୍ଷେତ୍ରକୁ ନିର୍ଦ୍ଦେଶ କରେ । ଏହା ସମସ୍ୟା ବା ପରିସ୍ଥିତି ଗୁଡ଼ିକର କଠିନତା ଉପରେ ନିର୍ଭର କରେ ।

(ଘ) ବେଗ :—ଏକ ନିର୍ଦ୍ଦିଷ୍ଟ ସମସ୍ୟାଟିର ସମାଧାନ କରିବାକୁ ବ୍ୟକ୍ତି କେତେ ସମୟ ନେଇଥାଏ ତାହା ଏହି ଉପାଦାନ ଦ୍ୱାରା ନିର୍ଣ୍ଣିତ ହୋଇଥାଏ, ବେଗ ଓ ବିସ୍ତୃତି ପରସ୍ପର ସହ ସଂପୃକ୍ତ ।

(୫) ଉପାଦାନ ସମ୍ମେଳନ ତତ୍ତ୍ୱ (The Group-factor Theory) :—ଏହି ତତ୍ତ୍ୱ ଅନୁସାରେ ବୁଦ୍ଧି କେତେକ ନିର୍ଦ୍ଦିଷ୍ଟ ଉପାଦାନର ବା ଏକ ସାଧାରଣ ମୌଳିକ ଉପାଦାନର ପରିପ୍ରକାଶ ନୁହେଁ । ବରଂ ମାନସିକ ସାମର୍ଥ୍ୟ-ଗୁଡ଼ିକୁ ଦଳଗତ ବିଶ୍ଳେଷଣ କରି କେତେକ ଗ୍ରୁପରେ ବିଭକ୍ତ କରାଯାଇପାରେ । ପ୍ରତ୍ୟେକ ଗ୍ରୁପର ଏକ ପ୍ରାଥମିକ ବା ମୂଳ ଉପାଦାନ ଥାଏ । ଏହି ପ୍ରାଥମିକ ଉପାଦାନ ଗୁଡ଼ିକ ପରସ୍ପର ଠାରୁ ଭିନ୍ନ ଏବଂ ସ୍ୱାଧୀନ ଭାବରେ କାର୍ଯ୍ୟ କରନ୍ତି । ଏହି ପ୍ରାଥମିକ ଉପାଦାନ ସାମର୍ଥ୍ୟ ଗୁଡ଼ିକୁ ମାନସିକ ଓ ଶାରୀରିକ ସ୍ତରରେ କାର୍ଯ୍ୟକାରୀ କରାଏ । ଆମେରିକୀୟ ମନୋବିଜ୍ଞାନୀ ଥର୍ଷ୍ଟୋନ୍ (Thurstone) ଏହି ତତ୍ତ୍ୱର ପ୍ରବକ୍ତା । ଏହି ତତ୍ତ୍ୱ ନଅଟି ଗ୍ରୁପର ଅବତାରଣା କରେ । ସେଗୁଡ଼ିକ ହେଲା (୧) ଦୃଶ୍ୟମାନ ବା ଦର୍ଶନ ସମ୍ବନ୍ଧୀୟ, (୨) ପ୍ରତ୍ୟକ୍ଷ (Perceptual), (୩) ଗାଣିତିକ, (୪) ମୌଖିକ ବର୍ଣ୍ଣନା, (୫) ଶବ୍ଦାତ୍ମକତା, (୬) ସ୍ମରଣ ଶକ୍ତି, (୭) ଆରୋହ ଚିନ୍ତନ (Inductive reasoning), (୮) ଅବରୋହୀ ଚିନ୍ତନ (deductive reasoning) ଏବଂ (୯) ସମସ୍ୟା ସମାଧାନକାରୀ ସାମର୍ଥ୍ୟ ।

ବୁଦ୍ଧି ପରିମାପ :—ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଫ୍ରାନ୍ସରେ ଯେତେବେଳେ ଅଧିକାଂଶ ଛାତ୍ର ପରୀକ୍ଷାରେ ଅକୃତକାର୍ଯ୍ୟ ହେଲେ ଏହାର କାରଣ ନିର୍ଦ୍ଧାରଣ କରିବାପାଇଁ କର୍ତ୍ତୃପକ୍ଷ ଏକ କମିଟି ଗଠନ କଲେ । ଏହି କମିଟିର କାର୍ଯ୍ୟଥିଲା ପ୍ୟାରିସର ସ୍କୁଲମାନଙ୍କରେ ବୁଦ୍ଧିମତ୍ତା ଅନୁଯାୟୀ ଛାତ୍ରମାନଙ୍କୁ ବିଭିନ୍ନ ବିଭାଗରେ ବଣ୍ଟନ କରିବା । ଆଲଫ୍ରେଡ୍ ବିନେ ଏବଂ ସାଇମନ ଏହି କମିଟିର ସଭ୍ୟ ନିଯୁକ୍ତ ହୋଇଥିଲେ । ବିଭିନ୍ନ ବୟସର ଛାତ୍ରଙ୍କ ପାଇଁ ସେମାନେ କେତେକ ପ୍ରଶ୍ନାବଳୀ ଗଠନ କରିଥିଲେ । ଏହାଦ୍ୱାରା ସେମାନେ ଛାତ୍ରମାନଙ୍କ ବୁଦ୍ଧିର ପରିମାପ କରି ଅଧିକ ବୁଦ୍ଧିମାନ ଛାତ୍ର ଓ କମ୍ ବୁଦ୍ଧିମାନ ଛାତ୍ରମାନଙ୍କ ପାଇଁ ସ୍ୱତନ୍ତ୍ର ଶିକ୍ଷା ଦାନର ପରାମର୍ଶ ପ୍ରଦାନ କରିଥିଲେ ।

ଅନ୍ୟ ମନୋବିଜ୍ଞାନୀମାନେ ବୁଦ୍ଧି ପରିମାପ ପାଇଁ ସଂବେଦାତ୍ମକ ପ୍ରତିକ୍ରିୟା (Sensory reaction) ପରୀକ୍ଷା କରୁଥିବା ସମୟରେ ବିନେଙ୍କ ପରୀକ୍ଷା ଛାତ୍ରମାନଙ୍କର ଜଟିଳ ମାନସିକ କ୍ରିୟା ଯଥା ବିଚାର ଶକ୍ତି, ଚିନ୍ତନ କ୍ରିୟା, ସ୍ମୃତି ଶକ୍ତି ଓ ଗାଣିତିକ ଚିନ୍ତନ ଇତ୍ୟାଦିର ପରୀକ୍ଷଣ କରିଥିଲେ । ଏହାପରେ ବିନେ ଏବଂ ସାଇମନ୍ ଅଧିକ ଜଟିଳତର ମାନସିକ କ୍ରିୟା ଗୁଡ଼ିକୁ ପରିମାପ କରିବାକୁ ଆଗ୍ରହୀ ହୋଇଥିଲେ । ଏଥିପାଇଁ ସେମାନେ ତାଙ୍କର ପ୍ରଶ୍ନପତ୍ର ଗୁଡ଼ିକୁ ବିଭିନ୍ନ ବିଷୟରେ କଣ୍ଠନ କରିଥିଲେ ଯାହାକି ଅଧିକ ବାସ୍ତବଧର୍ମୀ ଓ ବିଜ୍ଞାନ ସମ୍ମତ ଥିଲା । ସେମାନେ ପ୍ରତ୍ୟେକ ବୟସର ଛାତ୍ରମାନଙ୍କ ପାଇଁ ପୃଥକ୍ ପୃଥକ୍ ପ୍ରଶ୍ନାବଳୀ ଗଠନ କରିଥିଲେ । ଏଥିପାଇଁ ବିନେ ଏବଂ ସାଇମନ୍ ବୁଦ୍ଧି ପରିମାପର ପ୍ରଥମ ପରିମାପକ (Scale) ଉଦ୍ଭାବନ କରିଥିଲେ । ୧୯୦୫ ମସିହାରେ ବିନେଙ୍କ ସ୍କେଲରେ ୩୨ଟି ପରୀକ୍ଷଣ ପ୍ରଶ୍ନ ସ୍ଥାନ ପାଇଥିଲା । ଏହି ପ୍ରଶ୍ନ ଗୁଡ଼ିକ କଠିନତାର ବର୍ଦ୍ଧିତ କ୍ରମ ଅନୁଯାୟୀ ସଜ୍ଜିତ ହୋଇଥିଲା । ସର୍ବପ୍ରଥମେ ଏହି ସ୍କେଲରେ ମାନସିକ ବୟସ (Mental age) ବିଷୟ ବର୍ଣ୍ଣିତ ହୋଇଥିଲା । ୧୯୧୧ ମସିହାରେ ଏହି ସ୍କେଲର ସଂଶୋଧନ କରାଯାଇ ବୟସ୍କ ମାନଙ୍କର ବୁଦ୍ଧି ପରୀକ୍ଷଣ ପାଇଁ ଉପଯୋଗୀ କରାଗଲା । ୧୯୧୧ର ସଂଶୋଧନ ପରେ ବିନେଙ୍କ ମୃତ୍ୟୁ ଘଟିଥିଲା କିନ୍ତୁ ତାଙ୍କ ପରେ ବିଭିନ୍ନ ସମୟରେ ଏହି ସ୍କେଲର ଆବଶ୍ୟକୀୟ ସଂଶୋଧନ କରାଯାଇ ବୁଦ୍ଧି ପରୀକ୍ଷଣ କରାଯାଉଛି ।

**ବିନେ-ସାଇମନ ପରୀକ୍ଷଣ ପଦ୍ଧତି :—** ଟର୍ମ୍ୟାନ୍ (Terman)ଙ୍କ ଦ୍ୱାରା ୧୯୧୬ ମସିହାରେ ସର୍ବପ୍ରଥମେ ବିନେ-ସାଇମନ ସ୍କେଲର ବ୍ୟବହାର କରାଯାଇଥିଲା । ସେ ଏହାକୁ ସଂଶୋଧନ କରି ୯୦ଟି ପ୍ରଶ୍ନରେ ସଜ୍ଜିତ କରିଥିଲେ । ଏହାଦ୍ୱାରା ସର୍ବପ୍ରଥମେ ବୁଦ୍ଧ୍ୟଙ୍କ (I.Q.) ନିର୍ଦ୍ଧାରଣ ଆରମ୍ଭ ହେଲା । ୧୯୩୭ ଖ୍ରୀଷ୍ଟାବ୍ଦରେ ଟର୍ମ୍ୟାନ ଓ ମେରିଲ (Merrill) ପୁନଶ୍ଚ ବିନେଙ୍କ ସ୍କେଲକୁ ସଂଶୋଧନ କଲେ । ଏହି ସଂଶୋଧିତ ପଦ୍ଧତି ସବୁଠାରୁ ଅଧିକ ଓ ବିସ୍ତୃତ ଭାବରେ ବ୍ୟବହୃତ ହୋଇଆସୁଛି । ଏହି ପ୍ରଶ୍ନାବଳୀରେ ୧୨୯ଟି ପ୍ରଶ୍ନ ସ୍ଥାନ ପାଇଥିଲା । ବିନେଙ୍କ ପ୍ରଶ୍ନାବଳୀର ସର୍ବଶେଷ ସଂଶୋଧନ ୧୯୬୦ ମସିହାରେ କରାଯାଇଥିଲା ।

**ମାନସିକ ବୟସ ଓ ବୁଦ୍ଧ୍ୟଙ୍କ :—** ଜଣେ ଛାତ୍ରକୁ କେତୋଟି ପ୍ରଶ୍ନ ପଚାରିଲେ ତା'ଠାରୁ କେତେକ ଉତ୍ତର ମିଳିଥାଏ । ଏହି ଉତ୍ତର ଗୁଡ଼ିକ ମଧ୍ୟରୁ ସମ୍ପୂର୍ଣ୍ଣ ଭାବରେ ସଠିକ ଉତ୍ତର ଗୁଡ଼ିକୁ ଏକ ସୂଚ୍ୟଙ୍କ (Index)ରେ ପରିବର୍ତ୍ତିତ କରି ଅନ୍ୟାନ୍ୟ ଛାତ୍ରଙ୍କ ସୂଚ୍ୟଙ୍କ ସହ ଏହାକୁ ତୁଳନା କରାଯାଇପାରେ । ଏହି ଉଦ୍ଦେଶ୍ୟ ସାଧନ କରିବାପାଇଁ ବିନେ ମାନସିକ ବୟସ ପ୍ରଚଳନ କରିଥିଲେ । ଏଥିପାଇଁ ଏକ ନିର୍ଦ୍ଦିଷ୍ଟ ବୟସର ଅନେକ ଗୁଡ଼ିଏ ଛାତ୍ରଙ୍କୁ ନିଆଯାଏ । ସେମାନେ ବିଭିନ୍ନ ପରିବେଷ୍ଟନୀ ଓ ସାମାଜିକ

ପରିବେଶରୁ ଅଣାଯାଇଥାନ୍ତି । ସେମାନଙ୍କ ଦ୍ୱାରା ପ୍ରଦତ୍ତ ସଠିକ୍ ଉତ୍ତର ଗୁଡ଼ିକର ଏକ ହାରାହାରି ହିସାବ କରାଯାଇ ମାନସିକ ବୟସ ନିର୍ଣ୍ଣୟ କରାଯାଏ । ଫଳରେ ମାନସିକ ବୟସରୁ ବୌଦ୍ଧିକ ବିକାଶର ସୂଚନା ମିଳିଥାଏ । ଅତଏବ ମାନସିକ ବୟସର ସଂଜ୍ଞା ହେଲା "ଏକ ନିର୍ଦ୍ଦିଷ୍ଟ ବୟସରେ ଆଶା କରାଯାଉଥିବା ଏବଂ ମିଳିଥିବା ସଠିକ୍ ଉତ୍ତର ଗୁଡ଼ିକର ଏକ ତୁଳନାତ୍ମକ ହାରାହାରି ।" ମାନସିକ ବୟସରୁ ଜ୍ଞାନର ବୁଦ୍ଧିମତ୍ତା କେତେ ପରିମାଣରେ ବିକଶିତ ହୋଇଛି ତାହା ଜଣାପଡ଼େ ।

ବୁଦ୍ଧି ପରିମାପରେ ମାନସିକ ବୟସର ଗୁରୁତ୍ୱ ଅଧିକ । ଏହା ସାହାଯ୍ୟରେ ଶିଶୁର ବୌଦ୍ଧିକ ବିକାଶ ସାଧାରଣ, ଉଚ୍ଚସ୍ତରର କିମ୍ବା ନିମ୍ନ ସ୍ତରର ତାହା ଜଣାପଡ଼େ । ଉଦାହରଣ ସ୍ୱରୂପ ଯଦି ଜଣେ ୮ ବର୍ଷ ଶିଶୁର ମାନସିକ ବୟସ ୭ ବର୍ଷ ତେବେ ତାର ବୌଦ୍ଧିକ ବିକାଶ ସାଧାରଣ, ଯଦି ତାର ମାନସିକ ବୟସ ୧୦ ବର୍ଷ ହୁଏ ତେବେ ତାର ବୌଦ୍ଧିକ ବିକାଶ ଉଚ୍ଚ ସ୍ତରର ଏବଂ ଯଦି ତା'ର ମାନସିକ ବୟସ ୬ ବର୍ଷ ହୁଏ ତେବେ ସେ ନିମ୍ନ ସ୍ତରର ବୁଦ୍ଧିମତ୍ତାର ଅଧିକାରୀ ହୋଇଥାଏ । ବିନେଙ୍କ ସ୍କେଲ ଅନୁଯାୟୀ ମାନସିକ ବୟସ ବର୍ଷକୁ ବର୍ଷ ବର୍ଦ୍ଧିତ ହୋଇ ୧୬ ବା ୧୮ ବର୍ଷ ବୟସରେ ସର୍ବୋଚ୍ଚ ସୀମାରେ ଉପନୀତ ହୁଏ ।

ମାନସିକ ବୟସ ଦ୍ୱାରା ଶିଶୁର ବୌଦ୍ଧିକ ବିକାଶର ଏକ ତୁଳନାତ୍ମକ ବିବରଣୀ ମିଳୁଥିଲେ ମଧ୍ୟ ଏହାଦ୍ୱାରା ବୁଦ୍ଧିମତ୍ତାର ପ୍ରକୃତ ସୂଚାଙ୍କ ମିଳିପାରେ ନାହିଁ । ଏହାଦ୍ୱାରା ଶିଶୁ ବୋକା ବା ସାଧାରଣ ବା ବୁଦ୍ଧିମାନ ତାହା ଜାଣିହୁଏ ନାହିଁ । ଏହାଦ୍ୱାରା ଜଣେ ଶିଶୁକୁ ଅନ୍ୟମାନଙ୍କ ସହ ତୁଳନା କରିହୁଏ ନାହିଁ । ଉଦାହରଣ ସ୍ୱରୂପ ୭ ବର୍ଷ ଓ ୮ ବର୍ଷର ଦୁଇଟି ଶିଶୁଙ୍କର ମାନସିକ ବୟସ ୮ ବର୍ଷ ହେଲେ ସେହି ଦୁଇଜଣଙ୍କ ମଧ୍ୟରୁ କେଉଁଟି ଅଧିକ ବୁଦ୍ଧିମାନ ତାହା ନିର୍ଣ୍ଣୟ କରିବା ଅସମ୍ଭବ । ଅତଏବ ବୁଦ୍ଧିର ସ୍ତର ବୁଦ୍ଧ୍ୟଙ୍କ ବା I. Q. ଦ୍ୱାରା ମାପ କରାଯାଏ । ମାନସିକ ବୟସକୁ ପ୍ରକୃତ ବୟସ ରେ ଭାଗକରି ତାକୁ ଏକଶତ ରେ ଗୁଣନ କରିବା ଦ୍ୱାରା ଯେଉଁ ସୂଚାଙ୍କ ମିଳିଥାଏ ତାହାକୁ ବୁଦ୍ଧ୍ୟଙ୍କ ବା I. Q. କୁହାଯାଏ । ଏହି ସୂତ୍ର ଅନୁଯାୟୀ ବୁଦ୍ଧ୍ୟଙ୍କ ହେଉଛି

$$\frac{\text{ମାନସିକ ବୟସ (M.A)}}{\text{ପ୍ରକୃତ ବୟସ (C.A)}} \times ୧୦୦$$

ମନେକରାଯାଉ ୧୦ ବର୍ଷର ଗୋଟିଏ ଶିଶୁର ମାନସିକ ବୟସ ୯ବର୍ଷ ୭ମାସ ହେଲା । ତେବେ ଏହି ସୂତ୍ର ଅନୁଯାୟୀ ତା'ର ମାନସିକ ବୟସ :—

$$\frac{\text{୯ ବର୍ଷ ୭ ମାସ}}{\text{୧୦ ବର୍ଷ}} \times ୧୦୦ = \frac{୧୧୪}{୧୨୦} \times ୧୦୦ = ୯୫$$

ଶତକଡ଼ା ହିସାବ ଦ୍ୱାରା ବିଭିନ୍ନ ବୁଦ୍ଧ୍ୟଙ୍କ ବିଶିଷ୍ଟ ବ୍ୟକ୍ତିଙ୍କର ସଂଖ୍ୟା ସ୍ଥିରୀକୃତ ହୋଇଛି ।

| ବୁଦ୍ଧ୍ୟଙ୍କ | ଶତକଡ଼ା |
|---|---|
| ୭୦ ରୁ କମ୍ | ୨ ଜଣ ବା ୨ % |
| ୭୦ ରୁ ୮୦ | ୭ % |
| ୮୦ ରୁ ୯୦ | ୧୭ % |
| ୯୦ ରୁ ୧୧୦ | ୫୦ % |
| ୧୧୦ ରୁ ୧୨୦ | ୧୬ % |
| ୧୨୦ ରୁ ୧୩୦ | ୭ % |
| ୧୩୦ ରୁ ଅଧିକ | ୨ % |

୯୦ ରୁ ୧୧୦ ବୁଦ୍ଧ୍ୟଙ୍କ ଥିବା ଲୋକଙ୍କୁ ସାଧାରଣ ବୁଦ୍ଧି ସମ୍ପନ୍ନ କୁହାଯାଏ । ୧୨୦ରୁ ୧୩୦ ବୁଦ୍ଧ୍ୟଙ୍କ ବିଶିଷ୍ଟ ଲୋକମାନେ ମେଧାବୀ ଏବଂ ୧୩୦ରୁ ବେଶୀ ବୁଦ୍ଧ୍ୟଙ୍କ ବିଶିଷ୍ଟ ବ୍ୟକ୍ତିମାନେ ପ୍ରତିଭାବାନ୍ (Genius) ଅଟନ୍ତି ।

**ବିନେ ପରୀକ୍ଷଣ ପଦ୍ଧତିର ଦୁର୍ବଳତା** :— ବିନେ ପରୀକ୍ଷଣ ପଦ୍ଧତି କେବଳ ଜଣେ ବ୍ୟକ୍ତିର ବୁଦ୍ଧିମତ୍ତା ପରିମାପ ପାଇଁ ଉଦ୍ଦିଷ୍ଟ ହୋଇଥିବାରୁ ଏହାକୁ ପ୍ରତ୍ୟେକ ସ୍ଥଳରେ ବ୍ୟବହାର କରାଯାଇପାରେ ନାହିଁ । ଏହା ବୟସ୍କମାନଙ୍କ ଅପେକ୍ଷା ଶିଶୁମାନଙ୍କ ପାଇଁ ଅଧିକ ପ୍ରଯୁଜ୍ୟ । ଏହା ମୌଖିକ ପ୍ରଶ୍ନରେ ଭରପୂର ହୋଇଥିବାରୁ କେତେକ ନିର୍ଦ୍ଦିଷ୍ଟ ଧରଣର ବ୍ୟକ୍ତିଙ୍କ କ୍ଷେତ୍ରରେ ଅଧିକ ସୁବିଧା ଜନକ ହୋଇଥାଏ । ଏହାଛଡ଼ା ଏହାର ଅନ୍ୟାନ୍ୟ ଦୁର୍ବଳତା ଗୁଡ଼ିକ ହେଲା :—

୧ । ଏହାଦ୍ୱାରା ଜଣେ ବ୍ୟକ୍ତିର ଏକ ନିର୍ଦ୍ଦିଷ୍ଟ ସମୟର ସାମର୍ଥ୍ୟ ପରିମାପ କରାଯାଏ । ତାର ଅନ୍ତର୍ନିହିତ ସାମର୍ଥ୍ୟ ଏହାଦ୍ୱାରା ଜଣାପଡ଼େ ନାହିଁ ।

୨ । ବିଭିନ୍ନ ବୟସରେ ବ୍ୟକ୍ତିର ବୁଦ୍ଧିମତ୍ତା ଭିନ୍ନ ଭିନ୍ନ ହେବାର ଏଥିରୁ ସୂଚିତ ହୁଏ ।

୩ । ଏହି ପରୀକ୍ଷା ସହରୀ ପରିବେଶ ମଧ୍ୟସ୍ଥ ଶିଶୁମାନଙ୍କୁ ଅଧିକ ସୁବିଧାଜନକ ହୋଇଥାଏ ।

୪ । ଏହା ବୁଦ୍ଧିର ବିଭିନ୍ନ ଦିଗ ପ୍ରତି ଆଲୋକପାତ କରେ ନାହିଁ ।

୫ । ବିଭିନ୍ନ ମାନସିକ କ୍ରିୟା ଓ ଅବସ୍ଥା ଯଥା ଉଦାସୀନତା, ଆତ୍ମବିଶ୍ୱାସ ହୀନତା ଆଦି ଦ୍ୱାରା ଏହି ପରୀକ୍ଷଣ ପଦ୍ଧତି ପ୍ରଭାବିତ ହେଉଥିବାରୁ ଏହାଦ୍ୱାରା ପ୍ରକୃତ ବୁଦ୍ଧିର ସ୍ତର ଜାଣିହୁଏ ନାହିଁ ।

**ବାଚନିକ (Verbal) ଓ ଅବାଚନିକ (Non-verbal) ବା ନିଷ୍ପାଦନ ମୂଳକ (Performance) ବୁଦ୍ଧି ପରୀକ୍ଷା** :—ନିଉୟର୍କର ବେଲେଭିଉ ସାଇକଆଟ୍ରିକ ହସ୍ପିଟାଲର ଚିକିତ୍ସକ ଡଃ ଡେଭିଡ ଓ୍ୱେଶଲର (Dr. David Weshler) ଲକ୍ଷ୍ୟ କଲେ ଯେ ମାନସିକ ବୟସ ଓ ବୁଦ୍ଧ୍ୟଙ୍କ ସାହାଯ୍ୟରେ ବୟସ୍କ ମାନଙ୍କର ବୁଦ୍ଧି ପରିମାପ ସମ୍ଭବ ନୁହେଁ । ବୁଦ୍ଧ୍ୟଙ୍କ ପରିମାପ ଶୈଳୀର ଅନେକ ଦୋଷ ଦୁର୍ବଳତା ତାଙ୍କ ଦ୍ୱାରା ପ୍ରଦର୍ଶିତ ହୋଇଥିଲା । ବିନେଙ୍କ ପଦ୍ଧତି ଅନୁସାରେ ୧୬ ବର୍ଷ ବୟସ ପରେ ମାନସିକ ବୟସର ବିକାଶ ଘଟେ ନାହିଁ । ଅତଏବ ୩୦ ବର୍ଷ ବୟସ୍କ ଜଣେ ବ୍ୟକ୍ତି ୧୬ ବର୍ଷ ବୟସ୍କ ବ୍ୟକ୍ତିର ମାନସିକ ସାମର୍ଥ୍ୟ ପ୍ରଦର୍ଶନ କରିବ । ଏହା ଅତ୍ୟନ୍ତ ଉଦ୍ଭଟ ମନେହୁଏ । ଏହି କାରଣରୁ ଓ୍ୱେଶଲର ବୁଦ୍ଧ୍ୟଙ୍କ ନିର୍ଣ୍ଣୟ କରିବାର ଏକ ସ୍ୱତନ୍ତ୍ର ନୂତନ ପଦ୍ଧତି ପ୍ରବର୍ତ୍ତନ କରିଥିଲେ । ଏହି ପଦ୍ଧତି ବିଶେଷତଃ ବୟସ୍କ ମାନଙ୍କର ବୁଦ୍ଧି ପରିମାପ ନିମିତ୍ତ ଗଠିତ ହୋଇଥିଲା । ପ୍ରାୟ ଏଗାରଟି ବିଷୟରେ ପରୀକ୍ଷାକରି ବୁଦ୍ଧ୍ୟଙ୍କ ନିର୍ଣ୍ଣୟ କରିବା ଏହି ନୂତନ ପଦ୍ଧତିର ଲକ୍ଷ୍ୟ । ଏଗାରଟି ବିଷୟ ମଧ୍ୟରୁ ୬ଟିର ପରୀକ୍ଷା ବାଚନିକ (Varbal) ଓ ୫ଟିର ପରୀକ୍ଷା ଅବାଚନିକ ବା ନିଷ୍ପାଦନମୂଳକ (Nonverbal or Performance).

**ବାଚନିକ ପରୀକ୍ଷାର ବିଷୟ ବସ୍ତୁ ଗୁଡ଼ିକ ହେଲା** :—

**(୧) ସାଧାରଣ ଜ୍ଞାନ** :—ଏଥିରେ ୨୫ଟି ପ୍ରଶ୍ନ ରହିଥାଏ । ଯଥା—ଭାରତର ଲୋକ ସଂଖ୍ୟା କେତେ ?

**(୨) ବୋଧ ଶକ୍ତି ବା ଅବଧାରଣ କ୍ଷମତା** :—ଏଥିରେ ୧୦ ଗୋଟି ପ୍ରଶ୍ନ ରହିଥାଏ । ଏଥିରେ ବ୍ୟକ୍ତିର ବାସ୍ତବ ଜ୍ଞାନ ବା ଦୈନନ୍ଦିନ ଜୀବନ ସଂପର୍କରେ ଥିବା ଧାରଣା ବିଷୟ ପରୀକ୍ଷା କରାଯାଏ । ଯଥା : —ବୃକ୍ଷ ରୋପଣରେ ଉପକାରିତା କଣ ?

**(୩) ଗାଣିତିକ ସମସ୍ୟା ସମାଧାନ ପାଇଁ ଚିନ୍ତନ ଶକ୍ତି** :—ଏଥିରେ ୧୦ ଗୋଟି ଗାଣିତିକ ପ୍ରଶ୍ନ ରହିଥାଏ । ଏଗୁଡ଼ିକ ସାଧାରଣତଃ ମାନସିକ ଯଥା—୫ମିଟର ବ୍ୟବଧାନରେ ଗୋଟିଏ ଗଛ ଲଗାଗଲେ ୫୦ମିଟର ରାସ୍ତାରେ କେତୋଟି ଗଛ ଲାଗି ପାରିବ ?

(୪) ସ୍ମୃତି ପ୍ରସାର :—ଏହି ପରୀକ୍ଷାରେ ପରୀକ୍ଷାର୍ଥୀଙ୍କୁ ୩ରୁ ୯ଟି ମଧ୍ୟରେ ଅଙ୍କ ପ୍ରଦାନ କରାଯାଏ । ସେ ସେଗୁଡ଼ିକୁ ପ୍ରଥମେ ମୂଳ ଆଡୁ ଶେଷ ଓ ପରେ ଶେଷ ଆଡୁ ମୂଳ ଆଡ଼କୁ କ୍ରମିକ ଭାବରେ କହିଥାଏ ।

(୫) ସାଦୃଶ୍ୟ ସମ୍ବନ୍ଧ ଜ୍ଞାନ :—ଏଥିରେ ୨୨ଟି ଉପାଦାନର ନାମ ଉଲ୍ଲିଖିତ ଥାଏ । ପରୀକ୍ଷାର୍ଥୀ ସେଥିମଧ୍ୟରୁ ଦୁଇଟି ଲେଖାଏଁ ସଦ୍‌ଗୁଣ ଶବ୍ଦ ନିର୍ବାଚନ କରିଥାଏ ଯଥା— କାଷ୍ଠ-କାଗଜ, ଶୀତଳତା-ବରଫ ଇତ୍ୟାଦି ।

(୬) ଶବ୍ଦ ଜ୍ଞାନ :—ଏହି ପରୀକ୍ଷାରେ ୪୨ଟି ଶବ୍ଦ କଠିନତାର ଭିତ୍ତି କ୍ରମ ଅନୁସାରେ ସଜ୍ଜିତ କରାଯାଇଥାଏ । ପରୀକ୍ଷାର୍ଥୀଙ୍କୁ ପ୍ରତ୍ୟେକ ଶବ୍ଦର ଅର୍ଥ ବ୍ୟାଖ୍ୟା କରିବାକୁ ପଡ଼ିଥାଏ ।

**ଅବାଚନିକ ପରୀକ୍ଷାର ବିଷୟ ବସ୍ତୁ ଗୁଡ଼ିକ ହେଲା :—**

(୧) ଛବି ସଂପୂର୍ଣ୍ଣ କରିବା :—ଏହି ପରୀକ୍ଷାରେ ପରୀକ୍ଷାର୍ଥୀଙ୍କୁ ୧୫ଟି କାର୍ଡ ଦେଖାଯାଏ । ପ୍ରତ୍ୟେକ କାର୍ଡ଼ରେ ଗୋଟିଏ ଲେଖାଏଁ ଅସମ୍ପୂର୍ଣ୍ଣ ଅଂଶ ଥାଏ । ପରୀକ୍ଷାର୍ଥୀ ଅସମ୍ପୂର୍ଣ୍ଣ ଅଂଶକୁ ନିର୍ଦ୍ଦେଶ କରି ବ୍ୟାଖ୍ୟା କରିଥାଏ ।

(୨) ଛବି ସଜ୍ଜୀକରଣ :—ଗୋଟିଏ ଗୋଟିଏ ଛବି ଧାରଣ କରିଥିବା କେତେଗୁଡ଼ିଏ କାର୍ଡ଼ ପରୀକ୍ଷାର୍ଥୀଙ୍କୁ ପ୍ରଦାନ କରାଯାଏ । ସେ ସେଗୁଡ଼ିକୁ ଏପରି ଭାବରେ ସଜ୍ଜିତ କରି ରଖେ ଯାହା ଫଳରେ ଏକ ଗଳ୍ପର ଅର୍ଥ ପ୍ରକାଶିତ ହୋଇଥାଏ ।

(୩) ବସ୍ତୁ ଗଠନ—ଗୋଟିଏ ପୁତ୍ତଳିକା ଖେଳନାର ଖଣ୍ଡ ବିଖଣ୍ଡିତ ଅବୟବ ଗୁଡ଼ିକୁ ପରୀକ୍ଷାର୍ଥୀଙ୍କୁ ପ୍ରଦାନ କରାଯାଏ । ସେ ସେଗୁଡ଼ିକୁ ସଂଯୋଗ କରି ପୁନଶ୍ଚ ଏକ ପୁତ୍ତଳିକା ମୂର୍ତ୍ତି ନିର୍ମାଣ କରେ ।

(୪) ଡ଼ିଜାଇନ ଗଠନ—ପରୀକ୍ଷାର୍ଥୀଙ୍କୁ କେତେଗୁଡ଼ିଏ ରଙ୍ଗୀନ ବର୍ଗାକାର କାଷ୍ଠ ଖଣ୍ଡ ଦିଆଯାଏ । ସେ ସେଗୁଡ଼ିକୁ ବିଭିନ୍ନ ଉପାୟରେ ସଜ୍ଜିତ କରି ନାନା ପ୍ରକାର ଡ଼ିଜାଇନ୍ ପ୍ରସ୍ତୁତ କରେ ।

(୫) ଅକ୍ଷର ଓ ସଙ୍କେତ ପରୀକ୍ଷା—ଏଥିରେ ପରୀକ୍ଷାର୍ଥୀଙ୍କୁ ଯେ କୌଣସି ୯ ଗୋଟିଏ ଅକ୍ଷର ଦିଆଯାଏ ଓ ସେ ପ୍ରତ୍ୟେକ ଅକ୍ଷର ତଳେ ଗୋଟିଏ ଲେଖାଏଁ ସଙ୍କେତର ଉଲ୍ଲେଖ କରେ ।

ଓ୍ୱେସଲରଙ୍କ ପଦ୍ଧତିରେ କରାଯାଇଥିବା ପରୀକ୍ଷଣ ଗୁଡ଼ିକର ଅଲଗା ଅଲଗା ମୂଲ୍ୟାୟନ କରାଯାଏ । ଏହି ମୂଲ୍ୟ ଗୁଡ଼ିକୁ ଏକତ୍ରିତ କରି ସାଧାରଣ ମୂଲ୍ୟ ନିର୍ଣ୍ଣୟ କରାଯାଏ ।

ଏହି ପରୀକ୍ଷାରୁ ତିନିଗୋଟି ବୁଦ୍ଧ୍ୟଙ୍କ ମିଳିପାରେ । ସେଗୁଡ଼ିକ ହେଲା (୧) ବାଚନିକ ବୁଦ୍ଧ୍ୟଙ୍କ (୨) ଅବାଚନିକ ବୁଦ୍ଧ୍ୟଙ୍କ ଓ (୩) ସାମଗ୍ରିକ ବୁଦ୍ଧ୍ୟଙ୍କ ।

**ଅବାଚନିକ ପରୀକ୍ଷାର ମୂଲ୍ୟାଙ୍କନ**—ବାଚନିକ ପରୀକ୍ଷା ତୁଳନାରେ ଅବାଚନିକ ପରୀକ୍ଷାରେ ଅଧିକ ପରିମାଣରେ ବିଭିନ୍ନ ସ୍ଥୂଳ ପଦାର୍ଥ ବ୍ୟବହୃତ ହୁଏ । ଏଗୁଡ଼ିକୁ ବ୍ୟବହାର କରିବା ପରୀକ୍ଷାର୍ଥୀ ପକ୍ଷରେ ସୁବିଧାଜନକ ହୋଇଥାଏ । କେତେକ ବ୍ୟକ୍ତି ସୂକ୍ଷ୍ମ ଓ ବୁଦ୍ଧି ସମ୍ପନ୍ନ ବାଚନିକ ପରୀକ୍ଷା ଅପେକ୍ଷା ସ୍ଥୂଳ ଅବାଚନିକ ପରୀକ୍ଷାରେ ଅଧିକ ପାରଦର୍ଶୀତା ପ୍ରଦର୍ଶନ କରିଥାନ୍ତି । ଯେଉଁମାନେ ବାକ୍ ଶକ୍ତିହୀନ ସେମାନଙ୍କ ବୁଦ୍ଧି ପରୀକ୍ଷଣ ପାଇଁ ଏହି ପ୍ରଣାଳୀ ସର୍ବୋତ୍ତମ । ତା'ଛଡ଼ା ବିଭିନ୍ନ ସଂସ୍କୃତିର ବ୍ୟକ୍ତିମାନଙ୍କ ମଧ୍ୟରେ ତୁଳନା କରିବା ପାଇଁ ଏହି ପରୀକ୍ଷଣ ପଦ୍ଧତି ଅବଲମ୍ବନ କରାଯାଇପାରେ । ବାଚନିକ ଓ ଅବାଚନିକ ପରୀକ୍ଷାରେ ବୁଦ୍ଧି ପରିମାପ ଶୈଳୀ ଏକ ନୁହେଁ । ତେଣୁ ଅବାଚନିକ ପରୀକ୍ଷା ଦ୍ୱାରା ବ୍ୟକ୍ତିର ବୁଦ୍ଧିମତ୍ତାର ପରିମାଣ ସମ୍ପର୍କରେ କେତେକ ନୂତନ ଓ ଅଧିକ ତଥ୍ୟଦର୍ଶନ ମିଳିପାରେ ।

ଅବାଚନିକ ପରୀକ୍ଷାର ଏକମାତ୍ର ଦୁର୍ବଳତା ହେଲା ଏହା କେବଳ ଏକ ସମୟରେ ଜଣେ ବ୍ୟକ୍ତି ପ୍ରତି ପ୍ରୟୋଗ କରାଯାଇପାରେ । ଆହୁରି ମଧ୍ୟ ବାଚନିକ ପରୀକ୍ଷାର ଫଳାଫଳଠାରୁ ଅବାଚନିକ ପରୀକ୍ଷାର ଫଳାଫଳ କମ୍ ନିର୍ଭରଯୋଗ୍ୟ ଓ କମ୍ ସଙ୍ଗତ । ଶେଷରେ ଏହା ବ୍ୟକ୍ତିର ଶିକ୍ଷାଗତ ସାଫଲ୍ୟ ସମ୍ପର୍କରେ ଅନୁମାନ କୁ ସାହାଯ୍ୟ କରିପାରେ ନାହିଁ ।

**ଦଳଗତ ବୁଦ୍ଧି ପରୀକ୍ଷା (Group test of Intelligence)** :—ଏକ ସମୟରେ ଜଣେ ପରୀକ୍ଷକ ଅନେକ ପରୀକ୍ଷାର୍ଥୀଙ୍କୁ ପରୀକ୍ଷା କଲେ ତାହାକୁ ଦଳଗତ ବୁଦ୍ଧି ପରୀକ୍ଷା କୁହାଯାଏ । ବ୍ୟକ୍ତିଗତ ପରୀକ୍ଷାର ଅନେକ କାଳ ପରେ ଦଳଗତ ପରୀକ୍ଷା ଜନ୍ମଲାଭ କରିଥିଲା । ସର୍ବପ୍ରଥମେ ଦ୍ୱିତୀୟ ବିଶ୍ୱ ଯୁଦ୍ଧ କାଳରେ ଦଳଗତ ବୁଦ୍ଧି ପରୀକ୍ଷା ଆରମ୍ଭ କରାଯାଇଥିଲା । ସେତେବେଳେ ସୈନିକମାନଙ୍କୁ ସେମାନଙ୍କ ବୁଦ୍ଧିମତ୍ତା ଅନୁଯାୟୀ ବିଭିନ୍ନ ପଦ ପଦବୀ ପ୍ରଦାନ କରାଯାଉଥିଲା । ତେଣୁ ସେନାବାହିନୀର ଆବଶ୍ୟକତା କ୍ରମେ ମନୋବିଜ୍ଞାନୀ ମାନେ ଦଳଗତ ବୁଦ୍ଧି ପରୀକ୍ଷା ପ୍ରଣାଳୀ ଉଦ୍ଭାବନ କରିଥିଲେ । ମନୋବିଜ୍ଞାନୀ ଟରମ୍ୟାନଙ୍କ ଜଣେ ଛାତ୍ର ଆର୍ଥର ଓ ଓଟିସ (Arthur and. Otis) ଏବଂ ତାଙ୍କ ସାଥୀମାନେ ଦଳଭୁକ୍ତ ପରୀକ୍ଷାର୍ଥୀମାନଙ୍କର ମାନସିକ ସାମର୍ଥ୍ୟ ନିର୍ଣ୍ଣୟ କରିବାପାଇଁ ... ାୟମାନ ନିର୍ଣ୍ଣୟ କରିଥିଲେ । ଏହାଫଳରେ ଆର୍ମି ଆଲ୍‌ଫା ଓ ଆର୍ମିବିଟା ନାମକ ଦୁଇ ପ୍ରକାର ସଙ୍କେତ ନିର୍ଦ୍ଧାରଣ କରାଗଲା । ଆର୍ମି ଆଲ୍‌ଫାଦ୍ୱାରା ସାକ୍ଷର ବ୍ୟକ୍ତିମାନଙ୍କର ବାଚନିକ ପରୀକ୍ଷା କରାଯାଉଥିଲା ଏବଂ ଆର୍ମିବିଟା ସାହାଯ୍ୟରେ

ନିରକ୍ଷର ବ୍ୟକ୍ତିମାନଙ୍କର ଅବାଚନିକ ପରୀକ୍ଷା କରାଯାଉଥିଲା । ସେ ସମୟରେ ଏହି ପରୀକ୍ଷା ପଦ୍ଧତିର ସଫଳତା ପରବର୍ତ୍ତୀ ଯୁଗରେ ପରୀକ୍ଷାର ଏକ ସ୍ୱୀକୃତ ପ୍ରଣାଳୀ ରୂପେ ପ୍ରସାରି ଲାଭ କଲା ।

ବୁଦ୍ଧିମତ୍ତା ସମସ୍ତ ବ୍ୟକ୍ତିଙ୍କର ଏକ ସାଧାରଣ ସାମର୍ଥ୍ୟ । ଏହି ନିୟମ ଉପରେ ଭିତ୍ତିକରି ଦଳଗତ ବୁଦ୍ଧି ପରୀକ୍ଷା ରେ ପ୍ରବର୍ତ୍ତନ କରାଯାଇଥାଏ । ଏହି ପରୀକ୍ଷାରେ ମାନସିକ ସାମର୍ଥ୍ୟକୁ ବିଭିନ୍ନ ପ୍ରକାର ନମୂନା ବା ସୂଚନାତ୍ମକ ପଦାର୍ଥ ଦ୍ୱାରା ପରୀକ୍ଷା କରାଯାଏ ।

ଦଳଗତ ବୁଦ୍ଧି ପରୀକ୍ଷା କାଳରେ ସମଗ୍ର ପରୀକ୍ଷାକୁ କେତୋଟି ଉପ-ପରୀକ୍ଷା ରେ ବିଭକ୍ତ କରାଯାଏ ଏବଂ ଏଗୁଡ଼ିକୁ ସହଜରୁ କଠିନ କ୍ରମରେ ଗୋଟିକ ପରେ ଗୋଟିଏ ପରୀକ୍ଷାର୍ଥୀ ସମ୍ମୁଖରେ ଉପସ୍ଥାପନ କରାଯାଏ ।

ପ୍ରତ୍ୟେକ ଦଳଗତ ବୁଦ୍ଧି ପରୀକ୍ଷା ଏକ ନିର୍ଦ୍ଦିଷ୍ଟ ବୟସ ସୀମା ମଧ୍ୟରେ ଥିବା ବ୍ୟକ୍ତିମାନଙ୍କ ପାଇଁ ଉଦ୍ଦିଷ୍ଟ

ଦଳଗତ ବୁଦ୍ଧି ପରୀକ୍ଷା ଅଧିକ କଠିନ ଏବଂ ବସ୍ତୁନିଷ୍ଠ ହୋଇଥାଏ । ଏହାର ପ୍ରତ୍ୟେକ ଉପ-ପରୀକ୍ଷା ପାଇଁ ଏକ ସମୟ ସୀମା ଧାର୍ଯ୍ୟ କରାଯାଏ ।

**ଦଳଗତ ପରୀକ୍ଷାରେ ପରୀକ୍ଷଣ ବିଷୟ** :—ନିମ୍ନଲିଖିତ ବିଷୟଗୁଡ଼ିକ ସାଧାରଣତଃ ଦଳଗତ ପରୀକ୍ଷାରେ ସ୍ଥାନ ପାଇଥାଏ ।

(୧) **ଶବ୍ଦ ଜ୍ଞାନ ପରୀକ୍ଷା** :—ଏକ ଅର୍ଥବାଚକ ଓ ବିପରୀତ ଅର୍ଥବାଚକ ଶବ୍ଦ ସଂଯୋଜନା ।

(୨) **ବିଭକ୍ତିକରଣ** :—ଏକ ନିର୍ଦ୍ଦିଷ୍ଟ ଧର୍ମର ଶବ୍ଦଗୁଡ଼ିକ ମଧ୍ୟରୁ ଅନ୍ୟ ଧର୍ମର ଏକ ଶବ୍ଦକୁ ଅଲଗା କରିବା ।

(୩) **ବାଚନିକ ସାଦୃଶ୍ୟ** :—'ବହି ପଢ଼ିବା ପାଇଁ ଯେପରି ଖାତା······''

(୪) **ସାଧାରଣ ଜ୍ଞାନ** :—ଏହି ପରୀକ୍ଷାର୍ଥୀର ସାଧାରଣଜ୍ଞାନ ପରୀକ୍ଷା କରାଯାଏ ।

(୫) **ସଂଖ୍ୟାର କ୍ରମ**— :—ସଂଖ୍ୟାର ଏକ କ୍ରମ ଲିଖିତ କରାଯାଇ ଏକ ଶୂନ୍ୟସ୍ଥାନ ପୂରଣ କରିବାକୁ ପଡ଼େ । ଯଥା ୨, ୫, ୮—, ୧୪—, ଇତ୍ୟାଦି ।

(୬) **ବୋଧଜ୍ଞାନ ପରିମାପକ ପ୍ରଶ୍ନ** :—ଉଦାହରଣ—ପକ୍ଷୀ ଆକାଶରେ ଉଡ଼ିପାରେ ଓ ମାଛ ଜଳରେ ପହଁରିପାରେ । ଏହାର କାରଣ କଣ ?

(୭) **ସାଦୃଶ୍ୟ** :—କୌଣସି ଦୁଇଟି ବସ୍ତୁ, ଦୃଶ୍ୟ, ବ୍ୟକ୍ତି ବା ସ୍ଥାନ ମଧ୍ୟରେ ସାଦୃଶ୍ୟ ନିର୍ଣ୍ଣୟ କରିବାକୁ ପଡ଼ିଥାଏ ।

(୮) **ଗାଣିତିକ ଚିନ୍ତନ** :—ଛୋଟ ଛୋଟ ଗାଣିତିକ ମାନସାଙ୍କ ପ୍ରଶ୍ନ ଏଥିରେ ସ୍ଥାନ ପାଇଥାଏ ।

(୯) **ଚିନ୍ତନ** :—ଗୋଟିଏ ସମସ୍ୟାର କେତୋଟି ସମାଧାନ ପ୍ରଦତ୍ତ ହୋଇଥାଏ । ସେଥିରୁ ସର୍ବାଧିକ ଉପଯୁକ୍ତ ସମାଧାନଟି ବାଛିବାକୁ ପଡ଼ିଥାଏ ।

(୧୦) **ଅକ୍ଷର ଓ ସଙ୍କେତର ବ୍ୟବହାର** :—ଉଦାହରଣ— STUDENT = 1254372 ତେବେ TENT ?

**ବ୍ୟକ୍ତିଗତ ଓ ଦଳଗତ ପରୀକ୍ଷାର ତୁଳନା—**

| ବ୍ୟକ୍ତିଗତ | ଦଳଗତ |
|---|---|
| ୧ । ଏହା ଏକ ସମୟରେ ଜଣେ ବ୍ୟକ୍ତି ପାଇଁ ପ୍ରଯୁଜ୍ୟ । | ୧ । ଏହା ଏକ ସମୟରେ ବହୁ ବ୍ୟକ୍ତିଙ୍କ ନିମିତ୍ତ ଉଦ୍ଦିଷ୍ଟ । |
| ୨ । ସମୟ ଓ ପ୍ରଶାସନିକ ଦାୟିତ୍ୱ ଦୃଷ୍ଟିରୁ ଏହା ଅଧିକ ବ୍ୟୟ ସାପେକ୍ଷ । | ୨ । ସମୟ ଓ ପ୍ରଶାସନିକ ଦୃଷ୍ଟି କୋଣରୁ ଏହା ବ୍ୟୟ ସାପେକ୍ଷ ନୁହେଁ । |
| ୩ । ଏହି ପରୀକ୍ଷା ପାଇଁ ଅଭିଜ୍ଞ ପରୀକ୍ଷକ ଆବଶ୍ୟକ । | ୩ । ଏହି ପରୀକ୍ଷା ପାଇଁ ଅଭିଜ୍ଞ ପରୀକ୍ଷକଙ୍କର ଆବଶ୍ୟକତା ନଥାଏ । |
| ୪ । ପରୀକ୍ଷାରେ ପରୀକ୍ଷକ ଓ ପରୀକ୍ଷାର୍ଥୀ ପରସ୍ପରର ସମ୍ମୁଖୀନ ହେଉଥିବାରୁ ପରୀକ୍ଷକ ଭଲ ଭାବରେ ପରୀକ୍ଷାର୍ଥୀଙ୍କର ବ୍ୟବହାର ଅନୁଶୀଳନ କରି ପାରିବେ । | ୪ । ଏହି ପରୀକ୍ଷାରେ ପରୀକ୍ଷକ ଓ ପରୀକ୍ଷାର୍ଥୀ ପରସ୍ପରର ସମ୍ମୁଖୀନ ହେଉନଥିବାରୁ ବ୍ୟକ୍ତିଗତ ବ୍ୟବହାରର ସମୀକ୍ଷା କରିବା ସମ୍ଭବ ନୁହେଁ । |
| ୫ । ବ୍ୟକ୍ତିଗତ ପରୀକ୍ଷଣ ଅଧିକ ନିର୍ଭରଯୋଗ୍ୟ ଏହା ଦ୍ୱାରା ବ୍ୟକ୍ତିର ଦୋଷ ଦୁର୍ବଳତା ସହଜରେ ଓ ପରିଷ୍କାର ଭାବରେ | ୫ । ଦଳଗତ ପରୀକ୍ଷା ପଠନ କରିବାର ସାମର୍ଥ୍ୟ ଏବଂ ଉତ୍ତର କରିବା ବେଗ ଉପରେ ନିର୍ଭର କରେ । ଫଳରେ ପ୍ରକୃତ ମାନସିକ ଦୋଷ |

| | |
|---|---|
| ଜଣାପଡ଼େ । ଫଳରେ ସେଗୁଡ଼ିକ ଦୂର କରିବା ପାଇଁ ପଦକ୍ଷେପ ଗ୍ରହଣ କରାଯାଇ ପାରେ । | ଦୁର୍ବଳତା ଜଣାପଡ଼େ ନାହିଁ । |
| ୬ । ପଢ଼ିଲେଖି ପାରୁନଥିବା ଶିଶୁମାନଙ୍କ ପାଇଁ ଏହି ପରୀକ୍ଷା ସର୍ବୋତ୍ତମ । | ୬ । ଶାରୀରିକ ଦୁର୍ବଳତା, ଅଭିପ୍ରେରଣ (Motivation)ର ଅଭାବ, ଦୁର୍ବଳ ଦୃଷ୍ଟିଶକ୍ତି ଏହି ପରୀକ୍ଷାକୁ ପ୍ରଭାବିତ କରେ । ଫଳରେ ପ୍ରକୃତ ବୁଦ୍ଧିମତ୍ତା ପ୍ରଦର୍ଶିତ ହୋଇପାରେ ନାହିଁ । |
| ୭ । ବ୍ୟକ୍ତିଗତ ପରୀକ୍ଷା ବ୍ୟକ୍ତିର ଗୁଣାତ୍ମକ ଦିଗରୁ ବୁଦ୍ଧିମତ୍ତାର ନିର୍ଣ୍ଣୟ କରିଥାଏ । | ୭ । ବୟସ୍କ ଏବଂ ଅଧିକ ବୟସର ଶିଶୁ ଯେଉଁମାନେ ପଢ଼ି, ଲେଖିପାରିବେ, ପରୀକ୍ଷକଙ୍କ ସହ ସହଯୋଗ କରିପାରିବେ, ଏହି ପରୀକ୍ଷା ସେମାନଙ୍କ ପାଇଁ ଉପଯୁକ୍ତ । |
| ୮ । ବ୍ୟକ୍ତିଗତ ପରୀକ୍ଷା ପ୍ରତିଦ୍ୱନ୍ଦିତା ମୂଳକ ନୁହେଁ । | ୮ । ଦଳଗତ ପରୀକ୍ଷା ପ୍ରତିଦ୍ୱନ୍ଦ୍ୱିତା ମୂଳକ । |

**ବିଭିନ୍ନ ପ୍ରକାର ଦଳଗତ ପରୀକ୍ଷା :—**

**(୧) ପିଣ୍ଟନର-କନିଂହାମ୍ ପ୍ରାଥମିକ ମାନସିକ ପରୀକ୍ଷା :—**ଏହା ଦଳଗତ ପରୀକ୍ଷଣର ସର୍ବ ପୁରାତନ ପଦ୍ଧତିଗୁଡ଼ିକ ମଧ୍ୟରୁ ଗୋଟିଏ । ଏହା ସାଧାରଣତଃ ଶିଶୁବିହାର ଓ ଶିଶୁ ବିହାର ଆଦରେ ଶିକ୍ଷା ଲାଭ କରୁଥିବା ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ଶିଶୁମାନଙ୍କ ପାଇଁ ଉପଯୁକ୍ତ ।

**(୨) ଶିକାଗୋ ଅବାଚନିକ ପରୀକ୍ଷା :**—ଏହା ଏକ ପୁରାତନ ଅଥଚ ଜଣାଶୁଣା ପରୀକ୍ଷା ପଦ୍ଧତି । ୬ ବର୍ଷଠାରୁ ଯୌବନର ଆରମ୍ଭ ପର୍ଯ୍ୟନ୍ତ ଶିଶୁମାନଙ୍କୁ ଏହି ପରୀକ୍ଷାର ସ୍କେଲ ସାହାଯ୍ୟରେ ପରୀକ୍ଷଣ କରାଯାଇପାରେ । ଏହାର ପ୍ରଶ୍ନଗୁଡ଼ିକ ଅନ୍ୟ ପଦ୍ଧତିର ପ୍ରଶ୍ନ ସହିତ ସମାନ ।

**(୩) ପ୍ରେସି-ପ୍ରାଇମର ସ୍କେଲ :—**ଏହି ପଦ୍ଧତିରେ ୮ ଗୋଟି ପରୀକ୍ଷା ଅନ୍ତର୍ଭୁକ୍ତ ଏବଂ ପ୍ରତ୍ୟେକ ପରୀକ୍ଷାରୁ ଏକ ପ୍ରକାର ଫଳ ଆଶା କରାଯାଏ ।

(୪) ଲର୍ଗ-ଥର୍ଣ୍ଡାଇକ୍ ଟେଷ୍ଟ :—ଦ୍ୱିତୀୟ ଓ ତୃତୀୟ ଗ୍ରେଡ଼ର ଛାତ୍ର ମାନଙ୍କ ପାଇଁ ଏହା ଉଦ୍ଦିଷ୍ଟ । ଏଥିରେ ମନୁଷ୍ୟ ଓ ପଶୁର ଶରୀରକୁ ଚିହ୍ନିତ କରିବା ଆବଶ୍ୟକ ହୁଏ । ଏକ ପ୍ରକାର ଛବି ମଧ୍ୟରେ କେତେକ ବିଷମ ପ୍ରକାର ଛବି ପ୍ରଦାନ କରାଯାଇ ସେସବୁକୁ ଅଲଗା କରିବା ପାଇଁ ଶିଶୁକୁ କୁହାଯାଏ ।

(୫) **The Haggerty delta 1.** :—ଏହି ପରୀକ୍ଷା ପ୍ରଥମ ଗ୍ରେଡ଼ଠାରୁ ତୃତୀୟ ଗ୍ରେଡ଼ ମଧ୍ୟରେ ଶିଶୁମାନଙ୍କ ପ୍ରାୟ ବାରଗୋଟି ଅନୁଶୀଳନୀ ଦ୍ୱାରା କରାଯାଏ । ଏଥିମଧ୍ୟରୁ ଛଅଟି ଶିଶୁକୁ ଭାଷା ଶିକ୍ଷା କରିବା ପାଇଁ ଓ ଅବଶିଷ୍ଟ ଛଅଟି ପରୀକ୍ଷଣ ପାଇଁ ଉଦ୍ଦିଷ୍ଟ । ଏହି ପରୀକ୍ଷଣ ପଦ୍ଧତିର ଦ୍ୱିତୀୟ ଭାଗ ତୃତୀୟରୁ ନବମ ଗ୍ରେଡ଼୍‌ର ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ ।

(୬) **The Raven Progressive Matrices Tests** :—ଏହି ପରୀକ୍ଷଣ ପଦ୍ଧତି ଇଂଲଣ୍ଡରେ ଜନ୍ମଲାଭ କରିଥିଲା । ସ୍ୱସନ୍‌ତ ଦର୍ଶନ ଓ ଚିନ୍ତନ ଶକ୍ତିର ପରିମାପ କରିବା ଏହି ପଦ୍ଧତିର ମୂଳ ଲକ୍ଷ୍ୟ । ଏହି ପରୀକ୍ଷାରେ ବିଭିନ୍ନ ଆକୃତିର ଚିତ୍ର ବ୍ୟବହାର କରାଯାଏ । ପ୍ରଥମେ ଏଥିରେ ୬୦ ଗୋଟି ଚିତ୍ର ୫ଟି ସେଟ୍‌ରେ ବିଭକ୍ତ ହୋଇ କଠିନତାର ବର୍ଦ୍ଧିତ କ୍ରମ ଅନୁଯାୟୀ ସଜ୍ଜିତ ହୋଇଥିଲା । ଏହି ପଦ୍ଧତି ଅନୁସାରେ ଶୈଶବଠାରୁ ଆରମ୍ଭ କରି ଆଦ୍ୟ ଯୌବନ ପର୍ଯ୍ୟନ୍ତ ବିଭିନ୍ନ ବୟସର ଶିଶୁଙ୍କର ବୁଦ୍ଧିମତ୍ତା ପରୀକ୍ଷା କରାଯାଇପାରେ । ଏହା ବୟସ ନିର୍ବିଶେଷରେ ବ୍ୟକ୍ତିଗତ ଭାବରେ ଏବଂ ଦଳଗତ ଭାବରେ ବ୍ୟବହୃତ ହୋଇପାରେ । ଏହି ପରୀକ୍ଷା ସ୍ଥାନ, କାଳ, ପାତ୍ରର ସଙ୍କୀର୍ଣ୍ଣତା ମଧ୍ୟରେ ବା ଜାତୀୟତା ଓ ଶିକ୍ଷାଗତ ଯୋଗ୍ୟତା ସୀମା ମଧ୍ୟରେ ସୀମାବଦ୍ଧ ନୁହେଁ ।



# ଦଶମ ଅଧ୍ୟାୟ

## ବ୍ୟକ୍ତିତ୍ୱ

"ବ୍ୟକ୍ତିତ୍ୱ" ଶବ୍ଦଟି ଏକ ଅପ୍ରମାଣିତ ଉପପାଦ୍ୟର ସାମାନ୍ୟ କଥନ । ଏହି ଶବ୍ଦଟି ବୋଧହୁଏ ମନୋବିଜ୍ଞାନରେ ବ୍ୟବହୃତ ସବୁଠାରୁ ଅଧିକ ଜଟିଳ, ଅବୋଧ ଓ ରହସ୍ୟମୟ ବିଷୟଟିକୁ ନିର୍ଦ୍ଦେଶ କରେ । ଏହା ମନସ୍ତତ୍ତ୍ୱର ଏପରି ଏକ ଅଂଶ ଯେ ଏ କ୍ଷେତ୍ରରେ ମନୋବିଜ୍ଞାନୀମାନେ ସର୍ବାଧିକ ପରିଶ୍ରମକରି ସ୍ୱଳ୍ପତମ ସଫଳତା ହାସଲ କରିଛନ୍ତି । ଆଜି ମନୁଷ୍ୟ ମହାକାଶକୁ ଜୟ କରିଥିଲେ ମଧ୍ୟ ନିଜ ବ୍ୟକ୍ତିତ୍ୱର ବିଶ୍ଳେଷଣ କରି କୌଣସି ସାର୍ବଜନୀନ ସିଦ୍ଧାନ୍ତରେ ଉପନୀତ ହୋଇପାରି ନାହିଁ । ବ୍ୟକ୍ତିତ୍ୱର ଏପରି ବିଭିନ୍ନତା ମଧ୍ୟରେ ପରିପ୍ରକାଶ ଘଟୁଥିବାରୁ ଏହାର ବ୍ୟାଖ୍ୟା ବିଭିନ୍ନ ରୂପ ଧାରଣ କରେ । ମନୁଷ୍ୟର ବ୍ୟକ୍ତିତ୍ୱ ଛନ୍ଦା ଅଡୁଆ ସୂତାପରି । ଅଡୁଆ ସୂତାର ଗୋଟାଏ ମୁଣ୍ଡକୁ ଟାଣିଲେ ଯେପରି ସଙ୍ଗେ ସଙ୍ଗେ ଗଣ୍ଠି ପଡ଼ିଯାଏ ଠିକ୍ ସେହିପରି ମନୁଷ୍ୟର ବ୍ୟକ୍ତିତ୍ୱକୁ ଯେତିକି ଅଧିକରୁ ଅଧିକ ଅଧ୍ୟୟନ କରାଯାଏ ତାହା ଜଟିଳରୁ ଜଟିଳତର ହୋଇଯାଏ ।

ବ୍ୟକ୍ତିତ୍ୱର ଅର୍ଥ ନିରୂପଣ ସମୟରେ ମଧ୍ୟ ସେଥିରେ ନିରୂପଣ କାରୀର ବ୍ୟକ୍ତିତ୍ୱର ପ୍ରଭାବ ପଡ଼ିଥାଏ । ଅତଏବ ଆଜି ପର୍ଯ୍ୟନ୍ତ ବ୍ୟକ୍ତିତ୍ୱ ସମ୍ପର୍କରେ ଏକ ନିର୍ଦ୍ଦିଷ୍ଟ ଅର୍ଥବ ଧାରଣାର ସୃଷ୍ଟି ହୋଇପାରି ନାହିଁ । ବିଭିନ୍ନ ବ୍ୟକ୍ତି ଏହାକୁ ଭିନ୍ନ ଭିନ୍ନ ପ୍ରକାରରେ ବ୍ୟାଖ୍ୟା କରିଅଛନ୍ତି । କେତେକଙ୍କ ମତରେ ବ୍ୟକ୍ତିତ୍ୱ ହେଉଛି ମନୁଷ୍ୟର କାର୍ଯ୍ୟକଳାପ ଓ ଚରିତ୍ରର ନାମଫଳକ ସଦୃଶ୍ୟ । ଅନ୍ୟ କେତେକ କହନ୍ତି ଯେ ବ୍ୟକ୍ତିତ୍ୱ ହେଉଛି ମନୁଷ୍ୟର ବିଭିନ୍ନ ସମୟରେ ପ୍ରଦର୍ଶନ କରୁଥିବା ଭାବଭଙ୍ଗୀର ସମଷ୍ଟି । ଅନ୍ୟ କେତେକ ମତ ପ୍ରଦାନ କରନ୍ତି ଯେ ଯାହା ଜଣେ ମନୁଷ୍ୟକୁ ଅନ୍ୟ ଜଣେ ମନୁଷ୍ୟଠାରୁ ଭିନ୍ନ ଭାବରେ ପ୍ରତୀୟମାନ କରାଏ ତାହାହିଁ ବ୍ୟକ୍ତିତ୍ୱ ।

ବ୍ୟକ୍ତିତ୍ୱର ଇଂରେଜୀ ପରିଭାଷା **Personality** ଶବ୍ଦଟି ମୂଳ ଲାଟିନ୍ ଶବ୍ଦ **'Persona'**ରୁ ଉଦ୍ଭବ ହୋଇଅଛି । ଆମ ଦେଶରେ ଯାତ୍ରାମାନଙ୍କରେ ଅଭିନେତା-ମାନେ ଯେଉଁ ମୁଖା ବ୍ୟବହାର କରନ୍ତି ଲାଟିନ୍ ଭାଷାରେ ତାହାକୁ **Persona** କୁହାଯାଏ । ତେଣୁ ସଂକ୍ଷିପ୍ତ ଭାବରେ କୁହାଯାଇପାରେ ଯେ ବ୍ୟକ୍ତିତ୍ୱ ହେଉଛି ବ୍ୟକ୍ତିର

ବାହ୍ୟ ପ୍ରଦର୍ଶିତ ରୂପ; କିନ୍ତୁ କାଳକ୍ରମେ ବ୍ୟକ୍ତିତ୍ୱ ସମ୍ପର୍କରେ ଏହି ଧାରଣା ପରିବର୍ତ୍ତିତ ହୋଇ Personality ଶବ୍ଦଟି ଚରିତ୍ର ଗତ ବୈଶିଷ୍ଟ୍ୟ ଭାବରେ ଗୃହୀତ ହେଲା ।

ମନୋବିଜ୍ଞାନରେ ବ୍ୟକ୍ତିତ୍ୱର ଅର୍ଥ ବ୍ୟକ୍ତିଦ୍ୱାରା ପ୍ରଦର୍ଶିତ ନିଜସ୍ୱ, ବ୍ୟକ୍ତିଗତ ମୌଳିକ କାର୍ଯ୍ୟ କରିବାର ପ୍ରଣାଳୀକୁ ସୂଚିତ କରେ । ଏହା ବ୍ୟକ୍ତି ମଧ୍ୟରେ ତାହାର ଗୁଣଗତ ମୌଳିକତା, କ୍ଷମତା, ଆବେଗିକ ଓ ସାମାଜିକ ଗୁଣରାଜିର ପରିପ୍ରକାଶ, ଆଗ୍ରହ ଓ ମନୋବୃତ୍ତିକୁ ବୁଝାଏ । ସୁତରାଂ ବ୍ୟକ୍ତିର ବ୍ୟବହାର, କଥାବାର୍ତ୍ତା, ଚିନ୍ତାଧାରା ଓ ଭାବଭଙ୍ଗୀର ସାମୂହିକ ପରିପ୍ରକାଶ ହେଉଛି ବ୍ୟକ୍ତିତ୍ୱ ।

**ବ୍ୟକ୍ତିତ୍ୱର ସଂଜ୍ଞା—**

ମନୋବୈଜ୍ଞାନିକମାନେ ବ୍ୟକ୍ତିତ୍ୱର ବିଭିନ୍ନ ସଂଜ୍ଞା ନିରୂପଣ କରିଅଛନ୍ତି । କେତେକଙ୍କ ମତରେ ଏହା ହେଉଛି ସାମାଜିକ ଉଦ୍ଦୀପନ ମୂଲ୍ୟ (Social Stimulus Value) ଅର୍ଥାତ୍ ଯାହାଦ୍ୱାରା କୌଣସି ବ୍ୟକ୍ତି ଅନ୍ୟ ବ୍ୟକ୍ତି ଉପରେ ପ୍ରଭାବ ବିସ୍ତାର କରେ ତାହାହିଁ ବ୍ୟକ୍ତିତ୍ୱ । ଏହି ମତ ଅନୁସାରେ କୌଣସି ବ୍ୟକ୍ତିକୁ ଦେଖିଲେ ତା' ସମ୍ପର୍କରେ ଆମ ମନରେ ଯେଉଁ ଧାରଣା ସୃଷ୍ଟି ହୁଏ ତାହା ତା'ର ବ୍ୟକ୍ତିତ୍ୱ । ଏପରି କ୍ଷେତ୍ରରେ ଶାରୀରିକ ପ୍ରଦର୍ଶନ, ପୋଷାକ ପରିଚ୍ଛଦ, କଥାବାର୍ତ୍ତାର ଶୈଳୀ ଓ ଶିଷ୍ଟାଚାର ବ୍ୟକ୍ତିତ୍ୱର ମାନଦଣ୍ଡ ରୂପେ କାର୍ଯ୍ୟକରେ । ତେଣୁ ପରୀକ୍ଷାରେ ପ୍ରାର୍ଥୀ ମନୋନୟନ ସମୟରେ ବ୍ୟକ୍ତିତ୍ୱର ଏ ପ୍ରକାର ସଂଜ୍ଞାକୁ ଗ୍ରହଣ କରାଯାଇଥାଏ ।

ଅନ୍ୟ କେତେକଙ୍କ ମତରେ ବ୍ୟକ୍ତିତ୍ୱ ହେଉଛି ବ୍ୟକ୍ତିର ସଙ୍ଗଠିତ ଆଚରଣ ସମୂହର ସାମଗ୍ରିକ ରୂପ । ଅର୍ଥାତ୍ ଏହା ମନୁଷ୍ୟ ମଧ୍ୟରେ ଅନ୍ତର୍ନିହିତ ସ୍ୱଭାବ, ଅଭ୍ୟାସ, ଆବେଗ ଓ ସମ୍ବେଗକୁ ବୁଝାଏ ।

ତୃତୀୟ ସଂଜ୍ଞା ଅନୁସାରେ ବ୍ୟକ୍ତିତ୍ୱ ହେଉଛି ମନୁଷ୍ୟର ସମସ୍ତ ଅନ୍ତର୍ନିହିତ ପ୍ରଭାବଶାଳୀ କ୍ରିୟାତ୍ମକ ଓ ଶାରୀରିକ ଗୁଣରାଜିର ଏକୀଭୂତ ପରିପ୍ରକାଶ ଯାହା ଜଣକୁ ଅନ୍ୟ ସମସ୍ତଙ୍କଠାରୁ ଭିନ୍ନ ପ୍ରମାଣିତ କରିଥାଏ ।

ଅନ୍ୟ ମତରେ ବ୍ୟକ୍ତିତ୍ୱ ହେଉଛି ବ୍ୟକ୍ତି ବିଶେଷର ସହଜାତ ଏବଂ ଅର୍ଜିତ ସମସ୍ତ ସ୍ୱଭାବ, ପ୍ରେରଣା, କାମନା, ତଥା ବୃତ୍ତିର ସମନ୍ୱୟ ।

କେତେକ ମନୋବୈଜ୍ଞାନିକଙ୍କ ମତରେ ଯାହା ବ୍ୟକ୍ତି ବିଶେଷର ବ୍ୟବହାର ମଧ୍ୟରେ ସଙ୍ଗଠନ, ଐକ୍ୟ, ତାହା ସାମଞ୍ଜସ୍ୟ ଆଣେ ବ୍ୟକ୍ତିତ୍ୱ ।

ଗୋଟିଏ ଶ୍ରେଣୀର ମନୋବିଜ୍ଞାନୀ ମନୁଷ୍ୟର ପରିବେଶ ସହିତ ସମଯୋଜନ Adjustment) କରିବାର ପ୍ରବୃତ୍ତିକୁ ବ୍ୟକ୍ତିତ୍ୱର ସଂଜ୍ଞାଭାବରେ ଗ୍ରହଣ କରିଥାନ୍ତି ।

ସେମାନଙ୍କ ମତରେ ବ୍ୟକ୍ତିତ୍ୱ ହେଉଛି ବ୍ୟକ୍ତି ମଧ୍ୟରେ ନିହିତ ବିଭିନ୍ନ ଶାରୀରିକ ତଥା ମାନସିକ ପ୍ରଲକ୍ଷଣ ଗୁଡ଼ିକର ଏକ ଗତିଶୀଳ ସଙ୍ଗଠନ, ଯାହାକି ବ୍ୟକ୍ତିର ପରିବେଷ୍ଟନୀ ପ୍ରତି ସମଯୋଜନକୁ ବିଶେଷତ୍ୱ ଦେଇଥାଏ ।

ବ୍ୟକ୍ତିତ୍ୱର ସର୍ବୋତ୍ତମ ସଂଜ୍ଞା ହେଉଛି "ବ୍ୟକ୍ତି ଯାହା କରେ, ତାହାହିଁ ହେଉଛି ତାହାର ବ୍ୟକ୍ତିତ୍ୱ" ।

ଫ୍ରେଡେନ୍ ବର୍ଗ (**Fredenburg**) ନିଜର ପୁସ୍ତକ "**Psychology of personality and Adjustment**" ରେ ସମସ୍ତ ସଂଜ୍ଞା ଗୁଡ଼ିକ ଏକତ୍ରିତ କରି ଏକ ନୂତନ ସଂଜ୍ଞା ଗଠନ କରିଛନ୍ତି । ତାଙ୍କ ମତରେ "ବ୍ୟକ୍ତିତ୍ୱ" ହେଉଛି ଜଟିଳ ସ୍ୱଭାବିକ ଗୁଣରାଜି ଗୁଡ଼ିକ ମଧ୍ୟରେ ଏକ ସ୍ଥାୟୀ ଉପାଦାନ ଯାହାଦ୍ୱାରା ବ୍ୟକ୍ତିର ଜୀବନାଦର୍ଶ ପ୍ରତିଫଳିତ ହୋଇଥାଏ ।

ବ୍ୟକ୍ତିତ୍ୱର ସଂଜ୍ଞା ଏହିପରି ବିଭିନ୍ନରେ ବ୍ୟକ୍ତି ଓ ସ୍ଥଳ ବିଶେଷରେ ବିଭିନ୍ନ ଭାଷା ଓ ବିଭିନ୍ନ ରୂପରେ ପ୍ରକାଶ ପାଇ ଆସିଛି । ଏହାର କାରଣ ସ୍ୱରୂପ କୁହାଯାଇପାରେ ଯେ ପୃଥିବୀରେ କୌଣସି ଦୁଇଟି ବ୍ୟକ୍ତି ବିଶେଷଙ୍କର ବ୍ୟକ୍ତିତ୍ୱ ଏପରିକି ଦୁଇଟି ଯମଜ ସନ୍ତାନଙ୍କର ବ୍ୟକ୍ତିତ୍ୱ ଏକାଭଳି ହୋଇ ପାରେ । ବିଭିନ୍ନ ପରିବେଷ୍ଟନୀରେ ବ୍ୟକ୍ତିତ୍ୱର ପରିସ୍ଫୁରଣ ଭିନ୍ନ ହୋଇଥାଏ । ଏତଦ୍‌ବ୍ୟତୀତ ବ୍ୟକ୍ତି ନିଜର ଅତୀତରୁ ଅଭିଜ୍ଞତାରୁ ଶିକ୍ଷା ଲାଭ କରେ ଏବଂ ଏହି ଅଭିଜ୍ଞତା ତାର ବ୍ୟକ୍ତିତ୍ୱ ଉପରେ ପ୍ରଭାବ ପକାଇଥାଏ । ଅତୀତର ଅଭିଜ୍ଞତା ଓ ବର୍ତ୍ତମାନର ପରିବେଷ୍ଟନୀ ଏ ଦୁଇଟି ମଧ୍ୟରେ ସମଯୋଜନ କରିବାକୁ ମନୁଷ୍ୟ ବାଧ୍ୟ ହୋଇଥାଏ । ଫଳରେ ମନୁଷ୍ୟର ବ୍ୟକ୍ତିତ୍ୱ ବିକାଶିତ ହୋଇଥାଏ ।

ବ୍ୟକ୍ତିତ୍ୱର ସଂଜ୍ଞା ଭିନ୍ନ ଭିନ୍ନ ହେଲେ ମଧ୍ୟ ସେଥିରୁ ବ୍ୟକ୍ତିତ୍ୱ ସମ୍ପର୍କରେ କେତେକ ନିର୍ଦ୍ଦିଷ୍ଟ ଧାରଣାର ସୃଷ୍ଟି ହୁଏ । ଅର୍ଥାତ୍ ମନୁଷ୍ୟର ବ୍ୟକ୍ତିତ୍ୱର କେତେଗୁଡ଼ିଏ ସ୍ୱତନ୍ତ୍ର ଧର୍ମ ରହିଛି । ସେଗୁଡ଼ିକ ହେଲା—

୧ । ବ୍ୟକ୍ତିତ୍ୱ ସର୍ବଦା ଅଭିନବ ଓ ପରିବର୍ତ୍ତନଶୀଳ । ଏହା ଅପରିବର୍ତ୍ତନୀୟ ଓ ଅନମନୀୟ ନୁହେଁ । ସମୟର ପରିବର୍ତ୍ତନ ସହ ଏହା ଭିନ୍ନ ରୂପ ଧାରଣ କରିଥାଏ । ଏହା କଦାପି ଅଚଳାୟତନ ନୁହେଁ ।

୨ । ବ୍ୟକ୍ତି ମଧ୍ୟରେ ତାର ବ୍ୟକ୍ତିତ୍ୱ ଗଠିତ ହୋଇଥାଏ । କେତୋଟି ନିର୍ଦ୍ଦିଷ୍ଟ ସ୍ତରରେ ଏହା ବିକାଶ ଲାଭ କରେ । ରକ୍ତ ମାଂସର ଶରୀର ଉପରେ ବ୍ୟକ୍ତିତ୍ୱର ପ୍ରଭାବକୁ ବାଦ୍‌ଦେଲେ ଅନ୍ତର୍ନିହିତ ମାନବିକ ଉଦ୍ୟମ ଓ ଜୀବନଧାରାରେ

ତାଙ୍କ ଉପରେ ମଧ୍ୟ ଏହାର ପ୍ରଭାବ ପଡ଼ିଥାଏ । ଫଳରେ ମନୁଷ୍ୟର ବ୍ୟକ୍ତିତ୍ୱ ତାର ଶାରୀରିକ ପ୍ରଦର୍ଶନ ଅପେକ୍ଷା ଅଧିକ ପ୍ରାଧାନ୍ୟ ପାଇଥାଏ ।

୩ । ବ୍ୟକ୍ତିତ୍ୱ ଏକ କ୍ରିୟା ଓ ପ୍ରତିକ୍ରିୟାଶୀଳ ବସ୍ତୁ । ଏହା ସର୍ବଦା କର୍ମଠ । କୌଣସି ସମୟରେ ସୁପ୍ତ ବା କର୍ମହୀନ ନୁହେଁ ।

୪ । ସାଧାରଣ ଭାବରେ ବ୍ୟକ୍ତିତ୍ୱ କହିଲେ ଯାହା ବୁଝାଯାଏ ଏହା ତାହାଠାରୁ ଅନେକ ଭିନ୍ନ । ଏହାର ଅନ୍ୟଏକ ଦିଗ ରହିଛି ଯାହା ବାହାରକୁ ଦୃଶ୍ୟ ନୁହେଁ କିନ୍ତୁ ଅଚେତନ ମନରେ ରହି କାର୍ଯ୍ୟ କରିଥାଏ ।

**ବ୍ୟକ୍ତିତ୍ୱର ବିକାଶରେ ବଂଶାନୁଗୁଣ ଓ ପରିବେଷ୍ଟନୀର ପ୍ରଭାବ** :—ବ୍ୟକ୍ତିତ୍ୱ ବିକାଶଶୀଳ ତଥା ପରିବର୍ତ୍ତନଶୀଳ । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ବ୍ୟକ୍ତିତ୍ୱ ବିକାଶ ଲାଭକରି ଚାଲିଥାଏ । ଅନେକଗୁଡ଼ିଏ ଆନ୍ତଃ ଓ ବାହ୍ୟ ଉପାଦାନର ପ୍ରଭାବରେ ଏହା ପରିବର୍ଦ୍ଧିତ ଓ ପରିମାର୍ଜ୍ଜିତ ହୋଇଥାଏ । ସେଥି ମଧ୍ୟରୁ ବଂଶାନୁଗୁଣ ଓ ପରିବେଷ୍ଟନୀ ହେଉଛି ଦୁଇଟି ପ୍ରଧାନ ଉପାଦାନ । ତେବେ ଏ ଦୁଇଟି ମଧ୍ୟରୁ ବ୍ୟକ୍ତିତ୍ୱ ଉପରେ କେଉଁ ଗୋଟିକର ପ୍ରଭାବ ଅଧିକ ତାହା ଏକ ବିବାଦମାନ ବିଷୟ ହୋଇ ରହିଆସିଛି । କେତେକ ମନୋବିଜ୍ଞାନୀ ପରିବେଷ୍ଟନୀକୁ ଅଧିକ ଗୁରୁତ୍ୱ ଦେଉଥିବା ସମୟରେ ଅନ୍ୟ କେତେକ ବଂଶାନୁଗୁଣକୁ ଅଧିକ ପ୍ରାଧାନ୍ୟ ପ୍ରଦାନ କରିଥାନ୍ତି । ଫଳସ୍ୱରୂପ ବ୍ୟକ୍ତିତ୍ୱକୁ ପ୍ରଭାବିତ କରୁଥିବା ବଂଶାନୁଗୁଣ ଓ ପରିବେଷ୍ଟନୀ ମଧ୍ୟରେ କୌଣସି ନିର୍ଦ୍ଦିଷ୍ଟ ସୀମାରେଖା ଅଙ୍କନ କରାଯାଇ ପାରିନାହିଁ ।

ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ବ୍ୟକ୍ତିତ୍ୱର ବିକାଶରେ ଉଭୟ ବଂଶାନୁଗୁଣ ଓ ପରିବେଷ୍ଟନୀର ପ୍ରଭାବ ଅନୁଭୂତ ହୁଏ । ଏହି ଦୁଇଟି ଉପାଦାନ ମଧ୍ୟରେ ପାରସ୍ପରିକ କ୍ରିୟାରୁ ବ୍ୟକ୍ତିତ୍ୱ ଜନ୍ମ ନେଇଥାଏ । ଏହି ଦୁଇଟି ଉପାଦାନରେ ଭିନ୍ନତା ଯୋଗୁଁ ଗୋଟିଏ ବ୍ୟକ୍ତିତ୍ୱ ଅନ୍ୟ ବ୍ୟକ୍ତିତ୍ୱଠାରୁ ଭିନ୍ନ ହୋଇଥାଏ । ଜଣେ ଶିକ୍ଷକ ଶିକ୍ଷାଦାନ ସମୟରେ ଛାତ୍ରମାନଙ୍କର ବ୍ୟକ୍ତିତ୍ୱ ମଧ୍ୟରେ ଥିବା ଭିନ୍ନତା ଅନୁଶୀଳନ କରିବା ଏକାନ୍ତ ଆବଶ୍ୟକ । ମନୁଷ୍ୟର ସହଜାତ ଗୁଣ ତା'ର ବ୍ୟକ୍ତିତ୍ୱର ସର୍ବୋଚ୍ଚ ସୀମା ନିର୍ଦ୍ଧାରଣ କରିବା ସମୟରେ ପରିବେଷ୍ଟନୀ ଏହାକୁ ମାର୍ଜ୍ଜିତ କରିଥାଏ । ଏଣୁ ଏହି ଦୁଇଟି ଉପାଦାନ ପରସ୍ପର ପରିପୂରକ ଓ 'ବ୍ୟକ୍ତିତ୍ୱ-ମୁଦ୍ରା''ର ଦୁଇଟି ପାର୍ଶ୍ୱଭଳି । ମନୋବିଜ୍ଞାନରେ ଏ ଦୁଇଟି ସଂପର୍କରେ ଆଲୋଚନା ପୃଥକ ଭାବରେ କରାଗଲେ ମଧ୍ୟ ବ୍ୟକ୍ତିତ୍ୱ ଉପରେ ଦୁଇଟିଯାକ ଏକ ସମୟରେ ପ୍ରଭାବ ପକାଇଥାନ୍ତି ।

**(କ) ବଂଶାନୁକ୍ରମଣ** :—ନାନା ଗବେଷଣା ପ୍ରସୂତ ତଥ୍ୟ ମାନଙ୍କରୁ ଜଣାଯାଏ ଯେ ବୁଦ୍ଧି ବୃତ୍ତି ବା ବୌଦ୍ଧିକ ଶକ୍ତି ଏକ ସହଜାତ ଉପାଦାନ ଏବଂ ବ୍ୟକ୍ତି

ଉତ୍ତରାଧିକାରୀ ସୂତ୍ରେ ଏହା ପୂର୍ବପୁରୁଷ ମାନଙ୍କଠାରୁ ପ୍ରାପ୍ତ ହୋଇଥାଏ, ବ୍ୟକ୍ତିତ୍ୱ ଉପରେ ବଂଶାନୁଗୁଣର ପ୍ରଭାବ ଆଲୋଚନା କରିବା ପୂର୍ବରୁ ବଂଶାନୁଗୁଣର ଅର୍ଥ ବୁଝିବା ଏକାନ୍ତ ଆବଶ୍ୟକ । ବଂଶାନୁକ୍ରମଣ ଦୁଇ ପ୍ରକାର ହୋଇଥାଏ । ପ୍ରଥମଟି ହେଉଛି ଜୈବିକ ବଂଶାନୁକ୍ରମଣ ଯାହା ବ୍ୟକ୍ତି ତାର ପୂର୍ବପୁରୁଷ ମାନଙ୍କଠାରୁ ଗୁଣସୂତ୍ର (Chromosomes) ମାଧ୍ୟମରେ ପ୍ରାପ୍ତ ହୋଇଥାଏ । ଦ୍ୱିତୀୟଟି ହେଉଛି ସାମାଜିକ ବଂଶାନୁକ୍ରମଣ ଯାହା ଗୋଟିଏ ସମୟର ମନୁଷ୍ୟ ତା'ର ପୂର୍ବ ସମୟର ମନୁଷ୍ୟମାନଙ୍କଠାରୁ ଶିକ୍ଷା କରିଥାଏ । ସାମାଜିକ ରୀତି, ନୀତି, ପ୍ରଥା ଓ କୌଶଳ ଆଦି ଏହାର ଅନ୍ତର୍ଭୁକ୍ତ ।

ଆମେ ଜାଣୁ ଯେ ଏକ କ୍ଷୁଦ୍ର ବୀଜ ମଧ୍ୟରେ ବିଶାଳ ଦ୍ରୁମର ସମସ୍ତ ଧର୍ମ ନିହିତ ଥାଏ । ଉପଯୁକ୍ତ ପରିବେଶ ମଧ୍ୟରେ ବୀଜଟି ଏକ ବୃକ୍ଷରେ ପରିଣତ ହୋଇଥାଏ । ସେହିପରି ମନୁଷ୍ୟର ଜନନ କୋଷ (Germ cell) ଗୁଡ଼ିକ ଶିଶୁର ସମସ୍ତ ଶାରୀରିକ ଓ ମାନସିକ ଗୁଣଗୁଡ଼ିକର ପରିବାହକ ହୋଇଥାଏ । ଏହାକୁ ଜୈବିକ ବଂଶାନୁକ୍ରମଣ କୁହାଯାଏ । ଗର୍ଭଧାରଣ ସମୟରେ ଶୁକ୍ରାଣୁ ଓ ଡିମ୍ବାଣୁର ମିଳନ ହୁଏ ଓ ପିତାମାତା ପ୍ରତ୍ୟେକଙ୍କର ତେଇଶି ଯୋଡ଼ା ଗୁଣସୂତ୍ର ଏହି କାର୍ଯ୍ୟରେ ନିୟୋଜିତ ହୋଇଥାନ୍ତି । କୋଷରେ ସମାନ ସଂଖ୍ୟକ ଗୁଣସୂତ୍ର ଥାଏ । ମନୁଷ୍ୟର ପ୍ରତ୍ୟେକ କୋଷରେ ଶରୀରରେ ପ୍ରତ୍ୟେକ ଛୟାଳିଶି ଗୋଟି ଗୁଣସୂତ୍ର ରହିଥାଏ । ଏଥିରୁ ଅର୍ଦ୍ଧେକ ମାତାଙ୍କଠାରୁ ଓ ଅପର ଅର୍ଦ୍ଧେକ ପିତାଙ୍କଠାରୁ ଆସିଥାଏ । ଏହି ଗୁଣସୂତ୍ର ମଧ୍ୟରେ ଅତିକ୍ଷୁଦ୍ର କ୍ଷୁଦ୍ର ଜିନ୍ ସବୁ ହଜାର ହଜାର ସଂଖ୍ୟାରେ ରହିଥାନ୍ତି । ଏହି ଜିନ୍ ଗୁଡ଼ିକୁ ପୁରୁଷାନୁକ୍ରମିକ ଗୁଣାବଳୀର ପରିବାହକ କୁହାଯାଏ ।

ମନୁଷ୍ୟର ଗୁଣାବଳୀର ପରିବାହକ ଜିନ୍ ଗୁଡ଼ିକୁ ଦୁଇଭାଗରେ ବିଭକ୍ତ କରାଯାଇ ପାରେ ଏକ ପ୍ରକାରର ଜିନ୍ ପ୍ରଭାବଶାଳୀ ଅନ୍ୟ ପ୍ରକାରକୁ ପଶ୍ଚାତ୍‌ଗାମୀ (Recemive) କୁହାଯାଇପାରେ । ଗୁଣସୂତ୍ର ଗୁଡ଼ିକରେ ଯୁଗଳ ଅବସ୍ଥାରେ ଥାଇ ଜିନ୍ ଶିଶୁର ବିକାଶରେ ଅଂଶଗ୍ରହଣ କରିଥାଏ । ଯେତେବେଳେ ଗୋଟିଏ ଯୁଗଳ ଏକାପ୍ରକାର ଗୁଣର ବିକାଶ ପାଇଁ କାର୍ଯ୍ୟ କରନ୍ତି ସେମାନଙ୍କୁ ସମ ମୌଳିକ ଅଂଶବିଶିଷ୍ଟ (Homogeneous) ଏବଂ ଯେତେବେଳେ ଯୁଗଳ ମଧ୍ୟରୁ ଗୋଟିଏ ଜିନ୍ ଗୋଟିଏ ଗୁଣ ପାଇଁ ଓ ଅନ୍ୟ ଜିନ୍‌ଟି ଭିନ୍ନ ପ୍ରକାରର ଗୁଣ ପାଇଁ କାର୍ଯ୍ୟ କରେ ସେମାନଙ୍କୁ ବିସଦୃଶ (Hetrogeneous) ଜିନ୍ କୁହାଯାଏ । ଯଦି ଏକ ନିର୍ଦ୍ଦିଷ୍ଟ ଗୁଣସୂତ୍ର ମଧ୍ୟରେ ଗୋଟିଏ ସଦୃଶ ଓ ଅନ୍ୟଏକ ବିସଦୃଶ ଜିନ୍ ଯୁଗଳ ଅବସ୍ଥାନ କରୁଥାନ୍ତି ସେମାନଙ୍କ ମଧ୍ୟରେ ବିସଦୃଶ ଜିନ୍ ଯୁଗଳଟି ଅଧିକାଂଶ କ୍ଷେତ୍ରରେ ଅଧିକ ପ୍ରଭାବଶାଳୀ ହୋଇଥାଏ । ଉଦାହରଣ ସ୍ୱରୂପ ଯଦି ଗୋଟିଏ ଶିଶୁ ପିତାମାତାଙ୍କ ମଧ୍ୟରୁ ଜଣକପାଖରୁ କଳା-

ଜୋଲାର ଜନ୍ ଓ ଅନ୍ୟଜଣେ ପାଖରୁ ନେହରା ଜୋଲାର ଜନ୍ ଆହରଣ କରିଥାଏ ତେବେ ଶିଶୁଟିର ଜୋଲା ନେହରା ରଙ୍ଗ ହୋଇଥାଏ । ଅର୍ଥାତ୍ ଏ କ୍ଷେତ୍ରରେ ନେହରା ଜୋଲାର ଜନ୍ ଟି ପ୍ରଭାବ ଶାଳୀ ହୋଇଥାଏ ।

**ମେଣ୍ଡେଲଙ୍କ ନିୟମ** :—୧୮୬୭ ମସିହାରେ ଜନ୍ ମେଣ୍ଡେଲ ଉଦ୍ଭିଦରେ ଶାଙ୍କରୀକରଣ ପରୀକ୍ଷା କରି କେତେକ ନିୟମ ବ୍ୟାଖ୍ୟା କରିଥିଲେ । ସଂକ୍ଷିପ୍ତରେ ମେଣ୍ଡେଲଙ୍କର ବଂଶଗତ ସମ୍ପର୍କୀୟ ନିୟମକୁ ଏହିପରି ବର୍ଣ୍ଣନା କରାଯାଇ ପାରେ ଯେ ଯଦି କଳା ଜୋଲାର ସଦୃଶ ଜନ୍ ଧାରଣ କରିଥିବା ଜଣେ ପୁରୁଷ ନେହରା ଜୋଲାର ସଦୃଶ ଜନ୍ ଧାରଣ କରିଥିବା ଜଣେ ସ୍ତ୍ରୀଙ୍କୁ ବିବାହ କରନ୍ତି ତେବେ ସେମାନଙ୍କ ସନ୍ତାନ ମାନଙ୍କର ଆଖିର ବର୍ଣ୍ଣ ନେହରା ହେବ । ତେବେ ପୁନଃ ପ୍ରଶ୍ନ ଉଠେ ଯେ ଯଦି ଜଣେ ବିସଦୃଶ ଜନ୍ ଧାରଣକାରୀ ପୁରୁଷ ଜଣେ ବିସଦୃଶ ଜନ୍ ଧାରଣକାରୀ ଜଣେ ସ୍ତ୍ରୀଙ୍କୁ ବିବାହ କରନ୍ତି ତେବେ ସେମାନଙ୍କର ସନ୍ତାନମାନଙ୍କର ଚକ୍ଷୁର ବର୍ଣ୍ଣ କିପରି ହେବ ? ଏପରି କ୍ଷେତ୍ରରେ ସେମାନଙ୍କ ସନ୍ତାନମାନଙ୍କ ମଧ୍ୟରୁ ଏକ ଚତୁର୍ଥାଂଶ ସଦୃଶ ନେହରା ବର୍ଣ୍ଣର ଜନ୍ ଧାରଣ କରିବେ, ଏକ ଚତୁର୍ଥାଂଶ ସଦୃଶ କଳା ବର୍ଣ୍ଣର ଜନ୍ ଧାରଣ କରିବେ ଓ ଅର୍ଦ୍ଧେକ ବିସଦୃଶ ଜନ୍ ଅର୍ଥାତ୍ ଉଭୟ କଳା ଓ ନେହରା ବର୍ଣ୍ଣର ଜନ୍ ଯୁଗଳ ଧାରଣ କରିବେ । ବଂଶାନୁକ୍ରମଣ କ୍ଷେତ୍ରରେ ମେଣ୍ଡେଲଙ୍କ ସର୍ବଶ୍ରେଷ୍ଠ ଆବିଷ୍କାର ହେଲା ଯେ ଆମେ ଆମ ପୂର୍ବପୁରୁଷମାନଙ୍କ ଠାରୁ ଯେଉଁ ଜନ୍ ଆହରଣ କରିଥାଉ ତାହା ସର୍ବଦା ଏକ ନିର୍ଦ୍ଦିଷ୍ଟ ଗୁଣରେ ବିକାଶ ପାଇ ନିର୍ଦ୍ଦିଷ୍ଟ ଥାଏ । ଏକ ସମୟରେ ବିଭିନ୍ନ ପ୍ରକାର ବିପରୀତ ଧର୍ମୀ ଗୁଣଗୁଡ଼ିକର ଜନ୍ ପିତାମାତାଙ୍କ ଠାରୁ କୌଣସି ଏକ ସନ୍ତାନ ପାଖକୁ ପରିବାହିତ ହୋଇନଥାଏ । ଏହା ସର୍ବଦା ଏକ ନିର୍ଦ୍ଦିଷ୍ଟ ସମଷ୍ଟିକୃତ ଗୁଣରେକ । କେବେହେଲେ ଭିନ୍ନ ପ୍ରକାର ପ୍ରବଣତାର ମିଶ୍ରଣ ନୁହେଁ । ଜଣେ ବ୍ୟକ୍ତି ହୁଏତ ବୁଦ୍ଧିମାନ ଓ ଅନ୍ୟ ଜଣେ ବୁଦ୍ଧିହୀନ ହୋଇପାରେ ; କିନ୍ତୁ ଏକ ସମୟରେ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତି ବୁଦ୍ଧିମାନ ଓ ବୋକା ହୋଇ ନପାରେ । ପଶୁମାନଙ୍କ କ୍ଷେତ୍ରରେ ବଂଶଗତର ପରୀକ୍ଷା କରି ଦେଖା ଯାଇଛି ଯେ ଜୋରରେ ଦୌଡ଼ି ପାରୁଥିବା ଗୋଟିଏ ଘୋଡ଼ା ସହ ସେହି ଗୁଣଯୁକ୍ତ ଗୋଟିଏ ଘୋଡ଼ୀର ସମ୍ମିଳନ ଘଟାଇଲେ ସେମାନଙ୍କର ସନ୍ତାନଗୁଡ଼ିକ ମଧ୍ୟ ଉକ୍ତ ଗୁଣ ଧାରଣ କରିଥାନ୍ତି । ୧୯୪୯ ମସିହାରେ ହଲ୍ ନାମକ ଜଣେ ମନଃତତ୍ତ୍ୱବିଦ୍ ମୂଷାମାନଙ୍କ ଉପରେ ପରୀକ୍ଷା କରି ମଧ୍ୟ ଏହି ସତ୍ୟକୁ ପୁନଃ ପ୍ରମାଣିତ କରିଥିଲେ ।

ମନୁଷ୍ୟମାନଙ୍କ କ୍ଷେତ୍ରରେ ବଂଶଗତର ପରୀକ୍ଷାରୁ ମଧ୍ୟ ଅନେକ ତଥ୍ୟାବଳୀର ଆବିଷ୍କାର କରାଯାଇଛି । ମନୁଷ୍ୟ ଉପରେ ବଂଶାନୁକ୍ରମଣର ପ୍ରଭାବ ସର୍ବପ୍ରଥମେ ଗାଲଟନ୍ **(Galton, 1882-1911)** ପରୀକ୍ଷା କରିଥିଲେ । ସେ ଇଂଲଣ୍ଡର କେତେକ ପ୍ରତିଭାଶାଳୀ ଓ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ବିଷୟରେ ଗବେଷଣା କରିଥିଲେ । ସେ ଏହି

ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ ବର୍ତ୍ତମାନର ଜଣେ ପ୍ରତିଭାବାନ୍ ବ୍ୟକ୍ତିର ପୂର୍ବ-ପୁରୁଷମାନଙ୍କ ମଧ୍ୟରୁ ଅତିକମ୍‌ରେ ଜଣେ ନିଶ୍ଚିତ ଭାବରେ ପ୍ରତିଭାବାନ୍ ହୋଇଥିବେ । ସେ ଆହୁରି ମଧ୍ୟ ଲକ୍ଷ୍ୟ କରିଥିଲେ ଯେ ଗୋଟିଏ ପ୍ରତିଭାବାନ୍ ବଂଶର ସମ୍ପର୍କ ସହିତ ବଂଶାନୁକ୍ରମେ ଅଳ୍ପ ପ୍ରତିଭାବାନ୍ ବ୍ୟକ୍ତିମାନଙ୍କ ସହ ବଢ଼ିଗଲେ ତେବେ ଉକ୍ତବଂଶର ପ୍ରତିଭାର କ୍ରମ ବିଲୟ ଘଟେ । ଏଥିରୁ ସ୍ପଷ୍ଟ ଜଣାପଡ଼େ ଯେ ଦୁଇଟି ପ୍ରତିଭାଶାଳୀ ବ୍ୟକ୍ତିଙ୍କ ମିଳନରୁ ଜାତ ସନ୍ତାନମାନେ ନିଶ୍ଚିତ ଭାବରେ ବୁଦ୍ଧିମାନ ହେବେ ।

ଏହି ପରିପ୍ରେକ୍ଷୀରେ ମ୍ୟାକ୍ ପର୍‌ସନ୍ (Mc. Person) ଏପରି ଏକ ପରିବାରକୁ ନେଇ ଗବେଷଣା କରିଥିଲେ ଯେଉଁଠାରେ ମା ଜଣେ ଦୁର୍ବଳମନା ଓ ବାପା ଜଣେ ଶାସ୍ତ୍ରିକ ଅକ୍ଷମ ଓ ନିମ୍ନ ବୁଦ୍ଧିମତ୍ତାଯୁକ୍ତ ବ୍ୟକ୍ତି । ସେମାନଙ୍କ ସାତଟି ସନ୍ତାନ ମଧ୍ୟରୁ ପାଞ୍ଚଜଣ ଦୁର୍ବଳ ମନା ଓ ସମସ୍ତେ ଅପରାଧ ପ୍ରବଣ ଥିଲେ ।

ଏହି ପରୀକ୍ଷାଗୁଡ଼ିକ ବଂଶାନୁକ୍ରମ ସମ୍ପର୍କରେ ଆଲୋକପାତ କରୁଥିଲେ ମଧ୍ୟ ସର୍ବୋତୋଭାବେ ଠିକ ନୁହେଁ । କାରଣ ଏହି ପରୀକ୍ଷା ପାଇଁ ବ୍ୟବହୃତ ପଦ୍ଧତି ତ୍ରୁଟିଯୁକ୍ତ ଥିଲା ଏବଂ ଏଦ୍ୱାରା ପରୀକ୍ଷକମାନେ କେବଳ ବଂଶାନୁକ୍ରମର ଗୁରୁତ୍ୱ ପ୍ରମାଣିତ କରିବା ଉଦ୍ଦେଶ୍ୟରେ ପରିବେଷ୍ଟନୀର ଗୁରୁତ୍ୱକୁ ବିଚାର କରି ନଥିଲେ । ତଥାପି ମଧ୍ୟ ବଂଶାନୁକ୍ରମର ବ୍ୟକ୍ତିତ୍ୱ ଉପରେ ପ୍ରଭାବ ସ୍ୱୀକୃତ ଏବଂ ମନୋବୈଜ୍ଞାନିକମାନେ ସେଥିପାଇଁ ଯେଉଁ କାରଣ ଗୁଡ଼ିକ ଦର୍ଶାଇ ଥାନ୍ତି ସେଗୁଡ଼ିକ ହେଲା ।

(୧) ଗୋଟିଏ ଗୋଟିଏ ପ୍ରଭାବଶାଳୀ ବଂଶରେ ପ୍ରାୟ ସମସ୍ତ ସନ୍ତାନ ପ୍ରଭାବଶାଳୀ ହେବାର ଦେଖାଯାଏ ।

(୨) ସାମାଜିକ ଓ ଅର୍ଥନୈତିକ ପରିବେଷ୍ଟନୀ ଭିନ୍ନ ହୋଇଥିଲେ ଗୋଟିଏ ପରିବାରର ସନ୍ତାନମାନେ ଭିନ୍ନ ଭିନ୍ନ ବୁଦ୍ଧିମତ୍ତାର ଅଧିକାରୀ ହୋଇପାରନ୍ତି କିନ୍ତୁ ସେମାନଙ୍କର ଆଚରଣ ଗତ ତାରତମ୍ୟ ସତ୍ତ୍ୱେ ବୁଦ୍ଧ୍ୟଙ୍କ (I.Q) ପ୍ରାୟ ସମାନ ହୋଇଥାଏ । ଆହୁରି ମଧ୍ୟ ଦେଖାଯାଏ ଯେ, କୌଣସି ପିତାମାତାଙ୍କର ଏକ ଡିମ୍ବଜ ଯମଜ ସନ୍ତାନ (Identical twin) ଭିନ୍ନ ପରିବେଶରେ ପାଳିତ ହେଲେ ମଧ୍ୟ ସେମାନଙ୍କର ବୁଦ୍ଧ୍ୟଙ୍କ ସମାନ ହୋଇଥାଏ ।

କାର୍ଯ୍ୟ ଦକ୍ଷତା ମଧ୍ୟ କେତେକ ପରିମାଣରେ ବଂଶାନୁଗୁଣ କ୍ରମେ ଆସିଥାଏ । ସେହିପରି ସମ୍ବେଦନର ବିଭିନ୍ନତା (Sensory discrimination) ପ୍ରତିକ୍ରିୟାର ବେଗ (Speed of Reaction) ପ୍ରଭୃତି ଗୁଣଗୁଡ଼ିକ ବଂଶଗତ ଦ୍ୱାରା ପ୍ରଭାବିତ ହୋଇଥାଏ ।

ଏତଦ୍‌ବ୍ୟତୀତ ବିଭିନ୍ନ ପ୍ରକାର ଶାରୀରିକ ଗଠନ ଯଥା :—ଦୀର୍ଘତା, ଖର୍ବତା, ସ୍ଥୂଳତ୍ୱ, ବା କ୍ଷୀଣତ୍ୱ, ଦେହର ବର୍ଣ୍ଣ ଏବଂ ଅଙ୍ଗ ପ୍ରତ୍ୟଙ୍ଗ ଗୁଡ଼ିକର ଗଠନ ବୈଶିଷ୍ଟ୍ୟ ପ୍ରକୃତି ବଂଶାନୁଗୁଣ କମେ ବ୍ୟକ୍ତି ପ୍ରାପ୍ତ ହୋଇଥାଏ । କେତେଗୁଡ଼ିଏ ଦୈହିକ ରୋଗର ପ୍ରବଣତା (Tendency) ଯଥା—ବର୍ଣ୍ଣାନ୍ଧତା (Colour blindnes) । ମାନସିକ ରୋଗର ପ୍ରବଣତା ଯଥା—ଅତ୍ୟଧିକ ଅନ୍ତର୍ମୁଖିତା ବା ବାତୁଳତା (Schizophrenia) ପ୍ରକୃତି ବଂଶାନୁଗୁଣର ପ୍ରଭାବରୁ ସୃଷ୍ଟି ହୋଇଥାଏ ।

**(ଖ) ପରିବେଷ୍ଟନୀ** :—କେବଳ ଶାରୀରିକ ଉପାଦାନ ଓ ବଂଶାନୁଗତ ଗୁଣଗୁଡ଼ିକ ବ୍ୟକ୍ତିତ୍ୱ ଗଠନ କରେ ନାହିଁ । ଜନ୍ମଗ୍ରହଣ ପୂର୍ବରୁ ଓ ପରେ ବିଭିନ୍ନ ପ୍ରକାର ପରିବେଶ ସଂସ୍ପର୍ଶରେ ଆସି ସେ ନୂତନ ଜ୍ଞାନ ନୂତନ ଅଭିଜ୍ଞତା ଅର୍ଜନ କରେ ଏବଂ ତାହା ଫଳରେ ତାହାର ବ୍ୟକ୍ତିଗତ ଆଚରଣ, ସ୍ୱଭାବ ବା ଚରିତ୍ରରେ ନାନା ପ୍ରକାର ପରିବର୍ତ୍ତନ ଆସେ । ନୂତନ ଆଗ୍ରହ, ପ୍ରେରଣା ତଥା କର୍ମ କୁଶଳତା ଅର୍ଜନ କଲେ ବ୍ୟକ୍ତିତ୍ୱ ନୂତନ ରୂପ ନେଇଥାଏ । ସମାସ୍ୱନ (Conception) ପରେ ମାତୃ ଗର୍ଭରୁ ଭ୍ରୂଣ ଅବସ୍ଥାରେ ଶିଶୁ ଉପରେ ପରିବେଷ୍ଟନୀର ପ୍ରଭାବ ପଡ଼ିଥାଏ । ମା'ର ମାନସିକ, ଶାରୀରିକ ଏବଂ ଆବେଗିକ ଅବସ୍ଥା ଭ୍ରୁଣର ବିକାଶକୁ ନିୟନ୍ତ୍ରିତ କରିଥାଏ । ଜନ୍ମଗ୍ରହଣ କରିବା ପରେ ଶିଶୁ ବାହ୍ୟ ପରିବେଶ ମଧ୍ୟକୁ ଚାଲିଆସେ ଏବଂ ସାମାଜିକ ପରିବେଷ୍ଟନୀର ପ୍ରଭାବରେ ତାର ବ୍ୟକ୍ତିତ୍ୱ ବିକାଶ ଲାଭ କରେ ।

ମନୁଷ୍ୟ ଏକ ସାମାଜିକ ପ୍ରାଣୀ । ସେ ସାମାଜିକ ପରିବେଷ୍ଟନୀ ମଧ୍ୟରେ ଜନ୍ମ ଗ୍ରହଣ କରେ । ଶାରୀରିକ ଆବଶ୍ୟକତା ଦୃଷ୍ଟିରୁ ବିଚାର କଲେ ପ୍ରତ୍ୟେକ ଶିଶୁ ସମାନ ଅବସ୍ଥାରେ ଜନ୍ମ ଗ୍ରହଣ କରିଥାଏ । ବିଭିନ୍ନ ସାମାଜିକ ପରିବେଷ୍ଟନୀ ନାନା ପ୍ରକାର ବ୍ୟକ୍ତିତ୍ୱ ସୃଷ୍ଟି କରେ । ଏହାଛଡ଼ା ବ୍ୟକ୍ତିର ବ୍ୟକ୍ତିତ୍ୱ, ଶରୀର ଗଠନ, ଉଚ୍ଚତା, ଜୀବନ ନିର୍ବାହ, ବର୍ଣ୍ଣ ଓ ଅଭ୍ୟାସ ଆଦି ନିରୂପଣ କରିବାରେ କୌଣସି ସ୍ଥାନର ଭୌଗୋଳିକ ଅବସ୍ଥିତି ମଧ୍ୟ ପ୍ରଭାବପାତ କରିଥାଏ । ଅତଏବ ପ୍ରାକୃତିକ, ସାମାଜିକ, ସାମ୍ପ୍ରଦାୟିକ ପରିବେଷ୍ଟନୀ ମନୁଷ୍ୟର ବ୍ୟକ୍ତିତ୍ୱ ଗଠନ କରିଥାଏ ।

**(୧) ପରିବାର** :—ସମସ୍ତ ମନଃସ୍ତତ୍ତ୍ୱବିଦ୍ ମତ ପ୍ରଦାନ କରନ୍ତି ଯେ ବଂଶଗତ, ଜୈବିକ ଉପାଦାନ ଓ ସାମାଜିକ ପରିବେଷ୍ଟନୀ ମଧ୍ୟରେ ପାରସ୍ପରିକ କ୍ରିୟା ସଂଘଟିତ ହୋଇ ବ୍ୟକ୍ତିତ୍ୱ ବିକାଶ ଲାଭ କରେ । ଶୈଶବର ପ୍ରାଥମିକ ଅବସ୍ଥାରେ ବ୍ୟକ୍ତିତ୍ୱ ଗଠନ ପାଇଁ ପରିବାର ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ପରିବାର ମନୁଷ୍ୟର ସର୍ବପ୍ରଥମ ପରିବେଷ୍ଟନୀ । ଏଠାରେ ପିତା ମାତା, ଭ୍ରାତା, ଭଗିନୀ ପ୍ରଭୃତିଙ୍କର ଆଗ୍ରହ ବ୍ୟବହାର, ରୀତିନୀତି, ମାନସିକ ପ୍ରବଣତା ତଥା ଆଦର୍ଶ ତାର ବ୍ୟକ୍ତିତ୍ୱ ଉପରେ ପ୍ରଭାବ ବିସ୍ତାର

ନିଇଥାଏ । ପରିବାର ହେଉଛି ସର୍ବପ୍ରଥମ ଅନୁଷ୍ଠାନ ଯେଉଁଠାରେ ଶିଶୁପାଇଁ ପସନ୍ଦ, ନାପସନ୍ଦ, ବିପଦ ଓ ନିରାପଦ ଆଦିର ସଂଜ୍ଞା ନିର୍ଦ୍ଧାରିତ ହୋଇଥାଏ ।

ମନୋବିଜ୍ଞାନୀ ମାନଙ୍କ ମତରେ ଶିଶୁ ଜୀବନର ସର୍ବପ୍ରଥମ ଘଟଣା ତାର ବ୍ୟକ୍ତିତ୍ୱ ଉପରେ ପ୍ରଭାବ ପକାଇଥାଏ । ଉଦାହରଣ ସ୍ୱରୂପ ଗୋଟିଏ ପକ୍ଷୀ ଶାବକ ଅଣ୍ଡାମଧ୍ୟରୁ ଆତ୍ମପ୍ରକାଶ କରିବାପରେ ତା ମା'ର ଉଡ଼ିବା କାର୍ଯ୍ୟ ଲକ୍ଷ୍ୟ କରିଥାଏ । ଏବଂ ପରବର୍ତ୍ତୀ ଜୀବନରେ ସେ ତାହା ଅନୁସରଣ କରେ । ଏହିପରି ଭାବରେ ନିଜର ପ୍ରଥମ ଅଭିଜ୍ଞତା ଶିଶୁ ମନରେ ଅଙ୍କିତ ହୋଇଥାଏ । ଏହି ନିୟମ ଯୋଗୁଁ ମଣିଷ ଶିଶୁ ବାପା ଅପେକ୍ଷା ମା ପ୍ରତି ଅଧିକ ଆକୃଷ୍ଟ ହୋଇଥାଏ କାରଣ ମା ତାର ଜୀବନର ସର୍ବ ପ୍ରଥମ ଦୃଷ୍ଟ ବ୍ୟକ୍ତି ହୋଇଥାଏ ।

ପରିବାରର ଗଠନ ମଧ୍ୟ ଶିଶୁର ମାନସିକ ବିକାଶ ଉପରେ ପ୍ରଭାବ ପକାଇଥାଏ । ଶିଶୁର ପିତା ମାତା ଭିନ୍ନ ଅନ୍ୟ କେହି ନଥାଇ ପରିବାର ଗଠିତ ହୋଇଥିଲେ ଶିଶୁଟି ମଧ୍ୟରେ 'ନିଜ ପର'' ଧାରଣା ଦୃଢ଼ୀଭୂତ ହୋଇପାରେ । ଫଳରେ ପିତା ମାତାଙ୍କ ଅନୁପସ୍ଥିତିରେ ସେ ଏକାକୀ ଅନୁଭବ କରେ । କିନ୍ତୁ ଯୌଥ ପରିବାରର ଶିଶୁ ଏକ ସମୟରେ ଅନେକ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସୁଥିବାରୁ ତା ମଧ୍ୟରେ ଏକାକୀ ବୋଧଜାତ ହୁଏନାହିଁ । ସେମାନଙ୍କ ମନରେ ଆବେଗିକ ବଞ୍ଚିତ କରଣ (**Emotion Deprivation**) ମଧ୍ୟ ସୃଷ୍ଟି ହୋଇପାରେ ।

ପିତା ମାତା ଶିଶୁ ପ୍ରତି ଉଦାସୀନ ମନୋଭାବ ପ୍ରଦର୍ଶନ କଲେ ଶିଶୁ କ୍ରମେ ଉଦାସୀନ, ପ୍ରତିକ୍ରିୟାଭାବାପନ୍ନ (**Hostile**), ସନ୍ଦେହ ପ୍ରବଣ ତଥା ଭୀରୁ ହୁଏ । ଏପରି ଶିଶୁମାନଙ୍କର ନିରାପତ୍ତା ଭାବ ଲୋପ ପାଏ ଏବଂ ଏହା ଫଳରେ ସେମାନେ ମନ ମଧ୍ୟରେ ନାନା ଅସାମାଜିକ ଭାବ ପୋଷଣ କରନ୍ତି । ପୁନଶ୍ଚ ପିତା ମାତା ସନ୍ତାନ ପ୍ରତି ଅତ୍ୟଧିକ ସ୍ନେହପ୍ରବଣ ଓ ସହନଶୀଳ ହେଲେ ସେ କ୍ରମଶଃ ସ୍ୱାଧୀନ ଭାବରେ ଚିନ୍ତା ବା କାର୍ଯ୍ୟକରିବାର ସାମର୍ଥ୍ୟ ହରାଇବସେ । ଭବିଷ୍ୟତରେ କୌଣସି କଠୋର ସମସ୍ୟାର ସମ୍ମୁଖୀନ ହୋଇ ତାହାକୁ ସମାଧାନ କରିବା ତା ପକ୍ଷରେ ସମ୍ଭବ ହୁଏ ନାହିଁ । ସେ ଅତ୍ୟଧିକ ଲଜ୍ୟାଶୀଳ ଓ ଆବେଗ ପ୍ରବଣ ହୋଇ ଉପଯୁକ୍ତ ପ୍ରତି ଯୋଜନ (**Adiuotment**) କ୍ଷମତା ଅର୍ଜନ କରିବାକୁ ସକ୍ଷମ ହୁଏ ନାହିଁ । ଶିଶୁ ପିତା ମାତାଙ୍କ ଠାରୁ ଆବଶ୍ୟକତାରୁ ଅଧିକ ମମତା ଲାଭ କଲେ ବା ତା'ର ଭୁଲ କାର୍ଯ୍ୟପାଇଁ ଶାସନର ଅଭାବ ଘଟିଲେ ତା' ମନରେ ଦାୟିତ୍ୱଜ୍ଞାନ, ସହନଶୀଳତା, ନମ୍ରତା ପ୍ରଭୃତି ସାମାଜିକ ଭାବ ଗୁଡ଼ିକର ବିକାଶ ସମ୍ଭବ ନୁହେଁ । ଏପରି ଶିଶୁମାନେ ଭବିଷ୍ୟତରେ ଦାୟିତ୍ୱହୀନ, ଅସହିଷ୍ଣୁ, ଓ ନିଷ୍ଠୁର ହେବାର ଦେଖାଯାଏ ।

ପରିବାର ମଧ୍ୟରେ ଅନ୍ୟ ଏକ ଶିଶୁର ଉପସ୍ଥିତି ମଧ୍ୟ ପୂର୍ବବର୍ତ୍ତୀ ଶିଶୁର ବ୍ୟକ୍ତିତ୍ୱ ବିକାଶ କ୍ଷେତ୍ରରେ ପ୍ରଭାବପାତ କରିଥାଏ । ଏହା ଫଳରେ ଶିଶୁ ମନରେ ଏକ ପ୍ରକାର ବିରାଗ ଭାବ ସୃଷ୍ଟି ହୁଏ । ଦ୍ୱିତୀୟ ଶିଶୁର ଜନ୍ମ ପ୍ରଥମ ଶିଶୁ ଜୀବନରେ ଏକ ତିକ୍ତ ଅନୁଭୂତି । ଦ୍ୱିତୀୟଟିର ଜନ୍ମ ଫଳରେ ପ୍ରଥମଟି ଯେ କେବଳ ମାତ୍ର କ୍ଷୀରପାନ ଓ ଘନିଷ୍ଠତମ ସମ୍ପର୍କରୁ ବଞ୍ଚିତ ହୁଏ ତାହାନୁହେଁ ବରଂ ପରିବାରର ସମସ୍ତ ସଭ୍ୟଙ୍କର ଆଗ୍ରହ ଓ ଦୃଷ୍ଟି ନୂତନ ଆଗନ୍ତୁକ ଉପରେ କେନ୍ଦ୍ରୀଭୂତ ହେବାର ସେ ଅନୁଭବ କରେ । ଫଳରେ ତା' ମନରେ ଏକ ଶତ୍ରୁଭାବାପନ୍ନ ଈର୍ଷ୍ୟା ଭାବର ଉଦ୍ରେକ ହୁଏ, ଯାହାଦ୍ୱାରା ସେ ଆକ୍ରମଣାତ୍ମକ ବ୍ୟବହାର ପ୍ରଦର୍ଶନ କରିଥାଏ । ଏହି କାରଣରୁ ଦୁଇଟି ଶିଶୁଙ୍କ ମଧ୍ୟରେ କନ୍ଦଳ ସୃଷ୍ଟି ହୁଏ ଯାହାକି ମା'ଙ୍କୁ ଅଧିକ ବିବ୍ରତ କରିଥାଏ । ଏହା ପରୀକ୍ଷିତ ଯେ, ଦୁଇଟି ଶିଶୁଙ୍କ ମଧ୍ୟରେ ବ୍ୟବଧାନ ଦୁଇବର୍ଷରୁ କମ୍ ବା ଚାରିବର୍ଷରୁ ଅଧିକ ନହୋଇ ଯଦି ଦୁଇ ବର୍ଷରୁ ଚାରି ବର୍ଷ ମଧ୍ୟରେ ହୋଇଥାଏ ତେବେ ସେମାନଙ୍କ ମଧ୍ୟରେ ପରସ୍ପର ପ୍ରତି ବିଦ୍ୱେଷ ଭାବ ବୃଦ୍ଧି ପାଏ ।

ମନୋବୈଜ୍ଞାନିକ ସିଗମଣ୍ଡ ଫ୍ରଏଡ୍ (Sigmund Frued)ଙ୍କ ମତରେ ଶୈଶବାବସ୍ଥାରେ ପିତା ମାତାଙ୍କର ସନ୍ତାନ ପ୍ରତି ମନୋଭାବ ହେଉଛି ବ୍ୟକ୍ତିତ୍ୱ ବିକାଶର ସର୍ବପ୍ରଧାନ ଉପାଦାନ । ପିତା ମାତା ଶାସନ କ୍ଷେତ୍ରରେ ଅଧିକ କଠୋର ହେଲେ ଶିଶୁର ସହଜାତ ପ୍ରବୃତ୍ତି, ଆକାଂକ୍ଷା ବା ବାସନା ଅବଦମିତ ହୋଇ ମନମଣ୍ଡଳର ନିର୍ଜ୍ଞାନ ସ୍ତର (Unconscious)ରେ ଆଶ୍ରୟ ନେଇଥାନ୍ତି । ଏହି ମନୋବୃତ୍ତିଗୁଡ଼ିକ ପିତା ମାତାଙ୍କ ପ୍ରତି ବିଦ୍ରୋହାତ୍ମକ ଭାବରେ ରୂପାନ୍ତରିତ ହୁଏ ଏବଂ ଭବିଷ୍ୟତରେ ନାନାପ୍ରକାର ଅସାମାଜିକ କାର୍ଯ୍ୟକଳାପ ମାଧ୍ୟମରେ ଆତ୍ମପ୍ରକାଶ କରେ । ପିତା ମାତାଙ୍କ ପ୍ରତି ଗୋପନରେ ପୋଷଣ କରିଥିବା ବିଦ୍ରୋହାତ୍ମକ ବା ଶତ୍ରୁତା ଭାବ, ପରବର୍ତ୍ତୀ ଜୀବନରେ ବୃହତ୍ତର ଜୀବନରେ ପ୍ରତିଫଳିତ ହୁଏ ।

ଅତଏବ ଏହା ସ୍ୱତଃସିଦ୍ଧ ଯେ ପରିବାର ଶୈଶବାବସ୍ଥାରୁ ମନୁଷ୍ୟର ବ୍ୟକ୍ତିତ୍ୱକୁ ସଙ୍ଗଠିତ ବା ବିକୃତ କରିଥାଏ । ଶିଶୁର ବ୍ୟକ୍ତିତ୍ୱ ପରିବାର ଦ୍ୱାରା ସୃଷ୍ଟି ବୋଲି ମଧ୍ୟ କୁହାଯାଇପାରେ । ତେବେ ପ୍ରତ୍ୟେକ ପରିବାରର ନୀତି ନିୟମ, ଶିଶୁର ଲାଳନ ପାଳନ, ପିତା ମାତାଙ୍କର ସମ୍ପର୍କ ଆଦି ଭିନ୍ନ ପ୍ରକାରର ହୋଇଥାଏ । ଶିଶୁର ମନସ୍ତତ୍ତ୍ୱ ଓ ଆବେଗ ପ୍ରତି ସମର୍ଥନ ଓ ସ୍ନେହ ତା' ମଧ୍ୟରେ ଏକ ଉତ୍ତମ ବ୍ୟକ୍ତିତ୍ୱର ବିକାଶକୁ ତ୍ୱରାନ୍ୱିତ କରିଥାଏ । ଜନ୍ମ ପରିବାର ମଧ୍ୟରେ ପିତା ମାତାଙ୍କର ପରସ୍ପର ପ୍ରତି ମନୋଭାବ ଶିଶୁ ଜୀବନକୁ ସର୍ବାଧିକ ଭାବେ ପ୍ରଭାବିତ କରେ । ସେମାନଙ୍କ ମଧ୍ୟରେ ଅସହଯୋଗ, କଳହାତ୍ମକ ମନୋବୃତ୍ତି ବା ସୁସ୍ଥ ଦାମ୍ପତ୍ୟ ଜୀବନରେ ଅଭାବର ପ୍ରତିକ୍ରିୟା ସୁସ୍ଥ ବ୍ୟକ୍ତିତ୍ୱ

ବିକାଶକୁ ପ୍ରଭାବିତ କରେ । ଅଧିକାଂଶ ଶିଶୁ ଏପରି ପରିସ୍ଥିତି ଯୋଗୁଁ ବିଷଣ୍ଣ, ଅନ୍ୟମନସ୍କ ତଥା ଉଦାସୀନ ଭାବ ପ୍ରଦର୍ଶନ କରିଥାନ୍ତି । ଏ ସମ୍ପର୍କରେ ମନୋବିଜ୍ଞାନୀ ଷ୍ଟଟ୍ (Stott) ୧୯୩୯-୪୧ ମସିହାରେ ଏକ ପ୍ରଶ୍ନାବଳୀ ପ୍ରସ୍ତୁତ କରି ପ୍ରାୟ ୧୮୦୦ ଜଣ କିଶୋରଙ୍କ ବ୍ୟକ୍ତିତ୍ୱ ବିକାଶ ପରୀକ୍ଷା କରିଥିଲେ । ସେଥିରୁ ସେ ଯେଉଁ ନିଷ୍କର୍ଷଗୁଡ଼ିକ ପ୍ରତିପାଦନ କରିଥିଲେ ସେଗୁଡ଼ିକ ସଂକ୍ଷିପ୍ତରେ ହେଲା :—

୧। ଉଚ୍ଚ ନୈତିକ ସମ୍ପନ୍ନ ପରିବାରର ଶିଶୁମାନେ ଅଧିକ ସମଯୋଜିତ (Adjusted), ଅଧିକ ସ୍ୱାଧୀନ ଚିନ୍ତା ଧାରାଯୁକ୍ତ ଏବଂ ପିତା ମାତାଙ୍କ ସହିତ ସେମାନଙ୍କ ସମ୍ପର୍କ ଅଧିକ ଆନ୍ତରିକତା ପୂର୍ଣ୍ଣ ହୋଇଥାଏ ।

୨। ଅନ୍ୟ ପକ୍ଷରେ ନିମ୍ନନୈତିକ ମାନସମ୍ପନ୍ନ ପରିବାରର ଶିଶୁମାନେ ସାଧାରଣତଃ ପରିବେଶ ସହ ସମଯୋଜନ କରିବାକୁ ଅକ୍ଷମ ହୋଇଥାନ୍ତି । ଅତଏବ ପରିବାରଟି ଉଚ୍ଚ ନୈତିକମାନ ପ୍ରଦର୍ଶନ କଲେ ଶିଶୁମାନେ ଉତ୍ତମ ବ୍ୟକ୍ତିତ୍ୱର ଅଧିକାରୀ ହୋଇଥାନ୍ତି ।

ପରିବାରର ଆର୍ଥିକ ଅବସ୍ଥା ମଧ୍ୟ ଶିଶୁର ବ୍ୟକ୍ତିତ୍ୱ ଗଠନରେ ପ୍ରଭାବ ପକାଇଥାଏ । ପିତା ମାତାଙ୍କ ଦାରିଦ୍ର୍ୟ ଯୋଗୁଁ ଶିଶୁର ନ୍ୟାଯ୍ୟ ଆବଶ୍ୟକତା ଗୁଡ଼ିକ ପୂରଣ ହୋଇନପାରିଲେ ଶିଶୁ ମନରେ ଏକ ପ୍ରକାର ନୈରାଶ୍ୟ ଓ ବିଫଳତା ଭାବର ପରିସ୍ଫୁରଣ ହୁଏ ।

**ବିଦ୍ୟାଳୟ** :—ଶିଶୁର ବ୍ୟକ୍ତିତ୍ୱ ଗଠନରେ ବିଦ୍ୟାଳୟର ଭୂମିକା ଗୁରୁତ୍ୱପୂର୍ଣ୍ଣ । କାରଣ ଶିଶୁର ଜୀବନର ପ୍ରାୟ ୭ ବର୍ଷଠାରୁ ୨୦ ବର୍ଷ ପର୍ଯ୍ୟନ୍ତ ବୟସର ଗୁରୁତ୍ୱପୂର୍ଣ୍ଣ ସମୟ ସେ ଏହି ପରିବେଶ ମଧ୍ୟରେ ଅତିବାହିତ କରିଥାଏ । ଏଠାରେ ସେ ତାର ପସନ୍ଦ, ନାପସନ୍ଦ, ଗ୍ରହଣ ଓ ପ୍ରତିରୋଧ କରିବାର ଭାବ ଶିକ୍ଷା କରିବା ସଙ୍ଗେ ସଙ୍ଗେ ନିଜର ଓ ପୃଥିବୀ ସମ୍ପର୍କରେ ଧାରଣା ସଂଗ୍ରହ କରିଥାଏ ।

ବିଦ୍ୟାଳୟରେ ପ୍ରବେଶ କରିବା ପୂର୍ବରୁ ପରିବାର ମଧ୍ୟରେ ରହି ଶିଶୁର ବ୍ୟକ୍ତିତ୍ୱର ଏକ ରୂପ ବିକାଶ ଲାଭ କରି ସାରିଥାଏ । ବିଦ୍ୟାଳୟରେ ଶିକ୍ଷକ ପିତା ମାତାଙ୍କ ପ୍ରତିରୂପ ଭାବରେ କାର୍ଯ୍ୟ କରନ୍ତି । ତେଣୁ ତାଙ୍କର କାର୍ଯ୍ୟକଳାପ ଶିଶୁର ମନରେ ଗଭୀର ରେଖାପାତ କରିଥାଏ । ବିଦ୍ୟାଳୟରେ ଶିଶୁ କେତେକ ନୂତନ ସମସ୍ୟାର ସମ୍ମୁଖୀନ ହୁଏ; କେତେକ ନୂତନ ନିଷେଧାଦେଶ ତାର ପରମ ଅହଂ (Super Ego) ଗ୍ରହଣ କରେ ଏବଂ କେତେକ ନୂତନ ଆଦର୍ଶକୁ ଚିହ୍ନଟ କରି ତାର ପରିପନ୍ଥୀ ହେବାକୁ ଚେଷ୍ଟାକରେ । ଏ ସମସ୍ତ ଶିଶୁର ବ୍ୟକ୍ତିତ୍ୱ ଗଠନରେ ଅଂଶ ଗ୍ରହଣ କରିଥାନ୍ତି ।

ବିଦ୍ୟାଳୟରେ ନୀତି ନିୟମର ପ୍ରାଧାନ୍ୟ ଓ ଶାନ୍ତି ଶୃଙ୍ଖଳା ରକ୍ଷା ଛାତ୍ରମାନଙ୍କ ଆବେଗିକ ଅବସ୍ଥାରେ କି ପ୍ରଭାବ ପକାଏ ଜାଣିବା ପାଇଁ ଲେମ୍ୟାନ (Lyman) ୧୯୪୯ ମସିହାରେ ଦୁଇଟି ବିଦ୍ୟାଳୟର ଛାତ୍ରମାନଙ୍କୁ ନେଇ ପରୀକ୍ଷା କରିଥିଲେ । ତାଙ୍କ ପର୍ଯ୍ୟବେକ୍ଷଣରେ ଥିବା ଦୁଇଟି ବିଦ୍ୟାଳୟ ମଧ୍ୟରୁ ଗୋଟିଏ ସମ୍ପୂର୍ଣ୍ଣ ଶୃଙ୍ଖଳିତ ଥିଲା । ଏବଂ ଅନ୍ୟଟି ଥିଲା ବିଶୃଙ୍ଖଳିତ । ସେ ପରୀକ୍ଷା କରି ଦେଖିଲେ ଯେ ବିଶୃଙ୍ଖଳିତ ବିଦ୍ୟାଳୟର ଛାତ୍ରମାନଙ୍କର ବ୍ୟବହାର ଅତ୍ୟଧିକ ଶତ୍ରୁଭାବାପନ୍ନ ଥିଲା । ସେମାନେ ବିଦ୍ୟାଳୟର ପ୍ରଧାନ ଶିକ୍ଷକଙ୍କ ପ୍ରତି ମଧ୍ୟ ଆକ୍ରୋଶ ମୂଳକ ବ୍ୟବହାର ପ୍ରଦର୍ଶନ କରୁଥିଲେ ।

**ଶିକ୍ଷକଙ୍କ ଭୂମିକା** :—ବିଦ୍ୟାଳୟ ପରିବେଷ୍ଟନୀ ମଧ୍ୟରେ ଶିକ୍ଷକ ସର୍ବପ୍ରଧାନ ଉପାଦାନ । ତାଙ୍କର ଛାତ୍ର ପ୍ରତି ମନୋଭାବ ଓ କାର୍ଯ୍ୟକଳାପ ଶିଶୁର ଭବିଷ୍ୟତ ବ୍ୟକ୍ତିତ୍ୱ ଗଠନରେ ସାହାଯ୍ୟ କରିଥାଏ । ରିୟାନ୍ (Ryan) ଏବଂ ଭଣ୍ଟ (wundt) ୧୯୫୫ ଖ୍ରୀଷ୍ଟାବ୍ଦରେ ଶିକ୍ଷକଙ୍କ ସ୍ୱାଧୀନ କାର୍ଯ୍ୟକଳାପର କେତୋଟି ଦିଗ ଉପରେ ଆଲୋକପାତ କରିଥିଲେ । ସେଗୁଡ଼ିକ ହେଲା :—

୧ । ସରଳ ଓ ଗଣତାନ୍ତ୍ରିକ ପ୍ରଣାଳୀ ।

୨ । କାର୍ଯ୍ୟାନୁରକ୍ତ, ସଙ୍ଗଠିତ ଓ ଦାୟିତ୍ୱବାନତା ।

୩ । ଛାତ୍ରମାନଙ୍କ ବିଭିନ୍ନ କାର୍ଯ୍ୟରେ ଅଂଶ ଗ୍ରହଣ, କୌଣସି କାର୍ଯ୍ୟରେ ଏକାଗ୍ରତା ଓ ଆଗ୍ରହକୁ ଉତ୍ସାହିତ କରିବା ।

୪ । ଅନୁସନ୍ଧିତ୍ସୁତା ।

୫ । ମୁକ୍ତ ଓ ସ୍ୱାଧୀନ ଚିନ୍ତାଧାରା ।

ଶିକ୍ଷକ ଶ୍ରେଣୀ ମଧ୍ୟରେ ଯେଉଁଭଳି ଭାବରେ ତାଙ୍କ କାର୍ଯ୍ୟ ସଂପାଦନ କରିବେ ଶ୍ରେଣୀରେ ସେହିପରି ଆବେଗିକ ପରିବେଶ ସୃଷ୍ଟି ହେବ । ଜଣେ କଠୋର ଶିକ୍ଷକ ଶ୍ରେଣୀ ମଧ୍ୟରେ ସ୍ୱେଚ୍ଛାଚାରୀ ପରିବେଶ ଏବଂ ଜଣେ ଗଣତାନ୍ତ୍ରିକ ଶିକ୍ଷକ ଶ୍ରେଣୀ ମଧ୍ୟରେ ଅନୁରୂପ ପରିବେଶ ସୃଷ୍ଟି କରିଥାନ୍ତି । ବିଭିନ୍ନ ପ୍ରକାର ଶିକ୍ଷକଙ୍କ ଅଧୀନରେ ଛାତ୍ରମାନେ କିପରି ବ୍ୟବହାର ପ୍ରଦର୍ଶନ କରିବା ପାଇଁ ୧୯୩୯ ଖ୍ରୀଷ୍ଟାବ୍ଦରେ ଲୱିନ୍ (Lewin) ଲିପିନ୍ (Lippin) ଏବଂ ହ୍ୱାଇଟ୍ (White) ଏକ ପରୀକ୍ଷା କରିଥିଲେ ଏବଂ ନିମ୍ନମତେ ସିଦ୍ଧାନ୍ତ ଗ୍ରହଣ କରିଥିଲେ :—

୧ । ଶ୍ରେଣୀ ମଧ୍ୟରେ ଶିକ୍ଷକଙ୍କର ସ୍ୱେଚ୍ଛାଚାରୀ ବ୍ୟବହାର ଛାତ୍ର ମଧ୍ୟରେ ବିରୋଧାତ୍ମକ-, ଆକ୍ରମଣାତ୍ମକ ଓ ନିଷ୍ଠୁର ମନୋଭାବ ସୃଷ୍ଟି କରେ ।

୨ । ଶ୍ରେଣୀ ମଧ୍ୟରେ ଗଣତାନ୍ତ୍ରିକ ପରିବେଶ ଛାତ୍ରର ବ୍ୟବହାର ଓ ମନୋଭାବକୁ ସୁସଙ୍ଗଠିତ ଓ ଗଠନମୂଳକ କରିଥାଏ ।

**ବିଫଳତା** :—ବିଶେଷତଃ ପରୀକ୍ଷାରେ ବିଫଳତା ଛାତ୍ର ମନରେ ସୁଦୂର ପ୍ରସାରୀ ପ୍ରଭାବ ପକାଇଥାଏ । ବିଭିନ୍ନ ଗବେଷଣାରୁ ଏହା ସିଦ୍ଧ ଯେ ଯେଉଁ ଛାତ୍ରମାନେ ପରୀକ୍ଷାରେ ବାରମ୍ବାର ବିଫଳ ହୋଇଥାନ୍ତି ସେମାନଙ୍କ ମଧ୍ୟରେ ନିଷ୍ଠୁରତା, ଶତ୍ରୁଭାବାପନ୍ନ, ଉଦାସ ଭାବ, ଗଣ୍ଡଗୋଳ ସୃଷ୍ଟି କରିବା ମନୋବୃତ୍ତି, ନମତାର ଅଭାବ, ଗର୍ବିତ ଭାବ ଓ ସ୍ୱାର୍ଥପରତା ଆଦି ଗୁଣ ବିକାଶ ଲାଭକରିଥାଏ । ବିଦ୍ୟାଳୟରେ ପରୀକ୍ଷାର ପ୍ରଣାଳୀ କେତେକ ଛାତ୍ରଙ୍କ ଆବଶ୍ୟକତା ପୂର୍ଣ୍ଣ କରିପାରେ ନାହିଁ । ଫଳତଃ ସେମାନଙ୍କ ମନରେ ବିରାଗ ଓ ଅନ୍ୟାନ୍ୟ ପ୍ରତିକୂଳ ବ୍ୟକ୍ତିତ୍ୱ ବିକାଶ ଲାଭକରେ ।

**ଶିକ୍ଷାଦାନ ପ୍ରଣାଳୀ** :—ଜଣେ ଆଦର୍ଶ ଶିକ୍ଷକର ସର୍ବପ୍ରଧାନ ବୈଶିଷ୍ଟ୍ୟ ହେଲା ସେ ଶ୍ରେଣୀ ଗୃହ ମଧ୍ୟରେ ଏକ ମୁକ୍ତ, ସହଯୋଗୀ ଓ ସୌହାର୍ଦ୍ଦ୍ୟ ପୂର୍ଣ୍ଣ ବାତାବରଣ ସୃଷ୍ଟି କରିବେ । ଶିକ୍ଷାଦାନ ପ୍ରଣାଳୀ ଛାତ୍ରର ଆବଶ୍ୟକତା ଗୁଡ଼ିକ ପୂର୍ଣ୍ଣ କରିବା ଆବଶ୍ୟକ । ଛାତ୍ରମାନଙ୍କ ପ୍ରତି ଶିକ୍ଷକଙ୍କ ଆଚରଣ ବ୍ୟବହାର ଅସ୍ତିବାଚକ ଓ ପ୍ରତ୍ୟକ୍ଷବାଦୀ ହେବା ଉଚିତ୍ । ଶିଶୁମାନେ ତାଙ୍କଠାରୁ ସହାନୁଭୂତି ଲାଭ କରିବା ସଙ୍ଗେ ସଙ୍ଗେ ନିଜର ବ୍ୟକ୍ତିତ୍ୱର ବିକାଶ ପାଇଁ ପ୍ରେରଣା ଓ ସାହାଯ୍ୟ ପାଇବା ଆବଶ୍ୟକ । ଛାତ୍ର କୌଣସି ଅସାମାଜିକ ବ୍ୟବହାର ପ୍ରଦର୍ଶନ କଲେ ଶିକ୍ଷକ ତାର କାରଣ ଅଧ୍ୟୟନ କରି ଛାତ୍ରର ବ୍ୟବହାରକୁ ସଂଶୋଧିତ ଓ ପରିମାର୍ଜିତ କରିବାକୁ ପ୍ରୟାସଶୀଳ ହେବା ଉଚିତ୍ । ଶ୍ରେଣୀ ଗୃହ ମଧ୍ୟରେ ଛାତ୍ରକୁ ତାର ନିଜସ୍ୱ ମତ ବ୍ୟକ୍ତ କରିବାକୁ ଉତ୍ସାହିତ କରାଯିବା ଦରକାର, ଏହାଦ୍ୱାରା ଛାତ୍ର ମଧ୍ୟରେ ଗଠନ ମୂଳକ ଓ ସହଯୋଗ ପୂର୍ଣ୍ଣ ଚିନ୍ତାଧାରାର ଉଦ୍ରେକ ହୁଏ ।

ଶିଶୁର ବ୍ୟକ୍ତିତ୍ୱ ବିକାଶ ସାଧନ କରିବା ପଥରେ ଯଦି କୌଣସି ସମସ୍ୟା ଦେଖାଯାଏ ତେବେ ବିଦ୍ୟାଳୟ ପରିବେଷ୍ଟନୀ ମଧ୍ୟରେ ତାହା ଦୂର କରାଯାଇ ପାରିବ । ଛାତ୍ର ମନରୁ ବିରାଗ, ଶଙ୍କା ବା ଆବେଗିକ ଦ୍ୱନ୍ଦ୍ୱ ଭାବ ଦୂର କରିବା ପାଇଁ ଚେଷ୍ଟା କରାଗଲେ ତାର ବ୍ୟକ୍ତିତ୍ୱ ଠିକ୍ ଭାବରେ ବିକଶିତ ହୋଇଥାଏ । ଶିକ୍ଷକ ଧିରେ ଧିରେ ଛାତ୍ରର କାନ୍ଧ ଆପୁଡ଼େଇ କୌଣସି ସମସ୍ୟାର ସମାଧାନ କରିବାକୁ ପ୍ରେରଣା ଦେଲେ ଛାତ୍ରର ମନରେ ଆତ୍ମବିଶ୍ୱାସ ଓ ଓଠରେ ହସ ଦେଖାଯାଏ । ଛାତ୍ରକୁ ତାର ଭାବ ବିରେଚନ କରିବାର ସୁଯୋଗ ଦିଆଗଲେ ସେ ତା'ର ମାନସିକ ଦ୍ୱନ୍ଦ୍ୱରୁ ମୁକ୍ତ ପାଇଯାଏ ଏବଂ ସହଜରେ ପରିବାର, ବିଦ୍ୟାଳୟ ଓ ସମାଜ ସହ ସମଯୋଜନ କରିପାରେ ।

## ସାମାଜିକ ପରିବେଷ୍ଟନୀ :

ଅନେକ ଦାର୍ଶନିକ ବିଶ୍ୱାସ କରନ୍ତି ଯେ ପୃଥିବୀ ଏକ ରଙ୍ଗମଞ୍ଚ ଓ ଆମେ ସମସ୍ତେ ଜଣେ ଜଣେ ଅଭିନେତା ଭାବରେ ବିଶ୍ୱନିୟନ୍ତାଙ୍କ ନିର୍ଦ୍ଦେଶନାରେ ନିଜ ନିଜ ଅଭିନୟ କରିଚାଲିଛେ । ଶିଶୁଟିଏ ଜନ୍ମ ହେବା ପରେ ସେ ପରିବାରର ଓ ଅନ୍ୟମାନଙ୍କର ଉପରେ ନିର୍ଭରଶୀଳ ହୋଇଥାଏ । ତା'ର ବୟସ ବଢ଼ି ଚାଲିବା ସଙ୍ଗେ ସଙ୍ଗେ ସେ ପୃଥିବୀ ଓ ବାସ୍ତବତାର ପରିଚୟ ପାଏ । କ୍ରମେ ସେ ସାମାଜିକ ହୁଏ ଓ ସମାଜର ଅନ୍ୟ ଶିଶୁ ଓ ବ୍ୟକ୍ତିମାନଙ୍କର ସଂସ୍ପର୍ଶରେ ଆସେ । ତାକୁ ବିଭିନ୍ନ ଭୂମିକାରେ ଅବତୀର୍ଣ୍ଣ ହେବାକୁ ପଡ଼େ । ଏହି ସମାଜ ମଧ୍ୟରେ ସେ ପୁତ୍ର, ଛାତ୍ର, କର୍ମଚାରୀ, ସ୍ୱାମୀ, ପିତା ଏହିପରି ଅନେକ କ୍ଷେତ୍ରରେ ଅନେକ ଦାୟିତ୍ୱ ସମ୍ପାଦନ କରେ । ଫଳରେ ନିଜକୁ ସମାଜରେ ସମଯୋଜିତ କରିବା ପାଇଁ ସେ ଅନ୍ୟମାନଙ୍କର ବ୍ୟବହାର ଅନୁକରଣ ଓ ଅନୁସରଣ ମଧ୍ୟ କରିଥାଏ । ମାର୍ଗାରେଟ ମିଡ୍ (Margaret Mead)ଙ୍କ ମତରେ ବ୍ୟକ୍ତି ଯେପରି ସମାଜରେ ବାସ କରେ ତାର ବ୍ୟକ୍ତିତ୍ୱ ସେହି ଅନୁରୂପେ ବିକଶିତ ହୁଏ ।

## ସାଂସ୍କୃତିକ ପରିବେଷ୍ଟନୀ :

ପ୍ରତ୍ୟେକ ସମାଜର ନିଜସ୍ୱ ସଂସ୍କୃତି ରହିଛି । ଏହି ସଂସ୍କୃତି ବଂଶାନୁକ୍ରମିକ ଓ ଏହାକୁ ସାମାଜିକ ବଂଶାନୁକ୍ରମଣ (Social heridity) କୁହାଯାଇପାରେ । ଭାରତୀୟ ସମାଜ ଉନ୍ନତ ସାଂସ୍କୃତିକ ବ୍ୟବସ୍ଥାରେ ପରିପୁଷ୍ଟ ଏବଂ ଏହି ଦେଶର ପ୍ରତ୍ୟେକ ଶିଶୁ ଉପରେ ଏହାର ଗଭୀର ପ୍ରଭାବ ପଡ଼ିଥାଏ । ସଂସ୍କୃତି ବ୍ୟକ୍ତିତ୍ୱକୁ ଧୀରେ ଧୀରେ ପରିମାର୍ଜିତ କରିଥାଏ । ଇ. ବି. ଟେଲର୍ (E. B. Tyler)ଙ୍କ ମତରେ "ସଂସ୍କୃତି ହେଉଛି ଜ୍ଞାନ, ବିଶ୍ୱାସ, ନୈତିକତା, ଆଇନ୍, ପ୍ରଥା, ନୀତି ଏବଂ ଆହୁରି ଅନେକ ସାମର୍ଥ୍ୟର ଏକ ଜଟିଳ ଏକୀଭୂତ ପରିପ୍ରକାଶ ଯାହା ବ୍ୟକ୍ତି ସମାଜର ଜଣେ ସଭ୍ୟ ଭାବରେ ଗ୍ରହଣ କରିଥାଏ ।" ସଂସ୍କୃତି ହେଉଛି ସମାଜରେ ବାସକରୁଥିବା ଲୋକମାନଙ୍କର ଚିନ୍ତାଧାରା, ଅନୁଭୂତି ଓ କାର୍ଯ୍ୟ କଳାପର ଏକ ସମାହାର । ସାରା ପୃଥିବୀରେ ସମସ୍ତ ବ୍ୟକ୍ତିଙ୍କର ଶାରୀରିକ ଓ ଜୈବିକ ଗଠନ ସମାନ ହୋଇଥିବା ସ୍ଥଳେ ବିଭିନ୍ନ ସଂସ୍କୃତିର ପ୍ରଭାବରେ ସେମାନଙ୍କର ବ୍ୟକ୍ତିତ୍ୱ ଭିନ୍ନ ଭିନ୍ନ ହୋଇଥାଏ । ମନୁଷ୍ୟର ବ୍ୟକ୍ତିତ୍ୱରେ ତାହାର ସଂସ୍କୃତିର ରୂପ ସ୍ପଷ୍ଟ ହୋଇଥାଏ । ଏହି ଅନୁସାରେ କୌଣସି ଏକ ଗୋଷ୍ଠୀକୁ ଭାରତୀୟ, ଆମେରିକୀୟ, ଇଂରେଜ ଓ ଆଫ୍ରିକୀୟମାନଙ୍କୁ ସହଜେ ଚିହ୍ନି ହୁଏ । ଭାରତୀୟ ସଂସ୍କୃତି ଏକ ହେଲେ ମଧ୍ୟ ଏହା ଅନେକ ଉପ-ସଂସ୍କୃତିର ସମନ୍ୱୟରେ ଗଠିତ । ବ୍ୟକ୍ତି ନିମିତ୍ତ ସଂସ୍କୃତି ଏକ ଶିକ୍ଷକ ଭାବରେ କାର୍ଯ୍ୟ କରିଥାଏ । କେତେବେଳେ ପ୍ରତ୍ୟକ୍ଷ ଭାବରେ ଓ ଅନ୍ୟ କେତେବେଳେ ପରୋକ୍ଷ ଭାବରେ ସଂସ୍କୃତି ମନୁଷ୍ୟ ମନରେ କୌଣସି ଧାରଣା

ଦୃଢ଼ୀଭୂତ କରିଥାଏ । ତେଣୁ ବ୍ୟକ୍ତିତ୍ୱର ବିକାଶରେ ସଂସ୍କୃତିର ଅବଦାନ ଅନେକ ବେଶୀ । ଏହା ବ୍ୟାଖ୍ୟା କରିବା ପାଇଁ ଏକ ଉଦାହରଣ ପ୍ରଦାନ କରାଯାଇପାରେ । ମନେ କରାଯାଉ ଯେ ତିନୋଟି ଏକ ଡିମ୍ବଜ ଯମଜ ସନ୍ତାନ ତିନୋଟି ଭିନ୍ନ ଭିନ୍ନ ସଂସ୍କୃତି ସମ୍ପନ୍ନ ଗୃହରେ ଲାଳିତ ପାଳିତ ହେଲେ । ଜଣେ ମୁସଲମାନ, ଜଣେ ଖ୍ରୀଷ୍ଟିଆନ୍ ଓ ତୃତୀୟଟି ପରମ୍ପରା ଶୀଳ ହିନ୍ଦୁ ଗୃହରେ ଶିଶୁଅବସ୍ଥାରୁ ବସବାସ କରିବାକୁ ଲାଗିଲେ । ସେମାନଙ୍କ ବଂଶାନୁଗତି ଏକ ହେଲେ ମଧ୍ୟ ସାଂସ୍କୃତିକ ପରିବେଶ ଭିନ୍ନ ଆକାରରେ ହେଲା । ତେବେ ସେମାନଙ୍କ ବ୍ୟକ୍ତିତ୍ୱ ତିନି ପ୍ରକାରର ହେବ । ସି. କ୍ଲୁକ୍‌ହୋନ୍ (C. Kluckhon)ଙ୍କ ମତରେ ଆମ ଜୀବନର ପ୍ରତ୍ୟେକ ପରିସ୍ଥିତିରେ ଆମେ ନିଜର ସଂସ୍କୃତି ଦ୍ୱାରା ପ୍ରଭାବିତ ହୋଇଥାଉ । ଆମେ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଜ୍ଞାତ ସାରରେ ହେଉ ବା ଅଜ୍ଞାତରେ ହେଉ ସଂସ୍କୃତି ଆମ ବ୍ୟବହାର ଓ ମନୋବୃତ୍ତିକୁ ନିୟନ୍ତ୍ରଣ କରେ ଓ ପୂର୍ବ ପୁରୁଷମାନଙ୍କ ଦ୍ୱାରା ପ୍ରଚଳିତ କେତେକ ନିର୍ଦ୍ଦିଷ୍ଟ ବ୍ୟବହାର ଆମେ ଆହରଣ କରିଥାଉ ।

**ବଂଶାନୁଗୁଣ ବନାମ ପରିବେଷ୍ଟନୀ** :—ବ୍ୟକ୍ତିତ୍ୱର ବିକାଶ ପାଇଁ, ବଂଶାନୁକ୍ରମ ଏବଂ ପରିବେଷ୍ଟନୀ ଏ ଦୁଇଟି ମଧ୍ୟରୁ କେଉଁଟି ଅଧିକ ପ୍ରଭାବଶାଳୀ, ଏହା ଗୋଟିଏ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ମନୋବିଜ୍ଞାନ ସମ୍ବନ୍ଧୀୟ ପ୍ରଶ୍ନ । କେତେକ ମନୋବୈଜ୍ଞାନିକ ମତ ପ୍ରଦାନ କରନ୍ତି ଯେ ଶିଶୁର ବଂଶାନୁଗୁଣ ସୂତ୍ରରେ ପ୍ରାପ୍ତ ସହଜାତ ଗୁଣ ଗୁଡ଼ିକ ତା'ର ବ୍ୟକ୍ତିତ୍ୱ ବିକାଶର ପ୍ରଧାନ ଉପାଦାନ ଏବଂ ପରିବେଷ୍ଟନୀ ବା ଶିକ୍ଷାଦ୍ୱାରା ଏହାର ବିଶେଷ ପରିବର୍ତ୍ତନ ସମ୍ଭବ ନୁହେଁ । ଅନ୍ୟ ପକ୍ଷରେ ଆଉ କେତେକ ମନୋବୈଜ୍ଞାନିକଙ୍କ ମତରେ ଶିକ୍ଷା ଓ ପରିବେଷ୍ଟନୀ ମାଧ୍ୟମରେ ଯେ କୌଣସି ସାଧାରଣ ଶିଶୁକୁ ଇଚ୍ଛାନୁରୂପ ପରିବର୍ତ୍ତନ କରାଯାଇପାରେ । ରୁଷ ଦେଶୀୟ ଶରୀର ତତ୍ତ୍ୱବିଦ୍ ଇଭାନ୍ ପାଭଲୋଭ୍ (Ivan Pavlov) ଏବଂ ଆମେରିକୀୟ ମନୋବିଜ୍ଞାନୀ ଓ୍ୱାଟସନ୍ (J. B. Watson) ଶେଷୋକ୍ତ ମତରେ ପ୍ରବର୍ତ୍ତକ । ଗବେଷଣାରୁ ଜଣାଯାଏ ଯେ ଉଭୟ ମତ ଆଂଶିକ ଭାବରେ ସତ୍ୟ ଏବଂ ଉଭୟ ଉପାଦାନ ଶିଶୁର ବ୍ୟକ୍ତିତ୍ୱ ଗଠନରେ ଅଂଶ ଗ୍ରହଣ କରିଥାନ୍ତି ।

ସମଡିମ୍ବଜ ଯମଜ ସନ୍ତାନ (Identical twin)ଙ୍କୁ ଶୈଶବାବସ୍ଥାରୁ ବିଚ୍ଛିନ୍ନ କରି ବିଭିନ୍ନ ପରିବେଶରେ ପାଳନ କରିବା ଦ୍ୱାରା ଦେଖାଯାଇଛି ଯେ, ସେମାନଙ୍କର ସାଧାରଣ ବୁଦ୍ଧି ଶକ୍ତିରେ ତାରତମ୍ୟ ଦେଖା ନଗଲେ ହେଁ, ସେମାନଙ୍କ ବ୍ୟବହାର, ଆଗ୍ରହ, ମାନସିକ ପ୍ରତ୍ୟୟ (Attitude) ତଥା କର୍ମ ସାମର୍ଥ୍ୟରେ ନାନା ତାରତମ୍ୟ ପରିଲକ୍ଷିତ ହୁଏ ।

ବଂଶାନୁଗୁଣ ଏବଂ ପରିବେଶର ଆପେକ୍ଷିକ ପ୍ରଭାବ ନିର୍ଦ୍ଧାରଣ କରିବା ଉଦ୍ଦେଶ୍ୟରେ କେଲୋଗ୍ (Kellog) ଦମ୍ପତି ଏକ ନୂତନ ପରୀକ୍ଷା କରିଥିଲେ ।

ସେମାନେ ସେମାନଙ୍କର ଦଶ ମାସର ପୁଅ ଡୋନାଲ୍ଡ(Donald)ସହିତ ସାଢ଼େ ସାତ-ମାସ ବୟସର ଗୋଟିଏ ଶିମ୍ପାଞ୍ଜିକୁ ସମାନ ଭାବରେ ଲାଳନ ପାଳନ କରିବାକୁ ଲାଗିଲେ। କେତେକ ବର୍ଷପରେ ଦେଖାଗଲା ଯେ ବିଭିନ୍ନ ପ୍ରକାର କ୍ରୀଡ଼ା ତଥା ଇନ୍ଦ୍ରିୟ ସମ୍ବେଦନ ପ୍ରତିକ୍ରିୟା କ୍ଷେତ୍ରରେ ସେମାନେ ପ୍ରାୟ ସମାନ ଦକ୍ଷତା ପ୍ରଦର୍ଶନ କରିଥିଲେ। ମାତ୍ର ଉଗ୍ର ଆବେଗ ପ୍ରବଣତା ତଥା ଶାରୀରିକ ଶକ୍ତିରେ ଶିମ୍ପାଞ୍ଜିଟି ଡୋନାଲ୍ଡ ଅପେକ୍ଷା ଅଧିକ ପଟୁତା ପ୍ରଦର୍ଶନ କରିଥିଲା। ଅନ୍ୟ ପକ୍ଷରେ ଡୋନାଲ୍ଡ ସାମାନ୍ୟ ବୟସ୍କ ହେଲାପରେ ଅନ୍ୟମାନଙ୍କ ସହିତ ମିଶି ପାରିଲା, କଥା କହିବାକୁ ଶିଖିଲା। କିନ୍ତୁ ଶିମ୍ପାଞ୍ଜିର ଏସବୁ କ୍ଷେତ୍ରରେ ବିଶେଷ ପରିବର୍ତ୍ତନ ପରିଲକ୍ଷିତ ହେଲାନାହିଁ। ଏଥିରୁ ଜଣାଗଲା ଯେ ପରିବେଷ୍ଟନୀ ଏକ ହେଲେ ମଧ୍ୟ ବଂଶାନୁକ୍ରମର ଭିନ୍ନତା ଯୋଗୁଁ ବ୍ୟକ୍ତିତ୍ୱ ପୃଥକ୍ ହୋଇଥାଏ। ଗବେଷଣାରୁ ଜଣାଯାଏ ଯେ ଉଭୟ ବଂଶାନୁଗୁଣ ଓ ପରିବେଷ୍ଟନୀ ବ୍ୟକ୍ତିତ୍ୱ ଉପରେ ପ୍ରଭାବ ପକାଇ ଥାଏ। ସେଗୁଡ଼ିକ ହେଲା—

୧। ବଂଶାନୁଗୁଣ ବ୍ୟକ୍ତିତ୍ୱର ସର୍ବନିମ୍ନ ଓ ସର୍ବୋଚ୍ଚ ସୀମା ନିର୍ଦ୍ଧାରଣ କରିବା ସମୟରେ ପରିବେଷ୍ଟନୀ ବ୍ୟକ୍ତିତ୍ୱର ରୂପ ନିର୍ଦ୍ଧାରଣ କରେ।

୨। ବଂଶାନୁଗୁଣ ଏକାକୀ ବ୍ୟକ୍ତିତ୍ୱର ଧର୍ମ ନିର୍ଦ୍ଧାରଣ କରେ ନାହିଁ। କିନ୍ତୁ ଏହା କୌଣସି ପ୍ରକାର ଆବେଗ ଓ ବ୍ୟବହାର ପାଇଁ ଆବଶ୍ୟକୀୟ ଅନ୍ତର୍ନିହିତ ଶକ୍ତି ଯୋଗାଇଥାଏ। ଶିକ୍ଷା ଓ ଅଭିଜ୍ଞତା ପରିବେଷ୍ଟନୀ ମଧ୍ୟରୁ ପ୍ରାପ୍ତ ହୋଇଥାଏ। ଏବଂ ଏଗୁଡ଼ିକ ଶକ୍ତି ସାମର୍ଥ୍ୟର ପରିପ୍ରକାଶରେ ସାହାଯ୍ୟ କରିଥାନ୍ତି।

୩। ବଂଶାନୁଗୁଣ ଶରୀର ଗଠନ, ଜୈବିକ ଏବଂ ଆବେଗିକ ଉପାଦାନ ଓ ବୁଦ୍ଧିମତ୍ତାର ସ୍ତର ନିର୍ଦ୍ଦେଶ କରିଥାଏ। ଏବଂ ଏହା କେତେକ ରୋଗ, ବ୍ୟବହାର ଶୈଳୀ ଓ ସ୍ୱଭାବ ଜାତ ଗୁଣଗୁଡ଼ିକର ଆହରଣକାରୀ ହୋଇଥାଏ।

୪। ନିକୃଷ୍ଟ ପରିବେଷ୍ଟନୀରେ ଉତ୍ତମ ବଂଶାନୁଗୁଣ ଜାତ ବ୍ୟକ୍ତିତ୍ୱ ବିକଶିତ ହୋଇପାରେ ନାହିଁ। ସେହିପରି ଉତ୍କୃଷ୍ଟ ପରିବେଷ୍ଟନୀରେ ନିକୃଷ୍ଟ ବଂଶାନୁଗୁଣ ଜାତ ବ୍ୟକ୍ତି ମଧ୍ୟ ଆଶାନୁରୂପ ବିକାଶ ଲାଭ କରିପାରେ ନାହିଁ। ସବୁଠାରୁ ଉତ୍ତମ ପରିବେଷ୍ଟନୀ ମଧ୍ୟରେ ରହିଲେ ମଧ୍ୟ ନିମ୍ନ ବୁଦ୍ଧ୍ୟାଙ୍କ (I.Q)ର ଜଡ଼ବୁଦ୍ଧି (Idiot) ପ୍ରତିଭାବାନ୍ ହୋଇପାରିବ ନାହିଁ। କିନ୍ତୁ ଉତ୍ତମ ଶିକ୍ଷା ଓ ଅଭିଜ୍ଞତା ଶିଶୁର ବ୍ୟବହାରକୁ ସଂଯତ ଓ ଉନ୍ନତ କରିପାରେ।

୫। ସମସ୍ତ ମନୋବିଜ୍ଞାନୀ ମତ ପ୍ରଦାନ କରନ୍ତି ଯେ ବ୍ୟକ୍ତିର ବୁଦ୍ଧିମତ୍ତା ତାର ଶିକ୍ଷା, କାର୍ଯ୍ୟ, ପିତାମାତାଙ୍କ ଆଭିଜାତ୍ୟ ଓ ସହରାଞ୍ଚଳ କିମ୍ବା ଗ୍ରାମାଞ୍ଚଳ ପରିବେଷ୍ଟନୀ ଦ୍ୱାରା ପ୍ରଭାବିତ ହୋଇଥାଏ।

୬। ଶିଶୁର ବାଲ୍ୟାବସ୍ଥାରୁ ଉପଯୁକ୍ତ ପରିବେଷ୍ଟନୀର ପ୍ରଭାବ ପଡ଼ିଲେ ବୁଦ୍ଧିମତ୍ତାର ପରିବର୍ତ୍ତନ ଅନୁଭୂତ ହୋଇଥାଏ ।

**ବ୍ୟକ୍ତିତ୍ୱ ସମ୍ବନ୍ଧରେ ବିଭିନ୍ନ ମତବାଦ** :—ବ୍ୟକ୍ତିତ୍ୱର ସ୍ୱରୂପ ବା ପ୍ରକୃତିର ନିରୂପଣ ଦୃଷ୍ଟିରୁ ଅନେକ ଗୁଡ଼ିଏ ମତବାଦ ମନୋବିଜ୍ଞାନୀମାନେ ପ୍ରଦାନ କରିଥାନ୍ତି । ଶ୍ରେଣୀକରଣ ତତ୍ତ୍ୱ (**Type Theory**), ପ୍ରଲକ୍ଷଣ ମତବାଦ (**Trait Theory**) ଏବଂ ମନୋ ବିଶ୍ଳେଷଣାତ୍ମକ ତତ୍ତ୍ୱ ସେଥି ମଧ୍ୟରୁ ପ୍ରଧାନ ।

**ବିଭାଗୀ କରଣ ତତ୍ତ୍ୱ** :—ନିଜ ପରିବେଶରେ ଦେଖୁଥିବା ବିଭିନ୍ନ ବସ୍ତୁରାଜି ଓ ମନୁଷ୍ୟମାନଙ୍କୁ ନାନା ପ୍ରକାର ଶ୍ରେଣୀରେ ବିଭକ୍ତ କରିବା ମନୁଷ୍ୟର ଏକ ଆଦିମ ପ୍ରବୃତ୍ତି । ମନୁଷ୍ୟମାନଙ୍କୁ ସେମାନଙ୍କ ଗୁଣ ଅନୁସାରେ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରିବା ବହୁ ପୁରାତନ କାଳରୁ ଆରମ୍ଭ ହୋଇ ଆଜି ପର୍ଯ୍ୟନ୍ତ ମଧ୍ୟ ପ୍ରଚଳିତ ହୋଇ ଆସୁଛି । ତା' ଛଡ଼ା ଆଧୁନିକ ମନୋବିଜ୍ଞାନୀମାନେ ନୂତନ ଭାବରେ ମନୁଷ୍ୟମାନଙ୍କର ଶ୍ରେଣୀ ବିଭାଗ କରିବାରେ ସଫଳ ହୋଇଛନ୍ତି । ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରେ ଗ୍ରୀକ୍ ଶରୀର ତତ୍ତ୍ୱବିଦ୍‌ମାନେ ସବୁ ପ୍ରଥମେ ମଣିଷକୁ ବିଭିନ୍ନ ବିଭାଗରେ ବଣ୍ଟନ କରିଥିଲେ । ଆବେଗିକ ଓ ସ୍ୱଭାବ ଜାତ (**Temperamental**) ଗୁଣ ଅନୁସାରେ ସେମାନେ ସମସ୍ତ ମନୁଷ୍ୟମାନଙ୍କୁ ଚାରି ପ୍ରଧାନ ଭାଗରେ ବିଭକ୍ତ କରିଥିଲେ । ଆରିଷ୍ଟୋଟଲଙ୍କ ଜନୈକ ଗ୍ରୀକ ମତପ୍ରଦାନ କରିଥିଲେ ଯେ ମନୁଷ୍ୟର ଶରୀର ମଧ୍ୟରେ ଚାରି ପ୍ରକାରର ତରଳ ଜୈବ ପଦାର୍ଥ ରହିଛି । ସେଥିମଧ୍ୟରୁ ଯେଉଁଟି ଅଧିକ ପ୍ରଭାବଶାଳୀ ହୋଇଥାଏ ବ୍ୟକ୍ତି ସେହି ପ୍ରକାର ବ୍ୟବହାର ପ୍ରଦର୍ଶନ କରେ । ପ୍ରଥମ ପ୍ରକାର ତରଳଟି ହେଲା ରକ୍ତ ଯାହା ମନୁଷ୍ୟକୁ ଉତ୍ସାହୀ ଓ ଆଶାବାନ୍ କରିଥାଏ ଏବଂ ଏହା ପ୍ରଭାବଶାଳୀ ହେଲେ ବ୍ୟକ୍ତି କର୍ମଠ ଓ ଆଶାବାଦୀ ହୋଇଥାଏ । ଦ୍ୱିତୀୟ ପ୍ରକାର ତରଳଟି ହେଉଛି ପିତ୍ତ ଏହା କ୍ଷାରୀୟ ଧର୍ମଯୁକ୍ତ ଏବଂ ଏହା ପ୍ରଭାବଶାଳୀ ହେଲେ ବ୍ୟକ୍ତି ଚଡ଼ା ସ୍ୱଭାବ ଓ କ୍ରୋଧୀ ହୋଇଥାଏ । ତୃତୀୟ ତରଳଟି ହେଉଛି ଶ୍ଳେଷ୍ମା ଏହା ପ୍ରଭାବରେ ବ୍ୟକ୍ତି ଆଳସ୍ୟ, ଶାନ୍ତ, ନିସ୍ତେଜ ଓ ଉଦାସୀନ ଭାବ ପ୍ରଦର୍ଶନ କରେ । ଚତୁର୍ଥଟି ହେଉଛି କଳାବର୍ଣ୍ଣର ପିତ୍ତ ଯାହାର ପ୍ରଭାବରେ ବ୍ୟକ୍ତି ହତୋତ୍ସାହୀ, ଧୀର ଓ ନିରାଶା ଭାବ ପ୍ରଦର୍ଶନ କରେ ।

ପୁରାଣ ଯୁଗରେ, ଯେତେବେଳେ ଭାରତରେ ଆୟୁର୍ବେଦ ଶାସ୍ତ୍ରର ପ୍ରଭୂତ ଉନ୍ନତି ସାଧିତ ହୋଇଥିଲା ଭାରତୀୟ ବିଜ୍ଞାନୀମାନେ ମନୁଷ୍ୟ ଶରୀରରେ ତିନି ପ୍ରକାର ଉପାଦାନର ସନ୍ଧାନ କରିଥିଲେ । ଏହି ତିନୋଟି ମଧ୍ୟରୁ ଯେଉଁ ଗୋଟିକ ବ୍ୟକ୍ତିତ୍ୱକୁ ଅଧିକ ଆଚ୍ଛନ୍ନ କରି ରଖେ ବ୍ୟକ୍ତି ତଦନୁରୂପ କାର୍ଯ୍ୟକଳାପ ପ୍ରଦର୍ଶନ କରେ ।

ଏହି କ୍ଷେତ୍ରରେ ହିପୋକ୍ରିଟସ ଓ ଭାରତୀୟ ଶରୀରତତ୍ତ୍ୱବିଦ୍‌ମାନଙ୍କର ଧାରଣା ପ୍ରାୟ ଏକ-ପ୍ରକାର ହୋଇଥିବାର ଦେଖାଯାଏ। ଭାରତୀୟ ଶାସ୍ତ୍ର ଅନୁସାରେ ଏହି ତିନୋଟି ଉପାଦାନ ହେଉଛି ବାତ, ପିତ୍ତ ଓ କଫ। ପୁରାତନ ମତବାଦ ପରେ ଆଧୁନିକ ବିଜ୍ଞାନୀମାନେ ମଧ୍ୟ ସେମାନଙ୍କର ନିଜସ୍ୱ ମତ ପ୍ରଚାର କରିଯାଇଛନ୍ତି।

କ୍ରେଟସ୍‌ମେର (Kretschmer)ଙ୍କ ମତବାଦ :—ଜର୍ମାନ ମନୋବିଜ୍ଞାନୀ କ୍ରେଟସ୍‌ମେର ବ୍ୟକ୍ତିମାନଙ୍କୁ ଦୈହିକ ଭିତ୍ତିରେ ଚାରୋଟି ଶ୍ରେଣୀରେ ବିଭକ୍ତ କରିଅଛନ୍ତି।

(୧) ପିକନିକ୍ (Pyknic) :—ଏହି ଶ୍ରେଣୀର ବ୍ୟକ୍ତିମାନେ ସ୍ଥୂଳକାୟ ଏବଂ ବର୍ତ୍ତୁଳାକୃତି, ଏମାନଙ୍କ ଦେହରେ ଚର୍ବିର ଆଧିକ୍ୟ ଦେଖାଯାଏ। ଏମାନଙ୍କ ଉଚ୍ଚତା ମଧ୍ୟମ ଧରଣର ଏବଂ ଉଦର ଦେଶ ବୃହତ୍ତ୍ୱ ଏବଂ ବର୍ତ୍ତୁଳ। ଏମାନେ ସାଧାରଣତଃ ଜନପ୍ରିୟ ଓ ମେଳାପୀ ହୋଇଥାନ୍ତି।

(୨) ଏସ୍ଥେନିକ୍ ((Asthenic) :—ଏମାନଙ୍କ ଦେହ କ୍ଷୀଣ ଏବଂ ସରଳ, ଓଜନ ଅନୁପାତରେ ଏମାନେ ସାଧାରଣତଃ ଦୀର୍ଘ। ଏମାନଙ୍କ ହସ୍ତପଦ ଦୀର୍ଘ, ପେଶୀ ଏବଂ ଅସ୍ଥି ଅପରିପୁଷ୍ଟ, ବକ୍ଷଦେଶ ଅନୁନ୍ନତ ଏବଂ କ୍ଷୀଣ, ଉଦର ମଧ୍ୟ କ୍ଷୀଣ, ମୋଟ ଉପରେ ପୁଷ୍ଟିର ଅଭାବ, କ୍ଷୀଣତା ଏବଂ ଦୀର୍ଘାଙ୍ଗତା ଏମାନଙ୍କ ଶରୀରର ବୈଶିଷ୍ଟ୍ୟ, ଏମାନେ ସାଧାରଣତଃ ଭାବପ୍ରବଣ ହୋଇଥାନ୍ତି।

(୩) ଆଥ୍‌ଲେଟିକ୍ (Athletic) :—ଏମାନେ ଅତିରିକ୍ତ ସ୍ଥୂଳ କିମ୍ବା ଅତିରିକ୍ତ କ୍ଷୀଣ ନୁହଁନ୍ତି। ଏମାନଙ୍କ ଅସ୍ଥି ସମୂହ ଦୃଢ଼ ଏବଂ ପେଶୀ ଗୁଡ଼ିକ ପୁଷ୍ଟ। ଏମାନଙ୍କର ଉଚ୍ଚତା ସାଧାରଣ ଏବଂ ଏମାନେ ଦେଖିବାକୁ ସୁନ୍ଦର ଓ ସ୍ୱାସ୍ଥ୍ୟବାନ୍।

(୪) ଡିସ୍‌ପ୍ଲାଷ୍ଟିକ୍ :—(Dysplastic) :—ଏ ଶ୍ରେଣୀର ବ୍ୟକ୍ତିମାନେ ଉପର ତିନି ଶ୍ରେଣୀର ବ୍ୟକ୍ତିମାନଙ୍କର ଏକ ସମାହାର। ଏମାନେ ଶାରୀରିକ ଭାବରେ ଅଧିକ ଶକ୍ତିଶାଳୀ ନହେଲେ ମଧ୍ୟ ଦୁର୍ବଳ ନୁହଁନ୍ତି। ସାଧାରଣତଃ ଏମାନେ ଶାରୀରିକ ପରିଶ୍ରମ ଅପେକ୍ଷା ମାନସିକ ପରିଶ୍ରମ କରିବାକୁ ଅଧିକ ଆଗ୍ରହୀ ଓ ସମର୍ଥ ହୋଇଥାନ୍ତି।

ଶେଲ୍‌ଡନ୍‌ଙ୍କ ଶ୍ରେଣୀ ବିଭାଗ :—କ୍ରେଟ୍‌ସ୍‌ମେରଙ୍କ ପଦ୍ଧତି ଅନୁସରଣ କରି ଶେଲ୍‌ଡନ୍ ନାମକ ଜଣେ ମନୋବିଜ୍ଞାନୀ ବ୍ୟକ୍ତିମାନଙ୍କର ସ୍ୱଭାବ ତଥା ଆଚରଣ ଭିତ୍ତିରେ ସେମାନଙ୍କୁ ତିନୋଟି ଶ୍ରେଣୀରେ ବିଭକ୍ତ କରିଅଛନ୍ତି।

(୧) ଏଣ୍ଡୋମର୍ଫ (Endomorph) :— ଏମାନଙ୍କର ପେଟ ଦେହର ଅନ୍ୟାନ୍ୟ ଅଂଶ ଅପେକ୍ଷା ବଡ଼ ଏବଂ ଅସ୍ଥି ତଥା ପେଶୀଗୁଡ଼ିକ ଅପେକ୍ଷାକୃତ ଅପରିପୁଷ୍ଟ । ଏମାନେ ଅତ୍ୟନ୍ତ ଭୋଜନ ପ୍ରିୟ, ଆଳସ୍ୟ ପରାୟଣ, ମନ୍ଥର, ଅତ୍ୟଧିକ ଆମୋଦ ପ୍ରିୟ, ସାମାଜିକ ଏବଂ ମିଶୁଙ୍କଣୀ । ବିପଦ ସମୟରେ ଏମାନେ ଅନ୍ୟମାନଙ୍କ ପ୍ରତି ସମବେଦନା ପ୍ରକାଶ କରିଥାନ୍ତି ଏବଂ ନିଜର ମନୋଭାବ ଖୋଲଖୋଲି ଭାବରେ ଅନ୍ୟ ଆଗରେ ପ୍ରକାଶ କରିଥାନ୍ତି । ସାଧାରଣତଃ ଏମାନେ ସରଳ, ନିଷ୍କପଟ, ବନ୍ଧୁଭାବାପନ୍ନ ହୋଇଥାନ୍ତି ।

(୨) ମେସୋମର୍ଫ (Mesomorph) :—ଏମାନଙ୍କ ଅସ୍ଥି ଗୁଡ଼ିକ ଦୃଢ଼ ଏବଂ ପେଶୀ ଗୁଡ଼ିକ ପରିପୁଷ୍ଟ । ଏମାନେ ବ୍ୟାୟାମ ପ୍ରିୟ ଏବଂ ଦୁଃସାହସିକ । ଅନ୍ୟ ଉପରେ କର୍ତ୍ତୃତ୍ୱ କରିବା ତଥା ଅନ୍ୟମାନଙ୍କ ସହିତ ପ୍ରତିଯୋଗିତା କରିବାକୁ ଏମାନେ ଭଲପାନ୍ତି । ଏମାନେ ସାଧାରଣତଃ କର୍ମଠ ଏବଂ ପ୍ରଫୁଲ୍ଲ ।

(୩) ଏକ୍‌ଟୋମର୍ଫ (Ectomorph) :— ଏମାନେ ଅତ୍ୟନ୍ତ କ୍ଷୀଣକାୟ ଏବଂ ଏମାନଙ୍କର ପେଶୀଗୁଡ଼ିକ ପରିପୁଷ୍ଟ ନୁହେଁ । ଏମାନଙ୍କର ଶରୀରରେ ଚର୍ବି ତଥା ମାଂସର ଅଭାବ ଦେଖାଯାଏ । ଏମାନେ ସାଧାରଣତଃ ଚିନ୍ତାଶୀଳ ଏବଂ ଗୋପନତାପ୍ରିୟ । ନିଜର ଅନୁଭୂତି ଏବଂ ଆବେଗକୁ ଏମାନେ ପ୍ରକାଶ କରନ୍ତି ନାହିଁ । ଏମାନେ ଏକୁଟିଆ ରହି ଚିନ୍ତା କରିବାକୁ ଭଲ ପାଆନ୍ତି ଏବଂ ଅନ୍ୟମାନଙ୍କର ସଙ୍ଗ ପସନ୍ଦ କରନ୍ତି ନାହିଁ । ଏମାନେ ଭୟାଳୁ ଏବଂ ସଂଯମୀ ହୋଇଥାନ୍ତି ।

ସ୍ପ୍ରେଙ୍ଗରଙ୍କ ଶ୍ରେଣୀବିଭାଗ :—(Spranger) ଜର୍ମାନ ଦାର୍ଶନିକ ସ୍ପ୍ରେଙ୍ଗର ବ୍ୟକ୍ତିଗତ ଆଗ୍ରହ ଓ ପସନ୍ଦକୁ ବିଚାର କରି ଛଅ ପ୍ରକାର ବ୍ୟକ୍ତିତ୍ୱର ବ୍ୟାଖ୍ୟା କରିଛନ୍ତି ।

(୧) ତତ୍ତ୍ୱବାଦୀ (Theorist) :—ଯେଉଁ ବ୍ୟକ୍ତିମାନେ ବାସ୍ତବବାଦୀ କମ୍ ଓ ଅଧିକ ଆଦର୍ଶବାଦୀ ହୋଇଥାନ୍ତି ସେମାନେ ସାଧାରଣତଃ ରାଜନୈତିକ ଓ ସାମାଜିକ କାର୍ଯ୍ୟକଳାପରେ ନିଜକୁ ଜଡ଼ିତ କରିବାକୁ ଆଗ୍ରହ ପ୍ରକାଶ କରନ୍ତି ନାହିଁ । ଏମାନେ ସର୍ବଦା ବିଭିନ୍ନ ବିଷୟକ ସତ୍ୟ ବା ତତ୍ତ୍ୱ ଅନୁସନ୍ଧାନରେ ବ୍ୟସ୍ତଥାନ୍ତି । ଏମାନଙ୍କ ଚିନ୍ତାଧାରା ବସ୍ତୁକୈନ୍ଦ୍ରିକ ଓ ନୈର୍ବ୍ୟକ୍ତିକ ।

(୨) ଅର୍ଥନୀତିବାଦୀ (Economic) ଏହି ଶ୍ରେଣୀର ବ୍ୟକ୍ତିମାନେ ସର୍ବଦା ଅର୍ଥ ବିଷୟରେ ଆଗ୍ରହ ପ୍ରକାଶ କରନ୍ତି ଏବଂ ଆବଶ୍ୟକତା ଦୃଷ୍ଟିରୁ ପ୍ରତ୍ୟେକ ବସ୍ତୁର ଆର୍ଥିକ ମୂଲ୍ୟ ବିଚାର କରନ୍ତି ।

(୩) ସୌନ୍ଦର୍ଯ୍ୟବାଦୀ (Aesthetic)—ଏମାନେ ସୌନ୍ଦର୍ଯ୍ୟାନ୍ୱେଷୀ, କଳା, ଶିଳ୍ପ, ସଙ୍ଗୀତ ତଥା ସାହିତ୍ୟର ଗୁଣ ମୁଗ୍ଧ ଗ୍ରାହକ ହୋଇଥାନ୍ତି ।

(୪) ସାମାଜିକ କ୍ଷମତାବାଦୀ (Social) ଏମାନେ ସାଧାରଣତଃ ସମାଜର ପ୍ରତ୍ୟେକ ବ୍ୟକ୍ତିଙ୍କ ପାଇଁ ସ୍ନେହ, ସହାନୁଭୂତି ପୋଷଣ କରିଥାନ୍ତି ଏବଂ ଜନସାଧାରଣଙ୍କ ଦୁଃଖ ମୋଚନ ପାଇଁ ଚେଷ୍ଟିତ ହୁଅନ୍ତି ।

(୫) କ୍ଷମତାବାଦୀ (Political) ଏମାନେ କ୍ଷମତା ପ୍ରିୟ ଏବଂ ଅନ୍ୟମାନଙ୍କ ଉପରେ କର୍ତ୍ତୃତ୍ୱ ବିସ୍ତାର କରିବା ଏକାନ୍ତ ଅଭିଳାଷ ।

(୬) ଧର୍ମପରାୟଣ (Religious)—ଏମାନେ ସାଧାରଣତଃ ଧର୍ମ, ଈଶ୍ୱର, ଆତ୍ମା ପ୍ରଭୃତି ବିଷୟରେ ଚିନ୍ତା ତଥା ଅନୁଶୀଳନ କରିଥାନ୍ତି ।

ୟୁଙ୍ଗଙ୍କ ଶ୍ରେଣୀ ବିଭାଗ—ପ୍ରଖ୍ୟାତ ସୁଇସ୍ ମନୋବିଜ୍ଞାନୀ କାର୍ଲ୍ୟୁଙ୍ଗ (Karl Jung) ବ୍ୟକ୍ତିମାନଙ୍କର ଚିନ୍ତା, ଅନୁଭୂତି ତଥା ଅନ୍ୟାନ୍ୟ ମାନସିକ କ୍ରିୟାକୁ ଭିତ୍ତିକରି ସେମାନଙ୍କୁ ପ୍ରଧାନତଃ ଦୁଇଗୋଟି ଶ୍ରେଣୀରେ ବିଭକ୍ତ କରିଥିଲେ । ଯଥା— (୧) ଅନ୍ତର୍ମୁଖୀ ଓ (୨) ବହିର୍ମୁଖୀ ।

(୧) ଅନ୍ତର୍ମୁଖୀ :—ଏମାନେ ସର୍ବଦା ଆତ୍ମସଚେତନ ଏବଂ ଆତ୍ମକେନ୍ଦ୍ରିକ । ବାହ୍ୟ ଜଗତ ବିଷୟରେ ଏମାନେ ସର୍ବଦା ଉଦାସୀନ । ଏମାନଙ୍କ ମନୋଭାବ ଅପରିବର୍ତ୍ତନୀୟ । ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀ ବା ମତରୁ ଏମାନେ ସାଧାରଣତଃ ବିଚ୍ୟୁତ ହୁଅନ୍ତି ନାହିଁ । ନୂତନ ପରିବେଶ ସହିତ ପ୍ରତିଯୋଜନ (Adjustment) ଏମାନଙ୍କ ପକ୍ଷେ ସହଜ ନୁହେଁ । ଏମାନଙ୍କ ଚିନ୍ତାଧାରା ସାଧାରଣତଃ ବିମୂର୍ତ୍ତ (Abstract) । ଏମାନଙ୍କ ଅନୁଭୂତି ଅତ୍ୟନ୍ତ ତୀବ୍ର ଏବଂ ଗଭୀର ଏବଂ ଏମାନେ ସହଜରେ ତାହା ପ୍ରକାଶ କରିପାରନ୍ତି ନାହିଁ । ବାସ୍ତବ ସହିତ ପ୍ରତି ଯୋଜନ ପାଇଁ ଅକ୍ଷମତା ଯୋଗେ ଏମାନେ ସାଧାରଣତଃ ପଳାୟନ ମନୋବୃତ୍ତି ତଥା ଅଳୀକ କଳ୍ପନାକୁ ମନରେ ପୋଷଣ କରନ୍ତି ।

(୨) ବହିର୍ମୁଖୀ :—ଏମାନେ ଅନ୍ତର୍ମୁଖୀମାନଙ୍କର ଠିକ୍ ବିପରୀତ । ଏମାନେ ବାହ୍ୟ ଜଗତ ଓ ବାହ୍ୟ ବସ୍ତୁ ପ୍ରତି ସହଜରେ ଆକୃଷ୍ଟ ହୁଅନ୍ତି । ପ୍ରୟୋଜନ ଅନୁସାରେ ଏମାନେ ମତ ବା ଆଦର୍ଶକୁ ପରିବର୍ତ୍ତନ କରନ୍ତି । ନିଜ ସମ୍ବନ୍ଧରେ ଏମାନେ ପ୍ରାୟ ଉଦାସୀନ ଓ ଅମନଯୋଗୀ । ଏମାନେ ଅନାୟାସରେ ନୂତନ ପରିବେଶ ସହିତ ପ୍ରତିଯୋଜନ କରିପାରନ୍ତି । ଏମାନଙ୍କ ଚିନ୍ତା ବିମୂର୍ତ୍ତ ନହୋଇ ବସ୍ତୁ କେନ୍ଦ୍ରିକ ବା ବାସ୍ତବ

ହୋଇଥାଏ । ଏମାନେ ସହଜରେ ନିଜର ଅନୁଭୂତି ପ୍ରକାଶ କରିଥାନ୍ତି ଏବଂ ସହଜରେ ଅନ୍ୟମାନଙ୍କ ସହିତ ମିଳାମିଶା, ଆଳାପ ଆଲୋଚନା କରିଥାନ୍ତି । ସମାଜର ଉଚ୍ଚପଦ ପାଇଁ ଏମାନେ ସର୍ବଦା ପ୍ରୟାସୀ ଏବଂ ଯାହାପାଆନ୍ତି ନପାଇଲେ ଏମାନେ ଅତୃପ୍ତି ଅନୁଭବ କରନ୍ତି । ବାସ୍ତବ ପରିସ୍ଥିତି ଏମାନଙ୍କର ଅନୁକୂଳ ନହେଲେ ଏମାନେ ପଳାୟନ ମନୋବୃତ୍ତି ପୋଷଣ ନକରି କ୍ଷତିପୂରଣ ମୂଳକ (Compansatory) ପ୍ରଚେଷ୍ଟା କରିଥାନ୍ତି ।

ବାସ୍ତବରେ ୟୁଙ୍ଗ ବିଭିନ୍ନ ଆଠ ପ୍ରକାର ବ୍ୟକ୍ତିତ୍ୱର ଅବତାରଣା କରିଥିଲେ; କିନ୍ତୁ ଦୁଇ ପ୍ରକାର ବ୍ୟକ୍ତିତ୍ୱ ଅଧିକ ଜନପ୍ରିୟ ହୋଇପାରିଥିଲା । ୟୁଙ୍ଗଙ୍କ ମତରେ କୌଣସି ବ୍ୟକ୍ତି ସମ୍ପୂର୍ଣ୍ଣ ଭାବରେ ଅନ୍ତର୍ମୁଖୀ ବା ବହିର୍ମୁଖୀ ନୁହେଁ । ଗୋଟିଏ ପ୍ରକାର ପରିସ୍ଥିତିରେ କୌଣସି ବ୍ୟକ୍ତି ଅନ୍ତର୍ମୁଖୀ ବ୍ୟବହାର ପ୍ରଦର୍ଶନ କଲେ ଅନ୍ୟ ଏକ ପରିସ୍ଥିତିରେ ବହିର୍ମୁଖୀ କାର୍ଯ୍ୟକଳାପ ଦେଖାଏ । ଆଧୁନିକ ମନୋବିଜ୍ଞାନୀମାନେ ୟୁଙ୍ଗଙ୍କ ଦୁଇ ଭିନ୍ନ ପ୍ରକାର ବ୍ୟକ୍ତିତ୍ୱ ମଧ୍ୟରେ ଏକ ତୃତୀୟ ପ୍ରକାର ବ୍ୟକ୍ତିତ୍ୱ "ଉଭୟ ମୁଖୀ" (Ambivert)ର ପ୍ରବର୍ତ୍ତନ କରିଛନ୍ତି । ଯେଉଁ ବ୍ୟକ୍ତିମାନେ ଅନ୍ତର୍ମୁଖୀ ବା ବହିର୍ମୁଖୀ ଶ୍ରେଣୀ ଭୁକ୍ତ ହୋଇ ପାରିବେ ନାହିଁ ସେମାନଙ୍କୁ ଉଭୟ ମୁଖୀ କୁହାଯାଇ ପାରେ ।

**ଫ୍ରୟେଡ୍‌ଙ୍କ ଶ୍ରେଣୀ ବିଭାଗ** :—ବିଖ୍ୟାତ ମନୋବିଜ୍ଞାନୀ ଫ୍ରଏଡ୍ ଯୌନ ମନୋବୃତ୍ତିର ବିକାଶକୁ ଭିତ୍ତିକରି ବ୍ୟକ୍ତିତ୍ୱକୁ ତିନି ଭାଗରେ ବିଭକ୍ତ କରିଛନ୍ତି । ବିକାଶର ବିଭିନ୍ନ ଅବସ୍ଥାରେ ଯୌନ ସାମର୍ଥ୍ୟ ବ୍ୟକ୍ତିତ୍ୱକୁ ପ୍ରଭାବିତ କରୁଥିବାର ପ୍ରମାଣ ଏହି ଶ୍ରେଣୀ ବିଭାଗରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । ସେହି ଶ୍ରେଣୀ ବିଭାଗ ଗୁଡ଼ିକ ହେଲା—

**(୧) ମୌଖିକ ଶୃଙ୍ଗାର ଧର୍ମୀ (Oral-Erotic Type)** :—ଫ୍ରଏଡ୍‌ଙ୍କ ମତାନୁସାରେ ଶୈଶବରେ ଯୌନ ଉପଲବ୍‌ଧିର କେନ୍ଦ୍ର ହେଉଛି ମୁଖ । ମୁଖ ମଧ୍ୟରେ ଏକ ପ୍ରକାର ଝିଲ୍ଲୀଥାଏ, ଯାହାର ଘର୍ଷଣ ଯୋଗୁଁ ଶିଶୁ ଏକପ୍ରକାର ଯୌନ ସୁଖ ପ୍ରାପ୍ତି କରିଥାଏ । ଅତଏବ କେତେକ ବ୍ୟକ୍ତି ମୁଖ ଗୁହଳା ଦ୍ୱାରା ଓ ମୁଖକୁ କୌଣସି ପ୍ରକାର କାର୍ଯ୍ୟରେ ନିୟୋଜିତ କରି ଅତ୍ୟନ୍ତ ଆନନ୍ଦିତ ହୋଇଥାନ୍ତି । ଚୋଷଣ (Sucking) ଦଂଶନ (biting) ଏବଂ ମୁଖ ମଧ୍ୟରେ କୌଣସି ବସ୍ତୁ ରଖିବା ଦ୍ୱାରା ଶୈଶବରେ ଯୌନ ଆନନ୍ଦ ପ୍ରାପ୍ତି ହୋଇଥାଏ । ଶୈଶବର ଏହି ମୌଖିକ ଯୌନ ଅଭିଜ୍ଞତା ଭବିଷ୍ୟତରେ ଦୁଇ ପ୍ରକାର ବ୍ୟକ୍ତିତ୍ୱ ସୃଷ୍ଟି କରିଥାଏ । ସେଗୁଡ଼ିକ ହେଲା—

**(କ) ମୌଖିକ ନିଷ୍କ୍ରିୟ ଧର୍ମୀ (Oral Passive Type)** :—ଏହି ଶ୍ରେଣୀର ବ୍ୟକ୍ତିମାନେ ସର୍ବଦା ନିର୍ଭରଶୀଳ, ଆଶାବାଦୀ ଓ ଚିନ୍ତାଧାରାରେ ଅପରିପକ୍ୱତା

ପ୍ରଦର୍ଶନ କରିଥାନ୍ତି । ଏମାନଙ୍କର ଅନ୍ୟାନ୍ୟ କାର୍ଯ୍ୟକଳାପ ଶିଶୁସୁଲଭ ହୋଇଥାଏ । ସେ ସର୍ବଦା ଅନ୍ୟର ସାହାଯ୍ୟ କାମନା କରନ୍ତି ।

(ଖ) ମୌଖିକ ଧର୍ଷକାମୀ (Oral Sadistic Type) :—ଏହି ଶ୍ରେଣୀର ବ୍ୟକ୍ତିମାନେ ସାଧାରଣତଃ ନିରାଶାବାଦୀ, ସନ୍ଦେହୀ ଏବଂ ଆକ୍ରମଣଶୀଳ ହୋଇଥାନ୍ତି । ସମାଜର ଅନ୍ୟ ବ୍ୟକ୍ତିମାନଙ୍କ ପ୍ରତି ଏମାନେ ରୁକ୍ଷ ବ୍ୟବହାର ପ୍ରଦର୍ଶନ କରନ୍ତି ।

(୨) ନିଷ୍କାସନ ଧର୍ମୀ (Theanal Type) :—ଶୈଶବର ଦ୍ୱିତୀୟ ଅବସ୍ଥାରେ ଶିଶୁ ନିଜର ଅନୁରକ୍ତି ତା ବିରକ୍ତି ମଳମୂତ୍ର ନିଷ୍କାସନ ଦ୍ୱାରା ସୂଚିତ କରିଥାଏ । ସମୟେ ସମୟେ ଶିଶୁ ତାର ପରିବେଷ୍ଟନୀକୁ ପ୍ରତିରୋଧ ପ୍ରଦର୍ଶନ କରିବାକୁ ଯାଇଁ ଏ ପ୍ରକାର ନିଷ୍କାସନ ବନ୍ଦ କରିଦିଏ । ଶୈଶବର ଏହି ଅବସ୍ଥା ପରବର୍ତ୍ତୀ ବ୍ୟକ୍ତିତ୍ୱ ଉପରେ ପ୍ରଭାବ ପକାଇଥାଏ । ଏହି ଅବସ୍ଥାର ପ୍ରଭାବରେ ବ୍ୟକ୍ତି ଅବାଧ୍ୟତା, କୃପଣତା ଓ ବିଶୃଙ୍ଖଳତା ଆଦି ଗୁଣ ପ୍ରଦର୍ଶନ କରିଥାଏ ।

(୩) (Phallic Type) :—ଯୌନ ମନୋବୃତ୍ତିର ତୃତୀୟ ଅବସ୍ଥା ହେଉଛି ମନୋରଞ୍ଜନ ଧର୍ମୀ । ଏ ପ୍ରକାର ବ୍ୟକ୍ତି ଆତ୍ମକେନ୍ଦ୍ରିକ ହୋଇଥାନ୍ତି ଏବଂ ଅନ୍ୟମାନଙ୍କୁ ନିଜ ଆଡ଼କୁ ଆକର୍ଷିତ କରିବାକୁ ଚାହାଁନ୍ତି । ଆତ୍ମ ପ୍ରଦର୍ଶନ ଦ୍ୱାରା ସେମାନେ ନିଜର ମନୋରଞ୍ଜନ କରିଥାନ୍ତି ।

**ବର୍ଗୀକରଣ ତତ୍ତ୍ୱର ମୂଲ୍ୟାୟନ** :—ବ୍ୟକ୍ତିତ୍ୱ ଶ୍ରେଣୀ ବିଭାଗକୁ ଅନେକ ମନୋବିଜ୍ଞାନୀ ବିଭିନ୍ନ ଦିଗରୁ ସମାଲୋଚନା କରିଛନ୍ତି । ସେମାନଙ୍କ ମଧ୍ୟରେ ଏହି ତତ୍ତ୍ୱ ବିକାଶର ବିଭିନ୍ନ ଅବସ୍ଥା ଉପରେ ଆବଶ୍ୟକତାଠାରୁ ଅଧିକ ପ୍ରାଧାନ୍ୟ ଦେଇଥାଏ । ମନୁଷ୍ୟ ଚରିତ୍ରର ମଧ୍ୟବର୍ତ୍ତୀ ଅବସ୍ଥା ଅପେକ୍ଷା ଅତିତ୍ତ୍ୱ ପ୍ରତି ଅଧିକ ଗୁରୁତ୍ୱ ପ୍ରଦାନ କରିବା ଫଳରେ ବ୍ୟକ୍ତିମାନଙ୍କୁ କେତେକ ନିର୍ଦ୍ଦିଷ୍ଟ ଶ୍ରେଣୀରେ ବିଭକ୍ତ କରାଯାଇଛି ଯାହାକି ବାସ୍ତବତାର ପରିପନ୍ଥୀ ନୁହେଁ । ମନୁଷ୍ୟମାନଙ୍କୁ ଦୁଇ ବା ତିନୋଟି ଶ୍ରେଣୀରେ ବିଭକ୍ତ କରିବା ସଂପୂର୍ଣ୍ଣ ଅବାସ୍ତବ ଓ ଅସମ୍ଭବ ମଧ୍ୟ । ବ୍ୟକ୍ତିତ୍ୱ ଏକ ଜଟିଳ ବ୍ୟବସ୍ଥା ଏବଂ ଏହାକୁ ସରଳୀକୃତ କରି କେତେକ ଶ୍ରେଣୀର ଅନ୍ତର୍ଭୁକ୍ତ କରିବା ଫଳରେ ବ୍ୟକ୍ତିତ୍ୱର ସଠିକ୍ ଅଧ୍ୟୟନ ସମ୍ଭବ ନୁହେଁ ।

ଏହି ତତ୍ତ୍ୱର ଦ୍ୱିତୀୟ ତ୍ରୁଟିହେଲା ଏଥିରେ ବର୍ଣ୍ଣିତ ଶ୍ରେଣୀ ଗୁଡ଼ିକ ପ୍ରଗତିଶୀଳ ନୁହନ୍ତି ଏବଂ ସେଗୁଡ଼ିକ ସହଜରେ ପରିମାପ କରିହୁଏ ନାହିଁ । ଏହି ତତ୍ତ୍ୱଟି ବିଭିନ୍ନ ମନୋବୈଜ୍ଞାନିକ ନାନା ପ୍ରକାରରେ ବ୍ୟାଖ୍ୟା କରିଥିବାରୁ ଏହାକୁ ବାସ୍ତବ କ୍ଷେତ୍ରରେ କାର୍ଯ୍ୟକାରୀ କରିବା ଏକ କଷ୍ଟକର କାର୍ଯ୍ୟ ।

ବିଭିନ୍ନ ସମାଲୋଚନା ସତ୍ତ୍ୱେ ମଧ୍ୟ ଶ୍ରେଣୀ ବିଭାଗ ତତ୍ତ୍ୱ ସମ୍ପୂର୍ଣ୍ଣ ଭାବରେ ଅଦରକାରୀ ନୁହେଁ । ବ୍ୟକ୍ତିତ୍ୱର ପ୍ରକୃତି ଜାଣିବା ପାଇଁ ଏହା ବୈଜ୍ଞାନିକମାନଙ୍କର ପ୍ରଥମ ପ୍ରୟାସ, ତେଣୁ ଏହାର ଐତିହାସିକ ମୂଲ୍ୟକୁ ଅସ୍ୱୀକାର କରାଯାଇନପାରେ ।

ଏହି ତତ୍ତ୍ୱର ଦ୍ୱିତୀୟ ଅବଦାନ ହେଲ ଏହା ବ୍ୟକ୍ତିତ୍ୱକୁ ଏକ ସମଷ୍ଟିଗତ ଏକକ ଭାବରେ ଗ୍ରହଣ କରିଥାଏ । ଏହା ବ୍ୟକ୍ତିତ୍ୱକୁ କେତେକ ଗୁଣର ବିଖଣ୍ଡିତ ଅଂଶ ଭାବରେ ପର୍ଯ୍ୟାଲୋଚନା କରେ ନାହିଁ । ଅନ୍ୟ ପକ୍ଷରେ ଗୁଣ ଗୁଡ଼ିକ ଜଟିଳ ସମଷ୍ଟି ହିଁ ବ୍ୟକ୍ତିତ୍ୱ ବୋଲି ଏହି ତତ୍ତ୍ୱ ପ୍ରତିପାଦନ କରୁଥିବାରୁ କେତେକ କ୍ଷେତ୍ରରେ ଏହାର ଉପଯୋଗିତା ସ୍ୱୀକୃତ ହୋଇଥାଏ ।

**ପ୍ରଲକ୍ଷଣ ମତବାଦ (Trait Theory)** :—ବିଭିନ୍ନ ପରିସ୍ଥିତିରେ ମନୁଷ୍ୟ ପ୍ରଦର୍ଶନ କରୁଥିବା ନାନାପ୍ରକାର ଭାବଭଙ୍ଗୀ, ବ୍ୟବହାର ଓ ଅଙ୍ଗ ପ୍ରଦର୍ଶନକୁ ପ୍ରଲକ୍ଷଣ କୁହାଯାଏ । ଓ୍ୱାଲ୍ଟର ମାଇକେଲ୍ (**Walter Michel**) ତାଙ୍କର ପୁସ୍ତକ (**Introduction to Personal**)ରେ ବର୍ଣ୍ଣନା କରିଛନ୍ତି ଯେ ମନୁଷ୍ୟର ସ୍ୱାଭାବିକ ଗୁଣରାଜି, ଯାହାକି ଜଣେ ବ୍ୟକ୍ତିକୁ ଅନ୍ୟ ବ୍ୟକ୍ତିମାନଙ୍କ ଠାରୁ ପୃଥକ୍ କରିଥାଏ । ସେଗୁଡ଼ିକର ସଂଖ୍ୟାତ୍ମକ ସନ୍ନିବେଶ ଦ୍ୱାରା ଯେଉଁ ପ୍ରକାର ବ୍ୟବହାରରେ ସୃଷ୍ଟି ହୁଏ ତାହାକୁ ପ୍ରଲକ୍ଷଣ କୁହାଯାଏ ଅର୍ଥାତ୍, ମନୁଷ୍ୟର ବ୍ୟବହାର, ବହୁମୁଖୀ ଓ ବହୁ ପ୍ରକାରର ହୋଇଥାଏ । କିନ୍ତୁ ସେମାନଙ୍କୁ କେତୋଟି ସାଧାରଣ ଶ୍ରେଣୀରେ ବିଭାଗ କଲେ କେତେକ ନିର୍ଦ୍ଦିଷ୍ଟ ପ୍ରକାର ବ୍ୟବହାରର ପରିଚୟ ମିଳିଥାଏ । ଏହି ବ୍ୟବହାରକୁ ପ୍ରଲକ୍ଷଣ କୁହାଯାଏ । ଉଦାହରଣ ସ୍ୱରୂପ କେତେକ ନିର୍ଦ୍ଦିଷ୍ଟ ପ୍ରକାର ବ୍ୟବହାର ପ୍ରଦର୍ଶନ କଲେ ଆମେ ବ୍ୟକ୍ତିକୁ ସାମାଜିକ ଓ ତାର ବିପରୀତ ବ୍ୟବହାର ପ୍ରଦର୍ଶନ କଲେ ଆମେ ତାହାକୁ ଅସାମାଜିକ କହିଥାଉ । ସେହିପରି ଶାନ୍ତ-କ୍ରୋଧି, ଆନନ୍ଦିତ-ଦୁଃଖିତ, ଦାନୀ-କୃପଣ ଆଦି ପ୍ରଲକ୍ଷଣଗୁଡ଼ିକ କେତେଗୁଡ଼ିଏ ବ୍ୟବହାରର ସମଷ୍ଟିରୁ ଉତ୍ପନ୍ନ ହୋଇଥାଏ । ମନୁଷ୍ୟ ତା'ର ପରିବେଷ୍ଟନୀ ପ୍ରତି ପ୍ରଲକ୍ଷଣ ମାଧ୍ୟମରେ ପ୍ରତିକ୍ରିୟା ପ୍ରକାଶ କରିଥାଏ ।

ପ୍ରଲକ୍ଷଣରେ କେତେଗୁଡ଼ିଏ ଧର୍ମ ଥାଏ । ଏହି ଧର୍ମ ଗୁଡ଼ିକ ହେଲା :—

୧ । ପ୍ରଲକ୍ଷଣ ପରିମାପ କରାଯାଇ ପାରିବ । ମାପ ସାହାଯ୍ୟରେ ପ୍ରଲକ୍ଷଣ ଗୁଡ଼ିକର ସଂଖ୍ୟା ନିର୍ଦ୍ଧାରଣ କରାଯାଏ ।

୨ । ବ୍ୟକ୍ତିତ୍ୱର ପ୍ରଲକ୍ଷଣଗୁଡ଼ିକ ସର୍ବଦା ବିଭିନ୍ନ ପ୍ରକାର ବ୍ୟବହାର ବା ଅଙ୍ଗଭଙ୍ଗୀରୁ ସୂଚିତ ହୋଇଥାନ୍ତି । ସମସ୍ତ ସମୟରେ ବ୍ୟକ୍ତିର କଥାବାର୍ତ୍ତା ଓ ଗ୍ଭଲିଚଳନ କେତେକ ପ୍ରଲକ୍ଷଣ ବ୍ୟକ୍ତ କରିଥାଏ ।

୩। ପ୍ରଲକ୍ଷଣଗୁଡ଼ିକ ପରିବର୍ତ୍ତନଶୀଳ। ବିଶେଷତଃ ବାଲ୍ୟକାଳରେ ମନୁଷ୍ୟର ପ୍ରଲକ୍ଷଣ ବହୁତ ଶୀଘ୍ର ପରିବର୍ତ୍ତିତ ହୁଏ। କିନ୍ତୁ ବୟସ୍କ ହେଲେ ଏହା ସ୍ଥିର ରହେ ସତ କିନ୍ତୁ ସମୟ ଓ ପରିସ୍ଥିତିର ଭିନ୍ନତା ଯୋଗୁଁ ଏଗୁଡ଼ିକ ଭିନ୍ନ ପ୍ରକାରରେ ଆତ୍ମପ୍ରକାଶ କରନ୍ତି।

୪। କେତେକ ପ୍ରଲକ୍ଷଣ ସାର୍ବଜନୀନ। ପ୍ରତ୍ୟେକ ବ୍ୟକ୍ତି ଏହା ପ୍ରଦର୍ଶନ କରିଥାନ୍ତି।

୫। ପ୍ରଲକ୍ଷଣକୁ ଉଚ୍ଚମାନର ଅଭ୍ୟାସ ମଧ୍ୟ କୁହାଯାଇ ପାରେ। କାରଣ ସମାନ ପରିବେଷ୍ଟନୀରେ ଏହା ପୁନଃ ପୁନଃ ଆତ୍ମ ପ୍ରକାଶ କରେ।

୬। କେତେକ ମନୋବିଜ୍ଞାନୀଙ୍କ ମତରେ ପ୍ରଲକ୍ଷଣଗୁଡ଼ିକ ମାନସିକ ଅବସ୍ଥା ବା ଚିନ୍ତାଧାରାର ବାହ୍ୟ ପରିପ୍ରକାଶ। ଏକ ନିର୍ଦ୍ଦିଷ୍ଟ ପରିବେଶ ପ୍ରତି ଏକ ନିର୍ଦ୍ଦିଷ୍ଟ ପ୍ରକାରରେ ପ୍ରତିକ୍ରିୟା ପ୍ରକାଶ କରିବାପାଇଁ ମନୁଷ୍ୟର ମନ ସର୍ବଦା ପ୍ରସ୍ତୁତ ଥାଏ। ଫଳତଃ ପ୍ରଲକ୍ଷଣଗୁଡ଼ିକ ଜନ୍ମନିଏ।

୭। ଅତୀତର ଅଭିଜ୍ଞତା, ଆବେଗ, ବିଶ୍ୱାସ ଆଦିଦ୍ୱାରା ପ୍ରଲକ୍ଷଣଗୁଡ଼ିକ ପ୍ରଭାବିତ ହୋଇଥାନ୍ତି।

୮। ପରିବେଶରେ ଥିବା ବିଭିନ୍ନ ଉଦ୍ଦୀପକ (Stimuli) ବ୍ୟକ୍ତିକୁ ବିଭିନ୍ନ ପ୍ରଲକ୍ଷଣ ଶିକ୍ଷା ଦେଇଥାନ୍ତି। ଏହି ଶିକ୍ଷାର ମାତ୍ରା ବ୍ୟକ୍ତିର ଶିକ୍ଷା ଓ ବୁଦ୍ଧିର ମାତ୍ରା ଉପରେ ନିର୍ଭର କରେ।

**ଅଲ୍‌ପୋର୍ଟଙ୍କ ଶ୍ରେଣୀ ବିଭାଗ** :—ମନୋବିଜ୍ଞାନରେ ପ୍ରଲକ୍ଷଣର ଧର୍ମ ନିର୍ଣ୍ଣୟ ଓ ସେ ସମ୍ପର୍କୀୟ ଗବେଷଣାରେ ଆଲ୍‌ପୋର୍ଟ (G. M. Allport)ଙ୍କ ଉଦ୍ୟମ ସ୍ୱୀକୃତ। ତାଙ୍କ ମତରେ ପ୍ରଲକ୍ଷଣ ହେଉଛି ଜନ୍ମଗତ ଓ ଅଭ୍ୟାସ ଲବ୍ଧ ପ୍ରତିକ୍ରିୟା ଯାହା ମନୁଷ୍ୟ ବିଭିନ୍ନ ପରିସ୍ଥିତିରେ ପ୍ରକାଶ କରିଥାଏ। ଏବଂ ଏହାଦ୍ୱାରା ମନୁଷ୍ୟ ନିଜ ଅଭିଜ୍ଞତାରୁ ଶିକ୍ଷା କରିବା ସଙ୍ଗେ ସଙ୍ଗେ ଅନ୍ୟର ପଥପ୍ରଦର୍ଶକ ମଧ୍ୟ ହୋଇଥାଏ। ଆଲପୋର୍ଟଙ୍କ ଏହି ମତଟି ବହୁତ ବ୍ୟାପକ ଅର୍ଥ ପ୍ରକାଶ କରେ। ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଅଳ୍ପ କେତେକ ଉଦ୍ଦୀପକ ସହିତ ପ୍ରଲକ୍ଷଣଗୁଡ଼ିକ ସଂଯୁକ୍ତ ନୁହନ୍ତି। ସେ ସମସ୍ତ ପ୍ରଲକ୍ଷଣ ଗୁଡ଼ିକୁ ତିନି ପ୍ରଧାନ ବିଭାଗରେ ବିଭକ୍ତ କରିଛନ୍ତି। ସେଗୁଡ଼ିକ ହେଲା—

**(୧) ମୌଳିକ ପ୍ରଲକ୍ଷଣ (Cardinal Traits)** :—ମନୁଷ୍ୟ ତା'ର ଅଧିକାଂଶ ବ୍ୟବହାର ମାଧ୍ୟମରେ ଯେଉଁ ପ୍ରଲକ୍ଷଣ ଗୁଡ଼ିକ ପ୍ରକାଶ କରେ ତାହା ଏହି ଶ୍ରେଣୀର। ଏହି ପ୍ରଲକ୍ଷଣ ଗୁଡ଼ିକ ସାଧାରଣତଃ ବ୍ୟକ୍ତିର ଜୀବନ କାଳ ମଧ୍ୟରେ ସବୁ

ସମୟରେ ଦେଖାଯାଏ । ଅର୍ଥାତ୍ ବ୍ୟକ୍ତି ଏହି ପ୍ରଲକ୍ଷଣକୁ ନେଇ ଜନ୍ମ ହୋଇଥାଏ ଓ ଏହି ପ୍ରଲକ୍ଷଣ ଗୁଡ଼ିକ ନେଇ ମୃତ୍ୟୁବରଣ କରେ । ମନୁଷ୍ୟର ବୃଦ୍ଧି ଓ ଜୀବନର ଲକ୍ଷ୍ୟ ସାଧନ କରିବାର ଇଚ୍ଛା ଏହି ଶ୍ରେଣୀର ପ୍ରଲକ୍ଷଣ ।

(୨) କେନ୍ଦ୍ରିୟ ପ୍ରଲକ୍ଷଣ (Central Traits) :—ମୌଳିକ ପ୍ରଲକ୍ଷଣ ପରି ଦୀର୍ଘ ସମୟ ସ୍ଥାୟୀ ନହେଲେହେଁ କେତେକ ପ୍ରଲକ୍ଷଣ ପ୍ରାୟ ପ୍ରତ୍ୟେକ ବ୍ୟକ୍ତିଙ୍କ ନିକଟରେ ଏକ ନିର୍ଦ୍ଦିଷ୍ଟ ସମୟପାଇଁ ଅନୁଭୂତ ହୁଏ । ଆତ୍ମପ୍ରକାଶ (Self Expression) ଓ ସମାଜିକତା ବୋଧ (Sociability) ଆଦି ପ୍ରଲକ୍ଷଣଗୁଡ଼ିକ ଏହି ଶ୍ରେଣୀର ।

(୩) ଅବେଗିକ ପ୍ରଲକ୍ଷଣ :—ଏହି ଶ୍ରେଣୀର ପ୍ରଲକ୍ଷଣକୁ ବ୍ୟକ୍ତିର ମନୋଭାବ, ସ୍ୱଭାବ ବା ମିଜାଜ୍ ବୁଝାଯାଇପାରେ । ଏହା ବ୍ୟକ୍ତି ମଧ୍ୟରେ ଖୁବ୍ କମ୍ ସମୟ ପାଇଁ ଅନୁଭୂତ ହେଲେ ମଧ୍ୟ ଏହାର ପ୍ରଭାବ ଖୁବ ଶକ୍ତିଶାଳୀ ହୋଇଥାଏ । ସମସ୍ତ ପ୍ରକାର ଆବେଗର ପୌନଃ ପୁନିକତା ଓ ପରିବର୍ତ୍ତନ, ଆବେଗର ବ୍ୟାପକତା, ତୀବ୍ରତା, ଅବେଗିକ ପ୍ରତିକ୍ରିୟା ଆଦି ଏହି ଶ୍ରେଣୀର ଅନ୍ତର୍ଭୁକ୍ତ ।

## କାଟେଲଙ୍କର ଶ୍ରେଣୀ ବିଭାଗ (R. B. Cattel's Classification)—

ଇଂରେଜ ମନଃସ୍ତତ୍ତ୍ୱବିଦ୍ ରେମଣ୍ଡ. ବି. କାଟେଲ ପ୍ରାୟ ୧୫ଟି ପୁସ୍ତକରେ ୨୦୦ ଗୋଟି ଅଧ୍ୟାୟରେ ବ୍ୟକ୍ତିତ୍ୱ ଓ ପ୍ରଲକ୍ଷଣ ତତ୍ତ୍ୱ ସମ୍ପର୍କରେ ଆଲୋଚନା କରିଛନ୍ତି । ତାଙ୍କ ପରୀକ୍ଷା ନୈଦାନିକ ଓ ପରୀକ୍ଷଣ ମୂଳକ ନହେଲେ ମଧ୍ୟ ପର୍ଯ୍ୟବେକ୍ଷଣ ଓ ପରିସଂଖ୍ୟାନରୁ ମିଳିଥିବା ବିଭିନ୍ନ ଉପାଦାନ ଗୁଡ଼ିକୁ ବିଶ୍ଳେଷଣ କରି ସେ ପ୍ରାୟ ୪୦୦୦ ସାମାନ୍ୟ ପ୍ରଲକ୍ଷଣର ଆବିଷ୍କାର କରିଥିଲେ ଓ ସେଗୁଡ଼ିକୁ ୧୬ଟି ବିଭାଗରେ ବିଭକ୍ତ କରିଅଛନ୍ତି ।

କାଟେଲଙ୍କ ମତାନୁସାରେ ବ୍ୟକ୍ତିତ୍ୱର ପ୍ରଧାନ ଗଠନକାରୀ ଉପାଦାନ ହେଉଛି ପ୍ରଲକ୍ଷଣ ଏବଂ ପ୍ରଲକ୍ଷଣ କେତେଗୁଡ଼ିଏ ସମଧର୍ମୀ କିନ୍ତୁ ଭିନ୍ନ ପ୍ରକାର ବ୍ୟବହାରରୁ ଜନ୍ମ ନେଇଥାଏ । ଏକ ନିର୍ଦ୍ଦିଷ୍ଟ ପ୍ରଲକ୍ଷଣ ଏକ ସ୍ୱତନ୍ତ୍ର ପରିବେଷ୍ଟନୀ ପ୍ରତି ପ୍ରତିକ୍ରିୟା ପ୍ରକାଶ ପାଇଁ ଉଦ୍ଦିଷ୍ଟ । କୌଣସି ଅବସ୍ଥା ବା ପରିସ୍ଥିତି ମଧ୍ୟଦେଇ ଗତି କରିବା ସମୟରେ ମନୁଷ୍ୟ ଏକ ପ୍ରକାର ବ୍ୟବହାର ବାରମ୍ବାର ପୌନଃପୌନିକ ଭାବେ ପ୍ରକାଶ କରିବା ହେତୁରୁ ଏକ ନିର୍ଦ୍ଦିଷ୍ଟ ପ୍ରକାର ପ୍ରଲକ୍ଷଣ ସୃଷ୍ଟି ହୋଇଥାଏ । କାଟେଲଙ୍କ ମତରେ ପ୍ରଲକ୍ଷଣ ଗୁଡ଼ିକର ସଂଖ୍ୟା ଅନେକ କିନ୍ତୁ ଅନେକ ପ୍ରଲକ୍ଷଣ ପ୍ରାୟ ପ୍ରତ୍ୟେକ ବ୍ୟକ୍ତି ଠାରେ ସାଧାରଣ ଭାବରେ ଦେଖାଯାଏ । ଅନ୍ୟ କେତେକ ପ୍ରଲକ୍ଷଣ କୌଣସି ବ୍ୟକ୍ତିର ନିଜସ୍ୱ ବା ବ୍ୟକ୍ତିଗତ ହୋଇଥାଏ । କେତେକ ପ୍ରଲକ୍ଷଣ ବ୍ୟକ୍ତି ମଧ୍ୟରେ ଅନ୍ତର୍ନିହିତ ଏବଂ ଅନ୍ୟ

କେତେକ ପରିସ୍ଥିତିରୁ ସୃଷ୍ଟି ହୋଇଥାଏ । ଏହି ଦୁଇ ପ୍ରକାର ପ୍ରଲକ୍ଷଣ ବ୍ୟତୀତ କାଟେଲ୍ ଅନ୍ୟ ଦୁଇ ପ୍ରକାର ପ୍ରଲକ୍ଷଣର ବର୍ଣ୍ଣନା କରିଛନ୍ତି । ସେଗୁଡ଼ିକ ହେଲା ବହିଃ ପ୍ରଲକ୍ଷଣ ଓ ଅନ୍ତଃ ପ୍ରଲକ୍ଷଣ ।

(୧) ପ୍ରଲକ୍ଷଣ (Surface Traits) .—ଯେଉଁ ପ୍ରଲକ୍ଷଣ ଗୁଡ଼ିକ ବ୍ୟକ୍ତିର ବାହ୍ୟ ଆଚରଣରୁ ସହଜରେ ଜାଣିହୁଏ ତାହାକୁ ବହିଃ ପ୍ରଲକ୍ଷଣ କୁହାଯାଏ । ଏହି ପ୍ରଲକ୍ଷଣ ଗୁଡ଼ିକ ପ୍ରତ୍ୟେକ ଅନେକ ଗୁଡ଼ିଏ ଗୁଣର ସମନ୍ୱୟରେ ଗଠିତ ଏବଂ ସେମାନେ ବ୍ୟକ୍ତିପାଇଁ ଏକ ବା ଏକ ପ୍ରକାର କାର୍ଯ୍ୟ ସାଧନ କରିବା ପାଇଁ ଉଦ୍ଦିଷ୍ଟ ହୋଇଥାନ୍ତି । ଉଦାହରଣ ସ୍ୱରୂପ ଜଣେ ଛାତ୍ର ଏକ ସମୟରେ ସାହିତ୍ୟ ଓ ଗଣିତ ଉଭୟ ବିଷୟରେ ଉତ୍ତମ ଫଳ ପ୍ରଦର୍ଶନ କରିବା ଏକ ବାହ୍ୟ ପ୍ରଲକ୍ଷଣ । କାରଣ ଏ ଦୁଇଟି ଲକ୍ଷ୍ୟ ହାସଲ କରିବା ପାଇଁ ତାକୁ ଦୁଇଟି ଭିନ୍ନ ଉପାଦାନ ପ୍ରଭାବିତ କରିଥାନ୍ତି । ସେହିପରି ଅନ୍ୟ କେତେକ ବହିଃ ପ୍ରଲକ୍ଷଣର ଉଦାହରଣ ହେଲା କୌତୁହଳ, ସାଧୁତା, ଏକତା, ଚତୁରତା ଓ ନିର୍ଭରଶୀଳତା ଇତ୍ୟାଦି ।

(୨) ଅନ୍ତଃ ପ୍ରଲକ୍ଷଣ (Source Traits) :—ମନୁଷ୍ୟର ଅନ୍ତର୍ନିହିତ ଗୁଣରାଜି ଯେଉଁଗୁଡ଼ିକ ବାହ୍ୟ ପ୍ରଲକ୍ଷଣର ଉତ୍ସ ରୂପେ କାର୍ଯ୍ୟକରେ ସେମାନଙ୍କୁ ଅନ୍ତଃ ପ୍ରଲକ୍ଷଣ କୁହାଯାଇପାରେ । ମନୁଷ୍ୟ ପ୍ରଦର୍ଶନ କରୁଥିବା ନାନା ପ୍ରକାର ବ୍ୟବହାର ମଧ୍ୟରେ ଯେଉଁ ସାମାନ୍ୟତମ ସାଧାରଣ ପ୍ରବୃତ୍ତି ଗୁଡ଼ିକ ପ୍ରଚ୍ଛନ୍ନ ଭାବରେ ଉକ୍ତ ବାହ୍ୟ ଆଚରଣ ଗୁଡ଼ିକର ସୃଷ୍ଟି ନିମିତ୍ତ ଦାୟୀ ସେଗୁଡ଼ିକର ସାମୂହିକ ଏକକ ବ୍ୟକ୍ତିତ୍ୱର ଏକ ଦିଗ ନିର୍ଦ୍ଦେଶ କରେ । ବ୍ୟକ୍ତିତ୍ୱର ଏହି ନିର୍ଦ୍ଦେଶିତ ଦିଗଟି ଗୋଟିଏ ଅନ୍ତଃ ପ୍ରଲକ୍ଷଣ । ବିଭିନ୍ନ ଆଚରଣଗତ ବିଶ୍ଳେଷଣରୁ ଅନ୍ତଃ ପ୍ରଲକ୍ଷଣ ଆବିଷ୍କୃତ ହୋଇଥାଏ । ଅଳ୍ପ ସଂଖ୍ୟକ ଅନ୍ତଃ ପ୍ରଲକ୍ଷଣ ଏକତ୍ରିତ ହୋଇ କେତେକ ଜଟିଳ ବାହ୍ୟ ପ୍ରଲକ୍ଷଣ ସୃଷ୍ଟି କରିଥାନ୍ତି । ଅନ୍ୟ ଉପରେ ପ୍ରଭାବ ବିସ୍ତାର, ଚିନ୍ତନ, ଆବେଗ, ସଂବେଗ ଆଦି ଅନ୍ତଃ ପ୍ରଲକ୍ଷଣର ଉଦାହରଣ ।

କାଟେଲଙ୍କ ମତରେ କେତେକ ସକ୍ରିୟ ଓ ଶକ୍ତିଶାଳୀ ପ୍ରଲକ୍ଷଣ ସାହାଯ୍ୟରେ ମନୁଷ୍ୟର ବ୍ୟକ୍ତିତ୍ୱ ବିକାଶ ଲାଭ କରେ । ଏହି ପ୍ରକ୍ରିୟାରେ ମନୋଭାବ ଆଗ୍ରହକୁ ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟପନ୍ଥା ଗ୍ରହଣ କରିବାରେ ସାମର୍ଥ୍ୟ ଯୋଗାଏ । କୌଣସି ପରିସ୍ଥିତିରେ ଆମର ମନୋଭାବ ଆମକୁ କାର୍ଯ୍ୟକ୍ଷମ ଓ ପ୍ରସ୍ତୁତ କରି ରଖେ । ବ୍ୟକ୍ତିତ୍ୱର ବିକାଶ ଏକ ଜଟିଳ ପ୍ରକ୍ରିୟା । ଏହା ଉଭୟ ଜୈବିକ ଓ ପରିବେଷ୍ଟନୀ ଗତ ଉପାଦାନ ଗୁଡ଼ିକ ଦ୍ୱାରା ପ୍ରଭାବିତ । ଅତଏବ ଗୋଟିଏ ଗୋଟିଏ ପ୍ରଲକ୍ଷଣ ବଂଶାନୁକ୍ରମେ ଓ ପରିବେଷ୍ଟନୀ ଉଭୟ ଦ୍ୱାରା ପ୍ରଭାବିତ । ତେଣୁ କାଟେଲଙ୍କ ମତରେ ବ୍ୟକ୍ତିତ୍ୱ ହେଉଛି ମନୁଷ୍ୟର ବିଭିନ୍ନ ପ୍ରକାର

ପରିବେଷ୍ଟନୀ ପ୍ରତି ପ୍ରଦର୍ଶିତ ଭିନ୍ନମୁଖୀ ପ୍ରତିକ୍ରିୟା ଗୁଡ଼ିକୁ ପରିବର୍ତ୍ତିତ କରିପାରିବାର କ୍ଷମତା ।

**ଆଇସେଙ୍କ୍‌ଙ୍କ ଶ୍ରେଣୀ ବିଭାଗ (H. J. Eyesenk's Classification)** :—ବିଖ୍ୟାତ ଜର୍ମାନ ମନସ୍ତତ୍ତ୍ୱବିତ୍‌ ହାନ୍‌ସ. ଜେ. ଆଇସେଙ୍କ୍‌, ଇଂଲଣ୍ଡରେ ରହି ନାନାଦି ଗବେଷଣା ଚାଲୁରଖିଥିଲେ । ବ୍ୟକ୍ତିତ୍ୱ ସମ୍ପର୍କରେ ତାଙ୍କର ଗବେଷଣାରେ ପରୀକ୍ଷାମୂଳକ (**Experimental**) ଏବଂ ନୈଦାନିକ (**Clinical**) ପଦ୍ଧତିର ସମନ୍ୱୟ ଘଟାଇ ସେ ବ୍ୟକ୍ତିତ୍ୱର ତତ୍ତ୍ୱ ବର୍ଣ୍ଣନା କରିଥିଲେ । ସେ ଲକ୍ଷ୍ୟକଲେ ବ୍ୟକ୍ତିତ୍ୱ ସମ୍ପର୍କରେ ତାଙ୍କ ପୂର୍ବରୁ ପ୍ରଣୀତ ହୋଇଥିବା ତତ୍ତ୍ୱମାନ ଅତ୍ୟଧିକ ମାତ୍ରାରେ ଜଟିଳ ଓ ପରୀକ୍ଷଣ ସାପେକ୍ଷ ନୁହେଁ । ବ୍ୟକ୍ତିତ୍ୱର ଯେଉଁ ଦିଗରେ ପରିସ୍ଫୁଟନ ବା ଆତ୍ମପ୍ରକାଶ ହୁଏ ସେହି ଦିଗ ଗୁଡ଼ିକ ନିର୍ଦ୍ଦେଶ କରିବା ଆଇସେଙ୍କ୍‌ଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ସେ ପ୍ରାୟ ଦଶ ହଜାର ବ୍ୟକ୍ତିଙ୍କର ବ୍ୟକ୍ତିତ୍ୱ ସମ୍ପର୍କରେ ଅନୁଶୀଳନ କରି ବ୍ୟକ୍ତିତ୍ୱର ତିନିଗୋଟି ଦିଗ ନିର୍ଦ୍ଦେଶ କରିଥିଲେ । ସେଗୁଡ଼ିକ ହେଲା ଅନ୍ତର୍ମୁଖିତା (**introversion**) ବହିର୍ମୁଖିତା (**extroversion**), ସ୍ୱାଭାବିକତା—ମାନସିକ ବ୍ୟାଧିଗ୍ରସ୍ତ ।




ଏହିପରି ବ୍ୟକ୍ତିତ୍ୱର ତିନୋଟି ରୂପକୁ ଆଇସେଙ୍କ୍‌ ଦୁଇଟି ମୁଖ୍ୟ ବିଭାଗ ବା ଦିଗରେ ଅନ୍ତର୍ଭୁକ୍ତ କରିଥିଲେ । ପରେ ସେ ତାଙ୍କ ଗବେଷଣାରୁ ଏକ ତୃତୀୟ ଦିଗର ଆବିଷ୍କାର କଲେ । ସେଇ ସର୍ବଶେଷ ଦିଗଟି ହେଲା ମାନସିକ ବିକ୍ଷିପ୍ତତା (**Psychoticism**) । ସେ ଲକ୍ଷ୍ୟକଲେ ଯେଉଁ ବ୍ୟକ୍ତି ଏହି ପ୍ରକାର ମାନସିକ ସ୍ଥିତି ଭୋଗ କରୁଛି ସେ ବିଶେଷ ବାକ୍‌ପଟୁ ନୁହେଁ, ନୂତନ ପରିସ୍ଥିତି ସହ ସମଯୋଜନଶୀଳ ନୁହେଁ । ତାର ଏକାଗ୍ରତା ଦୃଢ଼ ନୁହେଁ କିମ୍ବା ଶିକ୍ଷା ଓ ସ୍ମରଣ ଶକ୍ତି ସେତେ ଉନ୍ନତ ନୁହେଁ । ତାର ଆକାଙ୍କ୍ଷାର ସ୍ତର (**Level of aspiration**) ମଧ୍ୟ ବହୁତ କମ୍‌ । ମାନସିକ ବିକ୍ଷିପ୍ତ ଶ୍ରେଣୀର ବ୍ୟକ୍ତିମାନେ ମାନସିକ ବ୍ୟାଧିଗ୍ରସ୍ତ । ଅନ୍ତର୍ମୁଖୀ ଓ ବହିର୍ମୁଖୀ ବ୍ୟକ୍ତି ମାନଙ୍କଠାରୁ ବେଶ୍‌ ପୃଥକ୍‌ । ମାନସିକ ବିକ୍ଷିପ୍ତ ଶ୍ରେଣୀର ବ୍ୟକ୍ତି ସମ୍ପୂର୍ଣ୍ଣ ଭିନ୍ନ ଲକ୍ଷଣମାନ ପ୍ରଦର୍ଶନ କରେ । ମାନସିକ ବ୍ୟାଧିଗ୍ରସ୍ତ ବ୍ୟକ୍ତିମାନଙ୍କ କ୍ଷେତ୍ରରେ ମାନସିକ ଉପାଦାନ (**Psychological factor**) ଗୁଡ଼ିକ ପ୍ରଧାନ ବା ମୁଖ୍ୟ ଏବଂ ବଂଶାନୁକ୍ରମ

ଓ ସ୍ନାୟୁବିକ ବ୍ୟାଧି ଗୌଣ ହୋଇଥାଏ । କିନ୍ତୁ ମାନସିକ ବିକ୍ଷିପ୍ତତା ପ୍ରଦର୍ଶନ କରୁଥିବା ବ୍ୟକ୍ତି କ୍ଷେତ୍ରରେ ବଂଶାନୁଗୁଣ ଓ ସ୍ନାୟୁବିକ ଆବେଗ ମୁଖ୍ୟ ଭୂମିକା ଗ୍ରହଣ କରିବା ସମୟରେ ମାନସିକ ଉପାଦାନ ଗୌଣ କାର୍ଯ୍ୟ କରିଥାଏ । ଏହାପରେ ବ୍ୟକ୍ତିତ୍ୱର ତିନୋଟି ଦିଗ ପରେ ଆଇସେଙ୍କ ବୁଦ୍ଧିମତ୍ତା (Intelligence) କୁ ଚତୁର୍ଥ ଦିଗ ଭାବରେ ଗ୍ରହଣ କରିଥିଲେ ।

**ପ୍ରଲକ୍ଷଣ ତତ୍ତ୍ୱର ମୌଳିକତା :**—ମନୁଷ୍ୟର ବ୍ୟକ୍ତିତ୍ୱ ସମ୍ବନ୍ଧରେ ବିଭିନ୍ନ ପ୍ରଲକ୍ଷଣରେ ବର୍ଣ୍ଣିବାରେ ମନସ୍ତତ୍ତ୍ୱବିତ୍‌ମାନଙ୍କର ମତ ଭିନ୍ନ ପ୍ରକାରର ହେଲେ ମଧ୍ୟ ସେଗୁଡ଼ିକ ମଧ୍ୟରେ କେତେକ ମୌଳିକ ଓ ସାଧାରଣ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ପ୍ରତ୍ୟେକ ମନୋବୈଜ୍ଞାନିକ ମତ ପ୍ରକାଶ କରନ୍ତି ଯେ ପ୍ରଲକ୍ଷଣ ଗୁଡ଼ିକ ମନୁଷ୍ୟର ବ୍ୟବହାର ସହିତ ଓତଃ ପ୍ରୋତ ଭାବରେ ଜଡ଼ିତ । କୌଣସି ପ୍ରଲକ୍ଷଣ ବ୍ୟକ୍ତିଠାରେ ଏକ ସଂକ୍ଷିପ୍ତ ସମୟ ପାଇଁ ଦେଖାଯାଇ ତତ୍ପରେ ସମ୍ପୂର୍ଣ୍ଣ ଭାବରେ ଲୋପ ପାଇଯାଏ ନାହିଁ । ତାହା ମନୁଷ୍ୟ ଚରିତ୍ରର ଅଂଶ ବିଶେଷ ଏବଂ ଅନୁରୂପ ପରିବେଶ ମଧ୍ୟରେ ଉକ୍ତ ପ୍ରଲକ୍ଷଣର ପୁନଃ ପ୍ରକାଶ ଘଟିଥାଏ । ଦ୍ୱିତୀୟତଃ ପ୍ରଲକ୍ଷଣର ବିଭିନ୍ନ ଦିଗ ସମ୍ପର୍କରେ ସମସ୍ତ ମନଃସ୍ତତ୍ତ୍ୱବିତ୍ ଏକମତ । ଯେ ପ୍ରଲକ୍ଷଣ କେବେହେଲେ ଏକମୁଖୀ ଓ ଏକ ଉଦ୍ଦେଶ୍ୟ ସାଧନକାରୀ ନୁହନ୍ତି । ସେଗୁଡ଼ିକ ଭିନ୍ନ ଭିନ୍ନ ପରିସ୍ଥିତିରେ କେତେବେଳେ ଅଧିକ ମାତ୍ରାରେ ବା କେତେବେଳେ କମ୍ ମାତ୍ରାରେ ଆତ୍ମପ୍ରକାଶ କରିଥାନ୍ତି । ତୃତୀୟତଃ ମନୁଷ୍ୟର ଜନ୍ମଗତ ସ୍ୱଭାବ ଓ ସାମାଜିକ ସ୍ଥିତି ଅନୁସାରେ ପ୍ରଲକ୍ଷଣ ଗୁଡ଼ିକର ହ୍ରାସ ବୃଦ୍ଧିର ପରିବର୍ତ୍ତନ ଘଟେ ।

**ପ୍ରଲକ୍ଷଣ ମତବାଦର କେତେକ ତ୍ରୁଟି :**—ଆଧୁନିକ ମନଃସ୍ତତ୍ତ୍ୱବିତ୍‌ମାନଙ୍କ ଦ୍ୱାରା ପ୍ରଲକ୍ଷଣ ମତବାଦ ବହୁ ଭାବରେ ସମାଲୋଚିତ ହୋଇଛି । ପ୍ରଥମତଃ ପ୍ରଲକ୍ଷଣ ଗୁଡ଼ିକୁ ବିଭିନ୍ନ ମନୋବୈଜ୍ଞାନିକ ବିଭିନ୍ନ ନାମରେ ନାମିତ କରିଥାନ୍ତି । ଦ୍ୱିତୀୟତଃ ଏହି ତତ୍ତ୍ୱ ଅନୁସାରେ ପ୍ରଲକ୍ଷଣ ହେଉଛି ଏକ ପ୍ରକାର ସ୍ୱଭାବ ଯାହା ସ୍ଥାନପରିବର୍ତ୍ତିତ ଏବଂ ପରିସ୍ଥିତିର ପରିବର୍ତ୍ତନ ସହ ପରିବର୍ତ୍ତିତ ହୁଏନାହିଁ । କିନ୍ତୁ ସମୟେ ସମୟେ ଏକ ପରିସ୍ଥିତିରେ ମଧ୍ୟ ଆମେ ବିଭିନ୍ନ ପ୍ରଲକ୍ଷଣର ପରିପ୍ରକାଶ କରିଥାଉଁ । ଅତଏବ ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ବ୍ୟକ୍ତିତ୍ୱ ପରିବର୍ତ୍ତିତ ହେଉଥିବାରୁ ପ୍ରଲକ୍ଷଣ ଗୁଡ଼ିକ ମଧ୍ୟ ଗତିଶୀଳ ଓ ପରିବର୍ତ୍ତନ ଶୀଳ । ତୃତୀୟତଃ ବ୍ୟକ୍ତି ମଧ୍ୟରେ କୌଣସି ପ୍ରଲକ୍ଷଣ ଶୂନ୍ୟ (0)ରୁ ଆରମ୍ଭ ହୁଏ ନାହିଁ । ପ୍ରଲକ୍ଷଣ ଗୁଡ଼ିକ କିଛି ମାତ୍ରାରେ ବ୍ୟକ୍ତି ମଧ୍ୟରେ ଅନ୍ତର୍ନିହିତ ଓ କିଛି ମାତ୍ରାରେ ବାହ୍ୟ ଜଗତ ସଂସ୍ପର୍ଶରେ ଆସି ବିକଶିତ ହୋଇଥାନ୍ତି । ଚତୁର୍ଥରେ ପ୍ରଲକ୍ଷଣ ଗୁଡ଼ିକୁ କେତେକ ଶ୍ରେଣୀଭୁକ୍ତ କରିବା ସମ୍ଭବ ନୁହେଁ । ପଞ୍ଚମରେ ପ୍ରଲକ୍ଷଣ ଗୁଡ଼ିକୁ ମାପ କରିବା ପାଇଁ କୌଣସି ପରିମାପକ ଯନ୍ତ୍ର ନାହିଁ କିମ୍ବା ପ୍ରୟୋଗଶାଳା ବା ପରୀକ୍ଷାଗାରରେ

ଏହାର ବିଶ୍ଳେଷଣ କରିବା ସମ୍ଭବ ନୁହେଁ । ଏହାର ପରୀକ୍ଷାର ସଫଳତା ବ୍ୟକ୍ତିର ଅନୁଭବ ବ୍ୟକ୍ତ କରିବା କ୍ଷମତା ଉପରେ ନିର୍ଭର କରେ ଏବଂ ନିଜର, ଅନୁଭବ ଓ ଆବେଗ ଗୁଡ଼ିକ ବ୍ୟକ୍ତ କରିବା ସମୟରେ କୌଣସି ବ୍ୟକ୍ତି ଭୁଲ ବା ଅତିରଞ୍ଜିତ ବ୍ୟାଖ୍ୟା ପରିବେଷଣ କରିପାରେ ।

ମନୋବିଶ୍ଳେଷଣାତ୍ମକ ତତ୍ତ୍ୱ (**Psycho-analytical Theories of Personality** :—କେତେକ ବ୍ୟକ୍ତିର ପ୍ରଦର୍ଶିତ ବ୍ୟବହାରରେ ଭିନ୍ନତାକୁ ଭିତ୍ତିଭୂମି କରି ବ୍ୟକ୍ତିତ୍ୱର ବ୍ୟାଖ୍ୟା କରିବା ସମୟରେ ଅନ୍ୟ କେତେକ ଲକ୍ଷଣ ଗୁଡ଼ିକ ସାହାଯ୍ୟରେ ବ୍ୟକ୍ତିତ୍ୱର ବର୍ଗ ନିର୍ଦ୍ଦେଶିତ କରିଥାନ୍ତି । କିନ୍ତୁ ଅନ୍ୟ କେତେକ ଶ୍ରେଣୀର ମନଃସ୍ତତ୍ତ୍ୱବିଦ୍ ମନରେ ଚେତନ ଓ ଅବଚେତନ ଅବସ୍ଥାର ବିଶ୍ଳେଷଣ କରି ମନୁଷ୍ୟର ବ୍ୟକ୍ତିତ୍ୱ ଉପରେ ଆଲୋକପାତ କରିଥାନ୍ତି ।

ଫ୍ରୟେଡ଼ଙ୍କ ମତବାଦ :—ସିଗ୍‌ମଣ୍ଡ ଫ୍ରୟେଡ଼୍ (**Sigmund Freud**) ମନୋବିଶ୍ଳେଷଣାତ୍ମକ ତତ୍ତ୍ୱର ପ୍ରବର୍ତ୍ତକ ଭାବରେ ସ୍ୱୀକୃତ । ମ୍ୟାକ୍ ଡୁଗେଲ (**Mc. Dougall**)ଙ୍କ ମତରେ ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ଯୁଗରେ ଯେଉଁ ବୈଜ୍ଞାନିକମାନେ ମନୋବିଜ୍ଞାନର ବିକାଶ ପାଇଁ ଗବେଷଣା କରିଯାଇଛନ୍ତି ସେମାନଙ୍କ ମଧ୍ୟରେ ଫ୍ରୟେଡ଼ ସର୍ବଶ୍ରେଷ୍ଠ । ମନୁଷ୍ୟ ମନର ବିଭିନ୍ନ ଚେତନା ଓ ଗୂଢ଼ ପ୍ରବୃତ୍ତି ଗୁଡ଼ିକୁ ଫ୍ରୟେଡ ବିଜ୍ଞାନ ସମ୍ମତ ଉପାୟରେ ବିଶ୍ଳେଷଣ କରିବାକୁ ସକ୍ଷମ ହୋଇଥିଲେ । ଫଳତଃ ତାଙ୍କର ପ୍ରଣାଳୀ ଅଧିକ ମୂଲ୍ୟବାନ୍ ଓ ଉଦ୍ଦେଶ୍ୟ ସାଧକ ହୋଇପାରିଥିଲା ।

ମନୋବିଶ୍ଳେଷଣ ଦୁଇଟି ଉପାୟରେ ଫଳପ୍ରଦ ହୋଇଥାଏ । ପ୍ରଥମତଃ ବ୍ୟକ୍ତିତ୍ୱ ନିର୍ଦ୍ଧାରଣ ଓ ଏହାର ବିଭିନ୍ନ ଦିଗ ଉପରେ ଆଲୋକ ପାତ କରିବା ପାଇଁ ଏହା ଏକ ସର୍ବୋତ୍କୃଷ୍ଟ ପନ୍ଥା ଏବଂ ଦ୍ୱିତୀୟତଃ ମାନସିକ ବିକାର ଓ ମାନସିକ ଅସ୍ୱାଭାବିକତା ସମ୍ପର୍କରେ ଅଧ୍ୟୟନ କରିବା ପାଇଁ ଏହା ଏକ ବିଜ୍ଞାନ ସମ୍ମତ ପ୍ରଣାଳୀ ରୂପେ ପ୍ରମାଣିତ ହୋଇଥାଏ । ମନୋବିଶ୍ଳେଷଣ ତତ୍ତ୍ୱ ଅନୁସାରେ ମନୁଷ୍ୟର ପ୍ରତ୍ୟେକ ଅସ୍ୱାଭାବିକତାର ଏକ ମୂଳ କାରଣ ଥାଏ । ଏହି ମୂଳ କାରଣଟି ସର୍ବପ୍ରକାର ଅସ୍ୱାଭାବିକତାର ଉତ୍ସ । ଏହି ମୂଳ କାରଣ ବା ଉତ୍ସର ଚିକିତ୍ସା କରାଯାଇ ପାରିଲେ ଅସ୍ୱାଭାବିକତା ଆପେ ଆପେ ଦୂର ହୋଇଥାଏ । ପୁନଶ୍ଚ ଏହି ମୂଳ କାରଣ ବା ଉତ୍ସ ମନୁଷ୍ୟର ଅଭିପ୍ରେରଣ (**motive**) ଦ୍ୱାରା ନିୟନ୍ତ୍ରିତ । ଏହା ଅଚେତନ ମନ ମଧ୍ୟରେ ଲୁକ୍‌କାୟିତ ଅବସ୍ଥାରେ ଅବସ୍ଥାନ କରିଥାଏ । ଏହି ଅଭିପ୍ରେରଣ ଗୁଡ଼ିକ ଯେଉଁମାନେ ମନୁଷ୍ୟ ବ୍ୟବହାରରେ ଅସ୍ୱାଭାବିକତା ସୃଷ୍ଟି ପାଇଁ ଦାୟୀ ବାଲ୍ୟକାଳର ବିଭିନ୍ନ ଅଭିଜ୍ଞତାରୁ ଜନ୍ମ ନେଇଥାନ୍ତି ।

## ଫ୍ରଏଡ଼ଙ୍କ ମତବାଦରେ ମୌଳିକ ଧାରଣା (Basic Concepts)—

(୧) ଅଚେତନ ମନ (Unconscious mind) :—ବ୍ୟକ୍ତିର ଯେଉଁ ମାନସିକ କାର୍ଯ୍ୟ ଗୁଡ଼ିକ ଚେତନ ଅବସ୍ଥାରେ ପରିଲକ୍ଷିତ ହୁଏ ନାହିଁ । ଫ୍ରଏଡ଼ଙ୍କ ମତରେ ସେଗୁଡ଼ିକ ଅଚେତନ ମନରେ ସମ୍ପନ୍ନ ହୋଇଥାଏ । ବ୍ୟକ୍ତିର ସମସ୍ତ ଆଚରଣରେ ଏକ ଅତି ଅଳ୍ପ ଅଂଶ ଚେତନ ଅବସ୍ଥାର ପ୍ରକାଶିତ ହୁଏ । ଯେପରି ଏକ ହିମ ଶୈଳର ଦଶ ଭାଗରୁ ଏକ ଭାଗ ମାତ୍ର ସମୁଦ୍ର ଜଳର ଉପରକୁ ଦେଖାଯାଏ ଓ ଅବଶିଷ୍ଟ ନଅଭାଗ ଜଳ ମଧ୍ୟରେ ନିମଜ୍ଜିତ ଥାଏ । ଠିକ୍ ସେହିପରି ମନୁଷ୍ୟର ସମସ୍ତ ଚିନ୍ତାଧାରା ଓ କାର୍ଯ୍ୟକଳାପ, ବ୍ୟକ୍ତିତ୍ୱର ବିଭିନ୍ନ ଗୁଣ ଓ ଦୋଷ ଇତ୍ୟାଦି ଅତ୍ୟଳ୍ପ ପରିମାଣରେ ଚେତନ ଅବସ୍ଥାରେ ଦେଖାଦିଏ ଏବଂ ଅନ୍ୟ ଏକ ବିଶାଳ ଅଂଶ ଅଚେତନ ମନରେ ଏବଂ ବ୍ୟକ୍ତିର ଅଜ୍ଞାତ ମଧ୍ୟରେ ରହିଥାଏ । ଏହି ଅଚେତନତା ଚେତନ ଅପେକ୍ଷା ଅଧିକ ଶକ୍ତିଶାଳୀ । ଏହା ସର୍ବଦା ସୁଖକର ଅନୁଭୂତିର ସନ୍ଧାନ କରିଥାଏ । ଅସନ୍ତୁଷ୍ଟତା, କଷ୍ଟଦାୟକ, ଅନୁଭୂତି, ନିଷ୍ଠୁରତା, ଅହଂଭାବ ଏବଂ ବିଶୃଙ୍ଖଳ ଯୌନ ଆବେଗ ସବୁ ଅଚେତନ ମନ ମଧ୍ୟକୁ ଅବଦମିତ ହୋଇଥାଏ । ତେଣୁ ଚେତନ ଓ ଅଚେତନ ମଧ୍ୟରେ ପାର୍ଥକ୍ୟ ଦେଖାଯାଏ । ଅଚେତନ ମନର ଅବଦମିତ ଓ ନିଷେଧିତ ପ୍ରବୃତ୍ତି ଗୁଡ଼ିକ ଚେତନ ସ୍ତରକୁ ଆସି ଆତ୍ମପ୍ରକାଶ କରିବାକୁ ସତତ ଚେଷ୍ଟିତ ହୋଇଥାନ୍ତି । କିନ୍ତୁ ଚେତନ ସ୍ତରକୁ ଆସି ନପାରିବାରୁ ଏହି ପ୍ରବୃତ୍ତି ଗୁଡ଼ିକ ବିଭିନ୍ନ ପ୍ରକାର ସ୍ୱପ୍ନ, ବାକ୍ୟ ସ୍ଖଳନ (Slip of tongye) ଆଦି ରୂପରେ ପ୍ରକାଶ ଲାଭ କରିଥାନ୍ତି ।

(୨) ମୂଳ ପ୍ରବୃତ୍ତି (Instinct) :—ମନୁଷ୍ୟର ସମସ୍ତ ପ୍ରକାର ବ୍ୟବହାର ମୂଳରେ ଏକ ପ୍ରବୃତ୍ତି ନିହିତ ଥାଏ ଏବଂ ଏହି ମୂଳ ପ୍ରବୃତ୍ତି ଯୋଗୁଁ ବ୍ୟବହାର ନିୟନ୍ତ୍ରିତ ଓ ସଙ୍ଗଠିତ ହୋଇଥାଏ । ଏହି ମୂଳ ପ୍ରବୃତ୍ତି ଦୁଇ ଭାଗରେ ବିଭକ୍ତ, ପ୍ରଥମଟି ଏରୋସ (Eros) ବା ସ୍ନେହ, ପ୍ରେମ ଓ ଆତ୍ମ-ସଂରକ୍ଷଣ (Self-preservation)ର ପ୍ରବୃତ୍ତି ଏବଂ ଅନ୍ୟଟି ଥାନାଟୋସ୍ (Thanatos) ବା ମୃତ୍ୟୁର ପ୍ରବୃତ୍ତି ।

(୩) ମନର ଗଠନ :— ମନୋବିଶ୍ଳେଷଣ ତତ୍ତ୍ୱ ଅନୁସାରେ ସମୁଦାୟ ମନକୁ ଦ୍ୱି-ତ୍ରିଖଣ୍ଡିତ କରାଯାଇପାରେ । ପ୍ରଥମ ବିଭାଗଟି ଚେତନ, ଅବଚେତନ ଓ ଅଚେତନ ଓ ଦ୍ୱିତୀୟ ବିଭାଗଟି (ID) ଅହମ୍ (Ego) ଏବଂ ପରମ ଅହମ୍ (Super ego) । କିନ୍ତୁ ମନ ମଧ୍ୟରେ ଚେତନ, ଅବଚେତନ ଓ ଅଚେତନ ଅପର ତିନୋଟି ସହ ସମାନ ପରି-ସୀମାରେ ଅବସ୍ଥାନ କରିନ୍ତୁନାହିଁ । ଇଡ୍ ପ୍ରାୟ ସଂପୂର୍ଣ୍ଣରୂପେ ଅଚେତନ ମନ ମଧ୍ୟରେ ରହି ଥାଏ । ପରମଅହମ୍ ମଧ୍ୟ ଅଚେତନ ମଧ୍ୟରେ ଥାଏ କିନ୍ତୁ ଏହା ଅବଚେତନକୁ ସ୍ପର୍ଶ କରେ ।

ଅପର ପକ୍ଷରେ ଅହମ୍ ପ୍ରତ୍ୟେକ ସ୍ତରକୁ ସ୍ପର୍ଶ କରିଥାଏ । ଜାଗ୍ରତ ଅବସ୍ଥାରେ ଅହମ୍ ଚେତନ ସ୍ତର ମଧ୍ୟରେ କାର୍ଯ୍ୟକରେ ଓ ନିଦ୍ରା ସମୟରେ ଏହା ଅବଚେତନ ଓ ଅଚେତନ ସ୍ତର ମଧ୍ୟରେ କାର୍ଯ୍ୟ କରିଥାଏ । ଆବେଗିତ ବା ସମ୍ମୋହିତ ସମୟରେ ଏହା ଅବଚେତନ ମନ ମଧ୍ୟରେ କାର୍ଯ୍ୟ କରିଥାଏ ।




ଇଡ୍ (Id) :—ଏହା ମନୁଷ୍ୟର ସହଜାତ ପ୍ରବୃତ୍ତି । ଏହା ମନୁଷ୍ୟକୁ କାର୍ଯ୍ୟ କରିବାର ପ୍ରେରଣା ଓ ଶକ୍ତି ଯୋଗାଏ । ଇଡ୍ ହେଉଛି ମନୁଷ୍ୟ ମଧ୍ୟରେ ସମସ୍ତ ଆଦିମ ଓ ପାଶବିକ ପ୍ରବୃତ୍ତି ଗୁଡ଼ିକର ସମାହାର । ଏଗୁଡ଼ିକ ମୌଳିକ ଏବଂ ଅନିୟନ୍ତ୍ରିତ । ଏଗୁଡ଼ିକୁ ମନୁଷ୍ୟ ବ୍ୟକ୍ତିତ୍ୱର କଞ୍ଚାମାଲ୍ (Raw material) ବୋଲି ମଧ୍ୟ କୁହାଯାଇ ପାରେ । ମନୁଷ୍ୟ ମନରେଥିବା ଯୌନ, ଆକ୍ରମଣ ଓ ନଷ୍ଟ କରିବାର ଅଭିପ୍ସା ଗୁଡ଼ିକ ଏହାର ଅନ୍ତର୍ଭୁକ୍ତ । ଏହା ଭଲ ଓ ମନ୍ଦର ବିଚାର ନକରି କେବଳ ଆନନ୍ଦ ଆହରଣ ଉଦ୍ଦେଶ୍ୟରେ କାର୍ଯ୍ୟକରେ । ଇଡ୍‌ର ସ୍ଥାନ ଅଚେତନ ସ୍ତରରେ ଥିଲେ ମଧ୍ୟ ସମୟ ସମୟରେ ଏହା ଚେତନ ମଧ୍ୟକୁ ପ୍ରବେଶ କରିଥାଏ । କିନ୍ତୁ ଚେତନ ସ୍ତର କେତେ ନୈତିକତା, ଶୃଙ୍ଖଳା ଓ ନିୟମର ବଶବର୍ତ୍ତୀ ହୋଇଥିବାରୁ ଏହା ପୁନଶ୍ଚ ଅଚେତନ ସ୍ତରକୁ ଅବଦମିତ ହୋଇଥାଏ । ଇଡ୍‌ର ମୌଳିକ ରୂପ ସମୟ ସମୟରେ ଶିଶୁର କାର୍ଯ୍ୟକଳାପ ମାଧ୍ୟମରେ ପ୍ରଦର୍ଶିତ ହୋଇଥାଏ । ଅନ୍ୟ ସମୟରେ ଏହାର ଆତ୍ମପ୍ରକାଶ ମନ ବିକ୍ଷିପ୍ତ (Psychotic), ଧର୍ଷକାମୀ (Sadist) ଓ ଯୌନ ରୋଗୀମାନଙ୍କ କ୍ଷେତ୍ରରେ ଘଟିଥାଏ । ସେମାନେ କୌଣସି ପ୍ରତିବନ୍ଧକ ଓ ନିୟମ କାନୁନକୁ ଭ୍ରୂକ୍ଷେପ କରନ୍ତି ନାହିଁ ।

ବିଫଳ (Frastration)ରୁ ସୃଷ୍ଟି ହୋଇଥିବା ଉତ୍ତେଜନା ଯୋଗୁଁ ଇଡ୍ ବ୍ୟବହାର ଆତ୍ମପ୍ରକାଶ କରିବାର ଫୁସ୍ରେଡ୍ ମତ ପ୍ରଦାନ କରନ୍ତି । ଏହାଦ୍ୱାରା ଅଚେତନ ମନରେ ଥିବା ବିଫଳର କାରଣ ବା ମୂଳ ଉତ୍ସ ଚେତନ ମନ ମଧ୍ୟକୁ ଚାଲିଆସେ ଓ ବ୍ୟକ୍ତି ସେଗୁଡ଼ିକୁ ଚରିତାର୍ଥ କରିବାକୁ ଚେଷ୍ଟା କରେ ।

**ଅହମ୍ (Ego)** :—ଇଡ୍ ଆତ୍ମପ୍ରକାଶ କରିବା ସମୟରେ ଏହା କେବଳ ନିଜର ପାଶବିକ ପ୍ରବୃତ୍ତିକୁ ଚରିତାର୍ଥ କରିବାକୁ ଚାହୁଁଥିବାରୁ ଏହାର ଦମନ କରାଯିବା ଏକାନ୍ତ ଆବଶ୍ୟକ । ଇଡ୍ କେବଳ ଯୌନ କାର୍ଯ୍ୟ କରିବାକୁ ସୁଯୋଗ ପାଇବା ଉଚିତ୍ ଯେଉଁ ପରିବେଷ୍ଟନୀର ସହ୍ୟ କରିବାର ସୀମା ମଧ୍ୟରେ ସୀମାବଦ୍ଧ । ତେଣୁ ଇଡ୍‌କୁ ନିୟନ୍ତ୍ରଣ କରୁଥିବା ପ୍ରବୃତ୍ତିଟିର ନାମ ହେଉଛି ଅହମ୍ । ଏକ ପକ୍ଷରେ ପାଶବିକ କାର୍ଯ୍ୟରୁ ଆନନ୍ଦ ଲାଭ କରିବା ଓ ଅନ୍ୟ ପକ୍ଷରେ ଏଥିପାଇଁ ଭୟ ଓ ଦଣ୍ଡଭୋଗ କରିବା ମଧ୍ୟରେ ସମନ୍ୱୟ ରକ୍ଷା କରିବା ଅହମ୍‌ର କାର୍ଯ୍ୟ । ମନର କେନ୍ଦ୍ର ସ୍ଥଳରେ ଅହମ୍ ଅବସ୍ଥାପିତ ହୋଇ ଇଡ୍ ଓ ପରମ୍ ଅହମ୍ (Super ego) ମଧ୍ୟରେ ସନ୍ତୁଳନ ରକ୍ଷାକରେ । ବାସ୍ତବତା ସହ ବ୍ୟକ୍ତିତ୍ୱକୁ ଖାପ୍ ଖୁଆଇ ଇଡ୍‌ର ସ୍ୱେଚ୍ଛା ପରିତୋଷ କରିବା ଅହମ୍‌ର କାର୍ଯ୍ୟ ।

ଅହମ୍ ମନର ଉତ୍ତେଜନାକୁ ଶାନ୍ତ କରାଇବା ସଙ୍ଗେ ସଙ୍ଗେ ଆନନ୍ଦ ପ୍ରଦାନ ମଧ୍ୟ କରିଥାଏ । ଅହମ୍ ବ୍ୟକ୍ତି ମଧ୍ୟରେ ପ୍ରତିରୋଧ ଶକ୍ତି ସୃଷ୍ଟି କରେ । ଏହା ମନ ମଧ୍ୟରେ ସର୍ବୋଚ୍ଚ ଶାସକର ଭୂମିକା ଗ୍ରହଣ କରିଥାଏ ଓ ନିଜର ଚେଷ୍ଟା କ୍ଷମତା ଦ୍ୱାରା ନୈତିକ ଧର୍ମର ଧାରା ବ୍ୟକ୍ତ କରେ । ଏହା ଇଡ୍‌କୁ ସମ୍ପୂର୍ଣ୍ଣରୂପେ ନଷ୍ଟ ନକଲେ ମଧ୍ୟ, କେତେକ ବାସନା ଚରିତାର୍ଥ କରିବାକୁ ସୁଯୋଗ ପ୍ରଦାନ କରିଥାଏ । କିନ୍ତୁ ଏ ସମୟରେ ବୁଦ୍ଧିମତ୍ତା ଓ ନୈତିକତାର ପ୍ରୟୋଗ ମଧ୍ୟ କରିଥାଏ । ଇଡ୍ ଓ ଅହମ୍‌ର ସମ୍ପର୍କ ବୁଝାଇବାକୁ ଯାଇଁ ଫ୍ରଏଡ୍ କହିଥିଲେ ଯେ, ଇଡ୍ ଯଦି ଏକ ଅଶ୍ୱ ହୁଏ ତେବେ ଅହମ୍ ଏହାର ଆରୋହୀ । ଅଧିକାଂଶ ସମୟରେ ଆରୋହୀ ଅଶ୍ୱର ଗତିକୁ ନିୟନ୍ତ୍ରିତ କରିଥାଏ କିନ୍ତୁ ସମସ୍ତ ସମୟରେ ଆରୋହୀ ଅଶ୍ୱର ନିର୍ଦ୍ଦେଶରେ ଚାଳିତ ହୁଏ ।

ବ୍ୟକ୍ତି ମଧ୍ୟରେ ଅହମ୍ ଧୀରେ ଧୀରେ କ୍ରମଶଃ ବିକଶିତ ହୁଏ । ମାନସିକ ଓ ସାମାଜିକ ପ୍ରବୃତ୍ତିଗୁଡ଼ିକ ସାହାଯ୍ୟରେ ଶିଶୁ ପ୍ରଥମେ ଯେତେବେଳେ "ମୁଁ" 'ମୋର' ଓ 'ମୋତେ' ଇତ୍ୟାଦି ଧାରଣା ଗୁଡ଼ିକର ଆହରଣ କରେ ତାହାହିଁ ଅହମ୍‌ର ଜନ୍ମ ନେବାର ସମୟ । କ୍ରମଶଃ ବାସ୍ତବତାର ସଂସ୍ପର୍ଶରେ ଆସି ଶିଶୁ ନିଜର ପ୍ରବୃତ୍ତି ଗୁଡ଼ିକୁ ଶାନ୍ତକରି ଆନନ୍ଦ ଲାଭ କରିବାର "ସମାଜ-ସମ୍ମତ" ଉପାୟମାନ ଖୋଜିବସେ । ଫଳତଃ ତା' ମନରେ ଇଡ୍ ନିୟନ୍ତ୍ରିତ ହୁଏ । ଯଦି ଅହମ୍ ଇଡ୍‌କୁ ନିୟନ୍ତ୍ରିତ କରିବାରେ ଅସମର୍ଥ ହୁଏ ଅର୍ଥାତ୍ ବ୍ୟକ୍ତି ଜୀବନର ବାସ୍ତବତାକୁ ଠିକ୍ ରୂପେ ହୃଦୟଙ୍ଗମ କରି ନପାରେ ତେବେ ତା'ର ବ୍ୟକ୍ତିତ୍ୱରେ ଅସମନ୍ୱୟ ପରିଲକ୍ଷିତ ହୁଏ ଯାହା ଫଳରେ ବ୍ୟକ୍ତି ଅସ୍ୱାଭାବିକ ଓ ବିଶୃଙ୍ଖଳ ଆଚରଣ ସମ୍ପନ୍ନ ହୋଇଥାଏ ।

**ପରମ ଅହମ୍ (Super Ego)** :—ଏହା ବ୍ୟକ୍ତିତ୍ୱ ମଧ୍ୟରେ ଅନ୍ତର୍ନିହିତ ଏବଂ ପାରିବାରିକ ପ୍ରଭାବ, ପରିବେଷ୍ଟନୀର ବାସ୍ତବତା ଓ ଶୈଶବର ଅଭିଜ୍ଞତାକୁ ମନର

ଆଭ୍ୟନ୍ତରରେ ଲୁକ୍କାୟିତ କରି ରଖିଥାଏ । ଅହମ୍‌ପରି ଏହା ଭୟ ବା ଦଣ୍ଡ ପାଇବାର ଆଶଙ୍କା ଯୋଗୁଁ ନୈତିକତାର ପରିପନ୍ଥୀ ହୁଏନାହିଁ । ଏହା ମୌଳିକ ଭାବେ ନ୍ୟାୟ ନୈତିକତା ପୂର୍ଣ୍ଣ ପ୍ରବୃତ୍ତି ଏବଂ ସେହି ଭାବରେ ବ୍ୟକ୍ତିତ୍ୱକୁ ପ୍ରଭାବିତ କରେ । ଶୈଶବରେ ଇଡ୍ ପ୍ରବୃତ୍ତି ପ୍ରଦର୍ଶନ ସମୟରେ ପିତା ମାତା ଏହାର ବିରୁଦ୍ଧାଚରଣ କରିଥାନ୍ତି ଓ ଏଥିପାଇଁ ଭୟ ମଧ୍ୟ ପ୍ରଦର୍ଶନ କରାଇଥାନ୍ତି । କ୍ରମଶଃ ଶିଶୁ ଉକ୍ତ କାର୍ଯ୍ୟଗୁଡ଼ିକରୁ ନିଜକୁ ନିବୃତ୍ତ କରିବାକୁ ଚେଷ୍ଟାକରେ ଏବଂ ଏଥିପାଇଁ ନିଜକୁ ଦୋଷୀ ମନେକରି ତଦନୁରୂପ ଆବେଗ ପ୍ରକାଶ କରେ । ଯେତେବେଳେ ବ୍ୟକ୍ତିର ବୃଦ୍ଧି ପୂର୍ଣ୍ଣତା ପ୍ରାପ୍ତ ହୁଏ ତା' ବ୍ୟକ୍ତିତ୍ୱ ମଧ୍ୟରେ ପରମ୍ ଅହମ୍ ସମ୍ପୂର୍ଣ୍ଣ ରୂପେ ବିକଶିତ ହୋଇଥାଏ ।

ଇଡ୍, ଅହମ୍, ଓ ପରମ ଅହମ୍ ପରସ୍ପର ମଧ୍ୟରେ ସଂଯୋଜିତ ହୋଇଥାନ୍ତି । ପ୍ରତ୍ୟେକଙ୍କର କାର୍ଯ୍ୟ ଭିନ୍ନ ହୋଇଥିଲେ ମଧ୍ୟ କୌଣସି ଅନ୍ୟଟିର ବିନା ସାହାଯ୍ୟରେ କାର୍ଯ୍ୟ କରେ ନାହିଁ । ସମସ୍ତ ସାଙ୍ଗଠନିକ ଶକ୍ତି, ଆବଶ୍ୟକତା ଓ ଆକାଂକ୍ଷାର ମୂଳ ଉତ୍ସ ଭାବେ ଏହି ତିନୋଟି ପ୍ରବୃତ୍ତି କାର୍ଯ୍ୟ ସମ୍ପାଦନ କରିଥାନ୍ତି । ଏଥିପାଇଁ ଏକ ଉଦାହରଣ ଗ୍ରହଣ କରାଯାଇପାରେ । ମନେ କରାଯାଉ ଜଣେ ଶିଶୁ ଏକ ନୂଆ କଟୁରୀଟିଏ ପାଇଲେ ଗଛ ପତ୍ର ହାଣି ସେଥିରୁ ଆନନ୍ଦ ଅନୁଭବ କରେ । ସେ ଏହି କାର୍ଯ୍ୟ ନିଜ ମଧ୍ୟରେ ଥିବା ଇଡ୍‌ର ପ୍ରଭାବରେ କରୁଥାଏ । ଏହାପରେ ତାର ପିତା ମାତା ତାକୁ ଏ କାର୍ଯ୍ୟ କରିବାକୁ ନିବୃତ୍ତ କରନ୍ତି ଓ ସେଥିପାଇଁ ଦଣ୍ଡ ଦେବାର ଭୟ ମଧ୍ୟ ପ୍ରଦର୍ଶନ କରନ୍ତି । ଫଳ ସ୍ୱରୂପ ଶିଶୁଟି ନିଜର ଅହମ୍ ଦ୍ୱାରା ପରିଚାଳିତ ହୋଇ କେବଳ ପିତା ମାତାଙ୍କ ଅଲକ୍ଷ୍ୟରେ ସେ କାର୍ଯ୍ୟ କରେ ଓ ଏପରି ଅନାବଶ୍ୟକ ଭାବୁଥିବା ବୃକ୍ଷ ଗୁଡ଼ିକ ଛେଦନ କରେ । ଏହା ଫଳରେ ସେ ନିଜ ମନର ଆନନ୍ଦ ଉପଲବ୍ଧି କରିବା ସଙ୍ଗେ ସଙ୍ଗେ ବାସ୍ତବିକତା ପ୍ରତି ମଧ୍ୟ ଦୃଷ୍ଟି ଦେଇଥାଏ । କିଛି ବର୍ଷପରେ ସେହି ଶିଶୁଟି ପିତା ମାତାଙ୍କର ଅନୁପସ୍ଥିତିରେ ମଧ୍ୟ ବୃକ୍ଷ ଲତା ଛେଦନ କରେନାହିଁ କାରଣ ତା ମନର ନୈତିକ ମନୋବୃତ୍ତି ତାହାକୁ ଏହା କରିବାକୁ ନିବୃତ୍ତ କରେ । ଏଠାରେ ତାର ମନର ପରମ ଅହମ୍ କାର୍ଯ୍ୟ କରିଥାଏ ।

ଅହମ୍ ଓ ପରମ ଅହମ୍ ପ୍ରବୃତ୍ତି ଗୁଡ଼ିକ ମନୁଷ୍ୟ ମଧ୍ୟରେ ସମ୍ପୂର୍ଣ୍ଣ ନୁହନ୍ତି । ଫଳତଃ ସମୟ ସମୟରେ ଇଡ୍‌ର ଶିଶୁ ସୁଲଭ ନଷ୍ଟ କରିବାର ପ୍ରବୃତ୍ତି ମନରେ ଜାଗ୍ରତ ହୁଏ । ଅସ୍ୱାଭାବିକତା ସମୟରେ ଅହମ୍ ମଧ୍ୟରେ ବ୍ୟବଧାନ ବୃଦ୍ଧିପାଏ ଏବଂ ସେଗୁଡ଼ିକ ଆବଶ୍ୟକ ରୂପେ ବିକଶିତ ହୋଇପାରନ୍ତି ନାହିଁ । ଫଳ ସ୍ୱରୂପ ବ୍ୟକ୍ତିର ପ୍ରତ୍ୟକ୍ଷଣ ((Perception) ବାସ୍ତବିକତାର ପରିପନ୍ଥୀ ହୋଇପାରେ ନାହିଁ ।

**ଲିବିଡୋ ଏବଂ ଶୈଶବ କାଳୀନ କାମ ପ୍ରବୃତ୍ତି (Libido and Infantile Sexuality** :—ଲିବିଡୋ, ଇଡ୍ (Id) ଏକ ଅଂଶ ବିଶେଷ ଏବଂ

ଏହା ଯୌନ କାର୍ଯ୍ୟ କଳାପରୁ ଆନନ୍ଦ ଆହରଣ କରେ । ପ୍ରାଥମିକ ସ୍ତରରେ ଏହା ଇଡ୍ ଦ୍ୱାରା ନିୟନ୍ତ୍ରିତ ହେଲେ ମଧ୍ୟ ପରବର୍ତ୍ତୀ ଅବସ୍ଥାରେ ଏହା ଅହମ୍ ଓ ପରମ ଅହମ୍ର କାର୍ଯ୍ୟ ପରିସରର ଅନ୍ତର୍ଭୁକ୍ତ ହୋଇଥାଏ । ଯୌନ ବାସନା ଅନ୍ୟାନ୍ୟ ବାସନା ପରି ଏକ ସ୍ୱତଃ ଓ ସାଧାରଣ କାର୍ଯ୍ୟ । କିନ୍ତୁ ଫ୍ରଏଡ୍‌ଙ୍କ ମତରେ ଏହା ମନୁଷ୍ୟର ବ୍ୟକ୍ତିତ୍ୱକୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ପ୍ରଭାବିତ କରିଥାଏ ଏବଂ ଏହାର ପ୍ରଭାବ ମନୁଷ୍ୟର ଅନ୍ୟାନ୍ୟ ବାସନାର ପ୍ରଭାବ ଠାରୁ ଯଥେଷ୍ଟ ଅଧିକ । ଲିବିଡ଼ୋ ସର୍ବଦା ପରିବର୍ତ୍ତନଶୀଳ । କୌଣସି ସମୟରେ ଏହା ଏକ ବସ୍ତୁ ସହ ସଂଯୁକ୍ତ ହୋଇ ଅନ୍ୟ ସମୟରେ ଉକ୍ତ ବସ୍ତୁଠାରୁ ପୃଥକ୍ ହୋଇଯାଇପାରେ । ନବ ଜାତ ଶିଶୁର ସମସ୍ତ ଶରୀର ଲିବିଡ଼ୋ ଦ୍ୱାରା ସଂଯୁକ୍ତ ଥାଏ ଏବଂ ପରେ କେବଳ ଚର୍ମ ସହିତ ସଂଯୁକ୍ତ ହୁଏ । ତେଣୁ ଶିଶୁକୁ କୋଳ କଲେ ସେ ଆନନ୍ଦ ଅନୁଭବ କରିଥାଏ । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଏହା ଅନ୍ୟାନ୍ୟ ଅଙ୍ଗ ପ୍ରତ୍ୟଙ୍ଗ ସହ ସଂଯୁକ୍ତ ହୁଏ ଯାହାକୁ ସ୍ପର୍ଶ କଲେ ମନୁଷ୍ୟ ଆନନ୍ଦ ଲାଭ କରେ । ଅତଏବ ଶୈଶବଠାରୁ ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ଲିବିଡ଼ୋ ମନୁଷ୍ୟର କୌଣସି ନା କୌଣସି ଅଙ୍ଗସହ ସଂଯୁକ୍ତ ଥାଏ । ଫ୍ରଏଡ୍‌ଙ୍କ ମତରେ ଶିଶୁଠାରୁ ଆରମ୍ଭ କରି ବୃଦ୍ଧ ପର୍ଯ୍ୟନ୍ତ ପ୍ରତ୍ୟେକଙ୍କର ଯୌନ ଉତ୍ତେଜନା ରହିଛି । କେବଳ ବୟସ ଅନୁପାତରେ ଏହା ସ୍ଥାନ ପରିବର୍ତ୍ତନ କରିଥାଏ । ଫ୍ରଏଡ୍ ମନୁଷ୍ୟର ବୟସ ଅନୁସାରେ ଲିବିଡ଼ୋ ତିନୋଟି ସ୍ଥାନରେ ଅବସ୍ଥାନ କରିବାର ଦର୍ଶାଇଥାନ୍ତି ।

**(୧) ମୁଖ** :—ଜନ୍ମଠାରୁ ଦୁଇବର୍ଷ ବୟସ ପର୍ଯ୍ୟନ୍ତ ଲିବିଡ଼ୋ ଶିଶୁର ମୁଖ ସହ ସଂଯୁକ୍ତ ଥାଏ । ଫଳତଃ ଏହି ସମୟରେ ଶିଶୁ ଓଠ ଚାଳନା କରି ନିଜର ଯୌନ ଆନନ୍ଦ ପରିତୃପ୍ତ କରେ ।

**(୨) ନିଷ୍କାସନ ଅଙ୍ଗ** :—ଦୁଇ ତିନିବର୍ଷ ବୟସ ମଧ୍ୟରେ ଲିବିଡ଼ୋ ଶରୀରର ବିଭିନ୍ନ ନିଷ୍କାସନ ଅଙ୍ଗସହ ସଂଯୁକ୍ତ ଥାଏ । ମଳ, ମୂତ୍ର ତ୍ୟାଗ କ୍ରିୟାରେ ଏ ସମୟରେ ଶିଶୁ ଅଧିକ ଆନନ୍ଦ ଲାଭ କରିଥାଏ ।

**(୩) ପ୍ରଜନନ ଅଙ୍ଗ** :—ତିନିରୁ ପାଞ୍ଚବର୍ଷ ମଧ୍ୟରେ ଲିବିଡ଼ୋ ପ୍ରଜନନ ଅଙ୍ଗ ସହ ସଂଯୁକ୍ତ ହୁଏ । ଫଳରେ ତାର ପ୍ରଜନନ ଅଙ୍ଗକୁ ସ୍ପର୍ଶକଲେ ଶିଶୁ ଯୌନ ଆନନ୍ଦ ଲାଭ କରିଥାଏ ।

ଛଅ ବର୍ଷଠାରୁ ତେର ବର୍ଷ ପର୍ଯ୍ୟନ୍ତ ସମୟକୁ ଅବ୍ୟକ୍ତତା କାଳ (Latency Period) ବୁଝାଯାଏ । କାରଣ ଏ ସମୟ ମଧ୍ୟରେ ଲିବିଡ଼ୋ ଅବ୍ୟକ୍ତ ଅବସ୍ଥାରେ ଥାଏ । କିନ୍ତୁ ତରୁଣ ଅବସ୍ଥାରେ ଏହା ପୁଣି ବ୍ୟକ୍ତ ହୋଇ ବିଭିନ୍ନ ଅଙ୍ଗ ମାଧ୍ୟମରେ ପ୍ରକାଶ ଲାଭ କରେ ।

**ବ୍ୟକ୍ତିତ୍ୱର ବିଭିନ୍ନ ଦିଗ :**—ଫ୍ରଏଡ଼ଙ୍କ ମତରେ ମନୁଷ୍ୟର ଶାରୀରିକ ଗଠନ ଏକ ଜଟିଳ ବ୍ୟବସ୍ଥା ଏବଂ ମୁଖ୍ୟତଃ ଖାଦ୍ୟରୁ ଏହା ଶକ୍ତି ସଂଗ୍ରହ କରିଥାଏ । ଜୈବିକ ଉପାଦାନରୁ ସଂଗୃହୀତ ଶକ୍ତି ମାନସିକ ଅବସ୍ଥାକୁ ମଧ୍ୟ ବଳଶାଳୀ କରିଥାଏ । ମାନସିକ ଗଠନ-ବିନ୍ୟାସର ବିଭିନ୍ନ ଅଂଶ ଯଥା ଇଡ଼୍, ଅହମ୍ ଓ ପରମ ଅହମ୍ ମଧ୍ୟରେ ସର୍ବଦା ଦ୍ୱନ୍ଦ୍ୱ ଚାଲିଥାଏ । ଏହି ଦ୍ୱନ୍ଦ୍ୱରୁ ଯେତେବେଳେ ଯେଉଁ ଉପାଦାନଟି ଅଧିକ ଶକ୍ତିଶାଳୀ ହୁଏ । ସେତେବେଳେ ବ୍ୟକ୍ତିତ୍ୱର ଅନୁରୂପ ଦିଗ ପ୍ରକାଶିତ ହୋଇଥାଏ । ବ୍ୟକ୍ତି ସର୍ବଦା ଅବିଳମ୍ବିତ ଆନନ୍ଦର ଅନୁସନ୍ଧାନ କରେ ଏବଂ ଇଡ଼୍ ପରମ ଅହମ୍‌ର ନିୟନ୍ତ୍ରଣରୁ ନିଜକୁ ମୁକ୍ତ କରିବା ପାଇଁ ସତତ ଚେଷ୍ଟିତ ଥାଏ । ଫଳ ସ୍ୱରୂପ ବ୍ୟକ୍ତି ଓ ତା'ର ପରିବେଷ୍ଟନୀ ମଧ୍ୟରେ ସଂଘର୍ଷ ସୃଷ୍ଟି ହୁଏ । ପିତା ମାତା ଶିଶୁର ମତ ବ୍ୟକ୍ତ କରିବା ଉପରେ ନିୟନ୍ତ୍ରଣ ଜାରି କଲେ ଏହି ସଂଘର୍ଷ ଅଧିକ ଘନୀଭୂତ ହୋଇଥାଏ । ଫଳରେ ଅହମ୍ ଏ ଦୁଇଟି ମଧ୍ୟରେ ସମନ୍ୱୟ ରକ୍ଷାକରି ମାନସିକ ଉତ୍ତେଜନା ହ୍ରାସ କରିଥାଏ ।

**ଫ୍ରଏଡ଼ଙ୍କ ତତ୍ତ୍ୱର ମୂଲ୍ୟାଙ୍କନ :**—ବ୍ୟକ୍ତିତ୍ୱ ସଂପର୍କରେ ଫ୍ରଏଡ଼ଙ୍କର ତତ୍ତ୍ୱ ମନସ୍ତତ୍ତ୍ୱବିଜ୍ଞାନର ଏକ ମୂଲ୍ୟବାନ୍ ଅଂଶ । ଫ୍ରଏଡ଼ ମନୁଷ୍ୟର ବ୍ୟବହାର ବିଶ୍ଳେଷଣର ଏକ ନୂତନ ପଦ୍ଧତି ଆବିଷ୍କାର କରିଥିଲେ । ଫଳରେ ମନୋ-ବିଶ୍ଳେଷଣ ତତ୍ତ୍ୱ ଅନ୍ୟ ସମସ୍ତ ପୂର୍ବ ମତବାଦଗୁଡ଼ିକ ଅପେକ୍ଷା ଅଧିକ ଗୃହୀତ ଓ ସମର୍ଥିତ ହୋଇପାରିଥିଲା । ଫ୍ରଏଡ଼ଙ୍କ ମତବାଦ ଅନେକ ଦୃଷ୍ଟିରୁ ମୂଲ୍ୟବାନ ଓ ସେଗୁଡ଼ିକ ହେଲା—

୧ । ଏହି ତତ୍ତ୍ୱ ମନୁଷ୍ୟ ବ୍ୟବହାରକୁ ପୁଙ୍ଖାନୁପୁଙ୍ଖ ଭାବରେ ଆଲୋଚନା କରି ସମସ୍ତ ଜଟିଳତାର ଏକ ବିଜ୍ଞାନ ସମ୍ମତ ଓ ଯୁକ୍ତିଯୁକ୍ତ କାରଣ ଦର୍ଶାଇଥାଏ ।

୨ । ଏହି ତତ୍ତ୍ୱ ବ୍ୟକ୍ତିତ୍ୱକୁ କେତେକ ନିର୍ଦ୍ଦିଷ୍ଟ ଅଂଶ, ସ୍ୱଭାବ ବା ପ୍ରକାରର ଶ୍ରେଣୀଭୁକ୍ତ ନକରି ଏକ ଅବିଭାଜିତ ଏକକ ରୂପେ ପ୍ରଦର୍ଶିତ କରିଥାଏ ।

୩ । ଏହି ତତ୍ତ୍ୱ ମନୁଷ୍ୟକୁ ଏକ ସ୍ୱାଧୀନ ଓ ମୁକ୍ତ ବାତାବରଣ ମଧ୍ୟରେ ରଖି ତା'ସହିତ ସଂପର୍କ ସ୍ଥାପନ କରେ । ଫଳରେ ବ୍ୟବହାର ଗୁଡ଼ିକର ଉତ୍ସ ସଂପର୍କରେ ସଠିକ୍ ଧାରଣା କରିହୁଏ ।

୪ । ବ୍ୟବହାରର କ୍ରମବିକାଶ ଓ ଅଚେତନ ମନର ପ୍ରାଧାନ୍ୟକୁ ଏହି ତତ୍ତ୍ୱ ସ୍ୱୀକାର କରିଥାଏ ।

୫ । ଫ୍ରଏଡ଼ଙ୍କ ତତ୍ତ୍ୱ ପ୍ରତ୍ୟେକ ପ୍ରକାର ବ୍ୟବହାରର ମୂଳ ଉତ୍ସ ଶୈଶବରେ ଅନୁସନ୍ଧାନ କରିଥାଏ । ଏହା ମନୋବିଜ୍ଞାନକୁ ଫ୍ରଏଡ଼ଙ୍କର ଏକ ଶ୍ରେଷ୍ଠ ଅବଦାନ ରୂପେ ବିବେଚିତ ହୁଏ ।

## ଫ୍ରୟେଡ୍‌ଙ୍କ ତତ୍ତ୍ୱର ଦୁର୍ବଳତା :

୧। କେତେକ ମନଃସ୍ତତ୍ତ୍ୱବିଦ୍ ଫ୍ରୟେଡ୍‌ଙ୍କ ପରୀକ୍ଷଣ ପ୍ରଣାଳୀକୁ ସମାଲୋଚନା କରିଥାନ୍ତି । ଏହି ତତ୍ତ୍ୱରେ ଦିଆଯାଇଥିବା ବିଭିନ୍ନ ସଙ୍କେତ ସବୁ ମାନସିକ ରୋଗୀଙ୍କଠାରୁ ସଂଗୃହୀତ ଓ ଅନ୍ୟ ସାଧାରଣ ବ୍ୟକ୍ତିଙ୍କ ସହିତ ଏହା ତୁଳନାତ୍ମକ ଭାବରେ ପ୍ରକାଶ କରାଯାଇନଥିବାର ସେମାନେ ମତ ପ୍ରଦାନ କରନ୍ତି । ରୋଗୀମାନଙ୍କୁ ଅନୁଶୀଳନ ସମୟରେ କୌଣସି ସୁବ୍ୟବସ୍ଥିତ (Systematic) ପ୍ରଣାଳୀ ବ୍ୟବହାର କରାଯାଇନଥିବାର ସେମାନେ ଅଭିଯୋଗ କରନ୍ତି ।

୨। ଫ୍ରୟେଡ୍ ଯୌନ ଆନନ୍ଦ ପ୍ରାପ୍ତିକୁ ପ୍ରତ୍ୟେକ ମାନସିକ ବ୍ୟବହାରର ମୂଳ ଉତ୍ସ ରୂପେ ପ୍ରତିପାଦିତ କରିଥିବାରୁ ଅନ୍ୟାନ୍ୟ ମନୋବୈଜ୍ଞାନିକମାନେ ଏହାର ସମାଲୋଚନା କରିଥାନ୍ତି ।

୩। ଫ୍ରୟେଡ୍ ଏପରି କେତେଗୁଡ଼ିଏ ଧାରଣା ତାଙ୍କ ତତ୍ତ୍ୱରେ ପ୍ରଦାନ କରିଛନ୍ତି ଯେଉଁ ଗୁଡ଼ିକର ସଂଜ୍ଞା ନିର୍ଣ୍ଣୟ କରିବା ଦୁଃସାଧ୍ୟ । ସେଗୁଡ଼ିକ ଅର୍ଥ ଅସ୍ପଷ୍ଟ ଏବଂ ବ୍ୟବହୃତ ଭାଷା ସନ୍ଦେହ ପୂର୍ଣ୍ଣ । ଉଦାହରଣ ସ୍ୱରୂପ ଲିବିଡ଼ୋ ଶବ୍ଦଟି ଫ୍ରୟେଡ୍‌ଙ୍କ ଦ୍ୱାରା ବିଭିନ୍ନ ପରିସ୍ଥିତିରେ ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କରୁଥିବାରୁ ଏହାର ପ୍ରକୃତ ରୂପ ବର୍ଣ୍ଣନା କରିବା ଦୁରୂହ ।

୪। ଫ୍ରୟେଡ୍‌ଙ୍କ ତତ୍ତ୍ୱର ପରିସଂଖ୍ୟାନ ଗତ ବ୍ୟାଖ୍ୟା କରିବା ସମ୍ଭବ ନୁହେଁ । ଏହା କେବଳ ବର୍ଣ୍ଣନାତ୍ମକ ହୋଇଥିବାରୁ ଏହାକୁ ପରୀକ୍ଷା କରି ବିଭିନ୍ନ ଧାରଣା ମଧ୍ୟରେ ସମ୍ପର୍କ ନିରୂପଣ କରିବା କଷ୍ଟକର ।

୫। ଏହି ତତ୍ତ୍ୱ ବ୍ୟକ୍ତିର ଅନ୍ତର୍ଗଠନ ବିନ୍ୟାସ ଓ ଅତୀତ ଅଭିଜ୍ଞତା ପ୍ରତି ଅଧିକ ଗୁରୁତ୍ୱ ଆରୋପ କରିଥାଏ । କିନ୍ତୁ ବର୍ତ୍ତମାନର ଅଭିଜ୍ଞତା ଓ ପରିବେଷ୍ଟନୀ ଗତ ପ୍ରଭାବ ଏହି ତତ୍ତ୍ୱରେ ଗୌଣ ସ୍ଥାନ ଲାଭ କରିଥାଏ । ଅଥଚ ମନୁଷ୍ୟକୁ ପ୍ରତ୍ୟେକ ସ୍ଥଳରେ ନିଜର ବର୍ତ୍ତମାନର ପରିବେଷ୍ଟନୀ ସହ ସମଯୋଜନ କରିବାକୁ ପଡ଼ିଥାଏ । ଏହି ତତ୍ତ୍ୱ ମାନସିକ ପ୍ରବୃତ୍ତିର ବିଭିନ୍ନ କାର୍ଯ୍ୟକୁ ମୁଖ୍ୟ ଉତ୍ସ ଭାବରେ ଗ୍ରହଣ କରିଥାଏ । କିନ୍ତୁ ଆଧୁନିକ ମନୋବିଜ୍ଞାନରେ ପ୍ରବୃତ୍ତି ଏକ ଗୌଣ ଉପାଦାନ ରୂପେ ବିବେଚିତ ହୁଏ ।

୬। ମ୍ୟାକ୍‌ଡୁଏଲଙ୍କ ମତରେ ଫ୍ରୟେଡ୍‌ଙ୍କ ତତ୍ତ୍ୱ ଶତାବ୍ଦୀ ପୂର୍ବର ରକ୍ଷଣଶୀଳ ସମାଜ ପାଇଁ ଏକ ନୂତନ ତଥ୍ୟ ହୋଇପାରେ କିନ୍ତୁ ଏହା ମନୁଷ୍ୟର ସୃଷ୍ଟି

କରିପାରିବାର କ୍ଷମତା ଓ ଗଠନ ମୂଳକ ଶକ୍ତି ସମ୍ପର୍କରେ କୌଣସି ଆଲୋକପାତ କରିନଥିବାରୁ ଆଧୁନିକ ମନୋବିଜ୍ଞାନ ସମ୍ମତ ତଦନ୍ତ ସମୟରେ କୌଣସି ଉଦ୍ଦେଶ୍ୟ ସାଧନ କରେ ନାହିଁ ।

## ୟୁଙ୍ଗଙ୍କ ମନୋ-ବିଶ୍ଳେଷଣାତ୍ମକ ତତ୍ତ୍ୱ :

ୟୁଙ୍ଗ (C. G. Jung) (1875-1961) ଫ୍ରଏଡ଼ଙ୍କ ସହକର୍ମୀ ଥିଲେ । ୧୯୧୦ ଖ୍ରୀଷ୍ଟାବ୍ଦରେ ସେ ଆନ୍ତର୍ଜାତିକ ମନୋ ବିଶ୍ଳେଷଣାତ୍ମକ ସଂଘ (International Psycho-analytic Association) ର ସଭାପତି ହୋଇପାରିଥିଲେ । ୧୯୧୨ ମସିହା ପରଠାରୁ ସେ ଫ୍ରଏଡଙ୍କ ଠାରୁ କ୍ରମଶଃ ବିଚ୍ଛିନ୍ନ ହୋଇପଡିଲେ ଏବଂ ନିଜସ୍ୱ ବିଶ୍ଳେଷଣାତ୍ମକ ମନୋବିଜ୍ଞାନ (Analytical Psychology) ପ୍ରଣୟନ କରିଥିଲେ । ସେ ଡାକ୍ତରୀ ବିଦ୍ୟାରେ ଶିକ୍ଷାଲାଭ କରିଥିଲେ ମଧ୍ୟ ମାନସିକ ରୋଗ ଓ ତାର ନିଦାନ ପ୍ରତି ସେ ଅଧିକ ଆକୃଷ୍ଟ ହୋଇଥିଲେ । ନିଜର ତତ୍ତ୍ୱ ପ୍ରଣୟନ କରିବାରୁ ୟୁଙ୍ଗ ଗଭୀର ଭାବରେ ଇନ୍ଦ୍ରଜାଲ ବିଦ୍ୟା, ପୁରାଣ ଶାସ୍ତ୍ର, ଧର୍ମ ଶାସ୍ତ୍ର, ପ୍ରତ୍ନତତ୍ତ୍ୱ, ସଂସ୍କୃତ ଭାଷା ଓ ବିଲୁପ୍ତ ଭାଷା ସବୁକୁ ଅଧ୍ୟୟନ କରିଥିଲେ ।

ୟୁଙ୍ଗଙ୍କ ତତ୍ତ୍ୱ ଅନ୍ୟମାନଙ୍କର ମତବାଦଠାରୁ ଭିନ୍ନ । ଏହା କିଛି ମାତ୍ରାରେ ଆଧ୍ୟାତ୍ମିକ ହୋଇଥିବାରୁ ବିଜ୍ଞାନାଗାରରେ ପରୀକ୍ଷଣ ସାପେକ୍ଷ ନୁହେଁ । ଫ୍ରଏଡ଼ଙ୍କ ତତ୍ତ୍ୱ ଜୀବନର ନିରାଶାବାଦ ଓ ମୃତ୍ୟୁ ପ୍ରବୃତ୍ତିର ଖଣ୍ଡନ କରିବା ସମୟରେ ୟୁଙ୍ଗ ଆଶାବାଦର ପ୍ରଚାର କରିଥିଲେ । ୟୁଙ୍ଗଙ୍କ ମତରେ ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ମନୁଷ୍ୟ ଅଧିକ ସଭ୍ୟ ଓ ଅଭିଜ୍ଞତା ସମ୍ପନ୍ନ ହୋଇଥାଏ । ୟୁଙ୍ଗ ତାଙ୍କ ତତ୍ତ୍ୱ ପ୍ରଣୟନ କରିବା ପାଇଁ ଚାରୋଟି ମୁଖ୍ୟ ଉପାଦାନ ଉପରେ ଆଲୋକପାତ କରିଥିଲେ । ସେଗୁଡ଼ିକ ହେଲା ଧ୍ରୁବତା (Polarity), ଆତ୍ମ ବାସ୍ତବବାଦ (Self actualization), ଅଚେତନ ଅବସ୍ଥା (Unconscious States) ଏବଂ ପ୍ରୟୋଜନ ବାଦ (Teleology) ।

(୧) ଧ୍ରୁବତା (Polarity) :—ୟୁଙ୍ଗଙ୍କ ମତରେ ପୃଥିବୀରେ ଯେତେ ଉପାଦାନ ଭୌତିକ, ସୂକ୍ଷ୍ମ ଓ ଅଧିଭୌତିକ ଭାବରେ ରହିଛି ପ୍ରତ୍ୟେକର ଏକ ବିପରୀତ ଉପାଦାନ ମଧ୍ୟ ରହିଛି । କୌଣସି ଉପାଦାନର ନିଜ ବିପରୀତ ଉପାଦାନ ସହ ପ୍ରତିକ୍ରିୟା ଘଟିଲେ ଗତିଶୀଳତା ଓ ପ୍ରଗତି ସୃଷ୍ଟି ହୁଏ । କୌଣସି ଦ୍ୱନ୍ଦ୍ୱ ବା ସଙ୍କଟ ଉପୁଜିଲେ ମନୁଷ୍ୟ ତାର ସମାଧାନ କରିବାକୁ ଚେଷ୍ଟାକରେ । ଏହି ଦ୍ୱନ୍ଦ୍ୱ ଯୋଗୁଁ ମନୁଷ୍ୟ କୌଣସି ଲକ୍ଷ୍ୟରେ ପହଞ୍ଚିବାକୁ ଅସମର୍ଥ ମନେକଲେ ଅନ୍ୟ ଏକ ଅପେକ୍ଷାକୃତ ସରଳ ଲକ୍ଷ୍ୟ ସ୍ଥିର କରେ ଏବଂ ଏହିପରି ଭାବରେ ଅନେକ ଦ୍ୱନ୍ଦ୍ୱର ସମାଧାନ ହୋଇଥାଏ ।

ଅନ୍ୟ ସମୟରେ ଯେତେବେଳେ ଦୁଇଟି ସମସ୍ୟା ପରସ୍ପରର ବିପରୀତ କାର୍ଯ୍ୟ କରୁଥାନ୍ତି ଏବଂ ଏକ ତୃତୀୟ ସମସ୍ୟା ଦେଖାଦିଏ । ପ୍ରଥମ ସମସ୍ୟା ଦୁଇଟି ଏକ ହୋଇଯାନ୍ତି ଓ ନୂତନ ସମସ୍ୟାଟିର ସମାଧାନ କରନ୍ତି । ତୃତୀୟତଃ ଦୁଇଟି ଦ୍ୱନ୍ଦ୍ୱ ସୃଷ୍ଟିକାରୀ ଉପାଦାନ ମଧ୍ୟରୁ ଯଦି ବିପରୀତ ଉପାଦାନଟି ଅଧିକ ଶକ୍ତିଶାଳୀ ହୁଏ ତେବେ ଦୁଇଟିଯାକ ଉପାଦାନ ନିଜ ନିଜ ଲକ୍ଷ୍ୟ ହାସଲ ପାଇଁ ଯଥା ଶକ୍ତି ପ୍ରୟୋଗ କରନ୍ତି ଫଳରେ ବ୍ୟକ୍ତିତ୍ୱ କଳଙ୍କ ହୋଇଥାଏ । ଏହିପରି କେତେକ ବିପରୀତ ମୁଖୀ ମାନସିକ କାର୍ଯ୍ୟକଳାପର ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲ ।

(କ) **ଅଗ୍ରଗତ ବନାମ ପଶ୍ଚାତ୍ ଗତ** :—ବ୍ୟକ୍ତିତ୍ୱ ବେଳେବେଳେ ସ୍ଥିର ନୁହେଁ । ହୁଏତ ଏହା ଅଗ୍ରଗାମୀ ହୋଇ ବିକଶିତ ହୁଏ ଅଥବା ପଶ୍ଚାତ୍‌ଗାମୀ ହୋଇ କଳୁଷିତ ହୁଏ । ବିକାଶ ଲାଭ କରିବା ବ୍ୟକ୍ତିତ୍ୱ ପକ୍ଷରେ ଏକ ଶୁଭ ସୂଚନା ମାତ୍ର ପଶ୍ଚାତ୍ ଗମନ ମଧ୍ୟ ସମୟ ସମୟରେ ଉତ୍ତମ ଫଳ ପ୍ରଦାନ କରିଥାଏ । ଯେପରି ଯୁଦ୍ଧ ସମୟରେ ଆବଶ୍ୟକ ପଡ଼ିଲେ ସୈନ୍ୟବାହିନୀକୁ ପଛକୁ ହଟାଇ ଆଣିବାକୁ ପଡ଼େ ଠିକ୍ ସେହିପରି କୌଣସି ସମସ୍ୟାର ସମାଧାନ ପାଇଁ ଜଣେ ପରିଣତ ବୟସର ବ୍ୟକ୍ତି ବାଳ-ସୁଲଭ ବ୍ୟବହାର ପ୍ରଦର୍ଶନ କରେ । ଏହା ତାର ବ୍ୟକ୍ତିତ୍ୱର ପଶ୍ଚାତ୍ ଗମନ ଓ ଏହା ଏକ ମାନସିକ ଦ୍ୱନ୍ଦ୍ୱ ଓ ସଂକଟ ଏଡ଼ାଇବା ପାଇଁ ଉଦ୍ଦିଷ୍ଟ ।

(ଖ) **ବହିର୍ମୁଖୀତା ବନାମ ଅନ୍ତର୍ମୁଖୀତା** :—ବହିର୍ମୁଖୀ ବ୍ୟକ୍ତିତ୍ୱ ସର୍ବଦା ସମାଜ ଅଭିମୁଖୀ । ଏପରି ବ୍ୟକ୍ତି ସର୍ବଦା କାର୍ଯ୍ୟରତ ଏବଂ ସାମାଜିକ । କିନ୍ତୁ ଅନ୍ତର୍ମୁଖୀ ସ୍ୱଭାବ ସମାଜଠାରୁ ଦୂରେଇ ରହି ଆତ୍ମ ଚିନ୍ତାରେ ମଗ୍ନଥାଏ । ପ୍ରତ୍ୟେକ ବ୍ୟକ୍ତି ମଧ୍ୟରେ ଏ ଦୁଇଟି ପ୍ରବୃତ୍ତି ଗୁଣ ଅଧିକେ ଦେଖାଯାଏ । ଚେତନ ମନ ସମୟ ସମୟରେ ବ୍ୟକ୍ତିତ୍ୱକୁ ବାହ୍ୟ ଜଗତ ଆଡ଼କୁ ଆକର୍ଷଣ କରେ ଓ ଅନ୍ୟ ସମୟରେ ଅନ୍ତର୍ମୁଖୀତା ଦିଗକୁ ସୂଚିତ କରିଥାଏ ।

(ଗ) **ପୁଂ ସୁଲଭ ଗୁଣ ବନାମ ସ୍ତ୍ରୀ ସୁଲଭ ଗୁଣ** :—ପୁରୁଷ ଓ ସ୍ତ୍ରୀ ଲିଙ୍ଗ ଭେଦରେ ପରସ୍ପର ବିପରୀତ ଏବଂ ସେଥିପାଇଁ ଅନ୍ୟାନ୍ୟ ଭିନ୍ନ ଗୁଣ ମଧ୍ୟ ପ୍ରଦର୍ଶନ କରିଥାନ୍ତି । କିନ୍ତୁ ଏହି ପରସ୍ପର ବିପରୀତ ଧର୍ମୀ ଉପାଦାନର ପରସ୍ପର ପ୍ରତି ଆକର୍ଷଣ ଥାଏ । ସେମାନେ କୌଣସି ଦ୍ୱନ୍ଦ୍ୱ ବା ସଙ୍କଟ ସମୟରେ ଏକତ୍ରିତ ହୋଇ କାର୍ଯ୍ୟ କରନ୍ତି ।

(ଘ) **ଉଦାତ୍ତୀକରଣ ବନାମ ଦମନ (Sublimation vs. Repremion)** :—ମାନସିକ ଶକ୍ତି ସମାଜ ସ୍ୱୀକୃତ ଧାରାରେ କାର୍ଯ୍ୟ କରିପାରେ ବା

ସମାଜ ବିରୋଧି କାର୍ଯ୍ୟ ମଧ୍ୟ କରିପାରେ । ଏକ ସମୟରେ ମାନସିକ ଶକ୍ତି ଶୋଚିଏ ଢଙ୍ଗରେ ପ୍ରକାଶିତ ହେବା ଓ ଅନ୍ୟ ସମୟରେ ଏହା ଅନିୟମିତ ହୋଇ ରହିବାକୁ ଉଦାହରୀକରଣ ଓ ଦମନ କୁହାଯାଏ । ମନୁଷ୍ୟ ମନରେ ଦମନଶୀଳତା, ଉତ୍ତେଜନା ଓ ବିଶୃଙ୍ଖଳା ସୃଷ୍ଟି କରିଥାଏ । ଉଦାହରଣ ସ୍ୱରୂପ ମନୁଷ୍ୟ କୌଣସି ସମସ୍ୟାର ସମାଧାନ ସମାଜ ସ୍ୱୀକୃତ ଧାରାରେ କରିବାକୁ ବିଫଳ ହେଲେ ଅସାମାଜିକ ବା ଆଇନ ବହିର୍ଭୂତ ପ୍ରଣାଳୀ ଅବଲମ୍ବନ କରିଥାଏ । ଏଠାରେ ମାନସିକ ଶକ୍ତିର ଦମନଶୀଳତା ବ୍ୟକ୍ତିତ୍ୱକୁ ପଶ୍ଚାତ୍‌ଗାମୀ କରାଇଥାଏ ।

(୯) କାର୍ଯ୍ୟକାରଣ ବାଦ ବନାମ ପ୍ରୟୋଜନ ବାଦ (Causality vs. Teleology) :—ମନୁଷ୍ୟର ଅଧିକାଂଶ ବ୍ୟବହାର ଅତୀତ ଅଭିଜ୍ଞତା ସହ ସମ୍ପର୍କିତ ହୋଇଥାଏ । ଏହାକୁ କାର୍ଯ୍ୟ କାରଣ ବାଦ କୁହାଯାଏ । ଅନେକ କାର୍ଯ୍ୟ ଭବିଷ୍ୟତ ଚିନ୍ତା ଧାରାକୁ ଫଳବତୀ କରିବାକୁ ଉଦ୍ଦିଷ୍ଟ । ଏହାକୁ ପ୍ରୟୋଜନବାଦ କୁହାଯାଏ । ଏହିପରି ୟୁଙ୍ଗଙ୍କ ମତରେ କେବଳ ଅତୀତର ଅଭିଜ୍ଞତା ନୁହେଁ ଭବିଷ୍ୟତ ପାଇଁ ଚିନ୍ତା ଧାରା ମଧ୍ୟ ମନୁଷ୍ୟର ବ୍ୟକ୍ତିତ୍ୱକୁ ପରିପୁଷ୍ଟ କରିଥାଏ ।

(୨) ଆତ୍ମ ବାସ୍ତବ ବାଦ (Self Actualization) :—ମନୁଷ୍ୟ ମଧ୍ୟରେ "ମୁଁ"ର ସ୍ଥାନ କେନ୍ଦ୍ରରେ ଅବସ୍ଥିତ । ଏହି ଆତ୍ମସ୍ୱରୂପ ଚରିତାର୍ଥ କରିବା ପାଇଁ ଅହମ୍, ଚେତନ, ଅଚେତନ ଆଦି ବ୍ୟକ୍ତିତ୍ୱର ବିଭିନ୍ନ ଦିଗ ଏକତ୍ର ଭାବରେ କାର୍ଯ୍ୟ କରନ୍ତି ।

ଚେତନ ଅବସ୍ଥାରେ ଅହମ୍‌ର କାର୍ଯ୍ୟ ଆମର ଦୈନନ୍ଦିନ କାର୍ଯ୍ୟ କଳାପରେ ପ୍ରଦର୍ଶିତ ହୋଇଥାଏ । ଉକ୍ତ ଅହମ୍ ଚେତନର ପରିସର ମଧ୍ୟକୁ ଅଚେତନକୁ ପ୍ରବେଶ କରାଇ ଦିଏନାହିଁ । ମନୁଷ୍ୟ ଯେତେ ଚେତନ ସ୍ତରରେ କାର୍ଯ୍ୟକରେ ଅଚେତନତା ଉପରେ ସେତେ ଅଧିକ ଚାପ ପକାଏ । ସାଧାରଣତଃ ପଚିଶ ବର୍ଷ ବୟସ ପରେ ଅହମ୍ ଉଭୟ ଚେତନ ଓ ଅଚେତନ ଶୀଳତାକୁ କାର୍ଯ୍ୟ କରିବାକୁ ସୁଯୋଗ ପ୍ରଦାନ କରେ । ଫଳରେ ଚେତନ ଅଚେତନ ମଧ୍ୟରେ ଆତ୍ମ ଚିନ୍ତାର ସ୍ଥାନ ନିରୂପିତ ହୋଇଥାଏ । ଏହା ବ୍ୟକ୍ତିତ୍ୱର ସନ୍ତୁଳନ ରକ୍ଷା କରେ ଏବଂ ଏହି ସନ୍ତୁଳନ ଯୌବନ ଓ ଭୌତିକ ଲାଳସାର ପରିସମାପ୍ତି ପରେ ଅଧିକ ଦୃଢ଼ ହୁଏ । ଫଳରେ ବହିର୍ମୁଖୀତା ବଦଳରେ ଅନ୍ତର୍ମୁଖୀତା ବଳବତ୍ତର ହୁଏ ଏବଂ ଶାରୀରିକ ଶକ୍ତି ମାନସିକ ଶକ୍ତିରେ ରୂପାନ୍ତରିତ ହୁଏ । ବ୍ୟକ୍ତି ମଧ୍ୟରେ ଆଧ୍ୟାତ୍ମିକ ଚେତନା ବୃଦ୍ଧି ପାଏ । ମନୁଷ୍ୟ ଏକ ସନ୍ତୁଳିତ ମାନସିକ ଅବସ୍ଥା ପ୍ରାପ୍ତହୁଏ । କିନ୍ତୁ ବ୍ୟକ୍ତିତ୍ୱ ସର୍ବଦା ଚଳନଶୀଳ ହୋଇଥିବାରୁ ସମ୍ପୂର୍ଣ୍ଣ ଭାରସାମ୍ୟ

ରକ୍ଷା ହୋଇପାରେ ନାହିଁ । ଫଳରେ ଦୈନନ୍ଦିନ ଜୀବନରେ ଚେତନ ଓ ଅଚେତନ ମଧ୍ୟରେ ପ୍ରବାହ ଓ ଅନ୍ତଃକ୍ରିୟା ବୃଦ୍ଧି ପାଏ ଓ ଏହା ସାବଲୀଳ ହୋଇଥାଏ ।

(ଗ) ଅଚେତନ ଅବସ୍ଥା (Unconscious States) :—ୟୁଙ୍ଗଙ୍କ ତତ୍ତ୍ୱରେ ଅଚେତନତାର କାର୍ଯ୍ୟ ଏକ ପ୍ରଧାନ ସ୍ଥାନ ଲାଭ କରିଥାଏ । ସେ ଅଚେତନତାକୁ ଦୁଇ ଭାଗରେ ବିଭକ୍ତ କରିଛନ୍ତି ଯଥା—୧) ବ୍ୟକ୍ତିଗତ ଓ ୨) ସମଷ୍ଟିଗତ । ବ୍ୟକ୍ତିଗତ ଅଚେତନତା ମଧ୍ୟରେ ଅତୀତ ଜୀବନରେ ଅଦେଖା, ବିସ୍ମୃତ ଓ ଅବଦମିତ ଘଟଣା ସବୁ ସ୍ଥାନ ପାଇଥାଏ । ଏହା ଅନେକ ଅତୀତ ଅଭିଜ୍ଞତା ଓ ଜଟିଳତାର ସମଷ୍ଟିରେ ଗଠିତ ହୋଇଥାଏ । ସମଷ୍ଟିଗତ ଅଚେତନତା ମଧ୍ୟରେ ସାମାଜିକ ରୀତି ନୀତି, ପ୍ରଥା ଓ ଆଦିମ ପ୍ରବୃତ୍ତି ଆଦି ସଞ୍ଚିତ ହୋଇଥାଏ । ଏହା ମଧ୍ୟରେ ପାପ, ପୁଣ୍ୟ, ଜନ୍ମ, ମୃତ୍ୟୁ, ପୁନର୍ଜନ୍ମ, ମରଣୋତ୍ତର ଜୀବନ, ସ୍ୱର୍ଗ, ନର୍କ ଇତ୍ୟାଦିର ଧାରଣା ଅନ୍ତର୍ଭୁକ୍ତ । ୟୁଙ୍ଗଙ୍କ ମତରେ ପ୍ରତ୍ୟେକ ମନୁଷ୍ୟର ସମଷ୍ଟିଗତ ଅଚେତନତା ସମାନ । ଏହା ଜାତି ଓ ସମାଜ ଭେଦରେ ଭିନ୍ନ ପ୍ରକାରର ହୋଇପାରେ । ଏହା ଉଭୟ ଭଲ ଓ ମନ୍ଦ ଧାରଣାର ସମଷ୍ଟି ଏବଂ ସମସ୍ତ ସମୟରେ ଏଥିରୁ ଅନେକ ଉପଧାରଣା ଜନ୍ମନିଏ । ଉଦାହରଣ ସ୍ୱରୂପ "ମାଆ" ସମ୍ପର୍କରେ ଧାରଣା ମନୁଷ୍ୟର ସମଷ୍ଟିଗତ ଅଚେତନା ମଧ୍ୟରେ ଥାଏ । ସମସ୍ତ ମନୁଷ୍ୟ ମଧ୍ୟରେ "ମାଆ" ସମ୍ପର୍କରେ ଏକ ପ୍ରକାର ଧାରଣାଥାଏ । ନିଜ ଜୀବନର ଅଭିଜ୍ଞତା ଯୋଗୁଁ ଏହି ଧାରଣାରେ କିଛି ପରିବର୍ତ୍ତନ ଆସିପାରେ କିନ୍ତୁ ଏହି ଚିନ୍ତାଧାରାର ମୌଳିକତା ନଷ୍ଟହୁଏ ନାହିଁ ।

(ଘ) ପ୍ରୟୋଜନ ବାଦ (Teleology) :—ୟୁଙ୍ଗଙ୍କ ମତରେ ବ୍ୟକ୍ତିତ୍ୱ ପ୍ରତି ମୁହୂର୍ତ୍ତରେ ବିକାଶଶୀଳ । ଏହା ଧୀରେ ଧୀରେ ଆତ୍ମ ଉପଲବ୍ଧି ଦିଗକୁ ଅଗ୍ରସର ହୁଏ । ଆତ୍ମ ଉପଲବ୍ଧି ପାଇଁ ମାନସିକ ଅବସ୍ଥା ଭାରସାମ୍ୟ ରକ୍ଷା କରିବା ଉଚିତ୍ । ଏହି ଆତ୍ମ ଉପଲବ୍ଧି ଏକ ଭବିଷ୍ୟତ ଲକ୍ଷ୍ୟ ଭାବରେ କାର୍ଯ୍ୟ କରେ । ମନୁଷ୍ୟ ସମସ୍ତ କାର୍ଯ୍ୟ କେବଳ ସାମୟିକ ତୃପ୍ତି ଲାଭ ଆଶାରେ କରେ ନାହିଁ । ଭବିଷ୍ୟତ ପାଇଁ ତା' ମନରେ ଅନେକ ଯୋଜନା ରହିଥାଏ । ଏପରିକି ଆଗାମୀ ବଂଶଧରମାନଙ୍କ ପାଇଁ ସେ କିଛି ଦେଇ-ଯିବାକୁ ଚାହେଁ । ଫଳତଃ ସେ ଭବିଷ୍ୟତକୁ ଦୃଷ୍ଟି ନିକ୍ଷେପ କରି ଭବିଷ୍ୟତର ବିଭିନ୍ନ ଉପାଦାନକୁ ପର୍ଯ୍ୟାଲୋଚନା କରେ । ଶିଶୁ ମଧ୍ୟରେ ଦେଖାଯାଉଥିବା ବହିର୍ମୁଖୀ ବ୍ୟବହାର ଭବିଷ୍ୟତରେ ମନୁଷ୍ୟକୁ ଅଧିକ ସାମାଜିକ କରିବାରେ ସାହାଯ୍ୟ କରିଥାଏ ।

## ୟୁଙ୍ଗଙ୍କର ତତ୍ତ୍ୱର ମୂଲ୍ୟାୟନ :

ୟୁଙ୍ଗଙ୍କ ତତ୍ତ୍ୱର ପରିସୀମା ବେଶ୍ ବ୍ୟାପକ ଓ ଏହା ଅଧିକ ମାତ୍ରାରେ ଆଧ୍ୟାତ୍ମିକ ମନେହୁଏ । ଏହି ତତ୍ତ୍ୱ ମନୁଷ୍ୟର ଦୈନନ୍ଦିନ ବ୍ୟବହାରର ଏକ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ।

ଜୈବିକ ବିଜ୍ଞାନ ସମ୍ମତ ପ୍ରଣାଳୀରେ ଯେକୌଣସି ପରୀକ୍ଷଣାଗାରରେ ଏହାର ପରୀକ୍ଷଣ କରିବା ସମ୍ଭବ ନୁହେଁ । କିନ୍ତୁ ୟୁଙ୍ଗଙ୍କର ସ୍ୱପ୍ନ ବିଶ୍ଳେଷଣ, ମୁକ୍ତ ସହାସ୍କର ପଦ୍ଧତି (Free association technique) ଏବଂ ଅନ୍ତର୍ମୁଖୀତା ସମ୍ପର୍କୀୟ ଧାରଣା ମନୋବିଜ୍ଞାନ ପାଇଁ ଗୋଟିଏ ଗୋଟିଏ ମୂଲ୍ୟବାନ ଅବଦାନ । ବିଶେଷତଃ ୟୁଙ୍ଗଙ୍କ ଆତ୍ମ ବାସ୍ତବବାଦ (Self Actualization) ଆଲପୋର୍ଟ(Allport), ମର୍ଫି(Marphy), ମାସ୍‌ଲୋ (Maslow) ଓ ରୋଜର୍‌ସ୍ (Rogers) ଆଦି ମନୋବିଜ୍ଞାନୀ ମାନଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା ।

## ଫ୍ରଏଡ଼ ଓ ୟୁଙ୍ଗଂକ ମଧ୍ୟରେ ତୁଳନା :

ଫ୍ରଏଡ୍ ଓ ୟୁଙ୍ଗଙ୍କ ମଧ୍ୟରେ କେତେକ ସାମଞ୍ଜସ୍ୟ ଓ ଅନେକ ଅସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ସେଗୁଡ଼ିକ ହେଲା—

୧। ଫ୍ରଏଡ୍ ତାଙ୍କର ତତ୍ତ୍ୱ ପ୍ରଣୟନ କରିବା ପାଇଁ ଉନ୍ମାଦ ରୋଗୀମାନଙ୍କ ବ୍ୟବହାର ଅନୁଶୀଳନ କରିଥିଲେ । କିନ୍ତୁ ୟୁଙ୍ଗ ମାନସିକ ବିକାରଗ୍ରସ୍ତ ରୋଗୀମାନଙ୍କୁ ଅନୁଧ୍ୟାନ କରିଥିଲେ, କାରଣ ୟୁଙ୍ଗ ଲକ୍ଷ୍ୟ କରିଥିଲେ ଫ୍ରଏଡ଼ଙ୍କ ତତ୍ତ୍ୱ ମାନସିକ ବିକାରଗ୍ରସ୍ତ ରୋଗୀମାନଙ୍କ ପାଇଁ ଫଳପ୍ରଦ ହୋଇପାରୁ ନାହିଁ ।

୨। ମନୁଷ୍ୟ ଜୀବନ ସମ୍ପର୍କରେ ଉଭୟଙ୍କ ମତବାଦରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଫ୍ରଏଡ଼ଙ୍କ ମତରେ ମନୁଷ୍ୟ ଜୀବନ ଏକ ନିର୍ଦ୍ଦିଷ୍ଟ ପରିସୀମା ମଧ୍ୟରେ କାର୍ଯ୍ୟକରେ । ଏହା ସମସ୍ତ ସମୟରେ ଭୟଙ୍କର ଓ ବିକାରଗ୍ରସ୍ତ ହୋଇଥାଏ । କିନ୍ତୁ ୟୁଙ୍ଗ ଜୀବନକୁ ବିକାଶଶୀଳ ଓ ଅଗ୍ରଗାମୀ ରୂପେ ପ୍ରତିପାଦିତ କରିଥିଲେ । ଏହା ସର୍ବଦା ଏକ ଉନ୍ନତ ଓ ଆଲୋକିତ ଦିଗକୁ ଗତି କରିବା ତାଙ୍କ ତତ୍ତ୍ୱର ମୂଳ ବିବେଚନା ଥିଲା ।

୩। ମନୁଷ୍ୟ ମନର ଅଚେତନ ସ୍ତର ସମ୍ପର୍କରେ ମଧ୍ୟ ଦୁଇ ଜଣଙ୍କ ମତ ଭିନ୍ନ ଭିନ୍ନ ହୋଇଥାଏ । ଫ୍ରଏଡ଼ଙ୍କ ମତରେ ଚେତନ ସ୍ତରରୁ ଅବଦମିତ ବିଷୟ ସବୁ ଅବଚେତନ ମଧ୍ୟକୁ ଚାଲିଯାଏ । କିନ୍ତୁ ୟୁଙ୍ଗଙ୍କ ମତରେ ଚେତନ ସ୍ତର ଅଚେତନ ମଧ୍ୟରୁ ସୃଷ୍ଟି ଲାଭ କରିଥାଏ । ଅଧିକନ୍ତୁ ମଧ୍ୟ ୟୁଙ୍ଗ ଅଚେତନକୁ ବ୍ୟକ୍ତିଗତ ଓ ସମଷ୍ଟିଗତ ଏହିପରି ଦୁଇ ଭାଗରେ ବିଭକ୍ତ କରିଥିଲେ ।

୪ । ସ୍ୱପ୍ନ ବିଶ୍ଳେଷଣ କ୍ଷେତ୍ରରେ ଫ୍ରଏଡ ଓ ୟୁଙ୍ଗଙ୍କ ମଧ୍ୟରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଫ୍ରଏଡ଼ଙ୍କ ମତରେ ସ୍ୱପ୍ନ ହେଉଛି ମନୁଷ୍ୟର ଅବଦମିତ ଇଚ୍ଛାଗୁଡ଼ିକର ପରିପୂରଣ ପ୍ରଣୋଦିତ । ୟୁଙ୍ଗଙ୍କ ମତରେ ସ୍ୱପ୍ନ ହେଉଛି ସାହାଯ୍ୟକାରୀ, ଆଶ୍ୱାସନାବାଦୀ ଓ ବର୍ଣ୍ଣନାତ୍ମକ । ଫ୍ରଏଡ଼୍ ଲିବିଡ଼ୋକୁ ଯୌନ ଉତ୍ତେଜନାର କାରଣ ରୂପେ ବର୍ଣ୍ଣନା କରିବା ସମୟରେ ୟୁଙ୍ଗ ଏହାକୁ ଜୀବନୀ ଶକ୍ତିର ପରିପ୍ରକାଶକ ରୂପେ ବର୍ଣ୍ଣନା କରିଛନ୍ତି । ମୋଟାମୋଟି ଭାବରେ ଫ୍ରଏଡ଼ଙ୍କ ତତ୍ତ୍ୱ ଯୌନ-ପ୍ରବୃତ୍ତି ଉପରେ ପ୍ରାଧାନ୍ୟ ଦେବା ସମୟରେ ୟୁଙ୍ଗଙ୍କ ତତ୍ତ୍ୱ ଆତ୍ମବାସ୍ତବବାଦ ଉପରେ ପ୍ରାଧାନ୍ୟ ଆରୋପ କରିଥାଏ ।

ଅନ୍ୟ ପକ୍ଷରେ ଫ୍ରଏଡ଼ ଓ ୟୁଙ୍ଗଙ୍କର ମାନସିକ ଶକ୍ତି ସମ୍ବନ୍ଧରେ ଧାରଣା ଏକ ଓ ଅଭିନ୍ନ । ଶରୀରର ଉପପାଚକ (**Metabolic**) କାର୍ଯ୍ୟରୁ ମାନସିକ ଶକ୍ତି ସୃଷ୍ଟି ହୁଏ ଓ ବ୍ୟକ୍ତି ସ୍ଥିର ସମନ୍ୱୟ ରକ୍ଷାକରେ ।

## ଆଡ଼ଲର୍‌ଙ୍କ ତତ୍ତ୍ୱ :

ଆଲଫ୍ରେଡ଼୍ ଆଡ଼୍‌ଲର୍ (**Alfred Adler**) ୧୮୭୦ ଖ୍ରୀଷ୍ଟାବ୍ଦରେ ଭିଏନାରେ ଜନ୍ମ ଗ୍ରହଣ କରିଥିଲେ । ସେ ଭିଏନା ବିଶ୍ୱବିଦ୍ୟାଳୟରୁ ଡାକ୍ତରୀ ପାଶ୍ କରି ପରି ଜୀବନରେ ମାନସିକ ରୋଗୀମାନଙ୍କର ଚିକିତ୍ସାରେ ଆଗ୍ରହୀ ହୋଇଥିଲେ । ସେ ଫ୍ରଏଡ଼ଙ୍କର ଶିଷ୍ୟ ଥିଲେ ମଧ୍ୟ ଫ୍ରଏଡ୍‌ଙ୍କ ମତବାଦର ବହିଷ୍କାରଣ କରି ନିଜର ସ୍ୱତନ୍ତ୍ର ମତ ପ୍ରଚାର କରିଥିଲେ । ଆଡ଼୍‌ଲରଙ୍କ ମତବାଦ ଅଧିକ ଭାବରେ ଜୀବନର ବାସ୍ତବତା ସହ ସମ୍ପୃକ୍ତ ଏବଂ ସେ ଜୀବନ ନିର୍ବାହ ଯୋଜନା, ଜୀବନର ଲକ୍ଷ୍ୟ ଓ ଜୀବନର ସାମ୍ଭାବ୍ୟ ପରିସମାପ୍ତି ପ୍ରତି ଅଧିକ ଗୁରୁତ୍ୱ ଆରୋପ କରିଥିଲେ । ତାଙ୍କର ପ୍ରଧାନ ନିୟମଗୁଡ଼ିକ ନିମ୍ନରେ ବର୍ଣ୍ଣନା କରାଗଲା—

(୧) **ଲକ୍ଷ୍ୟ ସାଧନ** :—ଆଡ଼୍‌ଲରଙ୍କ ମତରେ ଅତୀତର ଅଭିଜ୍ଞତା ମନୁଷ୍ୟର କାର୍ଯ୍ୟ କଳାପକୁ ପ୍ରଭାବିତ କରିଥାଏ ସତ କିନ୍ତୁ ଭବିଷ୍ୟତ ଲକ୍ଷ୍ୟ ନେଇ ମନୁଷ୍ୟ ନିଜର କାର୍ଯ୍ୟଧାରା ନିରୂପିତ କରିଥାଏ । ଅତଏବ ଅତୀତ ଅପେକ୍ଷା ଭବିଷ୍ୟତ ମନୁଷ୍ୟକୁ ଅଧିକ ଭାବରେ ସୃଜନଶୀଳ ଓ ପ୍ରଗତିଶୀଳ କରିଥାଏ । ପ୍ରତ୍ୟେକ ବ୍ୟକ୍ତି ନିଜ ଜୀବନ ପାଇଁ ଏକ ଲକ୍ଷ୍ୟ ନିର୍ଦ୍ଦିଷ୍ଟ କରିଥାଏ ଓ ତଦନୁସାରେ ବର୍ତ୍ତମାନର ବ୍ୟବହାର ଓ କାର୍ଯ୍ୟକଳାପ ପ୍ରଦର୍ଶନ କରେ । ଅନ୍ୟ ପକ୍ଷରେ ମନୁଷ୍ୟର କାର୍ଯ୍ୟକଳାପ ଓ ବ୍ୟବହାରର କାରଣ ଭବିଷ୍ୟତ ଲକ୍ଷ୍ୟଠାରେ ନିହିତ ଥାଏ । ସାଧାରଣତଃ ବ୍ୟକ୍ତି ଜଣେ ଉତ୍ତମ ସ୍ୱାମୀ, ଉତ୍ତମ ସ୍ତ୍ରୀ, ଉତ୍ତମ ବନ୍ଧୁ ବା ଜଣେ ଉତ୍ତମ ଦେଶପ୍ରେମୀ ହେବାକୁ ଚେଷ୍ଟାକରେ ଓ ସେଥିପାଇଁ

ନିଜର ଅଭିଜ୍ଞତା, ଶାରୀରିକ ଓ ମାନସିକ ଶକ୍ତି ଯୌନ ଆବେଗ ଇତ୍ୟାଦିକୁ କାର୍ଯ୍ୟକାରୀ କରେ । ତା' ନିକଟରେ ନିଜର ଲକ୍ଷ୍ୟର ଏକ ଆଦର୍ଶ ରୂପେ ପ୍ରତୀୟମାନ ହୁଏ । ଉକ୍ତ ଆଦର୍ଶକୁ ବାସ୍ତବତାରେ ପରିଣତ କରିବାପାଇଁ ସେ ସତତ ଚେଷ୍ଟିତ ହୁଏ ।

(୬) ନ୍ୟୁନତାବୋଧ: —ଶୈଶବ କାଳୀନ ଅସଂପୂର୍ଣ୍ଣତା ବ୍ୟକ୍ତି ମନରେ ନ୍ୟୁନତାବୋଧ ସୃଷ୍ଟି କରେ । ଶାରୀରିକ ଦୃଷ୍ଟିକୋଣରୁ ବିଚାର କଲେ ଜଣାଯାଏ ଯେ ବ୍ୟକ୍ତି ନିଜର ନ୍ୟୁନତା ବୋଧକୁ ଦୂର କରିବା ପାଇଁ ସର୍ବଦା ଚେଷ୍ଟିତ ହୋଇଥାଏ । ଉଦାହରଣ ସ୍ୱରୂପ ନିଜର ଦକ୍ଷିଣ ହସ୍ତ ହରାଇଥିବା ଜଣେ ବ୍ୟକ୍ତି ନିଜ ବାମ ହସ୍ତ ଦ୍ୱାରା ସମସ୍ତ କାର୍ଯ୍ୟ କରିଥାଏ । ଏହିପରି ଭାବରେ କୌଣସି ଏକ ଶାରୀରିକ ଅଙ୍ଗର କ୍ଷତି ପୂରଣ କରିବା ମନୁଷ୍ୟର ଏକ ପ୍ରବୃତ୍ତି । ଏହା ମାନସିକ ସ୍ତରରେ ମଧ୍ୟ କାର୍ଯ୍ୟ କରିଥାଏ । ଜଣେ ଶାରୀରିକ ଅକ୍ଷମ ବ୍ୟକ୍ତି ନିଜର କ୍ରୀଡ଼ା ନୈପୁଣ୍ୟ ସମ୍ପର୍କରେ ଦିବା ସ୍ୱପ୍ନରେ ମଜ୍ଜିରହେ । ସେହିପରି ଦୁର୍ବଳ ଲୋକ ନିଜକୁ ଶକ୍ତିଶାଳୀ ହେବାର ଏବଂ ଭୀରୁ, ସାହସୀ ହେବାର ଦିବାସ୍ୱପ୍ନ ଦେଖନ୍ତି । ସମସ୍ତ ସମୟରେ ଶରୀରର ଦୁର୍ବଳ ଅଂଶ କ୍ଷତିପୂରଣ କରିବାର କ୍ରମାଗତ ଚେଷ୍ଟା କରନ୍ତି ଏବଂ ସଫଳ ହୋଇଥାନ୍ତି । ଉଦାହରଣ ସ୍ୱରୂପ ରୁଜଭେଲ୍ଟ (**Roosevelt**) ଯୁବକ ଅବସ୍ଥାରେ ଅତ୍ୟନ୍ତ ଦୁର୍ବଳ ଥିଲେ । କିନ୍ତୁ କ୍ରମାଗତ ବ୍ୟାୟାମ ଫଳରେ ସେ ଜଣେ ସବଳ ବ୍ୟକ୍ତି ହୋଇପାରିଥିଲେ । ସେହିପରି ସାମାଜିକ ନ୍ୟୁନତା-ବୋଧ ମଧ୍ୟ ମନୁଷ୍ୟକୁ ଅଧିକ ପ୍ରଗତିଶୀଳ ଓ ପ୍ରତିଭାବାନ୍ କରିଥାଏ ।

ଆଡ୍‌ଲର୍‌ଙ୍କ ମତରେ ପୁରୁଷ ବା ସ୍ତ୍ରୀ ପ୍ରତ୍ୟେକ ବ୍ୟକ୍ତି ସଦା ସର୍ବଦା ପୌରୁଷପୂର୍ଣ୍ଣ ବ୍ୟକ୍ତିତ୍ୱର ଅଧିକାରୀ ହେବାକୁ ଚାହାନ୍ତି । ସେଥିପାଇଁ ସମୟେ ସମୟେ ସ୍ତ୍ରୀ ଲୋକମାନେ ସେମାନଙ୍କ ନାରୀ ଭାବରେ ଜନ୍ମଦେଇ ଥିବାରୁ ପିତାମାତାଙ୍କୁ ନିନ୍ଦା କରିବାର ଦେଖାଯାଏ । ସାଧାରଣତଃ ସ୍ତ୍ରୀ ମାନେ ପୁରୁଷ ପ୍ରଧାନ କାର୍ଯ୍ୟ ଯଥା ଶାସକ, ଇଞ୍ଜିନିୟର ଓ ପାଇଲଟ୍ ଇତ୍ୟାଦି କାର୍ଯ୍ୟକୁ ଅଧିକ ପସନ୍ଦ କରିଥାନ୍ତି । ଜନ୍ମ ସମୟରେ ପ୍ରତ୍ୟେକ ବ୍ୟକ୍ତି ସମାନ ନ୍ୟୁନତା ବୋଧ ନେଇ ଜନ୍ମ ଗ୍ରହଣ କରିଥାଏ । କିନ୍ତୁ ବୟସାଧିକ୍ୟ କ୍ରମେ ଜୀବନରେ କୌଣସି ଅଭାବ ଓ ଅସମ୍ପୂର୍ଣ୍ଣତାର ଉପଲବ୍ଧି କଲେ ନ୍ୟୁନତା ବୋଧ କମ୍ ବା ବେଶୀ ହୋଇଥାଏ ।

ନ୍ୟୁନତା ବୋଧ ମନୁଷ୍ୟକୁ ବିକାଶର ଉଚ୍ଚତର ସୀମା ପର୍ଯ୍ୟନ୍ତ ପରିଚାଳିତ କରିଥାଏ । ଗୋଟିଏ ବିଷୟରେ ବିକାଶ ଲାଭ କରିସାରିବା ପରେ ମନୁଷ୍ୟ ଅନ୍ୟ ଏକ ବିଷୟରେ ନ୍ୟୁନତାବୋଧ ଅନୁଭବ କରେ ଏବଂ ସେଥିରେ ପରିପୂର୍ଣ୍ଣତା ହାସଲ କରିସାରିବା ପରେ ପୁଣି ଏକ ବିଷୟରେ ତାର ନ୍ୟୁନତା ବୋଧ ଅନୁଭୂତ ହୁଏ । ଏହିପରି ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ପ୍ରତ୍ୟେକ ସମୟରେ ମନୁଷ୍ୟ ନିଜର କୌଣସି ନା କୌଣସି

ନ୍ୟୂନତାବୋଧ ଦୂରକରିବା ପାଇଁ ସର୍ବଦା ଚେଷ୍ଟିତ ହୁଏ । ଫଳରେ ତାର ବ୍ୟକ୍ତିତ୍ୱ ଅଗ୍ରଗାମୀ ହୁଏ ।

**ଉତ୍କୃଷ୍ଟତା ଲାଭପାଇଁ ଚେଷ୍ଟା :**

ନ୍ୟୂନତା ଭାବ ଦୂରକରିବା ପରେ ବ୍ୟକ୍ତି ଉତ୍କୃଷ୍ଟତା ଲାଭ ପାଇଁ ଚେଷ୍ଟା କରିଥାଏ । ଆଡ଼ଲର୍ ପ୍ରଥମେ ମତ ପୋଷଣ କରିଥିଲେ ଯେ ଆକ୍ରମଣଶୀଳ ମନୋଭାବ ଯୋଗୁଁ ବ୍ୟକ୍ତିତ୍ୱର ସମସ୍ତ ପ୍ରବୃତ୍ତି ଏକମୁଖୀ ହୋଇ ଗୋଟିଏ ଲକ୍ଷ୍ୟ ସାଧନରେ ଚେଷ୍ଟିତ ହୁଅନ୍ତି । ପରେ ସେ ମତ ପରିବର୍ତ୍ତନ କରିଥିଲେ ଏବଂ ପ୍ରତ୍ୟେକ ବ୍ୟକ୍ତିର ମନରେ ଥିବା କ୍ଷମତା ଲିପ୍ସା ସ୍ୱଭାବ ଜୀବନକୁ ଗତିଶୀଳ କରାଇବାର ଯୁକ୍ତି ଉପସ୍ଥାପନ କରିଥିଲେ । କିନ୍ତୁ ସର୍ବଶେଷରେ ଆଡ଼ଲର୍ ମତ ପ୍ରଦାନ କଲେ ଯେ "କ୍ଷମତାଲିପ୍ସା" ନୁହେଁ ଉତ୍କୃଷ୍ଟତା ଲାଭ ପାଇଁ ଚେଷ୍ଟା ବ୍ୟକ୍ତିତ୍ୱକୁ ବିକଶିତ କରିଥାଏ । ନିଜର ନ୍ୟୂନତାବୋଧ ଓ ଅଭାବ ବୋଧର ବିକଳ୍ପ ପାଇଁ ଶ୍ରେଷ୍ଠତା ହାସଲ କରିବା ସର୍ବଶ୍ରେଷ୍ଠ ଉପାୟ ହୋଇ-ଥିବାରୁ ବ୍ୟକ୍ତିତ୍ୱ ସେଇ ପ୍ରବୃତ୍ତି ଦ୍ୱାରା ପରିଚାଳିତ ହୁଏ । ଆଡ଼ଲର୍‌ଙ୍କ ମତରେ ଉତ୍କୃଷ୍ଟତାର ଅର୍ଥ ହେଉଛି "ଉଚ୍ଚ ସ୍ଥାନକୁ ଗମନ" । ବ୍ୟକ୍ତିତ୍ୱ ବିକାଶର ପ୍ରତ୍ୟେକ ସ୍ତର ଉଚ୍ଚ ସ୍ଥାନ ଗମନର ଗୋଟିଏ ଗୋଟିଏ ପାହାଚ । କିନ୍ତୁ ଏହି କାର୍ଯ୍ୟ କରିବାର ଉପାୟ ବ୍ୟକ୍ତି ବିଶେଷ କ୍ଷେତ୍ରରେ ଭିନ୍ନ ଭିନ୍ନ ହୋଇଥାଏ । ପ୍ରତ୍ୟେକ ନିଜସ୍ୱ ସ୍ୱତନ୍ତ୍ର ପନ୍ଥା ଅବଲମ୍ବନ କରନ୍ତି । ଅନ୍ୟ ବ୍ୟକ୍ତିମାନଙ୍କ ଉପରେ କ୍ଷମତା ବିସ୍ତାର କରିବା ଉତ୍କୃଷ୍ଟତା ଲାଭର ଅର୍ଥ ନୁହେଁ । ଏହାର ପ୍ରକୃତ ଅର୍ଥ ହେଉଛି ମନୁଷ୍ୟ ନିଜ ମଧ୍ୟରେ କୌଣସି ଦିଗରେ ଉତ୍କୃଷ୍ଟତା ଉପଲବ୍ଧି କରିବା । ତେଣୁ ଏହାକୁ "ଆତ୍ମ ଉତ୍କୃଷ୍ଟତାବୋଧ" କୁହାଯାଇ ପାରେ ।

ଉତ୍କୃଷ୍ଟତା ଲାଭପାଇଁ ଚେଷ୍ଟା ମନୁଷ୍ୟର ଅନ୍ତର୍ନିହିତ । ଏହା ଶିଶୁ ମଧ୍ୟରେ ମଧ୍ୟ ଲୁକ୍‌କାୟିତ ଭାବରେ ଥାଏ । ଏହା ମନୁଷ୍ୟକୁ କ୍ରମାଗତ ସାଧନା ପାଇଁ ପ୍ରେରଣା ଯୋଗାଏ ।

**ଜୀବନ ନିର୍ବାହର ପ୍ରଣାଳୀ :**

ମନୁଷ୍ୟ ନିଜର ନ୍ୟୂନତାବୋଧ ଦୂର କରି ଉତ୍କୃଷ୍ଟତା ହାସଲ କରିବା ନିମିତ୍ତ ଯେଉଁ ଧାରାରେ କାର୍ଯ୍ୟକରେ ତାହାକୁ ତା'ର ଜୀବନ ନିର୍ବାହ ପ୍ରଣାଳୀ କୁହାଯାଏ । ପ୍ରତ୍ୟେକ ବ୍ୟକ୍ତି ନିଜପାଇଁ ଓ ନିଜ ଜୀବନ ପାଇଁ ଏକ କାର୍ଯ୍ୟକ୍ରମ ପ୍ରସ୍ତୁତ କରିଥାଏ । ଏହା ଦ୍ୱାରା ସେ ନିଜର ସମସ୍ତ ଅଭାବ ବୋଧର କ୍ଷତି ପୂରଣ

କରିଥାଏ । ଏହି କାର୍ଯ୍ୟ ନିର୍ବାହ ପ୍ରଣାଳୀ ବ୍ୟକ୍ତି ବିଶେଷ କ୍ଷେତ୍ରରେ ଭିନ୍ନ ଭିନ୍ନ ହୋଇଥାଏ । କବି, ଲେଖକ, ବାଦ୍ୟକାର, ଖେଳାଳୀ, ଅଭିନେତା, ବୁଦ୍ଧିଜୀବି ପ୍ରତ୍ୟେକଙ୍କର କାର୍ଯ୍ୟପନ୍ଥା ପୃଥକ୍ ପୃଥକ୍ ହୋଇଥାଏ । ଫଳରେ ବ୍ୟକ୍ତିତ୍ୱ ଏକ ନିର୍ଦ୍ଦିଷ୍ଟ ନିୟମର ବଶବର୍ତ୍ତୀ ହୁଏ । ଜୀବନ ପ୍ରଣାଳୀ ଦୁଇଟି ବିଷୟ ଦ୍ୱାରା ପ୍ରଭାବିତ ହୁଏ । ପ୍ରଥମଟି ହେଲା ଅନ୍ତର୍ନିହିତ ସାମର୍ଥ୍ୟ ଓ ଅନ୍ୟଟି ହେଉଛି ପରିବେଷ୍ଟନୀ ଗତ ପ୍ରଭାବ । କିନ୍ତୁ ଆଡ୍‌ଲର ଅନ୍ତର୍ନିହିତ ସାମର୍ଥ୍ୟକୁ ଅଧିକ ପ୍ରାଧାନ୍ୟ ଦେଉଥିଲେ କାରଣ ଏହାର ବଳରେ ମନୁଷ୍ୟ ପରିବେଷ୍ଟନୀର ପ୍ରତ୍ୟେକ ପ୍ରତିକୂଳ ଅବସ୍ଥା ଓ ବାଧାବିଘ୍ନକୁ ଦୂର କରିବା ସଙ୍ଗେ ସଙ୍ଗେ ଉପଯୁକ୍ତ ସୁଯୋଗକୁ କାର୍ଯ୍ୟରେ ଲଗାଇପାରେ ।

ପ୍ରତ୍ୟେକ ବ୍ୟକ୍ତିର ଜୀବନ ନିର୍ବାହ ପ୍ରଣାଳୀ ସ୍ୱତନ୍ତ୍ର । କୌଣସି ଦୁଇଟି ବ୍ୟକ୍ତି ଏକ ପ୍ରକାର ଜୀବନ ଧାରଣ ପ୍ରଣାଳୀର ଅଧିକାରୀ ହୋଇ ନ ପାରନ୍ତି । ଜୀବନର କାର୍ଯ୍ୟଧାରା ମନୁଷ୍ୟର ସମସ୍ତ ବ୍ୟବହାର, ଅନୁଭୂତି ଓ ଚିନ୍ତାର ଏକ ସମନ୍ୱିତ ଏକକ । ଶୈଶବ ଅବସ୍ଥାରେ ଅର୍ଥାତ୍ ପ୍ରାୟ ପାଞ୍ଚ, ଛଅ ବର୍ଷ ବୟସରୁ ମନୁଷ୍ୟ ନିଜର ଜୀବନ ଧାରା ଆରମ୍ଭ କରିଥାଏ । ଭବିଷ୍ୟତରେ କେବଳ ତାର ପରିପ୍ରକାଶର ଭଙ୍ଗୀ ପରିବର୍ତ୍ତିତ ହୁଏ ଓ କେତେକ ନୂତନ ଭାବଧାରାର ଅଧିକାରୀ ହୋଇଥାଏ । ଶରୀରରେ କୌଣସି ଅଙ୍ଗର ଅନୁପସ୍ଥିତି ବା ଦୁର୍ବଳତା, ମାନସିକ ଅପରିପକ୍ୱତା, ଶୈଶବ ଅଭିଜ୍ଞତା, ଭ୍ରାତା ଭଗ୍ନୀଙ୍କ ସଂଖ୍ୟା, ପାରିବାରିକ ଓ ସାମାଜିକ ଅବସ୍ଥା ବ୍ୟକ୍ତିର ଜୀବନ ଧାରଣ ପ୍ରଣାଳୀକୁ ନିୟନ୍ତ୍ରିତ କରିଥାଏ ।

ସମାଜ ଓ ପରିବାର ମଧ୍ୟରେ କୌଣସି ବ୍ୟକ୍ତିର ସ୍ଥାନ ତାର ବ୍ୟକ୍ତିତ୍ୱ ନିରୂପିତ କରିଥାଏ । ପରିବାରର ପ୍ରଥମ ସନ୍ତାନ ଅଧିକ ସ୍ନେହ ସହାନୁଭୂତି ଲାଭ କରିଥିବା ସ୍ଥଳେ ଦ୍ୱିତୀୟ ଓ ତୃତୀୟ ସନ୍ତାନମାନେ ତୁଳନାତ୍ମକ ଭାବେ କମ୍ ସ୍ନେହ ଲାଭ କରିଥାନ୍ତି । ସମୟ ସମୟରେ ସର୍ବଶେଷ ଶିଶୁଟି ପିତାମାତାଙ୍କର ଅଧିକ ଆଦରଣୀୟ ହୋଇଥିଲେ ପୂର୍ବବର୍ତ୍ତୀ ଶିଶୁଟି ମନରେ ତା' ପ୍ରତି ଶତ୍ରୁଭାବାପନ୍ନ ଓ ଆକ୍ରମଣଶୀଳ ମନୋଭାବ ସୃଷ୍ଟି ହୁଏ । ସେହିପରି ମାନସିକ ଅକ୍ଷମମାନଙ୍କ ଅପେକ୍ଷା ଶାରୀରିକ ଅକ୍ଷମମାନେ ସମାଜରେ ଅଧିକ ସହାନୁଭୂତି ପ୍ରାପ୍ତ ହୋଇଥାନ୍ତି । ଏହି ସହାନୁଭୂତି ସେମାନଙ୍କର ଶାରୀରିକ ଅଭାବ ବୋଧ ପାଇଁ କ୍ଷତି ପୂରଣ କରେ । ମାତ୍ର ମାନସିକ ଅକ୍ଷମମାନେ ଆବଶ୍ୟକୀୟ ସହାନୁଭୂତି ପ୍ରାପ୍ତ ହେଉ ନଥିବାରୁ ସେମାନଙ୍କ ଜୀବନ ଧାରା ଭୁଲ ପଥରେ ପରିଚାଳିତ ହୋଇଥାଏ । ସମୟ ସମୟରେ କେତେକ ଶିଶୁ ସେମାନଙ୍କ ପିତା ମାତାଙ୍କ ଦ୍ୱାରା ଅବହେଳିତ ହୋଇଥାନ୍ତି । ଏହି ଅବହେଳା ସେମାନଙ୍କ ଜୀବନ ଧାରଣ ପ୍ରଣାଳୀ ଓ କାର୍ଯ୍ୟାବଳୀକୁ ଅସଙ୍ଗଠିତ ଓ ଅସାମାଜିକ କରିଥାଏ । ସେହିପରି ଅତ୍ୟଧିକ ଦାରିଦ୍ର୍ୟ ମନ ମଧ୍ୟରେ ବିକାର ଓ ବିଦ୍ରୋହ ଭାବ ଜାଗ୍ରତ କରେ ।

**ସୃଜନଶୀଳତା :**

ବଂଶାନୁକ୍ରମରୁ ପ୍ରାପ୍ତ ଅନ୍ତର୍ନିହିତ ସାମର୍ଥ୍ୟ ପରିବେଷ୍ଟନୀ ଗତ ଅବସ୍ଥା, ଅଭିଜ୍ଞତାରୁ ଶିକ୍ଷା ଏ ସମସ୍ତ ଏକତ୍ରିତ କରି ଉତ୍କୃଷ୍ଟତା ଲାଭର ଉଦ୍ଦେଶ୍ୟରେ ମନୁଷ୍ୟ ନିଜର ସ୍ୱତନ୍ତ୍ର ଜୀବନ ଧାରଣର ପ୍ରଣାଳୀ ଗଠନ କରିବା ପାଇଁ ଯେଉଁ ବୁଦ୍ଧିମତ୍ତା ଓ ପରିଶ୍ରମ ପ୍ରଦର୍ଶନ କରେ ତାହାକୁ ସୃଜନଶୀଳତା କୁହାଯାଇପାରେ । ଆଡ଼ଲରଙ୍କ ଦୁଇଟି ଧାରଣା ଯଥା—ଜୀବନ ଧାରଣ ପ୍ରଣାଳୀ ଓ ସୃଜନଶୀଳତା ଏକ ଭଳି ମନେ ହେଉଥିଲେ ହେଁ ସେ ଦୁଇଟି ଭିନ୍ନ । ଜୀବନ ଧାରଣ ପ୍ରଣାଳୀ ପରିସ୍ଥିତି ସହ ପ୍ରତକ୍ରିୟାଶୀଳ ଓ ଯନ୍ତ୍ରବତ୍ ମାତ୍ର ସୃଜନଶୀଳତା ନୂତନ କାର୍ଯ୍ୟଧାରାର ସୃଷ୍ଟିକାରୀ । ମନୁଷ୍ୟ ମଧ୍ୟରେ ସୃଜନଶୀଳତା ସର୍ବଦା ବ୍ୟକ୍ତିତ୍ୱକୁ ଏପରି ରୂପ ଦେବାକୁ ଚାହେଁ ଯାହା ପୂର୍ବରୁ କେବେହେଁ ଦେଖାଯାଇ ନଥିବ । ଏହା ଅଦୃଶ୍ୟ କିନ୍ତୁ ଏହାର ପ୍ରଭାବ ଅନୁଭୂତ ଓ ବର୍ଣ୍ଣନାଯୋଗ୍ୟ । ଏହି 'ସୃଜନଶୀଳତା'କୁ ଭିତ୍ତିକରି ଆଡ଼ଲର୍ ମତ ପ୍ରକାଶ କରିଥିଲେ ଯେ ମନୁଷ୍ୟ ନିଜେ ନିଜର ବ୍ୟକ୍ତିତ୍ୱ ଗଠନ କରେ । କେତେକ ସାମର୍ଥ୍ୟ ନେଇ ମନୁଷ୍ୟ ଜନ୍ମ ଗ୍ରହଣ କରିଥାଏ । ପରିବେଷ୍ଟନୀରୁ ସେ ଧାରଣା ସଂଗ୍ରହ କରେ । ବାହ୍ୟ ଜଗତ ସହ ସେ ନିଜର ସମ୍ପର୍କ ଯେପରି ପ୍ରତିଷ୍ଠା କରେ ତା କେବଳ ସୃଜନଶୀଳତା ଯୋଗୁଁ ସମ୍ଭବ ହୋଇଥାଏ ।

**ସାମାଜିକତା :**

ମନୁଷ୍ୟର ବ୍ୟକ୍ତିତ୍ୱ ସମାଜ ଅଭିମୁଖୀ ହେବାକୁ ସାମାଜିକତା କୁହାଯାଇପାରେ । ମନୁଷ୍ୟ ଜନ୍ମଠାରୁ ସମାଜ ଦ୍ୱାରା ଲାଳିତ ପାଳିତ ହୋଇ ଆସିଥାଏ । ଏହି ଧାରଣା ତା' ମନରେ ଉଦୟ ହେବାକ୍ଷଣି ସେ ସମାଜର ମଙ୍ଗଳ ପାଇଁ କାର୍ଯ୍ୟ କରିବାକୁ ଉଦ୍ୟତ ହୁଏ । ସର୍ବପ୍ରଥମେ ଶିଶୁ ଅବସ୍ଥାରୁ ସେ ନିଜ ମାତା ଓ ପରେ ନିଜ ପରିବାରକୁ ବିଭିନ୍ନ କାର୍ଯ୍ୟରେ ସାହାଯ୍ୟ କରେ । ଏଥିପାଇଁ ସେ ଯେଉଁ ପ୍ରଶଂସା ଲାଭକରେ ତାହା ତାକୁ ଅଧିକ ଉତ୍ସାହିତ କରିଥାଏ । ନିଜର ଆବଶ୍ୟକତା ପୂରଣ ପାଇଁ ମଧ୍ୟ ସମାଜର ସେବା କରିବା ଆବଶ୍ୟକ ହୋଇଥାଏ । ଅନ୍ୟ ପକ୍ଷରେ ସମାଜ ପାଇଁ କାର୍ଯ୍ୟ କରିବା ଦ୍ୱାରା ସେ ନିଜ ଦୁର୍ବଳତା ଗୁଡ଼ିକ ଲୁଚାଇ ରଖିବାକୁ ସକ୍ଷମ ହୋଇଥାଏ । ଏହା ଦ୍ୱାରା ସେ ନିଜ ଉଚ୍ଚମନୋଭାବ ସମାଜ ପ୍ରତି ପ୍ରଦର୍ଶନ କରିପାରେ । ଏବଂ ସମାଜ ମଧ୍ୟରେ ରହି ଓ ସମାଜର ଆଇନ୍ କାନୁନ ମାନି ନିଜର ଉତ୍କୃଷ୍ଟତା ପ୍ରତିପାଦନ ପାଇଁ ଚେଷ୍ଟାକରେ । କିନ୍ତୁ କୌଣସି ମନୁଷ୍ୟ ନିଜର କଳ୍ପିତ ଉତ୍କୃଷ୍ଟତା ଓ କଳ୍ପିତ ଲକ୍ଷ୍ୟ ସ୍ଥାନରେ ପହଞ୍ଚି ପାରେନାହିଁ । ଫଳରେ ନିଶ୍ଚିତ ଭାବରେ ତା ମନରେ ଏକ ଅଭାବବୋଧ ସୃଷ୍ଟି ହୁଏ । ପ୍ରତ୍ୟେକ ମନୁଷ୍ୟର ଏପରି ଅବସ୍ଥା ପହଞ୍ଚିବାରୁ ଏହା ପରସ୍ପର ମଧ୍ୟରେ ଏକ ସାଧାରଣ ଗୁଣ ରୂପେ ସମସ୍ତଙ୍କ

ସମସ୍ତଙ୍କୁ ଏକା ପ୍ରକାର ଭାବନାର ଶିକାର କରେ । ଆଡ୍‌ଲର୍‌ଙ୍କ ମତରେ ସାମାଜିକତା ମନୁଷ୍ୟ ମଧ୍ୟରେ ଅନ୍ତର୍ନିହିତ । କିନ୍ତୁ ଏହାର ବିକାଶ ଓ ବୃଦ୍ଧି ପ୍ରକାଶ ପାଇଁ କମାଗତ ଚେଷ୍ଟା ସାହାଯ୍ୟ ଓ ଶିକ୍ଷା ଆବଶ୍ୟକ ହୋଇଥାଏ । ଏଥିପାଇଁ ସାମୂହିକ ଉପାଦାନ ଗୁଡ଼ିକର ଅବଦାନ ଏକ ଶ୍ରେଷ୍ଠ ସ୍ଥାନ ହାସଲ କରିଥାଏ ।

## ଆଡ୍‌ଲର୍‌ଙ୍କ ତତ୍ତ୍ୱର ମୂଲ୍ୟାଙ୍କନ :

ଆଡ୍‌ଲର୍‌ଙ୍କ ତତ୍ତ୍ୱରେ କ୍ରମ ବିକାଶ ପରିଲକ୍ଷିତ ହୁଏ । ପ୍ରଥମେ ସେ ମନୁଷ୍ୟର ସାମର୍ଥ୍ୟ ଅପେକ୍ଷା ଆକ୍ରମଣଶୀଳ ମନୋଭାବ ଉପରେ ଆଲୋଚନା କରିଛନ୍ତି । ତତ୍ପରେ ଉତ୍କୃଷ୍ଟତା ଲାଭ ପାଇଁ ଚେଷ୍ଟା ଓ ସର୍ବଶେଷରେ ସାମାଜିକତା ବୋଧ ତାଙ୍କ ତତ୍ତ୍ୱରେ ସ୍ଥାନ ପାଇଅଛି । ଏହିପରି ଭାବରେ ଏହି ମତବାଦଟି ସରଳ ହେବା ସଙ୍ଗେ ସଙ୍ଗେ ବାସ୍ତବବାଦୀ ମଧ୍ୟ ହୋଇପାରିଛି । ଏହା ସାମାଜିକତାକୁ ପ୍ରାଧାନ୍ୟ ପ୍ରଦାନ କରିବା ସହିତ ମନୁଷ୍ୟକୁ ନିଜ ଜୀବନର ଗଠନକାରୀ ଭାବରେ ପ୍ରତିପାଦିତ କରିଛି ।

ବ୍ୟକ୍ତିତ୍ୱର ମତବାଦକୁ ସୃଜନଶୀଳତାର ଧାରଣା ଆଡ୍‌ଲର୍‌ଙ୍କର ଏକ ଅବଦାନ । ଏହା ଏକ ସମ୍ପୂର୍ଣ୍ଣ ବ୍ୟକ୍ତିଗତ ଉପାଦାନ ଏବଂ ଏହା ବ୍ୟକ୍ତିର ଜୀବନ ଧାରଣ ପ୍ରଣାଳୀକୁ ପ୍ରଭାବିତ କରିଥାଏ । ବ୍ୟକ୍ତିତ୍ୱ ସମ୍ବନ୍ଧରେ ଗବେଷଣାରତ ମନୋବିଜ୍ଞାନୀ ମାନଙ୍କୁ ଆଡ୍‌ଲର୍‌ଙ୍କ ଦତ୍ତ ଏହି ପଦଟି ଯଥେଷ୍ଟ ସାହାଯ୍ୟ କରିଛି ।

ଆଡ୍‌ଲର୍ ମନୁଷ୍ୟର ଚେତନା ଓ ଲକ୍ଷ୍ୟ ସାଧନ ପାଇଁ ଚେଷ୍ଟାକୁ ବ୍ୟକ୍ତିତ୍ୱର କେନ୍ଦ୍ର ସ୍ଥଳରେ ଅବସ୍ଥାପିତ କରାଇଛନ୍ତି । ମନୁଷ୍ୟ ଚେତନଶୀଳ ହୋଇଥିବାରୁ ସେ ତାର ପ୍ରତ୍ୟେକ ବ୍ୟବହାର ଓ କାର୍ଯ୍ୟକଳାପର କାରଣ ଜାଣିପାରେ ଏବଂ ନିଜର ଲକ୍ଷ୍ୟ ପଥରେ ଅଗ୍ରସର ହୁଏ । ନିଜକୁ ଜଣେ ସଫଳ ବ୍ୟକ୍ତିତ୍ୱ ବିଶିଷ୍ଟ ମନୁଷ୍ୟ ଭାବରେ ପ୍ରତିପାଦିତ କରିବାପାଇଁ ସେ ବିଭିନ୍ନ ଯୋଜନା ପ୍ରସ୍ତୁତ କରିଥାଏ ।

ଜୈବିକ ଉପାଦାନ ଗୁଡ଼ିକ ଉପରେ ଅତ୍ୟଧିକ ଗୁରୁତ୍ୱ ଆରୋପ କରିଥିବାରୁ ଆଡ୍‌ଲର୍‌ଙ୍କ ତତ୍ତ୍ୱ ସମାଲୋଚନାର ଶିକାର ହୋଇଥାଏ । କେବଳ ଶାରୀରିକ ଅକ୍ଷମତା ବ୍ୟକ୍ତିତ୍ୱକୁ ବିଶୃଙ୍ଖଳିତ କରେନାହିଁ । ଆଧୁନିକ ମନୋବୈଜ୍ଞାନିକମାନେ ପରୀକ୍ଷା କରି ଦର୍ଶାଇଛନ୍ତି ଯେ ବ୍ୟକ୍ତିତ୍ୱ ଉପରେ ଶାରୀରିକ ଅକ୍ଷମତାର ପ୍ରଭାବ ସାମାଜିକ ପରିବେଷ୍ଟନୀ ଭେଦରେ ଭିନ୍ନ ଭିନ୍ନ ହୋଇଥାଏ । ଏହା ଅନ୍ୟମାନଙ୍କର ଶାରୀରିକ ଅକ୍ଷମ ପ୍ରତି ଦୃଷ୍ଟିଭଙ୍ଗୀ ଉପରେ ନିର୍ଭର କରେ ।

ପୁନଶ୍ଚ ଆଡ୍‌ଲର୍‌ଙ୍କ ମତରେ ମନୁଷ୍ୟର କ୍ଷମତାଲିପ୍ସା ଓ ଉତ୍କୃଷ୍ଟତା ଲାଭ-ପାଇଁ ଚେଷ୍ଟା ନିଜ ମଧ୍ୟରେ ସୀମିତ । ଅର୍ଥାତ୍ ସେ ନିଜକୁ କେବଳ ଉତ୍କୃଷ୍ଟତମ

ବ୍ୟକ୍ତିତ୍ୱର ଅଧିକାରୀ କରିବାକୁ ଚାହେଁ । କିନ୍ତୁ ଆଧୁନିକ ମନୋବିଜ୍ଞାନୀମାନେ ପରୀକ୍ଷା ଦ୍ୱାରା ପ୍ରମାଣିତ କରିଛନ୍ତି ଯେ ବ୍ୟକ୍ତି ସର୍ବଦା ନିଜକୁ ଅନ୍ୟ ସହ ତୁଳନା କରେ ଓ ଅନ୍ୟମାନଙ୍କ ଅପେକ୍ଷା ନିଜକୁ ଉତ୍କୃଷ୍ଟତର କରିବାକୁ ଚେଷ୍ଟାକରେ ।

**ସମଯୋଜନ (Adjustment) :**

ଶିଶୁକୁ ତାର ବ୍ୟକ୍ତିଗତ, ସାମାଜିକ ଓ ଆର୍ଥିକ ସମସ୍ୟାବଳୀ ସହ ପରିଚିତ କରାଇ ସେଗୁଡ଼ିକ ସମାଧାନ କରିବା ପାଇଁ ପ୍ରଶିକ୍ଷଣ ପ୍ରଦାନ କରିବା ଶିକ୍ଷାର ପ୍ରାଥମିକ ଉଦ୍ଦେଶ୍ୟ । ମନୁଷ୍ୟର ଅଧିକାଂଶ କାର୍ଯ୍ୟକଳାପ ତାର ଧନ୍ଦାମୂଳକ, ସାମାଜିକ ଓ ଅର୍ଥନୈତିକ ସମସ୍ୟାବଳୀ ସହ ସମଯୋଜନ ପାଇଁ ଉଦ୍ଦିଷ୍ଟ । ବିଭିନ୍ନ ପରିସ୍ଥିତି ସହ ସମଯୋଜନ କରିବା ମନୁଷ୍ୟର ଏକ ସାଧାରଣ ପ୍ରବୃତ୍ତି । ଏକ ସୁଖମୟ ଜୀବନ ଓ ସନ୍ତୁଷ୍ଟ ଲାଭ ଆଶାରେ ବ୍ୟକ୍ତି ତାର ପରିବେଷ୍ଟନୀ ସହ ସମଯୋଜନ କରିବା ପାଇଁ ସତତ ଯତ୍ନଶୀଳ ।

ଶରୀର ବିଜ୍ଞାନୀମାନେ ସମଯୋଜନକୁ ପରିବେଷ୍ଟନୀ ଓ ଜୈବିକ ଉପାଦାନର ଏକ ପାରସ୍ପରିକ କ୍ରିୟା ଭାବରେ ବର୍ଣ୍ଣନା କରନ୍ତି । କିନ୍ତୁ ମନୋବିଜ୍ଞାନରେ ସମଯୋଜନ ବ୍ୟାପକ ଅର୍ଥରେ ବ୍ୟବହୃତ ହୁଏ । ବ୍ୟକ୍ତି ଉପରେ ସମାଜର ଦାବୀ ଓ ଚାପ ଫଳରେ ତା'ଠାରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୁଏ ତାହା ଶାରୀରିକ ହେଉ ବା ମାନସିକ ହେଉ ସମଯୋଜନର ଅନ୍ତର୍ଭୁକ୍ତ । ଏହି ପରିବେଷ୍ଟନୀ ଗତ ଓ ସାମାଜିକ ଚାପ ବାହ୍ୟ ବା ଅନ୍ତଃ-ସୃଷ୍ଟି ହୋଇପାରେ । ଉଦାହରଣ ସ୍ୱରୂପ ଗୋଟିଏ ଶିଶୁ ପରିବାର ମଧ୍ୟରେ ଲାଳିତ ପାଳିତ ହେବା ସମୟରେ ତାଙ୍କୁ କେତେକ କାର୍ଯ୍ୟ କରିବାକୁ ବାଧ୍ୟ କରାଯାଏ ଓ ଅନ୍ୟ କେତେକ କାର୍ଯ୍ୟରୁ ନିବୃତ୍ତ କରାଯାଏ । କେତେକ ନିର୍ଦ୍ଦିଷ୍ଟ ନିୟମ ମାନି ସେ ଚଳିବାକୁ ବାଧ୍ୟହୁଏ । ଏହିପରି ଭାବରେ ପାରିବାରିକ ପରିବେଷ୍ଟନୀ ସହ ପାରସ୍ପରିକ କ୍ରିୟା ମାଧ୍ୟମରେ ତାର ବ୍ୟକ୍ତିତ୍ୱ ବିକଶିତ ହୁଏ । ଅନ୍ୟ ପକ୍ଷରେ ଅନ୍ତଃ ପ୍ରବୃତ୍ତିଗୁଡ଼ିକ ଯଥା-କ୍ଷୁଧା, ପିପାସା, ନିଦ୍ରା, ଶ୍ୱାସକ୍ରିୟା ଆଦି ମଧ୍ୟ ତା'ର ବ୍ୟକ୍ତିତ୍ୱକୁ ନିୟନ୍ତ୍ରିତ କରନ୍ତି । ଏହି ଦୁଇ ପ୍ରକାର ପ୍ରକ୍ରିୟା ପରସ୍ପର ବିପରୀତ ଦିଗରେ କାର୍ଯ୍ୟକଲେ ସମଯୋଜନ କ୍ରିୟା ଜଟିଳ ହୋଇପଡ଼େ । ବ୍ୟକ୍ତି ଗୋଟିଏ ପ୍ରବୃତ୍ତିକୁ ଶାନ୍ତ କରାଇବା ସମୟରେ ଅନ୍ୟ ଅଶାନ୍ତ ଓ ଅପୂର୍ଣ୍ଣ ପ୍ରବୃତ୍ତିଟି ପ୍ରତିକ୍ରିୟା ସୃଷ୍ଟି କରେ, ଫଳରେ ମାନସିକ କିମ୍ବା ଶାରୀରିକ ଭାରସାମ୍ୟ ନଷ୍ଟହୋଇ ବ୍ୟକ୍ତି ବ୍ୟର୍ଥତାର ଶିକାର ହୁଏ ।

ଉତ୍ତମ ସମଯୋଜନ ସେହି ବ୍ୟବହାରକୁ ବୁଝାଯାଏ ଯାହା ପରିବେଷ୍ଟନୀ ପ୍ରତି ଅନୁକୂଳ ଓ ଗଠନ ମୂଳକ । କୋଲେମ୍ୟାନ (Coleman)ଙ୍କ ମତରେ ବ୍ୟକ୍ତି ସମଯୋଜନ କ୍ରିୟାଦ୍ୱାରା ମାନସିକ ଚାପରୁ ମୁକ୍ତି ପାଇବା ସଙ୍ଗେ ସଙ୍ଗେ ନିଜର ଆବଶ୍ୟକତା ଗୁଡ଼ିକୁ ପୂରଣ କରିଥାଏ । ଆହୁରି ମଧ୍ୟ ଏହାଦ୍ୱାରା ବ୍ୟକ୍ତି ନିଜର

ପରିବେଷ୍ଟନୀ ସହ ଏକ ଅନୁକୂଳ ସମ୍ପର୍କ ପ୍ରତିଷ୍ଠା କରିଥାଏ । ସ୍ମିଥ (Smith)ଙ୍କ ମତରେ ଏକ ଉତ୍ତମ ସମଯୋଜନ ତାହାକୁ କୁହାଯାଇପାରେ ଯାହା ବାସ୍ତବବାଦୀ ଓ ସନ୍ତୁଷ୍ଟି ପ୍ରଦାନକାରୀ । ଏହା ଭବିଷ୍ୟତ ପାଇଁ ବ୍ୟର୍ଥତା,ଉତ୍ତେଜନା, ଉଦ୍‌ବେଗ ସବୁକୁ ଯଥାସମ୍ଭବ କମ୍ କରିଥାଏ ।

ଏହାର ଅର୍ଥ ନୁହେଁ ଯେ ଜଣେ ଉତ୍ତମ ଭାବରେ ସମଯୋଜିତ ବ୍ୟକ୍ତି ଜୀବନରେ ବ୍ୟର୍ଥତାର ସମ୍ମୁଖୀନ ହୁଏ ନାହିଁ । ଉତ୍ତମ ଭାବରେ ସମଯୋଜିତ ବ୍ୟକ୍ତି ମଧ୍ୟ ଅନ୍ୟମାନଙ୍କ ଭଳି ଜୀବନର ସମସ୍ତ ଲକ୍ଷ୍ୟ ଓ ଆବଶ୍ୟକତା ପୂର୍ଣ୍ଣ କରିବାରେ ଅସମର୍ଥ ହୁଏ । ସେ ମଧ୍ୟ ପରାଜୟ ଓ ବ୍ୟର୍ଥତାର ସମ୍ମୁଖୀନ ହୁଏ । କିନ୍ତୁ ବ୍ୟର୍ଥତାକୁ ସମ୍ମୁଖୀନ ହେବାର ସାମର୍ଥ୍ୟ ତା ନିକଟରେ ଥିବାରୁ ତାର ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟ ନଷ୍ଟହୁଏ ନାହିଁ । ପ୍ରତ୍ୟେକଙ୍କର ବ୍ୟର୍ଥତା ସମ୍ମୁଖୀନ ହେବାର ସାମର୍ଥ୍ୟ ପୃଥକ୍ ।

ସମଯୋଜନ ପ୍ରକ୍ରିୟା ମନୁଷ୍ୟ ଜାତି ସହ ସମାନ ସମୟରେ ସୃଷ୍ଟି ହୋଇଛି । ଡାରଉଇନଙ୍କ ତତ୍ତ୍ୱରେ ସମଯୋଜନ କ୍ରିୟା ପରିଲକ୍ଷିତ ହୁଏ । କିନ୍ତୁ ସେ ତାକୁ ଅନୁକୂଳନ (Adaptation) ଭାବରେ ବର୍ଣ୍ଣନା କରିଥିଲେ । ଏହା ସୃଷ୍ଟିର ଆରମ୍ଭରୁ ସମ୍ପୂର୍ଣ୍ଣ ଜୈବିକ ଥିଲା । ଜୀବଜନ୍ତୁ ପ୍ରାଣୀ ମାନଙ୍କର ଶରୀର ଗଠନ ଯେତିକି ଜଟିଳ ହୋଇ ଆସିଲା ପରିସ୍ଥିତି ସହ ଅନୁକୂଳନ ମଧ୍ୟ ସେତିକି କଷ୍ଟକର ହେଲା । ଫଳରେ ଅନେକ ପ୍ରକାର ଜାତିର ପ୍ରାଣୀ ପରିବେଷ୍ଟନୀ ସହ ସମଯୋଜନ କରିନପାରି ପୃଥିବୀ ପୃଷ୍ଠରୁ ଲୋପ ପାଇଗଲେ । ନିମ୍ନ ସ୍ତରର ପ୍ରାଣୀମାନଙ୍କୁ କେବଳ ଭୌଗୋଳିକ ପରିବେଷ୍ଟନୀ ସହ ସମଯୋଜନ କରିବାକୁ ପଡ଼ିଥାଏ ମାତ୍ର ମନୁଷ୍ୟର ସମଯୋଜନ ଭୌଗୋଳିକ, ସାମାଜିକ, ଶାରୀରିକ, ମାନସିକ ଓ ଆର୍ଥିକ ପ୍ରତ୍ୟେକ ସ୍ତରରେ କାର୍ଯ୍ୟକରେ । ତେଣୁ ଅନ୍ୟ ସମସ୍ତ ପ୍ରାଣୀମାନଙ୍କ ଅପେକ୍ଷା ମନୁଷ୍ୟର ସମଯୋଜନ କ୍ଷମତା ଅଧିକ ବୋଲି କୁହାଯାଏ ।

### ସମଯୋଜନ ଏକ ପ୍ରକ୍ରିୟା :

ସମଯୋଜନ ପ୍ରକ୍ରିୟାର ଗୁରୁତ୍ୱ ଆଲୋଚନା କରିବା ପୂର୍ବରୁ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ମନୁଷ୍ୟର ବିକାଶ ବିବୃତ କରିବା ଆବଶ୍ୟକ । ଜନ୍ମ ସମୟରେ ମନୁଷ୍ୟ ଶିଶୁ ସମ୍ପୂର୍ଣ୍ଣରୂପେ ଅନ୍ୟମାନଙ୍କ ଉପରେ ନିର୍ଭରଶୀଳ ଥାଏ । ପରିବାର ଓ ସମାଜର ବ୍ୟକ୍ତିମାନଙ୍କ ସାହାଯ୍ୟରେ ସେ ନିଜର ଆବଶ୍ୟକତା ଗୁଡ଼ିକ ପୂର୍ଣ୍ଣ କରିଥାଏ । ଶିଶୁ ପାଇଁ ତାର ପରିବେଶ ଏକ ଅଭେଦ୍ୟ ଓ ଅବୁଝା ବୁଢ଼ିଆଣୀ ଜାଲି ଭଳି ରହସ୍ୟମୟ ଜଣାପଡ଼େ । ପ୍ରତ୍ୟେକ ବ୍ୟକ୍ତି ଓ ପଦାର୍ଥ ତାକୁ ଏକଭଳି ଜଣାପଡ଼ନ୍ତି । କିନ୍ତୁ କ୍ରମଶଃ

ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ସେ ନିଜର ପ୍ରତ୍ୟକ୍ଷଣ, ସଂବେଦନ ଓ ସଂପ୍ରତ୍ୟୟନ (Conception) ମାଧ୍ୟମରେ ପରିବେଷ୍ଟନୀ ସମ୍ବନ୍ଧରେ ଧାରଣା ଅର୍ଜନ କରେ । ଏହାପରେ ଶିଶୁ ପରିବେଶର ବିଭିନ୍ନ ବସ୍ତୁ ସମ୍ପର୍କରେ ଚିନ୍ତା କରିବାକୁ ଆରମ୍ଭ କରେ । ଚିନ୍ତା ଶକ୍ତିର ବିକାଶ ଘଟିବା ପରେ ସେ ଅମୂର୍ତ୍ତ ଚିନ୍ତନ (Abstract Thinking) କରିବାକୁ ସକ୍ଷମ ହୁଏ ।

ସମସ୍ତ ସମୟରେ ଶିଶୁ ଏପରି ଏକ ଅବସ୍ଥାରେ ପଡ଼େ ଯେତେବେଳେ ତା'ର ଆଭ୍ୟନ୍ତରୀଣ ଓ ବାହ୍ୟ ଆବଶ୍ୟକତା ପରସ୍ପରର ବିପରୀତ ମୁଖୀ ହୁଅନ୍ତି । ଫଳରେ ତା ପାଇଁ ଏକ ପ୍ରତିକୂଳ ପରିବେଶ ବା ସମସ୍ୟା ସୃଷ୍ଟି ହୁଏ । ଏହି ପ୍ରତିକୂଳ ପରିବେଶ ଓ ସମସ୍ୟାଗୁଡ଼ିକୁ ଶିଶୁ ସମାଜ ଗ୍ରହଣୀୟ ପନ୍ଥାରେ ସମ୍ମୁଖୀନ ହୋଇ ପାରିଲେ ତା'ର ପ୍ରତିଯୋଜନ ସାମର୍ଥ୍ୟର ପରିଚୟ ମିଳିଥାଏ । ଯଦି ସମଯୋଜନ କରିବା ପାଇଁ ସେ କୌଣସି ଅସାମାଜିକ ପନ୍ଥାର ଆଶ୍ରୟ ନିଏ ତାହା ତା'ର ମାନସିକ ଅସୁସ୍ଥତାର ଲକ୍ଷଣ ଦର୍ଶାଇଥାଏ ।

ମାନସିକ ଦ୍ୱନ୍ଦ୍ୱ ହେଉଛି ସମଯୋଜନ ରକ୍ଷାକରି ନପାରିବାର ମୂଳ କାରଣ । ମନୁଷ୍ୟର ପ୍ରତ୍ୟେକ କାର୍ଯ୍ୟକଳାପ କୌଣସି ଏକ ଲକ୍ଷ୍ୟ ପୂରଣ ପାଇଁ ଉଦ୍ଦିଷ୍ଟ । କେବଳ ଅସ୍ୱାଭାବିକ (Abnormal) ବ୍ୟକ୍ତିମାନେ ଲକ୍ଷ୍ୟବିହୀନ କାର୍ଯ୍ୟ ପ୍ରଦର୍ଶନ କରନ୍ତି । ଯେଉଁ ଲକ୍ଷ୍ୟ ସାଧନ ପାଇଁ ବ୍ୟକ୍ତି ନିଜର ସମସ୍ତ ଶାରୀରିକ ଓ ମାନସିକ ଶକ୍ତି ନିୟୋଜିତ କରିଥାଏ କୌଣସି କାରଣରୁ ସେ ଲକ୍ଷ୍ୟ ସାଧିତ ନହେଲେ ତା ମନରେ ବିକ୍ଷୋଭ ବା ଆନ୍ଦୋଳନ ସୃଷ୍ଟି ହୁଏ ଏବଂ ଫଳ ସ୍ୱରୂପ ତାର ଶାରୀରିକ ତଥା ମାନସିକ ସ୍ଥିରସାମ୍ୟ ବ୍ୟାହତ ହୁଏ । ଏହି ସ୍ଥିରସାମ୍ୟ ନଷ୍ଟ କରିବା ପାଇଁ ବ୍ୟକ୍ତି ଅନେକ ଉପାୟରେ ଚେଷ୍ଟା କରିଥାଏ ।

୧୯୫୨ ଖ୍ରୀଷ୍ଟାବ୍ଦରେ ମନୋବିଜ୍ଞାନୀ ପିଗେଟ୍ (Piaget) ସମଯୋଜନ ପ୍ରକ୍ରିୟା ସମ୍ବନ୍ଧରେ ଏକ ପରୀକ୍ଷା କରିଥିଲେ । ସେ ଲକ୍ଷ୍ୟ କରିଥିଲେ, କେତେକ ବ୍ୟକ୍ତି ନିଜ ଉଦ୍ଦେଶ୍ୟ ସାଧନ ପାଇଁ ଏପରି ଦୃଢ଼ ପ୍ରତିଜ୍ଞ ଯେ ପରିବେଷ୍ଟନୀର ପରିବର୍ତ୍ତନ ଓ ପ୍ରତିକୂଳତା ସତ୍ତ୍ୱେ ସେମାନେ ତାଙ୍କ କର୍ତ୍ତବ୍ୟ ଓ ଆଚରଣ ପଥରୁ ବିଚ୍ୟୁତ ନୁହଁନ୍ତି । ଅନ୍ୟ କେତେକ ବ୍ୟକ୍ତି ପରିବେଷ୍ଟନୀର ପରିବର୍ତ୍ତନ ସହିତ ନିଜ ଉଦ୍ଦେଶ୍ୟ ଓ ଲକ୍ଷ୍ୟର ପରିବର୍ତ୍ତନ କରିବା ସଙ୍ଗେ ସଙ୍ଗେ ନିଜ ଆଚରଣ ଓ କାର୍ଯ୍ୟକଳାପ ମଧ୍ୟ ପରିବର୍ତ୍ତିତ କରିଥାନ୍ତି । ବର୍ତ୍ତମାନ ସ୍ୱତଃ ପ୍ରଶ୍ନ ଉଠେ ଏହି ଦୁଇ ପ୍ରକାର ଆଚରଣ ମଧ୍ୟରୁ କେଉଁ ଗୋଟିକ କ୍ଷେତ୍ରରେ ସମଯୋଜନ ଫଳପ୍ରଦ ହୋଇଥାଏ । ଏହି ପ୍ରଶ୍ନର ସଠିକ୍ ଉତ୍ତର ଦେବା କଷ୍ଟକର ହେଲେ ମଧ୍ୟ ଏହା କୁହାଯାଇ ପାରେ ଯେ ଏକ ଉତ୍ତମ ସମଯୋଜନ ପାଇଁ ଦୁଇଟିଯାକ ଆଚରଣ ମନୁଷ୍ୟ ଅନୁସରଣ କରିବା ଉଚିତ୍ ।

## ପ୍ରତିଯୋଜନ ମୂଳକ ପ୍ରକ୍ରିୟା ବା ପ୍ରତିରକ୍ଷା ମୂଳକ ଆଚରଣ (Adjustment Mechanism or Defence Mechanism)

ଏପରି ଅନେକ ଅବସ୍ଥା ଉପୁଜେ ଯେତେବେଳେ ମନୁଷ୍ୟ ତା'ର ସମସ୍ୟାଗୁଡ଼ିକୁ ସମାଧାନ କରିବା ପାଇଁ ଚେଷ୍ଟାକରି ଅସଫଳ ହୁଏ । ଏହା ତା' ମନରେ ବ୍ୟର୍ଥତା ଓ ଦ୍ୱନ୍ଦ୍ୱ ସୃଷ୍ଟି କରେ । ଏହି ବ୍ୟର୍ଥତା ଓ ଦ୍ୱନ୍ଦ୍ୱ ମନ ମଧ୍ୟରେ ରହି ଅହମ୍ (Ego)କୁ ଭୟ ପ୍ରଦର୍ଶନ କରନ୍ତି । ଏପରି ପରିସ୍ଥିତିରେ ମନୁଷ୍ୟ କେତେକ ସମଯୋଜନ ମୂଳକ ପ୍ରକ୍ରିୟା ପ୍ରଦର୍ଶନ କରିଥାଏ ଏବଂ ଏଗୁଡ଼ିକ ସାହାଯ୍ୟରେ ନିଜକୁ ବ୍ୟର୍ଥତା ଓ ଦ୍ୱନ୍ଦ୍ୱ ମଧ୍ୟରୁ ରକ୍ଷାକରେ । ଏହାକୁ ପ୍ରତିରକ୍ଷା ମୂଳକ ଆଚରଣ ମଧ୍ୟ କୁହାଯାଏ । ଏପରି ଆଚରଣ ଦ୍ୱାରା ଅହମ୍ ଓ ବ୍ୟକ୍ତିତ୍ୱର କୌଣସି ବିଘ୍ନ ଘଟେ ନାହିଁ । ଅତଏବ ପ୍ରତିରକ୍ଷା ମୂଳକ ଆଚରଣ ମନୁଷ୍ୟର ସେହି କାର୍ଯ୍ୟାବଳୀକୁ ବୁଝାଏ ଯାହା ଅହମକୁ ବ୍ୟର୍ଥତାର ଶୀକାର ହେବାରୁ ରକ୍ଷାକରେ । ଶୋଫର୍ (Shaffer) ଓ ସୋବେନ (Shoben)ଙ୍କ ମତରେ ପ୍ରତିରକ୍ଷା ମୂଳକ ଆଚରଣ ସେହି ଅଭ୍ୟାସଗୁଡ଼ିକୁ ବୁଝାଏ ଯାହାଦ୍ୱାରା ବ୍ୟକ୍ତି ନିଜର ଅଭିପ୍ରେରଣ (Motive)କୁ ସନ୍ତୁଷ୍ଟ କରେ; ଦ୍ୱନ୍ଦ୍ୱକୁ ପ୍ରଶମିତ କରେ ଏବଂ ମାନସିକ ଉତ୍ତେଜନା ହ୍ରାସ କରେ । କୋଲେମ୍ୟାନ (Coleman)ଙ୍କ ମତରେ ପ୍ରତିରକ୍ଷା ମୂଳକ ଆଚରଣ ଏକ ପ୍ରକ୍ରିୟା ଯାହା ପରିସ୍ଥିତିର ଗ୍ରୁପ ସହ ବ୍ୟକ୍ତିତ୍ୱର ସଫଳତମ ସମଯୋଜନ କରିବାରେ ସାହାଯ୍ୟ କରେ ।

ପ୍ରତିରକ୍ଷାମୂଳକ ଆଚରଣ ପ୍ରାୟ ପ୍ରତ୍ୟେକ ବ୍ୟକ୍ତି ପ୍ରଦର୍ଶନ କରିଥାନ୍ତି । ଭୟସର୍ବଦା ମନୁଷ୍ୟ ଅନ୍ତରରେ ବାସ କରିଥାଏ । ସେ ନିଜର ଅଭିପ୍ରେରଣ (Motive) ଗୁଡ଼ିକୁ ଭୟ କରେ ଏବଂ ଏହି ଭୟ ତା'ର ବିଭିନ୍ନ ଆଚରଣ ମାଧ୍ୟମରେ ପ୍ରକାଶ କରେ । ସେଥିରୁ କେତେକ ସାଧାରଣ ଆଚରଣ ନିମ୍ନରେ ପ୍ରଦତ୍ତ କରାଗଲା ।

**(୧) ଅମାନ୍ୟତା (Denial)** :—ଅମାନ୍ୟତା ବା ସାଧାରଣ ଭାବରେ ମନା କରିଦେବା ହେଉଛି କୌଣସି ଉତ୍ତେଜକ ମୁହୂର୍ତ୍ତରେ ନିଜ ବ୍ୟକ୍ତିତ୍ୱର ଭାରସାମ୍ୟ ରକ୍ଷା କରିବାର ସବୁଠାରୁ ସରଳ ଓ ସହଜ ଉପାୟ । ଉଦାହରଣ ସ୍ୱରୂପ ଶିଶୁମାନେ ଖେଳୁଥିବା ସମୟରେ ସେମାନଙ୍କୁ ପାଠ ପଢ଼ିବାକୁ ଡାକିଲେ ସେମାନେ ଆସନ୍ତି ନାହିଁ; କିନ୍ତୁ ପରେ ସେମାନେ କୁହନ୍ତି ଯେ ସେମାନେ କାହାର ଡାକିବା ଶୁଣି ନାହାନ୍ତି । ସେହି ପ୍ରାପ୍ତ ବୟସ୍କମାନେ ଜାଣି ଶୁଣି ନିଜର କୌଣସି ଭୁଲକୁ ମାନିବାକୁ ପ୍ରସ୍ତୁତ ହୁଅନ୍ତି ନାହିଁ । ଏହାଦ୍ୱାରା ଭବିଷ୍ୟତରେ କୌଣସି ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼େ ନାହିଁ କାରଣ ପ୍ରଥମରୁ ସମସ୍ୟାଟିକୁ ଅସ୍ୱୀକାର କରାଯାଇ ଥାଏ ।

(୨) ଆକ୍ରମଣାତ୍ମକ ବ୍ୟବହାର (Aggression) :—ଆକ୍ରମଣ ହିଁ ପ୍ରତିରକ୍ଷାର ଶ୍ରେଷ୍ଠତମ ଉପାୟ । ଆକ୍ରମଣ ଦ୍ୱାରା ନିଜର ବ୍ୟକ୍ତିତ୍ୱର ପରାକାଷ୍ଠା ଦର୍ଶାଇ ନିଜର ଦୁର୍ବଳତାଗୁଡ଼ିକୁ ଲୁକ୍କାୟିତ କରାଯାଇପାରେ । ଆକ୍ରମଣ ଦ୍ୱାରା ଅନ୍ୟମାନଙ୍କ ଉପରେ ପ୍ରଭାବ ବିସ୍ତାର କରି ସେମାନଙ୍କ ନିଜର ଅଧୀନସ୍ଥ କରିବା ଦ୍ୱାରା ସେମାନେ ବ୍ୟକ୍ତିତ୍ୱର ଦୁର୍ବଳତା ବିଷୟରେ ସ୍ୱର ଉତ୍ତୋଳନ କରିପାରନ୍ତି ନାହିଁ । ଆହୁରି ମଧ୍ୟ ଆକ୍ରମଣାତ୍ମକ ବ୍ୟବହାର ଦ୍ୱାରା ବ୍ୟର୍ଥତାର ଦ୍ୱନ୍ଦ୍ୱକୁ ନଷ୍ଟ କରିଦିଆଯାଇ ପାରେ । ଆକ୍ରମଣାତ୍ମକ ବ୍ୟବହାର ବାହ୍ୟ ଶାସ୍ତିମୂଳକ (Extrapunitiue) ବା ଅନ୍ତଃଶାସ୍ତି-ମୂଳକ (Intropunitue) ହୋଇପାରେ । ନିଜର ବ୍ୟର୍ଥତାର କାରଣ ଅନ୍ୟ ବ୍ୟକ୍ତିର ଭୁଲ ଯୋଗୁଁ ଘଟିଛି ମନେକରି ଅନ୍ୟ ଉପରେ ଶାରୀରିକ ଆକ୍ରମଣକୁ ବାହ୍ୟ ଶାସ୍ତି ମୂଳକ ବ୍ୟବହାର କୁହାଯାଏ । ଏପରି ଆକ୍ରମଣ ସାଧାରଣତଃ ପ୍ରତିଶୋଧ ମୂଳକ ହୋଇଥାଏ । ଯଦି ବ୍ୟର୍ଥତାର ମୂଳକାରଣ ଭାବରେ ମନେ ହେଉଥିବା ବ୍ୟକ୍ତି ଅଧିକ ଶକ୍ତିଶାଳୀ ବା ଅଧିକ ପ୍ରଭାବଶାଳୀ ହୋଇଥାଏ ତେବେ ଆକ୍ରମଣର ଗତି କୌଣସି ନିର୍ଜୀବ ବସ୍ତୁ ବା ପଶୁ ପକ୍ଷୀମାନଙ୍କ ଆଡ଼କୁ ନିର୍ଦ୍ଦେଶିତ ହୋଇଥାଏ । ଶିଶୁର କଣ୍ଢେଇ ଚିରିଦେବା, ବାଳକଟିଏ ତାର କୁକୁରକୁ ଗୋଇଠା ମାରିବା ଏହାର ଉଦାହରଣ । ଅନ୍ତଃ ଶାସ୍ତିମୂଳକ ବ୍ୟବହାରରେ ବ୍ୟକ୍ତି ନିଜକୁ ନିଜ ବ୍ୟର୍ଥତାର କାରଣ ରୂପେ ବିବେଚନା କରେ । ସେ ନିଜକୁ ସମାଲୋଚନା କରେ ଓ ସମସ୍ତ ସମୟରେ ନିଜକୁ ଶାରୀରିକ ଦଣ୍ଡରେ ଦଣ୍ଡିତ କରିଥାଏ । ଆକ୍ରମଣଶୀଳ ବ୍ୟବହାରର ପ୍ରଦର୍ଶନ ପରେ ବ୍ୟକ୍ତିକୁ ମାନସିକ ଶାନ୍ତି ମିଳିଥାଏ । ଛାତ୍ରମାନଙ୍କ ମନରୁ ଆକ୍ରମଣାତ୍ମକ ମନୋଭାବ ଦୂରକରିବା ଶିକ୍ଷକ ମାନଙ୍କର କର୍ତ୍ତବ୍ୟ । ସହାନୁଭୂତି ପ୍ରଦର୍ଶନ କରିବା ଦ୍ୱାରା ଓ ଶିଶୁର ବ୍ୟକ୍ତିତ୍ୱକୁ ସମ୍ମାନ ପ୍ରଦର୍ଶନ କଲାଭଳି ଅଭିନୟ ପ୍ରଦର୍ଶନ କରିବାଦ୍ୱାରା ଏହି ସୁଫଳ ଲାଭ କରାଯାଇପାରେ ।

(୩) କ୍ଷତିପୂରଣ ମୂଳକ ଆଚରଣ (Compensation) :—ବ୍ୟକ୍ତିର ଗୋଟିଏ କ୍ଷେତ୍ରରେ ଦୁର୍ବଳତା ଥିଲେ ସେ ଅନ୍ୟ କ୍ଷେତ୍ରରେ ଉତ୍କର୍ଷତା ପ୍ରଦର୍ଶନ ଦ୍ୱାରା ନିଜ ବ୍ୟକ୍ତିତ୍ୱର କ୍ଷତିପୂରଣ କରିଥାଏ । ଏହି ଦ୍ୱିତୀୟ କ୍ଷେତ୍ରରେ ସେ ଅତ୍ୟଧିକ ପରିଶ୍ରମ କରେ । ସଫଳ ହେବା ଫଳରେ ସେ ତା'ର ମାନସିକ ଦ୍ୱନ୍ଦ୍ୱ ଓ ଉତ୍ତେଜନାରୁ ଅବ୍ୟାହତି ପାଇଥାଏ । ଉଦାହରଣ ସ୍ୱରୂପ ବିଦ୍ୟାଳୟ ପାଠ୍ୟ କ୍ରମରେ ଦୁର୍ବଳ ଥିବା ଛାତ୍ର କ୍ରୀଡ଼ା, ସଙ୍ଗୀତ ଅବା ଅଭିନୟ କ୍ଷେତ୍ରରେ ନିଜ ଉତ୍କର୍ଷତା ପ୍ରତିପାଦନ କରିଥାଏ । ଇଂରାଜୀରେ ଦୁର୍ବଳ ଥିବା ଛାତ୍ର ଗଣିତରେ ଉତ୍ତମ ଫଳ ପ୍ରଦର୍ଶନ କରେ । ଏହି କ୍ଷତି ପୂରଣ ବିଭିନ୍ନ ଉପାୟରେ ହୋଇଥାଏ । ଯେଉଁ ବିଷୟରେ ଦୁର୍ବଳ ସେହି ବିଷୟରେ ଅଧିକ ପରିଶ୍ରମ ଓ ନିଷ୍ଠା ପ୍ରଦର୍ଶନ ଦ୍ୱାରା ଦୁର୍ବଳତା ଦୂର କରିବାକୁ ପ୍ରତ୍ୟକ୍ଷ କ୍ଷତି ପୂରଣ

(Direct Compensation) କୁହାଯାଏ । ନିଜ ଦୁର୍ବଳତା ଏଡ଼ାଇବାକୁ ଅଧିକ ପରିଶ୍ରମ ଦ୍ୱାରା ସେହି ଦିଗରେ ଅତ୍ୟନ୍ତ ପ୍ରତିଭାବାନ ହୋଇପାରିଲେ ତାହାକୁ ଅତିରିକ୍ତ କ୍ଷତିପୂରଣ (Over Compensation) କୁହାଯାଏ । ଗୋଟିଏ ବିଷୟର ଦୁର୍ବଳତାକୁ ଏଡ଼ାଇବାକୁ ଯାଇ ଅନ୍ୟ ବିଷୟରେ ଉତ୍କର୍ଷତା ହାସଲକୁ ବଦଳି କ୍ଷତିପୂରଣ (Sabstitute Compensation) କୁହାଯାଏ । କୌଣସି ବ୍ୟକ୍ତି ନିଜର ଲକ୍ଷ୍ୟ ହାସଲ କରିବାରେ ବିଫଳ ହୋଇ ଯଦି ନିଜ ପୁତ୍ର ବା ଅନ୍ୟ କୌଣସି ବ୍ୟକ୍ତି ଦ୍ୱାରା ସେହି କାର୍ଯ୍ୟ କରାଇପାରେ ତାହାକୁ ପରୋକ୍ଷ କ୍ଷତିପୂରଣ (Indirect Compensation) କୁହାଯାଏ । ଉଦାହରଣ ସ୍ୱରୂପ ଜଣେ ବ୍ୟକ୍ତି ଜଣେ ଡାକ୍ତର ହେବାକୁ ଚେଷ୍ଟା କରି ଯଦି ହୋଇ ନପାରନ୍ତି ସେ ନିଜର ପୁତ୍ରକୁ ଜଣେ ଡାକ୍ତର କରିବାକୁ ଚାହାଁନ୍ତି । ଏହାଦ୍ୱାରା ତାଙ୍କ ବ୍ୟକ୍ତିତ୍ୱର ପରୋକ୍ଷ ଭାବରେ କ୍ଷତିପୂରଣ ହୋଇଥାଏ । କେତେକ ସମୟରେ ଦେଖାଯାଏ ଯେ ଜଣେ ବ୍ୟକ୍ତି କୌଣସି କାର୍ଯ୍ୟରେ ବାରମ୍ବାର ବିଫଳ ହୋଇ ଅଭିନ୍ନ ଓ ଅଶୋଭନୀୟ ଆଚରଣ ଦ୍ୱାରା ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ଚେଷ୍ଟା କରନ୍ତି । ଜଣେ ଛାତ୍ର ବାରମ୍ବାର ପରୀକ୍ଷାରେ ଫେଲ୍ ହେବାପରେ ପରୀକ୍ଷା ସମୟକୁ ଦୁର୍ବଳ ଓ ରୋଗାକ୍ରାନ୍ତ ହେବାର ଛଳନା କରେ । ଏପରି ବ୍ୟବହାର ଉତ୍ତମ ସମଯୋଜନର ଅନ୍ତର୍ଭୁକ୍ତ ନୁହେଁ । ଏଗୁଡ଼ିକ ବ୍ୟକ୍ତିପକ୍ଷରେ ଅତ୍ୟନ୍ତ କ୍ଷତିକାରକ ।

(୪) ଉଦାତ୍ତୀ କରଣ (Sublimation) :—ମନୁଷ୍ୟ ମାନସର ସନ୍ତୁଷ୍ଟି ପ୍ରାପ୍ତ ହୋଇପାରୁନଥିବା କେତେକ ଆଦିମ ପ୍ରବୃତ୍ତି ସମାଜ ଗ୍ରାହ୍ୟ ଉପାୟରେ ପରିପ୍ରକାଶ ହେଲେ ତାହାକୁ ଉଦାତ୍ତୀ କରଣ କୁହାଯାଏ । ଏଥିରେ ଦଣ୍ଡ ବା ବ୍ୟକ୍ତିତ୍ୱ ପ୍ରତି ଅବମାନନାର କୌଣସି ଭୟ ନଥାଏ । ଜଣେ ବ୍ୟକ୍ତି କଳା, ସଙ୍ଗୀତ ବା ନୃତ୍ୟ ବିଦ୍ୟା ମାଧ୍ୟମରେ ନିଜର ଯୌନ କାମନା ବ୍ୟକ୍ତ କରି ସନ୍ତୁଷ୍ଟି ପାଇପାରେ । ସମସ୍ତ ମାନସିକ ପ୍ରତିରକ୍ଷା ମୂଳକ ଆଚରଣ ମଧ୍ୟରେ ଏପ୍ରକାର ଆଚରଣ ସବୁଠାରୁ ଉନ୍ନତ ଓ ଗଠନ ମୂଳକ ପ୍ରକ୍ରିୟା, ଏହା ଦ୍ୱାରା ବ୍ୟକ୍ତିର ସାମର୍ଥ୍ୟ ଓ ମାନସିକ ଶକ୍ତି, ଚରିତ୍ର ଓ ବ୍ୟକ୍ତିତ୍ୱକୁ ପରିମାର୍ଜିତ ଓ ପରିପକ୍ୱ କରିବାରେ ସାହାଯ୍ୟ କରେ । ଉଦାତ୍ତୀ କରଣ ସାଧାରଣତଃ ଅବଚେତନ ଓ ଅଚେତନ ମନଦ୍ୱାରା ନିୟନ୍ତ୍ରିତ ଓ ନିର୍ଦ୍ଦେଶିତ ହୁଏ । ଏଥିରେ ଇଡ୍ (ID) ଅହମ୍ (Ego) ଏବଂ ପରମଅହମ (Super Ego) ଏକତ୍ର ଭାବରେ କାର୍ଯ୍ୟକରନ୍ତି ।

(୫) ଐକାତ୍ମକ ବୋଧ (Identification) :—ନିଜକୁ କୌଣସି ବିଷୟରେ ହୀନ ବା ଦୁର୍ବଳ ମନେ କରୁଥିଲେ ବ୍ୟକ୍ତି ଅନ୍ୟ ଏକ ପ୍ରତିଷ୍ଠାବାନ୍ ବ୍ୟକ୍ତି ସହ

ସମ୍ପର୍କ ସ୍ଥାପନ କରି ଆତ୍ମଗୌରବ ଅନୁଭବ କରେ । ଶିଶୁମାନେ ବୟସ୍କମାନଙ୍କ ସହ ଐକାତ୍ମ୍ୟ ସ୍ଥାପନ କରିବାକୁ ଚେଷ୍ଟା କରନ୍ତି । ପୁଅମାନେ ପିତାଙ୍କର କୋଟ୍, ଘୋଡା ଓ ଅନ୍ୟାନ୍ୟ ପଦାର୍ଥ ସବୁ ପସନ୍ଦକରି ଏବଂ କନ୍ୟାମାନେ ମାତାଙ୍କର ଶାଢ଼ୀ, ଓ ପ୍ରସାଧାନ ସାମଗ୍ରୀକୁ ପସନ୍ଦ କରି ସେମାନଙ୍କ ସହ ଐକାତ୍ମ୍ୟ ସ୍ଥାପନର ଚେଷ୍ଟା କରିଥାନ୍ତି । ଜଣେ ଶିକ୍ଷକ ଗୋପବନ୍ଧୁଙ୍କ ଶିକ୍ଷକତା ବିଷୟ ବର୍ଣ୍ଣନା କରି ନିଜର ତାଙ୍କ ସହ ଐକାତ୍ମ୍ୟ କରିବାକୁ ଚେଷ୍ଟା କରନ୍ତି । ଏପରି ପ୍ରତିରକ୍ଷା ମୂଳକ ଆଚରଣ ଅଚେତନ ମନରେ କାର୍ଯ୍ୟ କରିଥାଏ । ଏହା ଇଚ୍ଛାକୃତ ନହେଲେ ମଧ୍ୟ ପରୋକ୍ଷରେ ମାନସିକ ଉତ୍ତେଜନା ପ୍ରଶମିତ କରିଥାଏ । କିନ୍ତୁ ଏହି ପ୍ରକ୍ରିୟାର ବାରମ୍ବାର ପୁନରାବୃତ୍ତି ଦ୍ୱାରା ବ୍ୟକ୍ତି ମଧ୍ୟରେ ନିକୃଷ୍ଟ ବା ନ୍ୟୂନଭାବ ସୃଷ୍ଟି ହୁଏ ଓ ସେ ଅସ୍ୱାଭାବିକ ଆଚରଣ ପ୍ରଦର୍ଶନ କରେ । ଏହି ପ୍ରକ୍ରିୟାର ଅତ୍ୟଧିକ ବ୍ୟବହାର ଆତ୍ମବିଶ୍ୱାସ ହ୍ରାସକରେ ଓ ମାନସିକ ଓ ଶାରୀରିକ ଅସୁସ୍ଥତାର ଲକ୍ଷଣମାନ ପ୍ରକାଶିତ ହୁଏ ।

(୬) ଅଭିକ୍ଷେପ (Projection) :—କୌଣସି ବ୍ୟକ୍ତି ବସ୍ତୁ ବା ଘଟଣା ନିକଟରେ ପରାଜିତ ହେବାପରେ ନିଜ ବ୍ୟକ୍ତିତ୍ୱର ନ୍ୟୂନତା ଭାବକୁ ଲୁଚାଇବା ପାଇଁ ବ୍ୟକ୍ତି ଏହି ଉପାୟର ସାହାଯ୍ୟ ନେଇଥାଏ । ନିଜ ପରାଜୟର କାରଣ ପାଇଁ ଅନ୍ୟକୁ ଦାୟୀ କରିବା ଏହି ପ୍ରକାର ଆଚରଣର ମୂଳ କୌଶଳ । ପରୀକ୍ଷାରେ ଅକୃତ କାର୍ଯ୍ୟ ହୋଇଥିବା ଛାତ୍ର ନିଜ ଶିକ୍ଷକଙ୍କ ଉପରେ ଦୋଷାରୋପ କରେ ଏବଂ ଅନ୍ୟ ଜଣେ ଭଲ ଶିକ୍ଷକଙ୍କ ନିକଟରୁ ଶିକ୍ଷା ଲାଭ କରିଥିଲେ ସେ ଅଧିକ ଭଲ କରିପାରିଥାନ୍ତା ବୋଲି ମତ ବ୍ୟକ୍ତ କରେ । ଏହିପରି ନିଜ ମନର ଗ୍ଲାନି ପାଇଁ ଅନ୍ୟକୁ ଦାୟୀ କରି ମାନସିକ ଦ୍ୱନ୍ଦ୍ୱକୁ କମ୍ କରାଯାଇପାରେ । ଏହି ପ୍ରକ୍ରିୟା ଅଳ୍ପ ବହୁତେ ପ୍ରାୟ ପ୍ରତ୍ୟେକ ବ୍ୟକ୍ତି ପ୍ରଦର୍ଶନ କରିଥାନ୍ତି । ଏ ପ୍ରକାର ଆଚରଣର ଅତ୍ୟଧିକ ପ୍ରଦର୍ଶନ ଦ୍ୱାରା ମାନସିକ ସ୍ୱାସ୍ଥ୍ୟର ଅବନତି ଘଟିଥାଏ । ଏହା ବ୍ୟକ୍ତି ନିକଟରେ ପାରାନୋଇଆ (Paranoia) ନାମକ ମାନସିକ ରୋଗ ସୃଷ୍ଟି କରିପାରେ ଯେଉଁଥିରେ ସେ ଅନୁଭବ କରେ ଯେ ସମସ୍ତେ ତାକୁ ସର୍ବଦା ପ୍ରତ୍ୟେକ କାର୍ଯ୍ୟପାଇଁ ଦୋଷୀ ସାବ୍ୟସ୍ତ କରୁଛନ୍ତି ।

(୭) ସଂଯୁକ୍ତିକୀ କରଣ ବା ଯୁକ୍ତାଭ୍ୟାସ (Rationlisation)—କୌଣସି କାର୍ଯ୍ୟରେ ବିଫଳ ହେଲେ ମନୁଷ୍ୟ ମନରେ ଗ୍ଲାନି ଓ ଅବସାଦ ଅନୁଭବ ହୋଇଥାଏ । ନିଜ ମନର ଏହି ଗ୍ଲାନି ଦୂର କରିବାକୁ ବ୍ୟକ୍ତି ନିଜ ବ୍ୟବହାରର ଯଥାର୍ଥ ପ୍ରତିପାଦନ କରିବାକୁ ଓ ବିଫଳତାର ଆବଶ୍ୟକୀୟତା ବର୍ଣ୍ଣନା କରିବାକୁ ନିଜ ମନକୁ ଯୁକ୍ତି ସମ୍ମତ କାରଣ ପ୍ରଦାନ କରିବାକୁ ଚେଷ୍ଟାକରେ । ବିଲୁଆ ଅଙ୍ଗୁର ଖାଇନପାରେ ତାହା ଖଟାବୋଲି କହି ଖୁଲିଯିବା ଗଳ୍ପଟି ଯୁକ୍ତାଭ୍ୟାସର ଏକ ପ୍ରକୃଷ୍ଟ ଉଦାହରଣ । ଯେଉଁ ଛାତ୍ର କ୍ରିଡ଼ା ଓ ଆମୋଦ ପ୍ରମୋଦରେ ଅଧିକ ସମୟ ନଷ୍ଟକରି ପରୀକ୍ଷାରେ

ଅକୃତକାର୍ଯ୍ୟ ହୁଏ ସେ ନିଜର ମାନସିକ ଗ୍ଲାନିକୁ ଲୁଚାଇବା ପାଇଁ ନିଜର ବୈଶିଷ୍ଟ୍ୟ ଓ ଉପକାରିତା ସପକ୍ଷରେ ଯୁକ୍ତି ଉପସ୍ଥାପନ କରିଥାଏ । ଏହା ସଙ୍ଗେ ସଙ୍ଗେ ଅନ୍ୟ ଅଧିସ୍ତନରତ ବନ୍ଧୁମାନଙ୍କୁ ଶତ୍ରୁଙ୍କଷ୍ଟ ନାମରେ ଅବହିତ କରି ନିଜର ଗ୍ଲାନି ବୋଧକୁ ଏଡ଼ାଇବା ପାଇଁ ଚେଷ୍ଟା କରିଥାଏ । ସାଧାରଣତଃ ଭଲଭାବରେ କଥା କହି ପାରୁଥିବା ବ୍ୟକ୍ତିମାନେ ଏହି ପ୍ରକ୍ରିୟାକୁ ଅଧିକ ବ୍ୟବହାର କରିଥାନ୍ତି । କିନ୍ତୁ ଏହି ପ୍ରକ୍ରିୟାର ଅତି ଶକ୍ତ ବ୍ୟବହାର ମନୁଷ୍ୟର ନିଜ ମନକୁ ଦ୍ୱନ୍ଦ୍ୱ ଓ ଆତ୍ମବିଶ୍ୱାସ ହୀନତାର ଶୀକାର କରାଏ ।

(୮) ପ୍ରତ୍ୟାବୃତ୍ତି (Regremion) :— ବର୍ତ୍ତମାନର ସମସ୍ୟାର ମୁକାବିଲା କରିନପାରି ଅତୀତକୁ ଫେରିଯିବା ଓ ଶିଶୁ ସୁଲଭ ଆଚରଣ ପ୍ରଦର୍ଶନ କରିବାକୁ ପ୍ରତ୍ୟାବୃତ୍ତି ବୁଝାଯାଏ । ପରିବାର ମଧ୍ୟରେ ଜ୍ୟେଷ୍ଠ ଶିଶୁମାନଙ୍କର କେତେକ ଅସାମାଜିକ ବ୍ୟବହାର କ୍ଷମଣୀୟ ହୋଇଥାଏ । ସମୟ ସମୟରେ ପ୍ରାପ୍ତ ବୟସ୍କମାନେ ସେହିପରି ବ୍ୟବହାର ପ୍ରଦର୍ଶନ କରି ନିଜ ଗ୍ଲାନିକୁ ସମାଜ ଦ୍ୱାରା ମାର୍ଜ୍ଜନୀୟ କରିବାକୁ ଚେଷ୍ଟା କରନ୍ତି । ଯୁବକ, ଯୁବତୀମାନେ ହଠାତ୍ କାନ୍ଦି ଉଠିବା, ବୃଦ୍ଧମାନେ ସେମାନଙ୍କ ଯୁବକ ଅବସ୍ଥା ସମ୍ପର୍କରେ ଆଲୋଚନା କରିବା ଏହାର ଉଦାହରଣ । ପ୍ରତ୍ୟାବୃତ୍ତି ଶିକ୍ଷକମାନଙ୍କ ପାଇଁ ଏକ ଉତ୍ତମ ବ୍ୟବସ୍ଥା । ଏହା ଦ୍ୱାରା ଶିକ୍ଷକ ଶ୍ରେଣୀ ମଧ୍ୟରେ ଶିଶୁ ସୁଲଭ ବ୍ୟବହାର ପ୍ରଦର୍ଶନ କରି କୌତୁକ ଦ୍ୱାରା ଛାତ୍ରମାନଙ୍କ ସହ ସମଚେତତା (Rapport) ସ୍ଥାପନ କରିପାରନ୍ତି ।

(୯) ଦମନ (Repremion) :— ଫ୍ରଏଡ୍‌ଙ୍କ ତତ୍ତ୍ୱରେ ଦମନ ଏକ ପ୍ରଧାନ ପ୍ରତିରକ୍ଷାମୂଳକ ଆଚରଣ । ଏହାର ଅନ୍ୟନାମ ଅଭିପ୍ରେରଣ ଜନିତ ବିସ୍ମରଣ (Motivated Forgetting) । ଚେତନ ମଧ୍ୟରେ ରହି ଯେଉଁ ଧାରଣା ଗୁଡ଼ିକ ମନରେ ଭୟ ସଞ୍ଚାର କରେ ସେମାନଙ୍କୁ ଅଚେତନ ମନ ମଧ୍ୟକୁ ପ୍ରେରଣ କରିଦେବା ଦ୍ୱାରା ଏହି କାର୍ଯ୍ୟ କରାଯାଇ ପାରେ । ମନ ମଧ୍ୟରେ ଦୁଇଟି ବିପରୀତ ଧାରଣା ବା ଇଚ୍ଛା ପରସ୍ପର ମଧ୍ୟରେ ପ୍ରତିଯୋଗିତା କଲେ ଏହି କ୍ରିୟା ସାଧିତ ହୋଇଥାଏ । ଯେଉଁ ଧାରଣା ଆମ ମନରେ ଦୋଷୀ ଭାବ, ନ୍ୟୂନ ଭାବ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ହୃଦୟକୁ ଦୁର୍ବଳ କରିବାକୁ ଚେଷ୍ଟାକରେ ସେହି ଧାରଣା ଗୁଡ଼ିକ ଆମେ ଭୁଲିଯିବାକୁ ଚାହୁଁ । ଏହା ଦ୍ୱାରା ମନୁଷ୍ୟ ଦୁଃଖ ଓ କଷ୍ଟଦାୟକ ଅନୁଭୂତି ଗୁଡ଼ିକ ଭୁଲିଯାଏ । ଇଡ୍‌ର ଧାରଣା ଓ ସାମାଜିକ ରୀତି ନିୟମ ମଧ୍ୟରେ ଚାଲିଥିବା ଦ୍ୱନ୍ଦ୍ୱ ମଧ୍ୟରୁ ଇଡ୍‌ର ଧାରଣା ଗୁଡ଼ିକୁ ଅଚେତନ ମନ ମଧ୍ୟକୁ ପ୍ରେରିତ ହୋଇଥାଏ ।

ଦମନର ଫଳାଫଳ ଦୁଇ ଗୁଣ କ୍ଷତିକାରକ ହୋଇଥାଏ । ପ୍ରଥମତଃ ଏହା ଦ୍ୱାରା କୌଣସି ଇଚ୍ଛା ବା କାମନା ଫଳପ୍ରଦ ହୋଇପାରେ ନାହିଁ । ଦ୍ୱିତୀୟତଃ ଏହା ମାନସିକ ବିକାଶର ଗତିରୋଧ କରେ । ଏହା ପରୀକ୍ଷା କରି ଦେଖାଯାଇଛି ଯେ ଦମନଶୀଳ

ବ୍ୟକ୍ତିତ୍ୱ କୌଣସି ବୌଦ୍ଧିକ ଓ ସାମାଜିକ କାର୍ଯ୍ୟକୁ ସଫଳ ଭାବରେ ରୂପାୟନ କରିପାରନ୍ତି ନାହିଁ । ନିଦ୍ରା ସମୟରେ ଅବଦମିତ ଇଚ୍ଛାଗୁଡ଼ିକ ଚେତନ ସ୍ତରକୁ ଭୁଲିଆସିବା ଫଳରେ ଭୟଙ୍କର ସ୍ୱପ୍ନ, ଉତ୍ତେଜକ କାର୍ଯ୍ୟ (Impulsive Action) ଭୟ ଓ ଆତଙ୍କ ଆଦି ସୃଷ୍ଟି ହୁଏ । ଅତଏବ ଶିଶୁମାନଙ୍କ ପାଇଁ ଦମନ ଏକ ଅନିଷ୍ଟକାରୀ ପ୍ରତିରକ୍ଷା ମୂଳକ ଆଚରଣ ।

**(୧୦) ପ୍ରତିକ୍ରିୟା** :—ସମୟ ସମୟରେ ବ୍ୟକ୍ତି ଅସାମାଜିକ ମନୋଭାବର ବଶବର୍ତ୍ତୀ ହୁଏ । କିନ୍ତୁ ତାର ଅବଚେତନ ମନ ଠିକ୍ ବିପରୀତ କାର୍ଯ୍ୟଟି କରିଥାଏ । ନିଜର ଅସୁନ୍ଦର ସନ୍ତାନ ପ୍ରତି କୌଣସି ମା' ମନରେ ବିତୃଷ୍ଣା ଜାତ ହୋଇଥିଲେ ମଧ୍ୟ ଅଜାଣତରେ ସେ ସେହି ସନ୍ତାନଟିର ଅଧିକ ଯତ୍ନ ନେଇଥାଏ । ପ୍ରତିକ୍ରିୟାକୁ ଅନ୍ୟ ଭାଷାରେ ବିପରୀତ କ୍ରିୟା ଭାବରେ ଅବହିତ କରାଯାଇପାରେ ।

**(୧୧) ଦିବା ସ୍ୱପ୍ନ** :—ବାସ୍ତବ କ୍ଷେତ୍ରରେ କୌଣସି ସମସ୍ୟାର ସମାଧାନ ହୋଇ ନ ପାରିଲେ ବା କୌଣସି ଲକ୍ଷ୍ୟସାଧିତ ହୋଇନପାରିଲେ ବ୍ୟକ୍ତି ବ୍ୟର୍ଥତାରୁ ରକ୍ଷା ପାଇବା ପାଇଁ କଳ୍ପନାର ଆଶ୍ରୟ ନିଏ । ବାସ୍ତବ ଜୀବନର ସମସ୍ତ ଦୁଃଖ, କଷ୍ଟ ଓ ଗ୍ଳାନି ଭୁଲିଯିବାର ଏହା ଏକ ଉତ୍କୃଷ୍ଟ ଉପାୟ । ଯୌବନର ପ୍ରାରମ୍ଭରେ ଛାତ୍ରଛାତ୍ରୀମାନେ ସାଧାରଣତଃ ଦିବା ସ୍ୱପ୍ନ ଦେଖିଥାନ୍ତି । ଦିବା ସ୍ୱପ୍ନରୁ ସମୟେ ସମୟେ ଗଠନ ମୂଳକ ଚିନ୍ତାର ସୃଷ୍ଟି ହୋଇଥାଏ । ମାତ୍ର ଏହା ଅତିରିକ୍ତ ହେଲେ ବ୍ୟକ୍ତି ବାସ୍ତବତାକୁ ଭୁଲି କାର୍ଯ୍ୟ ପ୍ରବଣତା ହରାଇଥାଏ ।

**ଅପସମାଯୋଜନ (Maladjustment):**

ନିଜର ବ୍ୟକ୍ତିଗତ ଆବଶ୍ୟକତା କମାଇବା ଦ୍ୱାରା ଓ ଜୀବନରେ ନିଜର ଲକ୍ଷ୍ୟକୁ ନିଜ ଯୋଗ୍ୟତା ଓ ପରିବେଷ୍ଟନୀକୁ ନେଇ ଧାର୍ଯ୍ୟ କରିବା ଦ୍ୱାରା ଜୀବନରେ ବିଫଳତା ଅନେକ ପରିମାଣରେ କମ୍ କରାଯାଇପାରେ । ପରିବେଷ୍ଟନୀ ଗତ ବାଧା ବିଘ୍ନ ସମସ୍ତଙ୍କୁ ସମ୍ମୁଖୀନ ହେବାକୁ ପଡ଼େ ଏବଂ ଏହା ସହିତ ମାନସିକ ଦ୍ୱନ୍ଦ ଆବଶ୍ୟକତା ପୂର୍ତ୍ତି କରାଇବାରେ ବାଧା ଓ ବିଳମ୍ବ ସୃଷ୍ଟି କରେ । ଜଣେ ବ୍ୟକ୍ତି ଏହି ମାନସିକ ଦ୍ୱନ୍ଦ୍ୱ ଓ ପରିବେଷ୍ଟନୀଗତ ବାଧାବିଘ୍ନକୁ ସଫଳ ଭାବରେ ପ୍ରତିରୋଧ କରିପାରିଲେ ତାହାଙ୍କୁ ଉତ୍ତମ ସମଯୋଜିତ ବ୍ୟକ୍ତି କୁହାଯାଏ । କିନ୍ତୁ ଯେଉଁ ବ୍ୟକ୍ତି ଏ ପ୍ରକାର ସମସ୍ୟା ଗୁଡ଼ିକର ସଫଳ ସମାଧାନ କରିପାରନ୍ତି ନାହିଁ ସେ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାକୁ ଆଂଶିକ ସଫଳ ହୁଅନ୍ତି ବା ଅସଫଳ ହୁଅନ୍ତି । ଏହିପରି ବାରମ୍ବାର ଅସଫଳ ହେବା ଫଳରେ ତାଙ୍କର ମାନସିକ ଦ୍ୱନ୍ଦ୍ୱ ଓ ବ୍ୟର୍ଥତା ବୋଧ ବୃଦ୍ଧି ପାଏ । ଫଳରେ ବ୍ୟକ୍ତି ନିକଟରେ ଅସାମାଜିକ

ଗୁଣ ଦେଖାଯାଏ । ସେ ଏପରି ଲକ୍ଷ୍ୟ ଧାର୍ଯ୍ୟ କରେ ଯାହା ସମାଜ ସମ୍ମତ ନୁହେଁ । ନିଜ ପ୍ରତି ଅନ୍ତଃ ଦୃଷ୍ଟି ନ ଦେଇ ଓ ନିଜ ସାମର୍ଥ୍ୟକୁ ବିଚାର ନ କରି ସେ କାର୍ଯ୍ୟ କରିବା-ଦ୍ୱାରା କୌଣସି ଆଚରଣର ସମସାମ୍ୟ ରହେନାହିଁ ଏପରି ଜଣେ ବ୍ୟକ୍ତିକୁ ଅପସମାଯୋଜିତ (Maladjusted) ବ୍ୟକ୍ତି କୁହାଯାଏ ।

**ଲକ୍ଷଣ :**

ଜଣେ ଅପସମାଯୋଜିତ ବ୍ୟକ୍ତି ଅସ୍ୱାଭାବିକ ଆଚରଣ ପ୍ରଦର୍ଶନ କରେ । ଅନ୍ୟମାନଙ୍କ ପ୍ରତି ସେ ଅତ୍ୟଧିକ ଭାବରେ ଆକ୍ରମଣଶୀଳ ହୋଇଥାଏ । ସମସ୍ତ ସମୟରେ ତା'ର ଆକ୍ରମଣଶୀଳତା ନିଜ ପ୍ରତି ଉଦ୍ଦିଷ୍ଟ ହୋଇଥାଏ । ସେ ମନଃ-ଶାରୀରିକ (Psychosomatic) ଲକ୍ଷଣ ମାନ ପ୍ରଦର୍ଶନ କରେ ଏବଂ ସମସ୍ତ ସମୟରେ ଧୈର୍ଯ୍ୟ-ହୀନତା ପ୍ରଦର୍ଶନ କରେ । ଅବଶ୍ୟ ଏମନ୍ତ ବ୍ୟବହାର ସାଧାରଣ ବ୍ୟକ୍ତିମାନେ ମଧ୍ୟ କେତେକ ପରିସ୍ଥିତିରେ ପ୍ରଦର୍ଶନ କରିଥାନ୍ତି । କିନ୍ତୁ ଯେତେବେଳେ ଏହା ଅତିରିକ୍ତ ଭାବରେ ଏବଂ କ୍ରମାଗତ ଭାବରେ ଦେଖାଯାଏ ଏହାକୁ ଅପସମାଯୋଜନର ଲକ୍ଷଣ କୁହାଯାଏ । ଏହି ଲକ୍ଷଣଗୁଡ଼ିକୁ ସାଧାରଣତଃ ଶାରୀରିକ, ଆଚରଣ ଗତ ଓ ଆବେଗିକ ଏହି ତିନି ଶ୍ରେଣୀରେ ବିଭକ୍ତ କରାଯାଇ ପାରେ ।

(୧) **ଶାରୀରିକ ଲକ୍ଷଣ** :–ବ୍ୟକ୍ତି କଥା କହିବା ସମୟରେ ତା'ର ପାଟି ଲାଗିଯାଏ ଓ ଖନେଇ ଖନେଇ କଥା କହେ । ଏହା ଛଡ଼ା ବାକ୍ୟ ଅସଂଲଗ୍ନ ଓ ଅସଂଗଠିତ ହୋଇଥାଏ । ନିଦ୍ରା ସମୟରେ ଭୟଙ୍କର ସ୍ୱପ୍ନଦେଖି ବାଉଳି ହେବା । କଥା କହିବା ଓ ହଠାତ୍ ଉଠିପଡ଼ି ଚାଲିବାକୁ ଆରମ୍ଭ କରିବା ଏହାର ଲକ୍ଷଣ । ମୁଣ୍ଡ ତଳକୁ କରି ଚାଲିବା ଓ ନଖ କାମୁଡ଼ିବା, ବାନ୍ତି କରିବା, ବାଛବିଚାର ନକରି ଖାଇଯିବା, ଝାଡ଼ା ପରିସ୍ରା ଅନିୟମିତ ଓ ଅନିୟନ୍ତ୍ରିତ ହେବା, ମୁଣ୍ଡ ବିନ୍ଧା, ଶୁଣି ନପାରିବା, ଶ୍ୱାସରୋଗ ଓ ଆଙ୍ଗୁଠି ସାହାଯ୍ୟରେ ବାଜା ବଜାଇବା ଭଳି ଅଭିନୟ କରିବା ଶାରୀରିକ ଲକ୍ଷଣରେ ଅନ୍ତର୍ଭୁକ୍ତ ।

(୨) **ଆଚରଣଗତ ଲକ୍ଷଣ** :—ଆକ୍ରମଣଶୀଳତା, ଲଜ୍ଜାଶୀଳତା ଅମାନ୍ୟତା, କାର୍ଯ୍ୟ କରିବାକୁ ଅନିଚ୍ଛା ପ୍ରକାଶ, ଈର୍ଷାନ୍ୱିତ ହେବା, ଆଳସ୍ୟ ପରାୟଣତା, ଶୋଇରହି ଦିବା ସ୍ୱପ୍ନରେ ବୁଡ଼ି ରହିବା, ସମସ୍ତ ସମୟରେ ନଷ୍ଟାମି ଆଚରଣ ପ୍ରଦର୍ଶନକରିବା,ଅଧିକାଂଶ ସମସ୍ତ ଲକ୍ଷ୍ୟହୀନଭାବେ ବୁଲାବୁଲିକରିବା, ହସ୍ତମୈଥୁନ କରିବା, ବାହାରେ ସମସ୍ତ କଥାରେ ଯୌନ କ୍ରିୟା ତଥା ସମଲିଙ୍ଗୀ ଯୌନ କ୍ରିୟା ଆଦି ଲକ୍ଷଣ ଅପସମାଯୋଜିତ ବ୍ୟକ୍ତି ପ୍ରଦର୍ଶନ କରିଥାଏ ।

**(ଗ) ଆବେଗିକ ଲକ୍ଷଣ** :—ଭୟ, ଆଶଙ୍କା, ବିଷ୍ମୟ, ନିଷ୍ଠୁରତା, ଅତ୍ୟଧିକ ଅନୁଭବଶୀଳତା, ଚଞ୍ଚଳତା, ଏକାକୀ ଅବସ୍ଥାନ, ସମସ୍ତ ସମୟରେ ହଠାତ୍ କୌଣସି କାର୍ଯ୍ୟ କରିବା, ଆଗ୍ରହର ଅଭାବ, ସ୍ମରଣ ଶକ୍ତି ହୀନତା, ନ୍ୟୁନ ଭାବ, ଘୃଣା ଭାବ, ଦ୍ୱନ୍ଦ୍ୱ ଓ ଉତ୍ତେଜନା ଏହା ଆବେଗିକ ଲକ୍ଷଣ ।

**କାରଣ (Cause) :**

ଆପସମାଯୋଜନ ଏକ ଜଟିଳ ସମସ୍ୟା । ଏହାର କୌଣସି ଏକ ନିର୍ଦ୍ଦିଷ୍ଟ କାରଣ ନଥାଏ । ଅନେକଗୁଡ଼ିଏ ଘଟଣା, ଅନୁଭୂତି ଓ ଅଭିଜ୍ଞତାର ପାରସ୍ପରିକ କ୍ରିୟାରୁ ଏହା ସୃଷ୍ଟି ହୋଇଥାଏ । ବିଶେଷତଃ ଶୈଶବ ଅବସ୍ଥାରୁ ଅପସମାଯୋଜନର ବୀଜ ଅଙ୍କୁରିତ ହୋଇଥାଏ ପରିବାର, ବିଦ୍ୟାଳୟ ଓ ସମାଜ ସମଷ୍ଟିଗତ ଭାବେ ଏଥିପାଇଁ ଦାୟୀ । ଫ୍ରଏଡ଼, ୟୁଙ୍ଗ, ଆଡ୍‌ଲର ଆଦି ବିଶିଷ୍ଟ ମନୋବିଜ୍ଞାନୀମାନେ ଏହାର କାରଣ ସମ୍ବନ୍ଧରେ ଗବେଷଣା କରି ନିଜ ନିଜର ମତ ପ୍ରଦାନ କରିଛନ୍ତି । ନିମ୍ନରେ ଅପସମା-ଯୋଜନର ପ୍ରଧାନ କାରଣଗୁଡ଼ିକ ପ୍ରଦାନ କରାଯାଇଛି ।

**(୧) ଶରୀର ଗଠନ** :—ଶିଶୁର ସାମାଜିକ ବିକାଶରେ ତା'ର ଶାରୀରିକ ଅବସ୍ଥା ମୁଖ୍ୟ ଅଂଶ ଗ୍ରହଣ କରେ । ଯଦି ଶିଶୁ ଶାରୀରିକ ଭାବେ ଦୁର୍ବଳ, ଅସୁନ୍ଦର ବା ଅକ୍ଷମ ହୋଇଥାଏ ତେବେ ସେ ଅନ୍ୟମାନଙ୍କ ଉପହାସର ପାତ୍ର ହୁଏ । ଏପରିକି ପିତା ମାତା ମଧ୍ୟ ତାକୁ ଅନ୍ୟମାନଙ୍କ ସହ ତୁଳନା କରିଥାନ୍ତି । ପିତା ମାତା, ସାଙ୍ଗ ସାଥି ଏବଂ ଅପରିଚିତ ବ୍ୟକ୍ତିମାନଙ୍କର ଆକ୍ଷେପ ଶିଶୁର ମନକୁ ଭାରାକ୍ରାନ୍ତ କରେ ଫଳରେ ସେ ଅପସମାଯୋଜନ ଜନିତ ଲକ୍ଷଣମାନ ପ୍ରଦର୍ଶନ କରେ ।

**(୨) ଦାରିଦ୍ର୍ୟ** :—ଅପସମାଯୋଜନ ଓ ଦାରିଦ୍ର୍ୟ ମଧ୍ୟରେ ସମ୍ପର୍କ ଖୁବ୍ ନିକଟତମ । ଅପସମାଯୋଜିତ ଶିଶୁମାନଙ୍କ ମଧ୍ୟରୁ ଅଧିକାଂଶ ଦରିଦ୍ର ପରିବେଶରୁ ଆସିଥିବାର ଦେଖାଯାଏ । କିନ୍ତୁ ଦାରିଦ୍ର୍ୟ ଭୋଗ କରୁଥିବା ପ୍ରତ୍ୟେକ ଶିଶୁ ଏହାର ଶିକାର ହୁଅନ୍ତି ନାହିଁ । ଦରିଦ୍ର ପରିବାରରେ ପିତା ମାତା ଶିଶୁର ସର୍ବନିମ୍ନ ଆବଶ୍ୟକତା ପୂରଣ କରିବାକୁ ଅସମର୍ଥ ହୋଇଥା'ନ୍ତି । ଫଳରେ ସେମାନଙ୍କ ମନରେ ଏକ ପ୍ରକାର ବ୍ୟର୍ଥତା ପୁଞ୍ଜିଭୂତ ହୋଇ ଭବିଷ୍ୟତରେ ଭୟଙ୍କର ଆକାର ଧାରଣ କରେ ।

**(୩) ବିଘଟିତ ପରିବାର** :—ଏହା ନିଃସନ୍ଦେହରେ ପ୍ରମାଣିତ ହୋଇଛି ଯେ ଯେଉଁ ଗୃହରେ ପିତାମାତାଙ୍କ ମୃତ୍ୟୁ, ବିବାହ ବିଚ୍ଛେଦ, ଭାଇ ଭାଇ ମଧ୍ୟରେ କନ୍ଦଳଯୋଗ୍ୟ ବିଚ୍ଛେଦ ବା ଶାରୀରିକ ଅକ୍ଷମ ପିତାମାତା ଅବସ୍ଥାନ କରୁଥାନ୍ତି ସେ ଗୃହର ଶିଶୁ ଏକ ସୁସ୍ଥ ଓ ଅବିଭାଜିତ ଗୃହର ଶିଶୁ ଅପେକ୍ଷା ଅଧିକ ଅପସମାଯୋଜିତ ।

ଏପରି ଗୃହରେ ଶିଶୁ ତା'ର ଆବଶ୍ୟକୀୟ ସ୍ନେହ, ଆଦର, ସହାନୁଭୂତି ଓ ନିରାପତ୍ତା ପାଇପାରେ ନାହିଁ । ଫଳରେ ସେମାନଙ୍କ ମଧ୍ୟରେ ଆବେଗିକ ବିଶୃଙ୍ଖଳତା ପରିଲକ୍ଷିତ ହୁଏ । ଗୃହରେ ବାସ କରୁଥିବା ବିଭିନ୍ନ ସଦସ୍ୟଙ୍କ ମଧ୍ୟରେ ସର୍ବଦା ଦ୍ୱନ୍ଦ୍ୱ, କଳହ ଲାଗି ରହିଲେ ତାହା ମଧ୍ୟ ଶିଶୁର ନିରାପତ୍ତାବୋଧ, ମାନସିକ ସ୍ଥିରତା ଓ ଆବଶ୍ୟକତା ପୂରଣ ଆଦିରେ ପ୍ରଭାବ ପକାଏ । ସମୟ ସମୟରେ ପିତା ମାତା ଶିଶୁପାଇଁ ତା'ର ଜୀବନର ଲକ୍ଷ୍ୟ ଧାର୍ଯ୍ୟ କରିଥାନ୍ତି । ସେମାନେ ଶିଶୁର ସାମର୍ଥ୍ୟ ଓ ବୁଦ୍ଧି ବିଷୟ ଚିନ୍ତା ନକରିବା ଫଳରେ ଶିଶୁ ଭବିଷ୍ୟତରେ ଉକ୍ତ ଲକ୍ଷ୍ୟ ହାସଲ ନକରିପାରି ନ୍ୟୂନତା ବୋଧର ଶିକାର ହୋଇଥାଏ ।

(୪) **ପିତା ମାତାଙ୍କ ଆଚରଣ** :—ଶିଶୁ ପ୍ରତି ପିତା ମାତାଙ୍କ ଆଚରଣ ଶିଶୁମାନଙ୍କ ଉପରେ ଗଭୀର ପ୍ରଭାବ ପକାଏ । କେତେକ ପିତା ମାତା ଶିଶୁପ୍ରତି ଅବହେଳାଭାବ ପ୍ରଦର୍ଶନ କରନ୍ତି । ସେମାନେ ଶିଶୁକୁ ପ୍ରାୟ ପ୍ରତ୍ୟାଖ୍ୟାନ କରିଥାନ୍ତି । ଏପରି ଭାବରେ ଅବହେଳିତ ଶିଶୁର ମନରୁ ନିରାପତ୍ତା ଭାବ ଲୋପପାଇ ନିଃସଙ୍ଗତା ଭାବ ଉଦୟ ହୋଇଥାଏ । ଫଳରେ ଶିଶୁ ଅପସମାୟୋଜନ ଜନିତ ଆଚରଣ ପ୍ରଦର୍ଶନ କରେ । ଏପରି ଶିଶୁ ନିକଟରେ ସାମାଜିକତା ଅଭାବ, ଆକ୍ରୋଶ ମୂଳକ ବ୍ୟବହାର ଓ ସ୍ୱାର୍ଥପରତା ପରିଲକ୍ଷିତ ହୁଏ ଯାହାକି ସାମାଜିକ ପରିବେଷ୍ଟନୀ ମଧ୍ୟରେ ଶିଶୁକୁ କଷ୍ଟକର ଅବସ୍ଥାରେ ନିକ୍ଷେପ କରେ । ଏତଦ୍ ବ୍ୟତୀତ ଭାରତରେ କନ୍ୟା ଅପେକ୍ଷା ପୁତ୍ରକୁ ପରିବାର ମଧ୍ୟରେ ଅଧିକ ସ୍ନେହ ଓ ଆଦର ମିଳିଥାଏ । ଫଳରେ କନ୍ୟା ଶିଶୁଟି ନିଜକୁ ଅବହେଳିତ ମନେକରେ ।

(୫) **ଦୀର୍ଘ ରୁଗ୍ଣାବସ୍ଥା ଓ ଦୁର୍ଘଟଣା** :—ଶିଶୁ ଅନେକ ଦିନ ଧରି କୌଣସି ରୋଗରେ ପୀଡ଼ିତ ରହିଲେ ବା ହଠାତ୍ କୌଣସି ଦୁର୍ଘଟଣାର ସମ୍ମୁଖୀନ ହେଲେ ତାର ମାନସିକ ଭାରସାମ୍ୟ ନଷ୍ଟହୋଇଥାଏ । ହଠାତ୍ କୌଣସି ପ୍ରିୟଜନର ମୃତ୍ୟୁ, ଦଙ୍ଗା ବା ବନ୍ୟା ଆଦି ଶୈଶବାବସ୍ଥାରେ ଅନୁଭୂତ ହେଲେ ଅପସମାୟୋଜନର ସମ୍ଭାବନା ଥାଏ ।

(୬) **ସାମାଜିକ ପରିବେଷ୍ଟନୀ** :—ଭାରତ ଏକ ବହୁ ଧର୍ମାବଲମ୍ବୀ ମାନଙ୍କର ଦେଶ । ଯୌବନର ପ୍ରାରମ୍ଭରେ ବ୍ୟକ୍ତିକୁ ନିଜ ଧର୍ମ ବା ଅନ୍ୟ କୌଣସି ଧର୍ମରୁ ମନଃପୂତଃ ପରିଚର୍ଯ୍ୟା ଓ ମାନସିକ ଶାନ୍ତି ନମିଳିଲେ ମାନସିକ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଥାଏ ।

ଶିଶୁମାନେ କ୍ରୀଡ଼ାପ୍ରିୟ । କ୍ରୀଡ଼ା ବା ଅବସର ବିନୋଦନ ପାଇଁ ଉପଯୁକ୍ତ ପରିବେଶର ଅଭାବ ସେମାନଙ୍କ ମନରେ ଅଭାବ ବୋଧ ଆଣିଥାଏ । ପାଠାଗାର, ବକ୍ତୃତା,

ଆଲୋଚନା ତଥା ଆଉ ଶିଶୁର ବୌଦ୍ଧିକ ବିକାଶ ସହିତ ମାନସିକ ବିକାଶରେ ମଧ୍ୟ ସାହାଯ୍ୟ କରିଥାଏ ।

(୭) **ବିଦ୍ୟାଳୟ ପରିବେଶ** :— ଶ୍ରେଣୀ ଗୃହ ମଧ୍ୟରେ ଶିକ୍ଷକ-ଛାତ୍ର ସମ୍ପର୍କ ଏବଂ ଛାତ୍ର ଛାତ୍ରୀ ସମ୍ପର୍କ ସମସ୍ୟା ସୃଷ୍ଟି କରିଥାଏ । ଶ୍ରେଣୀରେ ଦୁଇଟି ସମ୍ପ୍ରଦାୟର ଛାତ୍ର ରହିଲେ ଏବଂ ସେମାନଙ୍କ ମଧ୍ୟରେ ଉତ୍ତମ ସାମ୍ପ୍ରଦାୟିକ ସଦ୍‌ଭାବ ନ ରହିଲେ ସେମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଲାଗିରହିବ । ବିଦ୍ୟାଳୟ କିମ୍ବା ଛାତ୍ରାବାସ ମଧ୍ୟରେ ତାର ଅନ୍ତେବାସୀମାନେ ସହଯୋଗ, ପାରସ୍ପରିକ ବୁଝାମଣା, ଭ୍ରାତୃତ୍ୱ ରକ୍ଷା ପୂର୍ବକ ଚଳ ପ୍ରଚଳ ହେଲେ ଛାତ୍ର ଛାତ୍ରୀମାନଙ୍କର ମାନସିକ ସ୍ୱାସ୍ଥ୍ୟ ଅତୁଟ ରହିବ । ଅନ୍ୟ ପକ୍ଷରେ ପକ୍ଷପାତିତା, ଜାତିଗତ ଅସ୍ପୃଶ୍ୟତା, ବର୍ଣ୍ଣଭେଦ, ଆଞ୍ଚଳିକତା, ଧର୍ମାନ୍ଧତା, ଖୋଲଖୋଲି ସମାଲୋଚନା ଆଦି ଶିଶୁର ମାନସିକ ବିକାଶ କ୍ଷେତ୍ରରେ ବିପରୀତ ପ୍ରଭାବ ପକାଏ । ଆଜିକାଲି ବିଦ୍ୟାଳୟମାନଙ୍କରେ ପରୀକ୍ଷା ପଦ୍ଧତି ଶିଶୁମାନଙ୍କର ମାନସିକ ବିକାଶ କ୍ଷେତ୍ରରେ ଏକ ଅନ୍ତରାୟ । ଏହା ଶିଶୁର ମନ ଉପରେ ଏକ ପ୍ରକାର ଚାପ ପକାଏ । ପରୀକ୍ଷା ସମୟରେ ଶିଶୁ ଏକ ଉତ୍ତେଜନା ମଧ୍ୟ ଦେଇ ଗତି କରୁଥାଏ । ଆହୁରି ମଧ୍ୟ ପରୀକ୍ଷା ପତ୍ର ଗୁଡ଼ିକର ମୂଲ୍ୟାୟନ ସଠିକ ଓ ଯୁକ୍ତିଯୁକ୍ତ ହୋଇପାରେ ନାହିଁ । ଫଳରେ ଏହା ଶିଶୁ ମଧ୍ୟରେ ବ୍ୟର୍ଥତା ଭାବ ସୃଷ୍ଟି କରେ । ପରୀକ୍ଷାରେ କୃତକାର୍ଯ୍ୟ ହୋଇ ନ ପାରି ଅନେକ ଛାତ୍ର ଆତ୍ମହତ୍ୟା କରିବାର ଦେଖାଯାଏ ।

(୮) **ଫ୍ରୟେଡ୍‌ଙ୍କ ଦ୍ୱନ୍ଦ୍ୱର କାରଣ** :—ଫ୍ରୟେଡ୍‌ଙ୍କ ମତରେ ମନୁଷ୍ୟର ପ୍ରତ୍ୟେକ ବ୍ୟବହାର ଉଦ୍ଦେଶ୍ୟ ହେଉଛି କଷ୍ଟଠାରୁ ଦୂରେଇ ରହି ଆନନ୍ଦ ଆହରଣ କରିବା କିନ୍ତୁ ପୃଥିବୀ ସେଭଳି ଭାବରେ ନିର୍ମିତ ନୁହେଁ । ଏଠାରେ ମନୁଷ୍ୟ ସଦା ସର୍ବଦା ଆନନ୍ଦ ଉପଲବ୍ଧି କରିପାରେ ନାହିଁ । ସାମାଜିକ ଓ ନୈତିକତା ମାନି ଚଳିବା ଫଳରେ ମନୁଷ୍ୟ ନିଜ ଇଚ୍ଛାନୁସାରେ ଆଚରଣ ପ୍ରଦର୍ଶନ କରିପାରେ ନାହିଁ । ଯୌନ ଆକ୍ରମଣଶୀଳ ମନୋଭାବ ଏହି ଦୁଇଟି ଆବେଗରୁ ବ୍ୟର୍ଥତା ସୃଷ୍ଟି ହୁଏ । ମନୁଷ୍ୟ ମନରେ ଆବେଗିକ ଆବଶ୍ୟକତା ଓ ପରିବେଷ୍ଟନୀ ଗତ ଉପାଦାନ ମଧ୍ୟରେ ସର୍ବଦା ଦ୍ୱନ୍ଦ୍ୱ ଲାଗିରହିଥାଏ । ଯେଉଁ ବ୍ୟକ୍ତି ମଧ୍ୟରେ ଆବେଗିକ ଆବଶ୍ୟକତା ବଳଶାଳୀ ହୁଏ ଏବଂ ଚେତନା ଏହାର ପକ୍ଷ ଗ୍ରହଣ କରେ ସେ ବ୍ୟକ୍ତି ସାମାଜିକ ଓ ନୈତିକ ନିୟମ ଭଙ୍ଗ କରି ନିଜର ଆବେଗିକ ଇଚ୍ଛା ଗୁଡ଼ିକ ପୂରଣ କରେ । କିନ୍ତୁ ଅଧିକାଂଶ ବ୍ୟକ୍ତି ସେମାନଙ୍କ ଶୈଶବ କାଳୀନ ଶିକ୍ଷା ଓ ଅଭ୍ୟାସ ଯୋଗୁଁ ସାମାଜିକ ନିୟମ ଗୁଡ଼ିକର ବିରୁଦ୍ଧାଚରଣ କରିପାରନ୍ତି ନାହିଁ । ସେମାନେ ନିଜ ଇଚ୍ଛା ଓ କାମନା ବିରୁଦ୍ଧରେ ସଂଗ୍ରାମ କରି ସେଗୁଡ଼ିକ ଅବଦମିତ କରିଥାନ୍ତି । ଏହିପରି ମାନସିକ ଦ୍ୱନ୍ଦ୍ୱ ମଧ୍ୟରୁ ଅସମଯୋଜନର ସୃଷ୍ଟି ହୁଏ । ଫ୍ରୟେଡ୍‌ଙ୍କ ମତରେ ଯୌନ କାମନା ଏହି ଦ୍ୱନ୍ଦ୍ୱରେ ମୁଖ୍ୟ ଅଂଶ ଗ୍ରହଣ କରିଥାଏ । ଯୌନ ଆବେଗ

ମନ ମଧ୍ୟରେ ଉତ୍ତେଜନା, ଆଶଙ୍କା ସୃଷ୍ଟି କରେ । ଆଶଙ୍କା ଯୋଗୁଁ ବ୍ୟକ୍ତି ପ୍ରତିରକ୍ଷା-ମୂଳକ ଆଚରଣ ପ୍ରଦର୍ଶନ କରେ । ଏହି ପ୍ରତିରକ୍ଷାମୂଳକ ଆଚରଣ ଅତିରିକ୍ତ ହେବା ଫଳରେ ଅପସମଯୋଜନ ହୁଏ ।

**ଆଡ଼ଲରଙ୍କ ମତ :—**

ଫ୍ରଏଡ୍ ଓ ଆଡ଼ଲରଙ୍କ ମତ ମଧ୍ୟରେ ଅପସମଯୋଜନର କାରଣ ବର୍ଣ୍ଣନାରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଫ୍ରଏଡ୍ ଯୌନ ଆବେଗକୁ ମୁଖ୍ୟ କାରଣ ଭାବରେ ଦର୍ଶାଇବା ସମୟରେ ଆଡ଼ଲର୍ ବ୍ୟକ୍ତିତ୍ୱର ଉଦ୍ଦିଷ୍ଟ ଲକ୍ଷ୍ୟକୁ ମୁଖ୍ୟ କାରଣ ଭାବରେ ଗ୍ରହଣ କରିଥାନ୍ତି । ବ୍ୟକ୍ତି ଅସହାୟ ଭାବରେ ଜନ୍ମ ଗ୍ରହଣ କରିଥାଏ ଓ ସମାଜ ସାହାଯ୍ୟରେ ପ୍ରତିପାଳିତ ଓ ବର୍ଦ୍ଧିତ ହୋଇଥାଏ । ଫଳରେ ତା ମନରେ ଏକ ପ୍ରକାର ନ୍ୟୁନତା ବୋଧ (Feeling of Inferiority) ଆସିଥାଏ । ଅନ୍ୟ ପକ୍ଷରେ ସେ ଉତ୍କୃଷ୍ଟତା ଲାଭ କରିବାକୁ ଏବଂ ସମାଜରେ କ୍ଷମତାଶାଳୀ ହେବାକୁ ଇଚ୍ଛା କରିଥାଏ । କିନ୍ତୁ ନିଜର ନ୍ୟୁନତାବୋଧ ଉକ୍ତ ଲକ୍ଷ୍ୟର ଗତିରୋଧ କରିଥାଏ । ଅତଏବ ଦ୍ୱନ୍ଦ୍ୱ ଏବଂ ଦ୍ୱନ୍ଦ୍ୱରୁ ଉତ୍ତେଜନା, ଆଶଙ୍କା ଓ ଶେଷରେ ଏହା ଅତିରିକ୍ତ ହେଲେ ଅପସମଯୋଜନା ଆରମ୍ଭ ହୋଇଥାଏ ।

**ୟୁଙ୍ଗଙ୍କ ମତ :—**

ୟୁଙ୍ଗଙ୍କ ମତରେ ମନୁଷ୍ୟ ମନରେ ଦୁଇଟି ଆବେଗ ସତତ କାର୍ଯ୍ୟଶୀଳ । ଗୋଟିଏ ସମାଜ, ଜାତି ଓ ସାମାଜିକ ରୀତି, ନୀତି, ନିୟମର ରକ୍ଷା ପାଇଁ ଓ ଅନ୍ୟଟି ଆତ୍ମ ମର୍ଯ୍ୟାଦା, ଆତ୍ମ ବ୍ୟକ୍ତିତ୍ୱ ଓ ବୈଶିଷ୍ଟ୍ୟ ରକ୍ଷାପାଇଁ ଉଦ୍ଦିଷ୍ଟ । ଯେତେବେଳେ ଏ ଦୁଇଟି ପରସ୍ପର ବିପରୀତମୁଖୀ କାର୍ଯ୍ୟ କରନ୍ତି ଚେତନା ସେମାନଙ୍କୁ ପ୍ରକାଶିତ କରାଇ ଦିଏ ନାହିଁ । ଫଳରେ ଦ୍ୱନ୍ଦ୍ୱ ଅଚେତନ ମନ ମଧ୍ୟକୁ ପ୍ରେରିତ ହୁଏ ଯାହାକି ବ୍ୟବହାରକୁ ଅସଂଗଠିତ ଓ ଭାରସାମ୍ୟହୀନ କରିଥାଏ ।

**ଶିଶୁର ଅପସମାଯୋଜନର ନିରାକରଣରେ ଶିକ୍ଷକଙ୍କ ଭୂମିକା .**

ବେତେକ ପ୍ରକାରର ଅପସମାଯୋଜିତ ଶିଶୁ ବିଶେଷଜ୍ଞମାନଙ୍କ ଦ୍ୱାରା ଚିକିତ୍ସା ଆବଶ୍ୟକ କରନ୍ତି । ତେଣୁ ସେମାନେ ଶିକ୍ଷକମାନଙ୍କ ଦାୟିତ୍ୱ ପରିସର ଭୁକ୍ତ ନୁହନ୍ତି । କିନ୍ତୁ ଅଧିକାଂଶ ଶିଶୁଙ୍କର ଅପସମାଯୋଜନ ଗୁରୁତର ହୋଇନଥାଏ । ଅତଏବ ସେମାନଙ୍କୁ ମାନବିକ ସହାନୁଭୂତି ଏବଂ ବୁଝାମଣା ସାହାଯ୍ୟରେ ସ୍ୱାଭାବିକ ଅବସ୍ଥାକୁ ଫେରାଇ ଅଣାଯାଇପାରେ । ତେଣୁ ଶିକ୍ଷକ ସେଥିପାଇଁ କେତେକ ନିର୍ଦ୍ଦିଷ୍ଟ ପଦକ୍ଷେପ ଗ୍ରହଣ କରିବା ଉଚିତ୍ ।

୧ । ପ୍ରତ୍ୟେକ ଶିଶୁର ନିଜସ୍ୱ ଓ ବ୍ୟକ୍ତିଗତ ସମସ୍ୟାମାନ ରହିଥାଏ । ତାହାକୁ ଶ୍ରେଣୀ ଗୃହରେ ଶିକ୍ଷକ ଲକ୍ଷ୍ୟ କରିବା ଉଚିତ୍ ଏବଂ ଆବଶ୍ୟକ ସ୍ଥଳେ ଉକ୍ତ ସମସ୍ୟା ପ୍ରତି ସ୍ୱତଃ ଦୃଷ୍ଟି ଦେବା ଆବଶ୍ୟକ । ଛାତ୍ର ନିକଟରେ ଅପସମାଯୋଜନର ପ୍ରାଥମିକ ଲକ୍ଷଣ ଗୁଡ଼ିକ ଦେଖାଯାଉଥିଲେ ତାହା ଶିକ୍ଷକ ଦୂର କରିବାକୁ ତତ୍ପରତା ପ୍ରକାଶ କରିବା ଦରକାର । ଯେଉଁ ଛାତ୍ରମାନେ ଅଧିକ ଉତ୍କଣ୍ଠିତ ବା ବ୍ୟାକୁଳ, ଆକ୍ରମଣଶୀଳ, ନିଃସଙ୍ଗ ଓ ଗାଠ ସ୍ୱୈର ହୋଇଥାନ୍ତି ସେମାନେ ଅପସମାଯୋଜନର ଲକ୍ଷଣ ପ୍ରଦର୍ଶନ କରନ୍ତି । କୌଣସି ସମସ୍ୟାର ଆରମ୍ଭରୁ ତାର ନିରାକରଣ କରିବାଦ୍ୱାରା ଶିକ୍ଷକ ଛାତ୍ରକୁ ସାହାଯ୍ୟ କରିପାରନ୍ତି ।

୨ । ଉତ୍ତମ ଶିକ୍ଷକ-ଛାତ୍ର ସମ୍ପର୍କ ରକ୍ଷାକରିବା ଶିକ୍ଷକଙ୍କ କର୍ତ୍ତବ୍ୟ । ଛାତ୍ରଙ୍କ ସମାଯୋଜନ ପାଇଁ ଶିକ୍ଷକଙ୍କ ସ୍ୱେଚ୍ଛାଚାରୀ ଓ ଅତ୍ୟାଗ୍ରହୀ ଆଚରଣ ଅନୁକୂଳ ନୁହେଁ । ସ୍ୱେଚ୍ଛାଚାରୀ ଓ କ୍ରୋଧୀ ଶିକ୍ଷକ ଛାତ୍ରଙ୍କ ମନରେ ଭୟ ଓ ବ୍ୟାକୁଳତା-ଭାବ ସୃଷ୍ଟି କରିଥାନ୍ତି । ତେଣୁ ଶିକ୍ଷକ ଉଭୟ ଦୃଢ଼ତା ଓ ବନ୍ଧୁତା ଭାବ ପ୍ରଦର୍ଶନ କରିବା ଉଚିତ୍ । ଏହା ପ୍ରମାଣିତ ଯେ ଯେଉଁ ଶିକ୍ଷକ ବନ୍ଧୁତ୍ୱଶୀଳ, ସାହାଯ୍ୟକାରୀ, ଖୁସିମିଜାଜ, ଧୈର୍ଯ୍ୟଶୀଳ ଓ ସୁନ୍ଦର ଆଚରଣ ପ୍ରଦର୍ଶନ କରନ୍ତି, ସେମାନେ ଛାତ୍ରମାନଙ୍କର ଅଧିକ ପ୍ରିୟ ହୋଇଥାନ୍ତି । ଶିକ୍ଷକ ଛାତ୍ରମାନଙ୍କ ସହିତ ଏପରି ବ୍ୟବହାର କରିବା ଉଚିତ୍ ଯେପରି ସେମାନେ ଛାତ୍ରକୁ ଜଣେ ବ୍ୟକ୍ତି ଭାବରେ ଗ୍ରହଣ କରୁଛନ୍ତି ଓ ତା'ର ମତାମତକୁ ମୂଲ୍ୟବାନ ମନେ କରୁଛନ୍ତି । ସଂକ୍ଷିପ୍ତରେ କହିବାକୁ ଗଲେ ଛାତ୍ରର ବ୍ୟକ୍ତିତ୍ୱ ଶିକ୍ଷକ ଗ୍ରହଣ କରେ । ଛାତ୍ର ମଧ୍ୟ ଶିକ୍ଷକଙ୍କ ବ୍ୟକ୍ତିତ୍ୱର ପ୍ରଭାବରେ ପ୍ରଭାବିତ ହୁଏ । ଫଳରେ ତାର ମାନସିକ ବିକାଶ ସାଧିତ ହୋଇଥାଏ ।

୩ । ଛାତ୍ରର ନୈତିକମାନ ନିର୍ଣ୍ଣୟରେ ଶିକ୍ଷକଙ୍କ ଭୂମିକା ଅପରିହାର୍ଯ୍ୟ । ସେ ଛାତ୍ରମାନଙ୍କ ପାଇଁ ଏପରି କାର୍ଯ୍ୟକ୍ରମମାନ ପ୍ରସ୍ତୁତ କରିବେ ଏବଂ ଏପରି ଭାବରେ ସେଗୁଡ଼ିକର ପରିଚାଳନା କରିବେ ଯେପରିକି ପ୍ରତ୍ୟେକ ଶିଶୁ କୃତିତ୍ୱ ଓ ସଫଳତାର ସ୍ୱାଦ ଆସ୍ୱାଦନ କରିପାରିବେ । ଫଳରେ ସେମାନଙ୍କ ମନରେ ଆତ୍ମବିଶ୍ୱାସ ଜାଗ୍ରତହେବ । ଅତି କଠିନ ପ୍ରଶ୍ନ ପଚାରିବା ଦ୍ୱାରା ଛାତ୍ର ମନରେ ମାନସିକ ବିକ୍ଷିପ୍ତ ଭାବ ସୃଷ୍ଟି ହୁଏ । ସେହିପରି ଅତି କଠିନ ଶୃଙ୍ଖଳା ଛାତ୍ର ପ୍ରତି ଅବହେଳା, ମାନସିକ ଦ୍ୱନ୍ଦ୍ୱ ସୃଷ୍ଟି କରେ । ତେଣୁ ଶିକ୍ଷକ ଏଗୁଡ଼ିକ ପ୍ରତି ସତର୍କ ହେବା ବିଧେୟ ।

୪ । ଛାତ୍ର ମନରେ ଖାଦ୍ୟବସ୍ତୁ ପ୍ରତି ଆଗ୍ରହ ଓ ଦୈନନ୍ଦିନ ଜୀବନରେ ଅଭ୍ୟାସ ସୃଷ୍ଟି କରିବା ଶିକ୍ଷକଙ୍କ କର୍ତ୍ତବ୍ୟ । ବିଦ୍ୟାଳୟରେ ବିଭିନ୍ନ କ୍ରୀଡ଼ା, ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିବାପାଇଁ ଶିକ୍ଷକ ଛାତ୍ରକୁ ଉତ୍ସାହିତ କରିବା ଉଚିତ୍ । ଛାତ୍ରମାନଙ୍କ ମନରେ ବାଦ୍ୟ, ସଙ୍ଗୀତ, ଚିତ୍ରକଳା, କବିତା, ଅଭିନୟ ଆଦି ମାଧ୍ୟମରେ ଗଠନମୂଳକ ଚିନ୍ତାଧାରା ସୃଷ୍ଟି କରାଇବା ଦ୍ୱାରା ଶିଶୁର ବ୍ୟକ୍ତିତ୍ୱ ବିକଶିତ ହେବା ସଙ୍ଗେ ସଙ୍ଗେ ସମଯୋଜିତ ହୋଇଥାଏ ।

୫ । ଜଣେ ଛାତ୍ରର ବୁଦ୍ଧି ଓ ସାମର୍ଥ୍ୟ ଅନ୍ୟ ଜଣେ ଛାତ୍ରଠାରୁ ଭିନ୍ନ ହୋଇଥାଏ । କିନ୍ତୁ ଶିକ୍ଷକ ଶ୍ରେଣୀ ଗୃହରେ ଜଣେ ଛାତ୍ରକୁ ଅପମାନିତ କରି ତାର ସାମର୍ଥ୍ୟକୁ ଅନ୍ୟ ସହିତ ତୁଳନା କରିବା ଅନୁଚିତ୍ । ଛାତ୍ରମାନଙ୍କ ମଧ୍ୟରେ ବିଭିନ୍ନ ବିଷୟରେ ହେଉଥିବା ପ୍ରତିଯୋଗିତା ଗୁଡ଼ିକ ମଧ୍ୟ ଶିକ୍ଷକଙ୍କ ଦ୍ୱାରା ସୁନିୟନ୍ତ୍ରିତ ହେବା ଉଚିତ୍ । ପ୍ରତିଯୋଗିତା ଉପରେ ଅତ୍ୟଧିକ ଗୁରୁତ୍ୱ ଆରୋପ କରିବା ଦ୍ୱାରା ଶିଶୁର ମାନସିକ ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିବାର ସମ୍ଭାବନା ଥାଏ । ଅନେକ ଛାତ୍ର ଯେଉଁମାନେ ପ୍ରତିଯୋଗିତା ଗୁଡ଼ିକରେ ବିଫଳ ହୁଅନ୍ତି ସେମାନେ ମାନସିକ ଉତ୍ତେଜନା ଓ ଦ୍ୱନ୍ଦ୍ୱର କୁପ୍ରଭାବ ଭୋଗ କରନ୍ତି । ଅନେକ ଛାତ୍ର ଧୀର ମନ୍ଥର ଗତିରେ କାର୍ଯ୍ୟ କରିଥାନ୍ତି । ସେମାନଙ୍କୁ ବିକାଶ ଲାଭ କରିବା ପାଇଁ ଅଧିକ ସମୟ ଓ ଅଧିକ ଚେଷ୍ଟାର ସୁଯୋଗ ପ୍ରଦାନ କରିବା ଉଚିତ୍ ।

୬ । ଯଦି ଛାତ୍ରର ବ୍ୟବହାରରେ ଅସମଯୋଜନର ଲକ୍ଷଣ ପ୍ରଦର୍ଶିତ ହୁଏ ଏବଂ ସାଧାରଣ ମାନବିକ ଉଦାର ଆଚରଣ ଦ୍ୱାରା ସେସବୁ ଦୂରୀଭୂତ ନହୁଏ ତେବେ ଶିକ୍ଷକ ଛାତ୍ରର ପିତା ମାତାଙ୍କ ସହ ସମ୍ପର୍କ ପ୍ରତିଷ୍ଠା କରିବା ଉଚିତ୍ । ଏ କ୍ଷେତ୍ରରେ ସେମାନଙ୍କ ସହଯୋଗ ଛାତ୍ରର ଅସମଯୋଜନ ଦୂର କରିବାରେ ଶିକ୍ଷକଙ୍କୁ ସାହାଯ୍ୟ କରିଥାଏ । ଆବଶ୍ୟକ ହେଲେ ଶିକ୍ଷକ ଅଭିଭାବକମାନଙ୍କୁ ମଧ୍ୟ ଶିଶୁର ବୌଦ୍ଧିକ ଓ ମାନସିକ ବିକାଶ ପାଇଁ ପରାମର୍ଶ ପ୍ରଦାନ କରିବା ଉଚିତ୍ । ଏହା ଦ୍ୱାରା ଶିକ୍ଷକ ଓ ଶିକ୍ଷା ପ୍ରତି ସେମାନଙ୍କର ସମର୍ଥନ, ସହାନୁଭୂତି ଓ ସାହାଯ୍ୟ ଲାଭ କରାଯାଇପାରିବ । ଯାହାକି ପ୍ରକାରାନ୍ତରେ ଶିଶୁର ମାନସିକ ଓ ବୌଦ୍ଧିକ ବିକାଶରେ ସାହାଯ୍ୟ କରିବ ।

୭ । କେତେକ ଅସମଯୋଜନ ଏପରି ଦୃଢ଼ ଭାବରେ ଶିଶୁର ମନ ଆଭ୍ୟନ୍ତର ମଧ୍ୟକୁ ପ୍ରବେଶ କରିଥାଏ ଯେ ଶିକ୍ଷକଙ୍କର ଆପ୍ରାଣ ଚେଷ୍ଟା ସତ୍ତ୍ୱେ ମଧ୍ୟ

ସେଗୁଡ଼ିକ ଦୂର ହୋଇପାରେ ନାହିଁ । ଏପରି ସ୍ଥଳେ ଶିଶୁକୁ କୌଣସି ବିଶେଷଜ୍ଞଙ୍କ ନିକଟକୁ ପ୍ରେରଣ କରି ଆବଶ୍ୟକୀୟ ସମସ୍ତ ସୂଚନା ପ୍ରଦାନ କରିବା ଉଚିତ୍ । ଶିଶୁ ଅବସ୍ଥାରୁ ଅପସମଯୋଜନର ଲକ୍ଷଣ ଗୁଡ଼ିକୁ ଦୂର କରିଯାଇ ପାରିଲେ ଭବିଷ୍ୟତରେ ବ୍ୟକ୍ତି ଅସ୍ୱାଭାବିକ ବ୍ୟବହାର ପ୍ରଦର୍ଶନ କରିବାର ଆଶଙ୍କା ନଥାଏ ।



# ଏକାଦଶ ଅଧ୍ୟାୟ

## ଶିକ୍ଷଣ ପ୍ରକ୍ରିୟା

## (The Learning Process)

ଏ ବିଶ୍ୱର ପବିତ୍ରତମ ମନ୍ଦିର ଦେବାଳୟ ନୁହେଁ; ବିଦ୍ୟାଳୟ । ଏ ବିଶ୍ୱର ପବିତ୍ରତମ ବ୍ୟକ୍ତି ଧର୍ମଯାଜକ ନୁହଁନ୍ତି; ମାତ୍ର ଶିକ୍ଷକ । ଶିକ୍ଷକମାନଙ୍କର ପବିତ୍ରତମ ଶିକ୍ଷା ବିଜ୍ଞାନ କିମ୍ବା ସାହିତ୍ୟ ନୁହେଁ, କି ଇତିହାସ ବା ଭୂଗୋଳ, ନୁହେଁ । ଶିଶୁ ସମ୍ବନ୍ଧରେ ଆବଶ୍ୟକୀୟ ଜ୍ଞାନ ଆହରଣ ହିଁ ତାଙ୍କର ପ୍ରକୃତ ଓ ପବିତ୍ରତମ ଶିକ୍ଷା । ଶିକ୍ଷା ମନୋବିଜ୍ଞାନ ଶିଶୁ ସମ୍ବନ୍ଧୀୟ ଜ୍ଞାନ ପ୍ରଦାନ ନିମିତ୍ତ ପ୍ରକୃଷ୍ଟ ମାଧ୍ୟମ । ଶିକ୍ଷା ମନୋବିଜ୍ଞାନ ହେଉଛି ଶିକ୍ଷା ସମ୍ବନ୍ଧୀୟ ବିଜ୍ଞାନ ଯାହା ସାହାଯ୍ୟରେ ଶିଶୁ ସମ୍ପର୍କୀୟ ସର୍ବବିଧ ଜ୍ଞାନ ଆହରଣ କରିବା ସମ୍ଭବପର ହୋଇଥାଏ । ଶିଶୁକୁ ଶିକ୍ଷାଦାନ ଦେବା ନିମିତ୍ତ ଏହା ସମସ୍ତ ପ୍ରକାର ଆବଶ୍ୟକୀୟ ଉପକରଣ ଯୋଗାଇ ଦେଇଥାଏ । ସେଥିପାଇଁ ଶିକ୍ଷା ମନୋବିଜ୍ଞାନରେ ଶିକ୍ଷଣ ପ୍ରକ୍ରିୟା ଓ ଶିକ୍ଷଣ ତତ୍ତ୍ୱ ଏକ ଆଲୋଚ୍ୟ ବିଷୟ ହୋଇ ରହିଅଛି । କେଉଁ ପରିବେଶରେ ଶିକ୍ଷଣ ପ୍ରକ୍ରିୟା ନିମିତ୍ତ ଉପଯୁକ୍ତ ଓ ଅନୁକୂଳ ବାତାବରଣ ସୃଷ୍ଟି କରିହେବ ତାହା ଶିକ୍ଷକ ଜାଣିବା ଏକାନ୍ତ ଆବଶ୍ୟକ । ଏତଦ୍‌ବ୍ୟତୀତ ଶିକ୍ଷଣ କ୍ରିୟା କେଉଁ କେଉଁ ପ୍ରତିକୂଳ ଅବସ୍ଥାରେ ବାଧାପ୍ରାପ୍ତ ହୁଏ ତାହା ଜାଣି ସେଥିପ୍ରତି ସତର୍କ ଦୃଷ୍ଟି ରଖିବା ମଧ୍ୟ ଶିକ୍ଷକଙ୍କର ପ୍ରଧାନ କର୍ତ୍ତବ୍ୟ ହେବା ବାଞ୍ଛନୀୟ । ଶିକ୍ଷଣ ପ୍ରକ୍ରିୟା ଯେ କେବଳ ବିଦ୍ୟାଳୟର ପାଠ୍ୟକ୍ରମ ମଧ୍ୟରେ ସୀମିତ ତାହା ନୁହେଁ । ଏହା ଅତ୍ୟନ୍ତ ଜଟିଳ ଓ ବ୍ୟାପକ ତଥା ଜୀବନ ବ୍ୟାପୀ ପ୍ରକ୍ରିୟା । ଇନ୍ଦ୍ରିୟ ଲବ୍ଧ ଜ୍ଞାନ, ଆଗ୍ରହ, ସାମାଜିକ ପ୍ରତିଯୋଜନ, ଅଭ୍ୟାସ, ମନୋବୃତ୍ତି ଇତ୍ୟାଦି କର୍ମକୁଶଳତା ଓ ସାମାଜିକ ଆଦର୍ଶକୁ ନେଇ ଏହା ସଙ୍ଗଠିତ ହୋଇଥାଏ । ଏହାର ଜଟିଳତା ଯୋଗୁଁ ମନସ୍ତତ୍ତ୍ୱବିତ୍‌ମାନେ ବିଭିନ୍ନ ତତ୍ତ୍ୱ ମାଧ୍ୟମରେ ବ୍ୟାଖ୍ୟା କରିବାରେ ବ୍ରତୀ ହୋଇଛନ୍ତି । ଆମେ ଶିକ୍ଷଣ ପ୍ରକ୍ରିୟା ସମ୍ପର୍କରେ ନିମ୍ନ ଆଲୋଚନା ଗୁଡ଼ିକରୁ ସ୍ପଷ୍ଟ ଜ୍ଞାନ ଆହରଣ କରିପାରିବା ।

ଶିକ୍ଷଣ ପ୍ରକ୍ରିୟା ଦ୍ୱାରା ହିଁ ଶିଶୁର ବ୍ୟବହାର ତଥା ଆଚରଣରେ ପରିବର୍ତ୍ତନ ଦେଖାଯାଏ । ଶିକ୍ଷଣର ପ୍ରଭାବ ଫଳରେ ତାର ବ୍ୟବହାର ସମାଜୋପଯୋଗୀ ପରିମାର୍ଜିତ ଓ ଉନ୍ନତ ହୁଏ । ମନୁଷ୍ୟର ଜଟିଳ ବ୍ୟବହାର ସମ୍ପର୍କରେ ଜାଣିବା ନିମିତ୍ତ ଶିକ୍ଷଣ

ପ୍ରକ୍ରିୟା ଓ ଏହାର ଗୁଣାବଳୀ ସମ୍ପର୍କରେ ଜାଣିବା ଏକାନ୍ତ ଆବଶ୍ୟକ । ଅନେକ ଜିନିଷ ଶିକ୍ଷଣର ଅନ୍ତର୍ଭୁକ୍ତ । ଆମେ ଅନେକ କଥା ଶିଖିଥାଉ । ତେବେ ସେହି ଶିକ୍ଷଣ ମଧ୍ୟରୁ କେତେକ ନିର୍ଦ୍ଦିଷ୍ଟ । ମାତ୍ର ଅନେକ ଗୁଡ଼ିଏ ଶିକ୍ଷଣ ଯଥା—ଆବେଗ, ସାମାଜିକ ବ୍ୟବହାର, ଆଦର୍ଶ ଏବଂ ମୂଲ୍ୟ ଇତ୍ୟାଦି ସମ୍ପର୍କରେ ଜାଣିବା ଅସମ୍ଭବ ହୋଇଥାଏ । ଶିକ୍ଷଣ ଏକ ଜୀବନବ୍ୟାପୀ ପ୍ରକ୍ରିୟା ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ପ୍ରତି ମୁହୂର୍ତ୍ତରେ ମନୁଷ୍ୟ କିଛି ନା କିଛି ନୂଆ ତଥା ଶିକ୍ଷା କରିବାକୁ ଆଗ୍ରହୀ ହୋଇଥାଏ । ଜଣେ ଛାତ୍ର ନୂତନ ପ୍ରଣାଳୀ ଦ୍ୱାରା ଶିକ୍ଷା ଗ୍ରହଣ ପାଇଁ ଆଗ୍ରହ ପ୍ରକାଶ କଲାବେଳେ ଜଣେ ଶିକ୍ଷକ କିପରି ଫଳପ୍ରଦ ଭାବେ ନୂତନ ଉପାୟରେ ଶିକ୍ଷାଦାନ କରି ଛାତ୍ର ଛାତ୍ରୀମାନଙ୍କୁ ସନ୍ତୁଷ୍ଟ କରିବେ ସେଥିନିମିତ୍ତ ଚେଷ୍ଟିତ ହୋଇଥାନ୍ତି । ସେହିପରି ଜଣେ ଡାକ୍ତର ନୂତନ ଔଷଧ ସମ୍ପର୍କରେ ଜ୍ଞାନ ଆହରଣ କରି ରୋଗୀମାନଙ୍କୁ ସୁସ୍ଥ କରାଇବାକୁ ବ୍ରତୀ ହେଲାବେଳେ, ଜଣେ ଯନ୍ତ୍ରୀ (Engineer) ନୂତନ ନିର୍ମାଣ କୌଶଳ ଶିକ୍ଷାକରି ଗୃହ ନିର୍ମାଣ କରିବା ନିମିତ୍ତ ଆଗ୍ରହ ପ୍ରକାଶ କରିଥାନ୍ତି । ଜଣେ ଶିଳ୍ପପତି ନୂତନ ଉପାୟରେ ଉତ୍ପାଦନ ବୃଦ୍ଧି ନିମିତ୍ତ କୌଶଳ ଶିକ୍ଷା କରିବାରେ ଚେଷ୍ଟିତ ହେଲାବେଳେ, ଜଣେ ରାଜନୀତିଜ୍ଞ ନୂତନ ପ୍ରଚାର ପ୍ରଣାଳୀ ଶିକ୍ଷାକରି ତାର ମତବାଦ ଦ୍ୱାରା ଲୋକଙ୍କୁ ଅନୁପ୍ରାଣିତ କରାଇବା ନିମିତ୍ତ ଆଗ୍ରହୀ ହୋଇଥାଏ । ସେହିପରି ଜଣେ ଗୃହିଣୀ ନୂତନ ଖାଦ୍ୟ ପ୍ରସ୍ତୁତ କରିବାରେ ପିଲାମାନଙ୍କୁ ଉତ୍ତମ ରୂପେ ଲାଳନ ପାଳନ କରିବାରେ ଓ ବାଳକ ବାଳିକାମାନେ ନୂତନ ନୂତନ ପୋଷାକ ପରିଚ୍ଛଦ ପିନ୍ଧି ନିଜକୁ ଆକର୍ଷଣୀୟ କରାଇବାରେ ଆଗ୍ରହୀ ହୋଇଥାନ୍ତି । ଧର୍ମ ପ୍ରଚାରକମାନେ ମଧ୍ୟ ନୂତନ ଧର୍ମ ପ୍ରଚାର କୌଶଳ ଶିକ୍ଷାକରି ନିଜସ୍ୱ ମତାମତ ଦ୍ୱାରା ଜନ ସମାଜକୁ ପ୍ରଭାବିତ କରାଇବା ନିମିତ୍ତ ଆଗ୍ରହୀ ହୋଇଥାନ୍ତି । ଏଥିରୁ ମନେହୁଏ ପ୍ରତ୍ୟେକ ନୂତନ ଶିକ୍ଷା ଲାଭ ନିମିତ୍ତ ଆଗ୍ରହୀ ହୋଇଥାନ୍ତି । ତେବେ ମନରେ ପ୍ରଶ୍ନ ଆସେ ଯେ, ଶିକ୍ଷଣ କିପରି ହୁଏ ? ଶିକ୍ଷଣ ନୀତି କହିଲେ ଆମେ କଣ ବୁଝୁ ? ଶିକ୍ଷଣର ଉପାଦାନ କଣ ? ଶିକ୍ଷଣର ନୀତି ଗୁଡ଼ିକ କଣ ? ଉପଯୁକ୍ତ ଶିକ୍ଷଣ ପାଇଁ କେଉଁ ବାତାବରଣ ଆବଶ୍ୟକୀୟ ? ଏ ସମସ୍ତ ପ୍ରଶ୍ନର ଉତ୍ତର ଜାଣିବା ପାଇଁ ଆମେ ସମସ୍ତେ ଆଗ୍ରହୀ । ମନୁଷ୍ୟ ହିସାବରେ, ଏ ସମସ୍ତ ବିଷୟ ସମ୍ପର୍କରେ ଜ୍ଞାନ ଆହରଣ ନିମନ୍ତେ ଆମେ ଆଗ୍ରହୀ ହୋଇଥାଉ । ଏହି ଆଗ୍ରହକୁ ଚରିତାର୍ଥ କରିବା ନିମିତ୍ତ ଆମେ ଶିକ୍ଷଣ ପ୍ରକ୍ରିୟା ସମ୍ବନ୍ଧୀୟ ଜ୍ଞାନ ଆହରଣ କରିବା ଏକାନ୍ତ ଆବଶ୍ୟକ ।

## ଶିକ୍ଷଣର ପ୍ରକୃତି (Nature of Learning) :

ମନୁଷ୍ୟ ଯେ କେବଳ ଶିକ୍ଷା ଲାଭ କରିପାରେ ତା' ନୁହେଁ । ଶିକ୍ଷଣ ଦ୍ୱାରା ଇତର ପ୍ରାଣୀମାନଙ୍କୁ ମଧ୍ୟ ଶିକ୍ଷା ଦେବା ସମ୍ଭବ ହୋଇଥାଏ । ଉଦାହରଣ ସ୍ୱରୂପ—

ସମ୍ପର୍କରେ ହାତୀ, ବାଘ, ଭାଲୁ କୁକୁର ଏବଂ ଅନ୍ୟାନ୍ୟ ପକ୍ଷୀ ମଧ୍ୟ ବିଭିନ୍ନ ପ୍ରକାର କ୍ରୀଡ଼ା କୌଶଳ ଦେଖିବାକୁ ସକ୍ଷମ ହୋଇଥାନ୍ତି । ଏପରିକି ପାରିକୁ ଶିକ୍ଷା ଦେଲେ ସେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଚିଠି ନେଇ ଯାଇପାରେ, କୁକୁରକୁ ଶିକ୍ଷା ଦେଲେ ସେ ଚୋର ଧରିପାରିବାକୁ ସକ୍ଷମ ହୋଇଥାଏ । ମନସ୍ତତ୍ତ୍ୱବିଦ୍ ହେଜ୍ (Hayes) ଗୋଟିଏ ସିମ୍ପାଞ୍ଜିକୁ ନେଇ ମାନବ ଶିଶୁଭଳି ଲାଳନ ପାଳନ କରିଥିଲେ । ତାକୁ ସ୍ୱତନ୍ତ୍ର ଭାବେ ଶିକ୍ଷାଦାନ କରିବା ଦ୍ୱାରା ତାର ବ୍ୟବହାରରେ ପରିବର୍ତ୍ତନ ପରିଦୃଷ୍ଟ ହୋଇଥିଲା । ଫଳତଃ ସେ ସିମ୍ପାଞ୍ଜି ଶିଶୁମାନଙ୍କ ଅପେକ୍ଷା ମନୁଷ୍ୟ ଶିଶୁମାନଙ୍କ ମଧ୍ୟରେ ବସବାସ କରିବା ନିମିତ୍ତ ଆଗ୍ରହୀ ହୋଇଥିଲା । ବାସନ କୁସନ ସଫା କରିବା, ଆସବାବ ପତ୍ରକୁ ସଫାକରି ରଙ୍ଗଦେବା, ଘର ସଫା କରିବା, ପେନ୍‌ସିଲ୍ କାଟିବା ଆଦି ସାଧାରଣ କାର୍ଯ୍ୟ କରିବାକୁ ସେ ସାମର୍ଥ୍ୟ ହାସଲ କରିପାରିଥିଲା । ଏପରିକି ତାର ସମବୟସ୍କ ମାନବ ଶିଶୁମାନଙ୍କ ସହିତ ସେ ମନସ୍ତାତ୍ତ୍ୱିକ ଅକଥିତ ପରୀକ୍ଷା (Psychological Non-Verba Test) ଦେବାକୁ ସକ୍ଷମ ହୋଇପାରିଥିଲା । ଉକ୍ତ ଗବେଷକଙ୍କ ସମସ୍ତ ଚେଷ୍ଟା ସତ୍ତ୍ୱେ ଏହାର ଭାଷା ଜ୍ଞାନର ଅଭିବୃଦ୍ଧି ହୋଇ ପାରିନଥିଲା । କାରଣ, ପଶୁମାନଙ୍କ ବାକ୍‌ଶକ୍ତି କ୍ଷେତ୍ରରେ କେତେକ ଅଭାବ ପରିଲକ୍ଷିତ ହୁଏ । ମାନବ ଶିଶୁମାନେ ପଢ଼ିବା, ଖେଳିବା, ନାଚିବା, ରେଡ଼ିଓ, ଟେଲିଫୋନ୍, କଂପ୍ୟୁଟର, ଆଟମ୍‌ବମ ଓ ବିଭିନ୍ନ ପ୍ରକାର ମାରଣାସ୍ତ୍ର ନିର୍ମାଣ କରିବା ଆଦି ବିଭିନ୍ନ ପ୍ରକାର ଜଟିଳ ଜ୍ଞାନ ଆହରଣ କରିବାକୁ ସକ୍ଷମ ହେଉଥିବେଳେ ପଶୁମାନଙ୍କ କ୍ଷେତ୍ରରେ ଏହା ସମ୍ଭବ ହୋଇନଥାଏ । ମନୁଷ୍ୟର ମାନସିକ ସ୍ତର ଅତ୍ୟନ୍ତ ଉନ୍ନତ ହୋଇଥିବାରୁ ସେମାନେ ଉନ୍ନତ ଓ ଉଚ୍ଚ ସ୍ତରର ଜ୍ଞାନ ଲାଭ କରିବାକୁ ସକ୍ଷମ ହୋଇଥାନ୍ତି । ଶିକ୍ଷଣର ଲକ୍ଷଣ ସମ୍ପର୍କରେ ଜାଣିବା ନିମିତ୍ତ ନିମ୍ନସ୍ଥ କାରଣ ଗୁଡ଼ିକ ପ୍ରତି ଧ୍ୟାନ ଦେବା ଏକାନ୍ତ ବାଞ୍ଛନୀୟ ।

**(୯) ଆଚରଣଗତ ପରିବର୍ତ୍ତନାତ୍ମକ ଶିକ୍ଷଣ :** —ଶିକ୍ଷଣ ଦ୍ୱାରା ହିଁ ଶିଶୁର ଆଚରଣରେ ପରିବର୍ତ୍ତନ ଦେଖାଯାଇଥାଏ । ଅର୍ଥାତ୍, ଶିକ୍ଷଣ ଆଚରଣଗତ ପରିବର୍ତ୍ତନ (Learning is the Modification of Behaviour) ପରିସ୍ଥିତି ଓ ପରିବେଶ ସହିତ ଖାପଖୁଆଇ ଚାଲିବା ନିମିତ୍ତ ପ୍ରତଃ ଶିଶୁ ସମାଜରୁ ବିଭିନ୍ନ ଆଦର୍ଶ, ନୀତି ନିୟମ ଇତ୍ୟାଦିକୁ ଶିଖିନେଇଥାଏ । ତେଣୁ ସେ ସମାଜ ବାଞ୍ଛିତ ଆଚରଣ ଓ ବ୍ୟବହାର ପ୍ରଦର୍ଶନ କରିବାକୁ ଆପେ ଶିଖି ନିଏ । ଏ ପ୍ରକାର ଶିକ୍ଷଣ ଦ୍ୱାରା ଶିଶୁ ତଥା ବ୍ୟକ୍ତିର ବ୍ୟବହାର ମଧ୍ୟ ପରିବର୍ତ୍ତିତ ହୋଇଥାଏ ଓ ଏଥିରେ ବିଭିନ୍ନ ପ୍ରକାର ଉନ୍ନତି ପରିଦୃଷ୍ଟ ହୁଏ । ଏହି ପରିବର୍ତ୍ତିତ ଓ ସମୃଦ୍ଧ ବ୍ୟବହାର ସ୍ଥାୟୀ ରୂପ ନେଇଥାଏ ।

**(୬) ଶିଶୁକୁ ଉଦ୍ଦେଶ୍ୟ ପୂରଣ ନିମିତ୍ତ ସାହାଯ୍ୟ :** —ଶିକ୍ଷଣ ଯେ କେବଳ ବ୍ୟବହାର ଓ ଆଚରଣରେ ପରିବର୍ତ୍ତନ ଆଣିଦିଏ, ତା ନୁହେଁ । ଏହା ଶିଶୁକୁ

ଉଦ୍ଦେଶ୍ୟ ପୂର୍ଣ୍ଣ କରିବାରେ ସାହାଯ୍ୟ କରିଥାଏ । କୌଣସି ଉଦ୍ଦେଶ୍ୟ ବା ଲକ୍ଷ୍ୟର ପରିପୂର୍ତ୍ତି ନିମିତ୍ତ ଏହା ପ୍ରତ୍ୟକ୍ଷଭାବେ ହେଉ ବା ପରୋକ୍ଷ ଭାବେ ହେଉ ଶିଶୁକୁ ସାହାଯ୍ୟ ପ୍ରଦାନ କରିଥାଏ । ଶିଶୁର କଥା କହିବା, ହସିବା, କାନ୍ଦିବା, ସବୁ କିଛି ଉଦ୍ଦେଶ୍ୟମୂଳକ ଭାବେ ସଙ୍ଗଠିତ ହୋଇଥାଏ । ତେଣୁ ଶିକ୍ଷଣ ଯେ ଉଦ୍ଦେଶ୍ୟମୂଳକ ଏହା ସର୍ବଥା ଗ୍ରହଣୀୟ ।

**(୩) ନୂତନ ଜ୍ଞାନ ଅନ୍ୱେଷଣ ନିମିତ୍ତ ଆଗ୍ରହ ସୃଷ୍ଟି** :—ଶିକ୍ଷଣ ନିମିତ୍ତ ତୀବ୍ର ପିପାସା ତଥା ଜିଜ୍ଞାସା ଓ ଆଗ୍ରହ ଅନେକ ସ୍ଥଳରେ ଦେଖାଯାଏ । ନୂଆ ନୂଆ କାର୍ଯ୍ୟ କରିବା ନିମିତ୍ତ ଶିଶୁ ମନରେ ପ୍ରବଳ ଆଗ୍ରହ ଓ ଉତ୍କଣ୍ଠା ପରିଲକ୍ଷିତ ହୋଇଥାଏ । ଅନ୍ୱେଷଣ ମୂଳକ କାର୍ଯ୍ୟରେ ନିଜକୁ ନିୟୋଜିତ କରିବାରେ ମଧ୍ୟ ଶିଶୁର ଆଗ୍ରହ ଅତ୍ୟନ୍ତ ପ୍ରବଳ । ଏହି ଆଗ୍ରହ ମନୋଭାବ ତଥା ଅନ୍ୱେଷଣ ମୂଳକ କାର୍ଯ୍ୟ ନିମିତ୍ତ ଇଚ୍ଛା ଶିଶୁକୁ ନୂତନ ବିଷୟ ସବୁ ଶିଖିବା ପାଇଁ ସାହାଯ୍ୟ କରିଥାଏ । ଏହାହିଁ ମଣିଷ ।

**(୪) ପରିବେଷ୍ଟନୀଗତ ପ୍ରଭାବ ଯୋଗୁଁ ଶିକ୍ଷଣରେ ଭେଦ ଭାବ** :— ବିଭିନ୍ନ ପାରିପାର୍ଶ୍ୱିକ ଅବସ୍ଥା ଶିଶୁର ଶିକ୍ଷଣକୁ ବିଭିନ୍ନ ଭାବେ ପ୍ରଭାବିତ କରିଥାଏ । ଏପରିକି ପରିବେଷ୍ଟନୀଗତ ପ୍ରଭାବ ଯୋଗୁଁ ଗୋଟିଏ ଶିଶୁର ଶିକ୍ଷଣଠାରୁ ଅନ୍ୟ ଗୋଟିଏ ଶିଶୁର ଶିକ୍ଷଣ ଭିନ୍ନ ହୋଇଥାଏ । ଯେଉଁ ଶିଶୁ ବା ଛାତ୍ର ଛାତ୍ରୀମାନେ ପ୍ରତିକୂଳ ପରିବେଶରୁ ଆସିଥାନ୍ତି, ସେମାନଙ୍କର ଶିକ୍ଷଣ ସନ୍ତୋଷଜନକ ହୋଇଥାଏ । ମାତ୍ର ଅପର ପକ୍ଷରେ ଅନୁକୂଳ ପରିବେଶ ଅନ୍ତର୍ଗତ ଶିଶୁମାନଙ୍କର ଶିକ୍ଷଣ ସନ୍ତୋଷଜନକ ଏବଂ ଫଳପ୍ରଦ ମଧ୍ୟ ହୋଇଥାଏ । ଉଦାହରଣ ସ୍ୱରୂପ :—ମଫସଲ ତଥା ଅନୁନ୍ନତ ଅଞ୍ଚଳର ଶିଶୁମାନେ ସାସ୍କୃତିକ ଓ ସଭ୍ୟତାର ଆଲୋକରୁ ବଞ୍ଚିତ ହୋଇଥିବାରୁ ବୁଦ୍ଧି ଥିବା ସତ୍ତ୍ୱେ ଶିକ୍ଷଣରେ ସେମାନେ ଆଶାନୁରୂପ ସଫଳତା ହାସଲ କରିପାରି ନଥାନ୍ତି । ମାତ୍ର କମ୍ ବୁଦ୍ଧି ସମ୍ପନ୍ନ ସହର ଅଞ୍ଚଳର ଶିଶୁମାନେ ଅନୁକୂଳ ଓ ଉନ୍ନତ ବାତାବରଣ ମଧ୍ୟରେ ରହିବା ଫଳରେ ଅଧିକ ମାତ୍ରାରେ ଶିକ୍ଷଣ ଯୋଗୁଁ ବିଭିନ୍ନ କ୍ଷେତ୍ରରେ ଆଶାତୀତ ଭାବେ ପାରଦର୍ଶିତା ପ୍ରଦର୍ଶନ କରାଇବାରେ ସଫଳୀକୃତ ହୋଇଥାନ୍ତି । ଏହିଦୃଷ୍ଟିରୁ ବିଚାରକଲେ ସ୍ପଷ୍ଟ ଜଣାଯାଏ ଯେ, ଉପଯୁକ୍ତ ଓ ଅନୁକୂଳ ବାତାବରଣ ଶିଶୁର ଶିକ୍ଷଣ ନିମିତ୍ତ ଏକାନ୍ତ ଆବଶ୍ୟକ । ତେଣୁ ଉକ୍ତ ଶିକ୍ଷଣ ନିମିତ୍ତ ଉଦ୍ଦୀପନା ସୃଷ୍ଟିକାରୀ ଗୃହ ଓ ବିଦ୍ୟାଳୟ ପରିବେଶ ଗଠିତ ହେବା ସର୍ବାଦୌ କାମ୍ୟ ।

**(୫) ଶିକ୍ଷଣ ବିଭିନ୍ନ ସମସ୍ୟା ସମାଧାନରେ ସହାୟକ ହୋଇଥାଏ** :—ସମାଜ ପରିବର୍ତ୍ତନଶୀଳ । ବିଭିନ୍ନ ସାମାଜିକ ପରିବର୍ତ୍ତନ ଯୋଗୁଁ ମନୁଷ୍ୟକୁ ସମାଜ ସହିତ ଖାପଖୁଆଇ ଚଳିବା ନିମିତ୍ତ ପରିବର୍ତ୍ତନଗୁଡ଼ିକ ସହିତ ସମ୍ମୁଖୀନ

ହେବାକୁ ପଡ଼ିଥାଏ । ଜୀବନରେ ଅନେକ ଅସୁବିଧା ଦେଖାଯାଏ, ଯେଉଁଗୁଡ଼ିକୁ ସମାଧାନ କରିବା ନିମିତ୍ତ ବ୍ୟକ୍ତି ଯେ କେବଳ ପୁରାତନ ନୀତି ନିୟମକୁ ଜାବୁଡ଼ି ଧରିବ ତା' ନୁହେଁ । ନୂତନ ନୂତନ ସମସ୍ୟା ସବୁକୁ ନୂତନ ଢଙ୍ଗରେ ସମାଧାନ କରିବାପାଇଁ ଶିକ୍ଷଣ ଖୁବ୍ ସାହାଯ୍ୟ କରିଥାଏ । ପରିବର୍ତ୍ତିତ ସମାଜର ପରିବର୍ତ୍ତନଶୀଳ ଓ ନବ୍ୟ ସମସ୍ୟାଗୁଡ଼ିକର ସମାଧାନ ଏହି ଶିକ୍ଷଣ ମାଧ୍ୟମରେ ହିଁ ସଙ୍ଗଠିତ ହୋଇଥାଏ ।

**(୬) ଶିକ୍ଷଣ ଏକ ଅଭ୍ୟାସ ଯୁକ୍ତ କାର୍ଯ୍ୟ** :—ଏ ସମ୍ପର୍କରେ କହିବାବେଳେ ପାଠକମାନେ ମନେ କରିପାରନ୍ତି ଯେ, କୌଣସି କାର୍ଯ୍ୟକୁ କ୍ରମାଗତଭାବେ ଅଭ୍ୟାସ କରିବା ହିଁ ଶିକ୍ଷଣ । ଗୋଟିଏ ପରିବେଶ ପ୍ରତି ଦକ୍ଷତାର ସହିତ ନିଜର ବ୍ୟକ୍ତିଗତ ପ୍ରତିକ୍ରିୟାକୁ ପରିପ୍ରକାଶ କରିବାକୁ ହିଁ ଶିକ୍ଷଣ କୁହାଯାଇଥାଏ । ଅଭ୍ୟାସ ଦ୍ୱାରା ଅନାବଶ୍ୟକୀୟ ପ୍ରତିକ୍ରିୟାକୁ ପରିହାର କରାଯାଇପାରେ । ଏତଦ୍‌ବ୍ୟତୀତ ଆବଶ୍ୟକୀୟ ଶିକ୍ଷଣର ଅଭିବୃଦ୍ଧି ଏହି ଅଭ୍ୟାସ ଦ୍ୱାରା ସଙ୍ଗଠିତ ହେବା ସମ୍ଭବ ହୋଇଥାଏ ।

**(୭) ଶିକ୍ଷଣ ଏକ ସ୍ୱୟଂକ୍ରିୟାଶୀଳ ଧାରା** :—ଯେତେବେଳେ ଶିଶୁ ନିଜେ କ୍ରିୟାଶୀଳ ହୁଏ ସେତିକିବେଳେ ଶିକ୍ଷଣ ସମ୍ଭବ ହୁଏ । ଶିଶୁ ନିଜେ ଶିକ୍ଷଣ ପ୍ରକ୍ରିୟା ସହିତ ସଂଶ୍ଳିଷ୍ଟ ହେବା ଆବଶ୍ୟକ ହୋଇଥାଏ । ସେ ବିଭିନ୍ନ ପ୍ରକାର ଅଭିଜ୍ଞତା ସହିତ ନିଜକୁ ସାମିଲ କରାଇଥାଏ । ତେଣୁ ଶିକ୍ଷଣ ଏକ ସ୍ୱୟଂ କ୍ରିୟାଶୀଳ ଧାରା । କାରଣ, ବ୍ୟକ୍ତିର ସମସ୍ତ ଅଭାବ ଯଥା—ମାନସିକ, ଦୈହିକ, ସାମାଜିକ ବା ଆବେଗିକ,ଇତ୍ୟାଦିକୁ ସେ ନିଜେ ଉପଲବ୍ଧି କଲେହିଁ କର୍ମ ତତ୍ପର ହୋଇ ପଡ଼ିଥାଏ । ସେ ଅନୁଭବ କରୁଥିବା ଅଭାବ ତା'ର ଇଚ୍ଛାକୁ ଉଦ୍ଦୀପିତ କରେ ଓ ତାକୁ କ୍ରିୟାଶୀଳ କରାଇଥାଏ । ଯଦି ଆବଶ୍ୟକୀୟ ଅଭିପ୍ରେରଣାର ସୁବିଧା ଥାଏ, ତେବେ ଶିକ୍ଷକଙ୍କ ବିନା ମଧ୍ୟ ଶିକ୍ଷଣ ସମ୍ଭବ ହୋଇଥାଏ । ଶିଶୁ ଯେତେବେଳେ ଶିକ୍ଷା ଆବଶ୍ୟକ କରେ ସେତେବେଳେ ଶିକ୍ଷା ଲାଭକରିଥାଏ । ତେଣୁ ଶିକ୍ଷଣ କ୍ରିୟା ସର୍ବଦା ଅଭିପ୍ରାପ୍ତ କାମ୍ୟ ଲକ୍ଷ୍ୟ ହାସଲକୁ ଦୃଷ୍ଟି-ପଥରେ ରଖିବା ଉଚିତ୍ ।

**(୮) ଶିକ୍ଷଣ କେବଳ ବିଷୟବସ୍ତୁ ସମ୍ବନ୍ଧୀୟ ଜ୍ଞାନ ନୁହେଁ** :— ଶିକ୍ଷଣ କେବଳ ବିଦ୍ୟାଳୟର ଚାରି କାନ୍ଥ ମଧ୍ୟରେ ଆବଦ୍ଧ ନୁହେଁ । ପୁସ୍ତକଗତ ଜ୍ଞାନ ଆହରଣ ମଧ୍ୟ କେବଳ ଶିକ୍ଷଣ ନୁହେଁ । ବ୍ୟକ୍ତିତ୍ୱର ସର୍ବାଙ୍ଗୀନ ଉନ୍ନତି ହିଁ ଶିକ୍ଷଣ ପଦବାଚ୍ୟ ବ୍ୟକ୍ତିତ୍ୱର ବିକାଶ କେବଳ ଶିକ୍ଷଣ ଦ୍ୱାରା ସମ୍ଭବ । ବିଦ୍ୟାଳୟରେ ବିଭିନ୍ନ ବିଷୟବସ୍ତୁ ସମ୍ବନ୍ଧୀୟ ଜ୍ଞାନ ଆହରଣକୁ ସାଧାରଣତଃ ଶିକ୍ଷଣ ରୂପେ ଅଭିହିତ କରାଯାଏ । ମାତ୍ର ଏତଦ୍‌ବ୍ୟତୀତ ଈଶ୍ୱର ସମ୍ବନ୍ଧୀୟ ଜ୍ଞାନ, ଭାଷା, ସାହିତ୍ୟ, ଦର୍ଶନ, କଳା ସ୍ଥାପତ୍ୟ ଇତ୍ୟାଦି ସମ୍ପର୍କୀୟ ଜ୍ଞାନ, ସାମାଜିକ ମୂଲ୍ୟବୋଧ, ବ୍ୟକ୍ତିଗତ ସୁଲକ୍ଷଣ ପ୍ରଭୃତି ବିଷୟରେ ଜ୍ଞାନ

ଆହରଣ ମଧ୍ୟ ଶିକ୍ଷଣ ପ୍ରକ୍ରିୟାର ଅନ୍ତର୍ଗତ । ତେଣୁ ଶିକ୍ଷଣ ଯେ କେବଳ ବିଷୟବସ୍ତୁ ସମ୍ବନ୍ଧୀୟ ଜ୍ଞାନ ତାହା ଭାବିବା ଅବାଞ୍ଛନୀୟ ।

**(୯) ଶିକ୍ଷଣ ଭ୍ରମାତ୍ମକ କିମ୍ବା ଅଭ୍ରମାତ୍ମକ ହୋଇପାରେ :—** ସାଧାରଣତଃ ବ୍ୟବହାର ପରିବର୍ତ୍ତନକୁ ଶିକ୍ଷଣରୂପେ ଅଭିହିତ କରାଗଲେ ମଧ୍ୟ, ଏହା ଭ୍ରମାତ୍ମକ ହୋଇପାରେ କିମ୍ବା ଅଭ୍ରମାତ୍ମକ ମଧ୍ୟ ହୋଇପାରେ । ଏହା ସାମାଜିକ ଭାବେ ଗ୍ରହଣଯୋଗ୍ୟ ହୋଇପାରେ ଏବଂ ଅଗ୍ରାହ୍ୟ ମଧ୍ୟ ହୋଇପାରେ । ଜୀବନରେ ଆମେ ଉଭୟ ସୁ-ବ୍ୟବହାର ଓ କୁ-ବ୍ୟବହାର ଶିକ୍ଷା କରିଥାଉ । ମାତ୍ର ଆମର ଭୁଲ୍ ବା କୁ-ବ୍ୟବହାର ସମ୍ପର୍କରେ ଆମକୁ ସଚେତନ କରାଇବା ହିଁ ଶିକ୍ଷଣର ମୁଖ୍ୟ ଉଦ୍ଦେଶ୍ୟ ।

**(୧୦) ଶିକ୍ଷଣ ଉଭୟ ଔପଚାରିକ ଏବଂ ଅନୌପଚାରିକ ଶିକ୍ଷା :—** ଶିକ୍ଷଣ ପ୍ରକ୍ରିୟା ଜନ୍ମ ସମୟରୁ ହିଁ ଆରମ୍ଭ ହୋଇଥାଏ । ଜନ୍ମଠାରୁ ଶିଶୁ ଅନେକ କଥା ଶିକ୍ଷା କରିଥାଏ । ସେ ନୂତନ ଅଭ୍ୟାସ ଏବଂ କୌଶଳ ଆହରଣ କରିଥାଏ । ସେ ଅନେକ ନୂଆ କଥା ମଧ୍ୟ ଶିକ୍ଷା କରିଥାଏ । ସେ ନୂତନ ରୁଚି, ନୂତନ ବିଶ୍ୱାସ ଏବଂ ନୂତନ ଆଗ୍ରହ ସମ୍ପର୍କରେ ଜ୍ଞାନ ଆହରଣ କରିଥାଏ । ସେ ବିଦ୍ୟାଳୟ ଭଳି ଔପଚାରିକ ଅନୁଷ୍ଠାନରୁ ଅନେକ କଥା ଶିଖିଥାଏ । ଏ ସମସ୍ତ ଶିକ୍ଷା ସମ୍ପର୍କରେ ସେ ସଚେତନ ରହିଥାଏ । ଏହା ବ୍ୟତୀତ ସେ ଅନୌପଚାରିକ ଢଙ୍ଗରେ ଅନେକ କଥା ଶିକ୍ଷା କରିଥାଏ, ପରିବାର, ବନ୍ଧୁତା, ଭ୍ରମଣ, ଖେଳପଡ଼ିଆ, ଘରବାହାର କିମ୍ବା, ଜାଗାଘର ଇତ୍ୟାଦି ଉକ୍ତ ଅନୌପଚାରିକ ଅନୁଷ୍ଠାନର ଅନ୍ତର୍ଭୁକ୍ତ । ଏ ଦୃଷ୍ଟିରୁ ବିଚାର କଲେ ସ୍ପଷ୍ଟ ଜଣାଯାଏ ଯେ, ଆମେ ଅନୌପଚାରିକ ଢଙ୍ଗରେ ମଧ୍ୟ ଅନେକ କଥା ଶିକ୍ଷା କରିଥାଉ ।

**(୧୧) ଉଚ୍ଚତର ଶିକ୍ଷା ବ୍ୟକ୍ତିର ଦକ୍ଷତା ଏବଂ ଜଟିଳ ପ୍ରଣାଳୀ ଉପରେ ନିର୍ଭର କରେ :—** ସାଧାରଣତଃ ଶିକ୍ଷଣ ନିମିତ୍ତ ଦକ୍ଷତାର ସହିତ କୌଣସି ଜିନିଷକୁ ଅନୁଧ୍ୟାନ କରିବା, ସ୍ମରଣ ଶକ୍ତିର ବିକାଶ, କୌଣସି ଚିନ୍ତାଧାରାକୁ କ୍ରମରୂପେ ବୁଝିପାରିବା । ଜୀବନର ବିଭିନ୍ନ ସମସ୍ୟାକୁ ସମାଧାନ କରିବା, ଆଗ୍ରହର ବିକାଶ ଘଟାଇବା, ଆବେଗକୁ ଆତ୍ମନିୟନ୍ତ୍ରାଧୀନ କରିବା ଇତ୍ୟାଦି ଆବଶ୍ୟକୀୟ ହୋଇଥାଏ । ଶିଶୁ ଜୀବନରେ ଶିକ୍ଷଣ ନିମିତ୍ତ ଦୁଇଟି ପ୍ରକ୍ରିୟାର ସାହାଯ୍ୟ ନେଇଥାଏ । କେତେକ କ୍ଷେତ୍ରରେ ଶିଶୁ ତାର ସାଧାରଣ ଜ୍ଞାନ ଦ୍ୱାରା ନିଜର ସାଧାରଣ ସମସ୍ୟା ଗୁଡ଼ିକର ସମାଧାନ କରିଥାଏ । ମାତ୍ର ଅନ୍ୟ କେତେକ କ୍ଷେତ୍ରରେ ତା'ର ନିଜସ୍ୱ ସମସ୍ୟାର ସମାଧାନ ନିମିତ୍ତ ତାକୁ ନୂତନ ପ୍ରଣାଳୀ ଆବିଷ୍କାର କରିବାକୁ ପଡ଼େ । ସେହି ଜଟିଳ ସମସ୍ୟା

ଗୁଡ଼ିକୁ ସମାଧାନ କରିବା ନିମିତ୍ତ ଶିଶୁ ଉଚ୍ଚତର ଶିକ୍ଷା ଆବଶ୍ୟକ କରିଥାଏ । ତେଣୁ ଶିକ୍ଷଣ କ୍ରିୟା ଜଟିଳ ହେଲେ ଉଚ୍ଚତର ଦକ୍ଷତା ଏକାନ୍ତ ଆବଶ୍ୟକୀୟ ହୋଇଥାଏ ।

**ଶିକ୍ଷଣର ସଂଜ୍ଞା (Definitions of Learning) :**

ବ୍ୟକ୍ତି କାର୍ଯ୍ୟ କରିବା ପାଇଁ, ଚିନ୍ତା କରିବା ଓ ଅନୁଭବ କରିବା ପାଇଁ ଏବଂ ନିଜ ପରିବେଷ୍ଟନୀ ସହିତ ଖାପଖୁଆଇ ଚାଲିବା ପାଇଁ ନୂତନ ପଥ ତଥା ପ୍ରଣାଳୀ ଶିକ୍ଷା କରିଥାଏ । ଶିକ୍ଷଣ ନୂତନ ବ୍ୟବହାର ଲାଭ କିମ୍ବା ପୁରାତନ ବ୍ୟବହାରରେ ସାମାନ୍ୟ ପରିବର୍ତ୍ତନ ସହିତ ଜଡ଼ିତ । ମନସ୍ତତ୍ତ୍ୱବିତ୍‌ମାନେ ନିଜସ୍ୱ ଦୃଷ୍ଟିକୋଣରୁ ଶିକ୍ଷଣର ସଂଜ୍ଞା ଭିନ୍ନ ଭିନ୍ନ ଭାବେ ନିରୂପିତ କରିଛନ୍ତି । ଶିକ୍ଷଣର କେତେଗୁଡ଼ିଏ ମୁଖ୍ୟ ସଂଜ୍ଞା ସମ୍ପର୍କରେ ନିମ୍ନରେ ଆଲୋଚନା କରାଗଲା ।

ସ୍କିନର (Skinner)ଙ୍କ ମତାନୁଯାୟୀ "ଶିକ୍ଷଣ ପ୍ରକ୍ରିୟାର ଅର୍ଥ କେବଳ ଯନ୍ତ୍ରବତ୍ ପୁନରାବୃତ୍ତି ମାଧ୍ୟମରେ କୌଣସି ବିଷୟରେ ଜ୍ଞାନ ଅର୍ଜନ ବା କୌଶଳ ଶିକ୍ଷା କରିବା ନୁହେଁ, ବରଂ ଏଥିରେ ଶିକ୍ଷାର୍ଥୀ ଶିକ୍ଷଣୀୟ ବିଷୟବସ୍ତୁକୁ ସଙ୍ଗଠିତ କରେ ଓ ବିଭିନ୍ନ କ୍ଷେତ୍ରରେ ଲକ୍ଷ୍ୟ ସାଧନ ପାଇଁ ତାହା ବିନିଯୋଗ କରେ ।"

ହିଲ୍‌ଗାର୍ଡ଼ (Hilgard)ଙ୍କ ମତରେ "ଶିକ୍ଷଣ ପ୍ରକ୍ରିୟା କୌଣସି କାର୍ଯ୍ୟର ମୂଳକାରଣ ସ୍ୱରୂପ କାମକରେ । ଏହା କୌଣସି ଆକସ୍ମିକ ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ବ୍ୟକ୍ତିର ବ୍ୟବହାରରେ ଉପସ୍ଥିତ ପରିବର୍ତ୍ତନ ଆଣେ । ଏହି ପରିବର୍ତ୍ତନ ବ୍ୟକ୍ତିର ଇଚ୍ଛା ମାଧ୍ୟମରେ ଘଟିଥାଏ । ତାହା ବ୍ୟକ୍ତିର କୌଣସି ପ୍ରକାର ସହଜାତ ଗୁଣ, ହାବ ଭାବ ବା ପରିପକ୍ୱତା ଉପରେ ନିର୍ଭର କରେ ନାହିଁ ।"

କିଙ୍ଗସ୍‌ଲି ଓ ଗାରି (Kigngsley and Garrey)ଙ୍କ ମତାନୁସାରେ "ଶିକ୍ଷଣ ପ୍ରକ୍ରିୟା ସାହାଯ୍ୟରେ ବ୍ୟକ୍ତି ତାର ଉଦ୍ଦେଶ୍ୟ ସାଧନ କରିବା ନିମିତ୍ତ କୌଣସି ପରିବେଶ ସହିତ ସମଯୋଜନ ସ୍ଥାପନ କରେ ଓ ତତ୍ ସମ୍ବନ୍ଧୀୟ କୌଣସି ପ୍ରକାର ବାଧା ଅତିକ୍ରମ କରିବା ପାଇଁ ନିଜ ବ୍ୟବହାରରେ ପରିବର୍ତ୍ତନ ଆଣେ" ।

ଇସନ୍ (Eason)ଙ୍କ ମତାନୁଯାୟୀ "ବ୍ୟକ୍ତି ଓ ତାର ପରିବେଶ ମଧ୍ୟରେ ପ୍ରାଥମିକ ଅବସ୍ଥାରେ ପାରସ୍ପରିକ କ୍ରିୟା ସଙ୍ଗଠିତ ହେବାଫଳରେ ବ୍ୟବହାରରେ ଯେଉଁ ପରିବର୍ତ୍ତନ ପରିଦୃଷ୍ଟ ହୁଏ, ତାହାହିଁ ଶିକ୍ଷଣର ଅନ୍ତର୍ଭୁକ୍ତ ।"

ଏଚ୍. କେ. କ୍ଲାଉସ୍‌ମିୟର (H. J. Klausmeier) ଲେଖିଛନ୍ତି ଯେ, ଶିକ୍ଷଣ ଏକ ପ୍ରଣାଳୀ ଯାହାଦ୍ୱାରା କାର୍ଯ୍ୟ, ତାଲିମ, ପର୍ଯ୍ୟବେକ୍ଷଣ ଇତ୍ୟାଦି ଅନୁରୂପ ଅନୁଭୂତି ଫଳସ୍ୱରୂପ ବ୍ୟବହାରରେ ପରିବର୍ତ୍ତନ ଆଣେ । କେତେକ [ବ୍ୟବହାରଗତ

ପରିବର୍ତ୍ତନ ତାହା କେତେକ ଶକ୍ତି ଫଳରେ ସଙ୍ଗଠିତ ହୁଏ; ଯଥା—ଶାରୀରିକ କ୍ଷତବିକ୍ଷତ, ରୋଗ, ଅବସାଦ ବା ଔଷଧର ମିଶ୍ରଣ ଇତ୍ୟାଦି ଶିକ୍ଷଣ ରୂପେ ବିବେଚିତ ହୁଏ ନାହିଁ ।

କ୍ରନ୍‌ବ୍ୟାକ୍ (Cronbach)ଙ୍କ ମତରେ "ଅନୁଭୂତିର ଫଳ ସ୍ୱରୂପ ବ୍ୟବହାରରେ ଯେଉଁ ପରିବର୍ତ୍ତନ ପରିଦୃଷ୍ଟ ହୁଏ, ତାହା ଶିକ୍ଷଣ ଅଟେ ।"

ବ୍ଲେୟାର, ଜୋନ୍‌ସ ଏବଂ ସିମ୍ପସନ୍ (Blair, Jones and Simpson) :—ମତ ଦେଇଛନ୍ତି ଯେ, ବ୍ୟବହାରରେ ଯେ କୌଣସି ପରିବର୍ତ୍ତନ ଅନୁଭୂତିର ଫଳ ଅଟେ ଏବଂ ଯାହାକି ପରବର୍ତ୍ତୀ କାଳରେ ବିଭିନ୍ନ ପରିସ୍ଥିତିର ସମ୍ମୁଖୀନ ହେବାକୁ ଖୋରାକ ଯୋଗାଏ । ତାହାକୁ ଶିକ୍ଷଣ କୁହାଯାଇପାରେ ।

ହିଲଗାର୍ଡ଼ (Hilgard) ଅନ୍ୟତ କହିଛନ୍ତି ଯେ "ଶିକ୍ଷଣ ଏକ ପ୍ରଣାଳୀ ଅଟେ ଯାହାଦ୍ୱାରା ବ୍ୟବହାର ସୃଷ୍ଟି ବା ପରିବର୍ତ୍ତନ ହୁଏ ଅଭ୍ୟାସ କିମ୍ବା ତାଲିମ ମାଧ୍ୟମରେ ।"

ଡବଲ୍ୟୁ. ସି. ମୋରି ଏବଂ ଜି. ଏମ୍. ୱିଇଙ୍ଗୋ (W. C. Mores and G. M. Wingo) ଙ୍କ ମତାନୁଯାୟୀ "ଶିକ୍ଷରେ ସଙ୍ଗ ହେଲ ଅଭିଜ୍ଞତା ସାହାଯ୍ୟରେ ଦେଖିବା, ଅନୁଭବ କରିବା ଏବଂ କାର୍ଯ୍ୟକରିବାର ଅନ୍ତର୍ନିହିତ ଶକ୍ତିକୁ ପରିବର୍ତ୍ତନ କରିବା । ଏହା ଆଂଶିକ ଭାବେ ବୌଦ୍ଧିକ, ଆଶିଂକ ଭାବେ ଆବେଗିକ ଏବଂ ଆଂଶିକ ଭାବେ ଗତି ସଞ୍ଚାଳକ ଅଟେ ।"

ଏଲ୍. ବିଜି. ମରିସ୍ (L. Bigge Morris) ମତ ବ୍ୟକ୍ତ କରନ୍ତି ଯେ ଗୋଟିଏ ଜୀବନ୍ତ ବ୍ୟକ୍ତି ଠାରେ ଶିକ୍ଷଣ ଏକ ପରିବର୍ତ୍ତନ ଯାହାକି ବଂଶାନୁଗୁଣ ଦ୍ୱାରା ପ୍ରଭାବିତ ନୁହେଁ । ଏହା ଅନ୍ତର୍ଦୃଷ୍ଟିରେ ପରିବର୍ତ୍ତନ, ବ୍ୟବହାର, ସମ୍ବେଦନ ବା ଅଭିପ୍ରେରଣ କିମ୍ବା ଏସବୁର ଏକତ୍ରୀକରଣ ହୋଇପାରେ ।"

## ଶିକ୍ଷଣର ଲକ୍ଷଣ (Characteristics of Learning) :

ଆମେ କହିପାରିବା ଯେ, ଶିକ୍ଷଣ ଏକ ପ୍ରଣାଳୀ ଯାହାଦ୍ୱାରା ଗୋଟିଏ ପ୍ରକ୍ରିୟା ଆରମ୍ଭ ହୁଏ କିମ୍ବା କୌଣସି ପରିବେଶ ସହିତ ପ୍ରତିକ୍ରିୟାଶୀଳ ହେବାଦ୍ୱାରା ପରିବର୍ତ୍ତିତ ହୁଏ । କିନ୍ତୁ କାର୍ଯ୍ୟକଳାପରେ ଯେଉଁ ଲକ୍ଷଣଗତ ପରିବର୍ତ୍ତନ ଦେଖାଯାଏ ତାହାକୁ ପରିପକ୍ୱତା କିମ୍ବା ଔଷଧ ସେବନର ପ୍ରତିକ୍ରିୟା ଯୋଗୁଁ ବର୍ଣ୍ଣନା କରି ହୋଇ ନଥାଏ । ଶିକ୍ଷଣ ଅନୁଭୂତ ଦ୍ୱାରା ବ୍ୟବହାରରେ ସ୍ଥାୟୀ ପରିବର୍ତ୍ତନ ଆଣିବାକୁ ସକ୍ଷମ ହୋଇଥାଏ । ତେବେ ଆମେ ମନେ ରଖିବା ଉଚିତ୍ ଯେ, ନିୟମିତ ବ୍ୟାୟାମ, କ୍ରିଡ଼ା, ଦୁର୍ବଳତା, ଔଷଧ

କେବଳ ଇତ୍ୟାଦ ଦ୍ୱାରା ବ୍ୟବହାରରେ ପରିବର୍ତ୍ତନ ପରିଦୃଷ୍ଟ ହେଲେହେଁ ଏହା ଅସ୍ଥାୟୀ । ଅଭିପ୍ରେରଣରେ ହ୍ରାସ ଯୋଗୁଁ ମଧ୍ୟ ବ୍ୟବହାରରେ ପରିଲକ୍ଷିତ ହୋଇପାରେ । ତେଣୁ ବ୍ୟକ୍ତିର ବ୍ୟବହାର ଯେ ଶିକ୍ଷଣର କେନ୍ଦ୍ର ବିନ୍ଦୁ ଏହା କହିଲେ ଅତ୍ୟୁକ୍ତି ହେବନାହିଁ । ଏହା କେବଳ ଆମେ ଦର୍ଶିଷ୍ଟ ଥିବା ବାହ୍ୟ ଶାରୀରିକ କ୍ରିୟା ନୁହେଁ । ମାତ୍ର ଭାବନା, ସ୍ମରଣ-ଶକ୍ତି, ହେତୁବାଦ, ଆବେଗିକ ପ୍ରତିକ୍ରିୟା ଇତ୍ୟାଦ ସହିତ ସଂପୃକ୍ତ । ଅନୁଭୂତି ଦ୍ୱାରା ସଙ୍ଗଠିତ ବ୍ୟବହାରଗତ ପରିବର୍ତ୍ତନ ସହିତ ସଂପୃକ୍ତ ବୋଲି ଆମେ ବୁଝିଥାଉଁ । ମାତ୍ର ଏହା ପରିପକ୍ୱତା କିମ୍ବା ଶାରୀରିକ ଆକୃତି ସହିତ ଜଡ଼ିତ ହୋଇ ନଥାଏ । ବ୍ୟବହାରଗତ ସମସ୍ତ ପ୍ରକାର ପରିବର୍ତ୍ତନ ହିଁ ଶିକ୍ଷଣ । ଏହା ଆବଶ୍ୟକୀୟ କିମ୍ବା ଅନାବଶ୍ୟକୀୟ ହୋଇପାରେ । ବିଦ୍ୟାଳୟରେ ଏବଂ ବିଦ୍ୟାଳୟ ବାହାରେ ଘଟୁଥିବା ପରିବର୍ତ୍ତନ ମଧ୍ୟ ହୋଇପାରେ ଏବଂ ଏହା ଜ୍ଞାତ କିମ୍ବା ଅଜ୍ଞାତ ମଧ୍ୟ ହୋଇପାରେ । ଏପର୍ଯ୍ୟନ୍ତ ଆମେ ଶିକ୍ଷଣର ଲକ୍ଷଣ ସମ୍ପର୍କରେ ଆଲୋଚନା କଲେ । ତେବେ W. R. Mecaw ତାଙ୍କ ପୁସ୍ତକ "Educational Psychology"ର ୩୦୩ ପୃଷ୍ଠାରେ ଶିକ୍ଷଣର ଲକ୍ଷଣ ସମ୍ପର୍କରେ କେତେକ ମତ ପ୍ରଦାନ କରିଛନ୍ତି । ତାହା ନିମ୍ନରେ ପ୍ରଦାନ କରାଗଲା—

୧ । ଶିକ୍ଷଣ ଏକ କ୍ରମାଗତ ବ୍ୟାବହାରିକ ପରିବର୍ତ୍ତନ । ଏହା ଏକ ଜୀବନବ୍ୟାପୀ ପ୍ରକ୍ରିୟା ।

୨ । ଶିକ୍ଷଣ ପରିବ୍ୟାପ୍ତ ଅଟେ । ଏହା ମନୁଷ୍ୟ ଜୀବନର ପ୍ରତ୍ୟେକ ସ୍ଥିତିରେ ପରିଦୃଷ୍ଟ ହୁଏ ।

୩ । ଶିକ୍ଷଣ ଶାରୀରିକ, ଆବେଗିକ ଏବଂ ବୌଦ୍ଧିକ ସ୍ତରରେ ସମଗ୍ର ବ୍ୟକ୍ତି ସହିତ ଜଡ଼ିତ ।

୪ । ଶିକ୍ଷଣ ବ୍ୟବହାରଗତ ଶୃଙ୍ଖଳା ବିଧାନରେ ଏକ ପରିବର୍ତ୍ତନ ଆଣିଥାଏ ।

୫ । ଶିକ୍ଷଣ ହିଁ ବିକାଶ ।

୬ । ଶିକ୍ଷଣ ହିଁ ପ୍ରେରଣା, ବହୁତ କ୍ଷେତ୍ରରେ ପ୍ରତ୍ୟକ୍ଷ ଉଦ୍ଦୀପକ ଯଥା :—ପୁରସ୍କାର, ଅପ୍ରତ୍ୟକ୍ଷ ଉଦ୍ଦୀପକ ଯଥା :—ଦଣ୍ଡବିଧି ଅପେକ୍ଷା ଅଧିକ ପ୍ରଭାବଶାଳୀ ହୋଇଥାଏ ।

୭ । ଶିକ୍ଷଣ ସର୍ବଦା ଉଦ୍ଦେଶ୍ୟ ବା ଲକ୍ଷ୍ୟ ସହିତ ସଂପୃକ୍ତ । ସେହି ଉଦ୍ଦେଶ୍ୟଗୁଡ଼ିକ ଲକ୍ଷ୍ୟ କରିବାର ଯୋଗ୍ୟ ବ୍ୟବହାରଗୁଡ଼ିକ ଦ୍ୱାରା ବ୍ୟକ୍ତ ହୋଇପାରେ ।

୮ । ଆଗ୍ରହ ଏବଂ ଶିକ୍ଷଣ ପ୍ରତ୍ୟକ୍ଷ ଭାବେ ସମ୍ପର୍କିତ । ବ୍ୟକ୍ତି ଏହାକୁ ଉତ୍ତମ ରୂପେ ଶିକ୍ଷା କରିପାରେ, ଯେଉଁ ଶିକ୍ଷଣ ପ୍ରତି ସେ ଅଧିକ ମାତ୍ରାରେ ଆଗ୍ରହୀ ହୋଇଥାଏ ।

୯ । ଶିକ୍ଷଣ ଅଭିପ୍ରେରଣ ଓ ପ୍ରସ୍ତୁତି ଉପରେ ନିର୍ଭର କରିଥାଏ । ଅନେକ ସମୟରେ ଶାରୀରିକ ପରିପକ୍ୱତା ଶିକ୍ଷଣ ପୂର୍ବରୁ ସଙ୍ଗଠିତ ହୋଇଥାଏ । ଶିଶୁ ଶାରୀରିକ ଭାବେ ସକ୍ଷମ ହେଲେ ଚାଲିବାକୁ ଶିଖିଥାଏ ଏବଂ ଯେତେବେଳେ ତା'ର ଇଚ୍ଛା ହୁଏ ସେ ଚାଲେ ।

ଏତଦ୍‌ବ୍ୟତୀତ ଶିକ୍ଷଣରେ କେତେଗୁଡ଼ିଏ ସାଧାରଣ ଲକ୍ଷଣ ପରିଦୃଷ୍ଟ ହୁଏ । ତାହା ନିମ୍ନରେ ପ୍ରଦତ୍ତ ହେଲା—

(କ) ଯେତେବେଳେବେଳେ ଲକ୍ଷ୍ୟ ସାଧନ ଉଦ୍ଦେଶ୍ୟରେ ବ୍ୟକ୍ତି କୌଣସି କାର୍ଯ୍ୟ ସହିତ ସମ୍ପୃକ୍ତ ଥାଏ, ସେହି ସମୟରେ ଶିକ୍ଷଣ ପ୍ରକ୍ରିୟା ସଙ୍ଗଠିତ ହୋଇଥାଏ ।

(ଖ) ବ୍ୟକ୍ତି ତା'ର ସମସ୍ୟାର ସମାଧାନରେ ପହଞ୍ଚିବା ନିମିତ୍ତ ବିଭିନ୍ନ ପ୍ରକାର ପ୍ରତିକ୍ରିୟା ପ୍ରକାଶ କରିଥାଏ ।

(ଗ) ପ୍ରଯତ୍ନ-ପ୍ରମାଦ ଶିକ୍ଷା କିମ୍ବା ଅନ୍ତର୍ଦୃଷ୍ଟି ଶିକ୍ଷାଦ୍ୱାରା ଏକ ସଠିକ ପ୍ରତି-କ୍ରିୟାରେ ଉପନୀତ ହୋଇ ପୂର୍ବତନ କାର୍ଯ୍ୟାବଳୀରେ କେତେକ ପରିବର୍ତ୍ତନ ଆଣିଥାଏ ।

(ଘ) କେତେକ ଉଦ୍ଦେଶ୍ୟ ଏବଂ ଅଭିପ୍ରେରଣ ଲକ୍ଷ୍ୟ ସାଧନ ବାଟରେ କାର୍ଯ୍ୟାବଳୀକୁ ନିର୍ଦ୍ଦେଶ ଦେଇଥାଏ । ଏବଂ ଯେତେବେଳେ ସେହି କାର୍ଯ୍ୟ କିମ୍ବା ପ୍ରତିକ୍ରିୟା ଲକ୍ଷ୍ୟ ହାସଲରେ ସାହାଯ୍ୟକରେ ସେତେବେଳେ ତାହା ସ୍ଥାୟିତ୍ୱ ପ୍ରାପ୍ତ ହୁଏ ।

## ଶିକ୍ଷଣ ଏବଂ ପରିପକ୍ୱତା (Learning and Maturation) :

ଶିକ୍ଷଣ ଏବଂ ପରିପକ୍ୱତା ପରସ୍ପର ସହିତ ଓତଃପ୍ରୋତ ଭାବେ ଜଡ଼ିତ । କିନ୍ତୁ ଏହି ପ୍ରଣାଳୀ ଦ୍ୱୟକୁ ପାର୍ଥକ୍ୟ କରଯାଇ ପାରେ । ପରିପକ୍ୱତା, ବୃଦ୍ଧି ଓ ବିକାଶର ଧାରାକୁ ବୁଝାଇଥାଏ । ଏହା କୌଣସି ପ୍ରକାର ତାଲିମ, ଅଭ୍ୟାସ ବା କୌଣସି ପ୍ରକାର ଉଦ୍ଦୀପକ ବ୍ୟତିରେକେ ସ୍ୱାଭାବିକ ଭାବରେ ସଙ୍ଗଠିତ ହୋଇଥାଏ । ଅନ୍ୟ ପକ୍ଷରେ, ବ୍ୟବହାରଗତ ପରିବର୍ତ୍ତନ ହିଁ ଶିକ୍ଷଣ ଯାହାକି ତାଲିମର ଅଭିଜ୍ଞତା ବା ଅଭ୍ୟାସର

ଫଳ ଅଟେ । ଗୋଟିଏ ନିର୍ଦ୍ଦିଷ୍ଟ ବୟସରେ, ପ୍ରତ୍ୟେକ ଶିଶୁ ସାଧାରଣ ଭାବେ ବସିବା, ଗୁରୁଣ୍ଡିବା, ଠିଆ ହେବା, ଚାଲିବା, କଥା କହିବା ଇତ୍ୟାଦି ଆରମ୍ଭ କରନ୍ତି । ଏ ପ୍ରକାର ବ୍ୟବହାର ପରିପକ୍ୱତାର ଫଳ । ମାତ୍ର ସେହି ଶିଶୁମାନେ ମଧ୍ୟ ନାଚି ପାରନ୍ତି, ଗୀତ ଗାଇ ପାରନ୍ତି, ଫୁଟ୍‌ବଲ୍ ଖେଳି ପାରନ୍ତି, ସ୍କୁଟର ଏବଂ କାର୍ ଚଳାଇ ପାରନ୍ତି ଏବଂ ନଦୀରେ ପହଁରି ପାରନ୍ତି । ଏ ପ୍ରକାର ବ୍ୟବହାର ଶିକ୍ଷଣ ଯୋଗୁଁ ସମ୍ଭବ ହୋଇଥାଏ । ଶିକ୍ଷଣ ବହୁଳ ମାତ୍ରାରେ ପରିପକ୍ୱତା ଉପରେ ନିର୍ଭର କରିଥାଏ । ଗୋଟିଏ ଦୁଇ ମାସର ଶିଶୁକୁ ବେଶଭୂଷା ସମ୍ପର୍କରେ ତାଲିମ୍ ଦିଆଯାଇ ପାରିବ ନାହିଁ କି ଗୋଟିଏ ଦୁଇ ବର୍ଷ ବୟସ୍କ ଶିଶୁକୁ ପାଠ ପଢ଼ିବାକୁ ଶିକ୍ଷା ଦିଆଯାଇ ପାରିବ ନାହିଁ । ସେହିପରି ଗୋଟିଏ ପାଞ୍ଚ ବର୍ଷ ବୟସ୍କ ଶିଶୁକୁ ମଧ୍ୟ ଟାଇପ୍ ଶିକ୍ଷା ଦିଆଯାଇ ପାରିବ ନାହିଁ । ତେଣୁ ଶିଶୁର ପରିପକ୍ୱତା, ଏକ ନୂତନ ବିଷୟ ଶିକ୍ଷଣରେ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ଯେତେବେଳେ ବ୍ୟକ୍ତି ପରିପକ୍ୱତାର ଏକ ନିର୍ଦ୍ଦିଷ୍ଟ ସ୍ତରରେ ପହଞ୍ଚେ ଏବଂ ତାହା ଶିକ୍ଷଣ କ୍ଷେତ୍ରରେ ସହାୟକ ହୋଇଥାଏ, ସେତେବେଳେ ହିଁ ଶିକ୍ଷଣ ସମ୍ଭବ ହୋଇଥାଏ । ପରିପକ୍ୱତା ଏବଂ ଶିକ୍ଷଣ ଉଭୟ ପରସ୍ପର ସମ୍ପର୍କିତ ଏବଂ ପରସ୍ପର ନିର୍ଭରଶୀଳ । ଅନେକ କ୍ଷେତ୍ରରେ ଶିକ୍ଷଣ ଏବଂ ପରିପକ୍ୱତା ଉଭୟଙ୍କୁ ବିଭେଦ କରିବା କଷ୍ଟକର ହୋଇଥାଏ । ଅତଏବଶୀଘ୍ର ଆମେ ଏତିକି କହିପାରିବା ଯେ, ପରିପକ୍ୱତା ଯୋଗୁଁ କେତେକ କାର୍ଯ୍ୟକଳାପ ଅଧିକ ମାତ୍ରାରେ ହୋଇଥାଏ ଏବଂ ଶିକ୍ଷଣ ଯୋଗୁଁ କମ୍ ମାତ୍ରାରେ ହୋଇଥାଏ । ଯେତେବେଳେ ଅନ୍ୟାନ୍ୟ କାର୍ଯ୍ୟକଳାପ ଶିକ୍ଷଣ ଯୋଗୁଁ ଅଧିକ ମାତ୍ରାରେ ହୋଇଥାଏ, ସେତେବେଳେ ପରିପକ୍ୱତା ଯୋଗୁଁ ତା'ର ମାତ୍ରା କମ୍ ହୋଇଥାଏ । ତେବେ ପରିପକ୍ୱତା ଶିକ୍ଷଣ ପ୍ରକ୍ରିୟା ଏକାନ୍ତ ସହାୟକ ।

"ପରିପକ୍ୱତା" ଶବ୍ଦର ଅର୍ଥ ସବୁ କ୍ଷେତ୍ରରେ ସମାନ ହୋଇ ନଥାଏ । ସାମାଜିକ ଏବଂ ଆବେଗିକ ପରିପକ୍ୱତା ଜଣେ ବ୍ୟକ୍ତିର ବ୍ୟବହାରରେ ଏକ ଆଦର୍ଶଗତ ଧାରଣା ଆଣିଦେଇ ପାରେ । ଏହା ସମ୍ପୂର୍ଣ୍ଣଭାବେ ଶିକ୍ଷଣ ଉପରେ ହିଁ ନିର୍ଭର କରିଥାଏ । ଯୌନ ସମ୍ବନ୍ଧୀୟ ପରିପକ୍ୱତା ଉଭୟ ଶାରୀରିକ ଦକ୍ଷତା ଏବଂ ଶିକ୍ଷଣ ଦକ୍ଷତା ଉପରେ ନିର୍ଭରଶୀଳ । ଶାରୀରିକ ପରିପକ୍ୱତା ସଂପୂର୍ଣ୍ଣ ଶାରୀରିକ ବୃଦ୍ଧିର ଅବସ୍ଥାକୁ ବୁଝାଇଥାଏ । ଯୌନ ସଂବନ୍ଧୀୟ ପରିପକ୍ୱତା ସାଧାରଣତଃ ମଧ୍ୟ ଯୁବାବସ୍ଥା (୧୩ ଠାରୁ ୧୭ ବର୍ଷ ବୟସ ମଧ୍ୟରେ) ପହଞ୍ଚି ଥାଏ । ଶାରୀରିକ ପରିପକ୍ୱତା ୪ରୁ ୮ ବର୍ଷ ପରେ (୨୦ରୁ ୨୨ ବର୍ଷ ମଧ୍ୟରେ) ପହଞ୍ଚି ଥାଏ । ଏପରିକି ପରେ ମଧ୍ୟ ଆବେଗିକ ଏବଂ ସାମାଜିକ ପରିପକ୍ୱତା ଜୀବନରେ ପ୍ରବେଶ କରିପାରେ ମାତ୍ର ଶିକ୍ଷଣ କ୍ଷେତ୍ରରେ "ପରିପକ୍ୱତା" ଶବ୍ଦଟି ସାଧାରଣତଃ ଶାରୀରିକ ବୃଦ୍ଧି ଓ ବିକାଶ ସଂପର୍କରେ ମତଦେବା ନିମିତ୍ତ ବ୍ୟବହୃତ ହୋଇଥାଏ ।

ପରିପକ୍ୱତା କହିଲେ କେବଳ ବ୍ୟକ୍ତିର ସ୍ୱତଃ ବୃଦ୍ଧିକୁ ବୁଝାଇ ନଥାଏ । କାରଣ, ଜନ୍ମପରେ ଏବଂ ପୂର୍ବରୁ ବୃଦ୍ଧି ଓ ବିକାଶରେ ପରିବେଶ୍ଟନୀର ପ୍ରଭାବ ମଧ୍ୟ ଜଡ଼ିତ ସତ୍ୟ ଘଟଣା । ଗର୍ଭାବସ୍ଥାରେ ମା'ର ଉପଯୁକ୍ତ ଖାଦ୍ୟର ଅଭାବ ଏବଂ କୌଣସି ସଙ୍ଘାତକ ରୋଗ, ଯାହାକି ଗର୍ଭବତୀ ମା'କୁ ପୀଡ଼ିତ କରାଇଥାଏ, ତାହା ନବ ଜାତ ଶିଶୁ ଉପରେ ବହୁତ ଖରାପ ପ୍ରଭାବ ପକାଇଥାଏ । ପ୍ରଥମାବସ୍ଥାରେ ବାହ୍ୟ ସମାଜ ସହିତ ଶିଶୁକୁ ସମ୍ପର୍କ ପ୍ରତିଷ୍ଠା କରିବାକୁ ଦିଆ ନଗଲେ, ତା'ର ବୃଦ୍ଧି ଓ ବିକାଶ ଆଘାତ ପ୍ରାପ୍ତ ହୋଇଥାଏ । ନିର୍ଜନ ଘର ମଧ୍ୟରେ ବାହ୍ୟ ଜଗତରୁ ବିଚ୍ଛିନ୍ନ ହୋଇ ରହୁଥିବା ଶିଶୁମାନଙ୍କର ଶାରୀରିକ, ସାମାଜିକ ଓ ଆବେଗିକ ବିକାଶ ବାଧାପ୍ରାପ୍ତ ହୁଏ ବୋଲି ବିଭିନ୍ନ ପରୀକ୍ଷଣରୁ ଜଣାଯାଇଛି । ପର୍ଯ୍ୟାୟକ୍ରମେ ବ୍ୟବହାରରେ ଦୃଷ୍ଟ ବିକାଶକୁ ପରିପକ୍ୱତା ରୂପେ ଅଭିହିତ କରାଯାଏ । କିନ୍ତୁ ବିଭିନ୍ନ ପରୀକ୍ଷଣ ଦ୍ୱାରା ପ୍ରଦତ୍ତ ମତବାଦ ଅନୁଯାୟୀ, ବୃଦ୍ଧି ଓ ବିକାଶ ହାରରେ ଅଧିକ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଏହିପରି ଏକ ନିର୍ଦ୍ଦିଷ୍ଟ ସମୟରେ ଶିଶୁର ବୃଦ୍ଧି ଓ ବିକାଶ ହାରରେ ଅଧିକ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଏହିପରି ଏକ ନିର୍ଦ୍ଦିଷ୍ଟ ସମୟରେ ଶିଶୁର ବୃଦ୍ଧି ସମ୍ପର୍କରେ ପୂର୍ବ ସୂଚନା ଦେବା ଅସମ୍ଭବ । କାରଣ, ଶିଶୁର ବୃଦ୍ଧି ଓ ବିକାଶରେ ସ୍ୱତନ୍ତ୍ରତା ପରିଲକ୍ଷିତ ହୁଏ ।

## ଶିକ୍ଷଣର କେତେକ ତାତ୍ପର୍ଯ୍ୟପୂର୍ଣ୍ଣ ଅବସ୍ଥା (Significant Conditon in Learning)

କେତେଗୁଡ଼ିଏ ଅବସ୍ଥା ଦ୍ୱାରା ଶିକ୍ଷଣ ପ୍ରଣାଳୀ ପ୍ରଭାବିତ ହୁଏ । ଶିଶୁମାନଙ୍କ ମଧ୍ୟରେ ଶିକ୍ଷଣ ପ୍ରଣାଳୀକୁ ପ୍ରବର୍ତ୍ତନ କରିବା ଓ ତଦନୁଯାୟୀ ସେମାନଙ୍କୁ ପରିଚାଳିତ କରିବା ନିମିତ୍ତ ଉଭୟ ଶିକ୍ଷକ ଓ ଅଭିଭାବକ ତଥା ପିତା ମାତାଙ୍କ ନିକଟରେ ଶିକ୍ଷଣର ଅବସ୍ଥାଗୁଡ଼ିକ ସମ୍ପର୍କରେ ଆବଶ୍ୟକୀୟ ଜ୍ଞାନ ଥିବା ଏକାନ୍ତ ଆବଶ୍ୟକ । କେତେଗୁଡ଼ିଏ ତାତ୍ପର୍ଯ୍ୟପୂର୍ଣ୍ଣ ଅବସ୍ଥା ଯାହାକି ଶିକ୍ଷଣ ପ୍ରଣାଳୀକୁ ପ୍ରଭାବିତ କରିଥାଏ ସେ ସଂପର୍କରେ ନିମ୍ନରେ ଆଲୋଚନା କରାଗଲା । ସେହି ତାତ୍ପର୍ଯ୍ୟପୂର୍ଣ୍ଣ ଅବସ୍ଥାଗୁଡ଼ିକ ହେଲା, ଯଥା—

୧। ପ୍ରସ୍ତୁତ (Readiness)
୨। ଅଭିପ୍ରେରଣ (Motivation)
୩। ଆଗ୍ରହ (Interest)
୪। ମନଯୋଗ (Attention)
୫। ଅଭ୍ୟାସ (Drill or Practice)
୬। କ୍ଳାନ୍ତି ଓ ବିରକ୍ତି (Fatigue and Boredom)
୭। ବୁଦ୍ଧି (Intelligence)

୮ । ପ୍ରବଣତା (Aptitude)
୯ । ମନୋଭାବ (Attitude)
୧୦ । ଆବେଗିକ ଅବସ୍ଥାବଳୀ (Emotional Factors)
୧୧ । ପାରିବାରିକ ଏବଂ ସାଂସ୍କୃତିକ ପ୍ରତ୍ୟାଶା (Family and Cultural Expectancies

(୧) ଶିକ୍ଷଣ ପାଇଁ ପ୍ରସ୍ତୁତ (Readiness of Learning) :— ଶିଶୁ ଯେତେବେଳେ ଶିକ୍ଷା ଲାଭ ନିମିତ୍ତ ପ୍ରସ୍ତୁତ ନଥାଏ ସେତେବେଳେ ଗୃହ, ବିଦ୍ୟାଳୟ ଯେକୌଣସି ଶିକ୍ଷାନୁଷ୍ଠାନରେ ଶିକ୍ଷା ଦାନ ନିମିତ୍ତ ପ୍ରୟାସ କରାଗଲେ ମଧ୍ୟ ତାହା ଫଳପ୍ରଦ ହେବ ନାହିଁ । ଗୋଟିଏ ଶ୍ରେଣୀରେ ଅଧ୍ୟୟନ କରୁଥିବା ସମବୟସ୍କର ଶିଶୁମାନେ ମଧ୍ୟ ସାଧାରଣତଃ ଏକ ସମାନ ସ୍ତରରେ ଶିକ୍ଷଣପାଇଁ ପ୍ରସ୍ତୁତ ନଥାନ୍ତି । ସେମାନଙ୍କର ପ୍ରସ୍ତୁତ ଶାରୀରିକ ବୃଦ୍ଧି, ଅନୁଭୂତିର ସୀମା, ସମାଜିକ ଏବଂ ଆବେଗିକ ସ୍ଥାୟିତ୍ୱ ଇତ୍ୟାଦି ଉପରେ ନିର୍ଭର କରିଥାଏ । ଶ୍ରେଣୀ କକ୍ଷର ଶିକ୍ଷାକୁ ଫଳପ୍ରଦ ଏବଂ ପ୍ରଭାବଶାଳୀ କରିବା ନିମିତ୍ତ ଶିକ୍ଷକ ଶିକ୍ଷଣର ପ୍ରସ୍ତୁତି ସଂପର୍କରେ ଆବଶ୍ୟକୀୟ ଜ୍ଞାନ ଲାଭ କରିବା ଏକାନ୍ତ ଆବଶ୍ୟକ । ପ୍ରସ୍ତୁତିକୁ ବୁଝିବା ଦ୍ୱାରା ଶିକ୍ଷକ ବହୁଭାବରେ ଉପକୃତ ହୋଇଥାନ୍ତି । ସେଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲ ।

(କ) ପ୍ରଥମତଃ ସେ ନିଜର ଶିକ୍ଷାଦାନ ପ୍ରଣାଳୀକୁ ଉନ୍ନତ କରିବାକୁ ସକ୍ଷମ ହୋଇଥାନ୍ତି ଏବଂ ଶ୍ରେଣୀରେ ଛାତ୍ର ଛାତ୍ରୀମାନଙ୍କ ପରିବର୍ତ୍ତିତ ପ୍ରସ୍ତୁତି ସମ୍ପର୍କରେ ଅବଗତ ହୋଇଥାନ୍ତି ।

(ଖ) ସେ ଛାତ୍ର ଛାତ୍ରୀମାନଙ୍କର ପ୍ରସ୍ତୁତିକୁ ବୃଦ୍ଧି କରାଇବା ନିମିତ୍ତ ପ୍ରୋତ୍ସାହନ ଦେଇଥାନ୍ତି ।

(ଗ) ଶିକ୍ଷା ପ୍ରତି ଅନାଗ୍ରହ ଭାବ ପ୍ରଦର୍ଶନ କରୁଥିବା ଶିଶୁମାନଙ୍କୁ ଶିକ୍ଷଣ ନିମିତ୍ତ ପ୍ରସ୍ତୁତ କରାଇବାକୁ ଉପାୟ ପ୍ରବର୍ତ୍ତନ କରିଥାନ୍ତି ।

(୨) ଶିକ୍ଷଣ ନିମିତ୍ତ ଅଭିପ୍ରେରଣ (Motivation for Learning) :—ଶିକ୍ଷଣ ପ୍ରକ୍ରିୟାରେ ଅଭିପ୍ରେରଣର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରତ୍ୟେକ ବ୍ୟକ୍ତିଙ୍କ ଜୀବନର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ରହିବା ବାଞ୍ଛନୀୟ । ଏହି ଲକ୍ଷ୍ୟ ପୂର୍ତ୍ତିନିମିତ୍ତ ବ୍ୟକ୍ତିବିଶେଷ ଶିକ୍ଷଣ ପ୍ରତି ଅଭିପ୍ରେରିତ ହୋଇଥାନ୍ତି । ଜଣେ ଦରିଦ୍ର ଛାତ୍ର ଶିକ୍ଷାଲାଭ ପରେ ନିଜର ଜୀବିକା ନିର୍ବାହ ପାଇଁ ଶିକ୍ଷଣ ପ୍ରତି ଅଧିକ ଆଗ୍ରହୀ ହୋଇଥାଏ । ଜଣେ ବ୍ୟବସାୟୀ ତାର ବ୍ୟବସାୟର ଉନ୍ନତି କଲେ ଶିକ୍ଷଣର ସାହାଯ୍ୟ ନେଇଥାଏ । ମାତ୍ର

ଗୋଟିଏ ଧନୀ ପରିବାରର ଛାତ୍ର ଶିକ୍ଷଣ ପ୍ରତି ଗରିବ ଛାତ୍ରପରି ଆଗ୍ରହାନ୍ୱିତ ହୋଇ ନଥାଏ । କାରଣ, ସେ ଜାଣେ ଯେ ଶିକ୍ଷା ବ୍ୟତିରେକେ ମଧ୍ୟ ଜୀବିକା ନିର୍ବାହ ପାଇଁ ତାକୁ କୌଣସି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିବ ନାହିଁ । ତେଣୁ ସ୍ୱତଃ ଶିକ୍ଷଣ ପ୍ରତି ତା'ର ଅଭିପ୍ରେରଣର ମାତ୍ରା ହ୍ରାସ ପାଏ । ଅଭିପ୍ରେରଣ ବିନା ଶିକ୍ଷଣରେ ଗୁଣ ଏବଂ ଗତି ବାଧାପ୍ରାପ୍ତ ହୋଇଥାଏ ।

**(୩) ଆଗ୍ରହ ଏବଂ ଶିକ୍ଷଣ (Interest and Learning) :—** ଶିକ୍ଷଣ କ୍ଷେତ୍ରରେ ଆଗ୍ରହ ମଧ୍ୟ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ଛାତ୍ର ଛାତ୍ରୀମାନଙ୍କର ବିଭିନ୍ନ ପ୍ରକାର ଆଗ୍ରହକୁ ମଧ୍ୟ ଆବଶ୍ୟକତା ଅନୁଯାୟୀ କାର୍ଯ୍ୟରେ ବିନିଯୋଗ କରାଯାଇପାରେ । ପୂର୍ବ-ବାଲ୍ୟାବସ୍ଥାରେ ଶିଶୁର ଆଗ୍ରହ ସୀମିତ ଏବଂ କ୍ଷଣସ୍ଥାୟୀ ଥାଏ । ମାତ୍ର ଶିଶୁର ବୃଦ୍ଧି ସଙ୍ଗେ ସଙ୍ଗେ ତା'ର ଆଗ୍ରହ ବୃଦ୍ଧି ପାଏ ଏବଂ ସ୍ଥାୟିତ୍ୱ ପ୍ରାପ୍ତହୁଏ । ଶିଶୁର ବିଭିନ୍ନ ଆଗ୍ରହ ସଂପର୍କରେ ଆବଶ୍ୟକୀୟ ଜ୍ଞାନ ଶିକ୍ଷକଙ୍କ ପାଇଁ ଏକାନ୍ତ ଆବଶ୍ୟକ ହୋଇଥାଏ । ଶିକ୍ଷକ ନିଜର ଶିକ୍ଷା ଦାନକୁ ସ୍ଥାୟୀ, ଉଦ୍ଦୀପନାଯୁକ୍ତ ଏବଂ ଛାତ୍ର ଛାତ୍ରୀମାନଙ୍କର ଆଗ୍ରହ ପରିବର୍ଦ୍ଧିତ କରିବା ଦ୍ୱାରା ଶିକ୍ଷାଗତ ବିରକ୍ତି ଭାବ, ଶିଥିଳତା ଏବଂ ଅନାଗ୍ରହ ଦୂର କରିପାରିବାକୁ ସକ୍ଷମ ହୋଇଥାନ୍ତି । ତେଣୁ ଶିକ୍ଷକ ସର୍ବଦା ଛାତ୍ର ଛାତ୍ରୀମାନଙ୍କର ଆଗ୍ରହ ବୃଦ୍ଧି କରିବାଭଳି ଶିକ୍ଷା ପ୍ରଣାଳୀ ଅବଲମ୍ବନ କରିବା ଉଚିତ୍ । ଶିକ୍ଷାକୁ ଆଗ୍ରହଯୁକ୍ତ କରିବା ନିମିତ୍ତ ଶିକ୍ଷଣ ଅଭିପ୍ରାୟ ପୂରଣ କରିବାରେ ସାହାଯ୍ୟ କଲେ ଛାତ୍ରଛାତ୍ରୀମାନେ ଶିକ୍ଷଣ ପ୍ରତି ଅଧିକ ମାତ୍ରାରେ ଆଗ୍ରହ ମନୋଭାବ ପ୍ରଦର୍ଶନ କରିଥାନ୍ତି ।

**(୪) ମନଯୋଗ ଏବଂ ଶିକ୍ଷଣ (Attention and Learning) :—** ମନଯୋଗ ବିନା ଶିକ୍ଷଣ ଅସମ୍ଭବ । ମନଯୋଗର ଗୁଣାତ୍ମକ ଏବଂ ପରିମାଣାତ୍ମକ ବିକାଶ ଉପରେ ଶିକ୍ଷାର ଗୁଣାତ୍ମକ ଏବଂ ପରିମାଣାତ୍ମକ ବିକାଶ ନିର୍ଭର କରିଥାଏ । ମନଯୋଗ ବାଧାପ୍ରାପ୍ତ ହେଲେ ଶିକ୍ଷଣ ଗମ୍ଭୀର ଭାବରେ ବାଧାପ୍ରାପ୍ତ ହୋଇଥାଏ ।

**(୫) ଶିକ୍ଷଣରେ ଅଭ୍ୟାସର ସ୍ଥାନ (Place of Drill or Practice in Learning) :—** ଗୋଟିଏ ସାଧାରଣ କଥା ସହଜରେ ମନେ ରହିଯାଇଥାଏ । ଏଥିରେ ଅଭ୍ୟାସର ଆବଶ୍ୟକତା ନଥାଏ । ମାତ୍ର ଜଟିଳ ସମସ୍ୟା-ଗୁଡ଼ିକୁ ଶିକ୍ଷା କରିବା ନିମିତ୍ତ ଅଭ୍ୟାସର ଆବଶ୍ୟକତା ପଡ଼ିଥାଏ । ତେଣୁ ଶିକ୍ଷକ ଶ୍ରେଣୀ କକ୍ଷରେ ଜଟିଳ ବିଷୟବସ୍ତୁ ଶିକ୍ଷାଦାନ ବେଳେ ଛାତ୍ର ଛାତ୍ରୀମାନଙ୍କ ଅଭ୍ୟାସ ପ୍ରତି ସତର୍କ ଦୃଷ୍ଟି ରଖିବା ଏକାନ୍ତ ଆବଶ୍ୟକ । ତେବେ ଛାତ୍ରମାନଙ୍କୁ କୌଣସି ବିଷୟ ଶୁଦ୍ଧବନ୍ତ ଅଭ୍ୟାସ କରାଇବା ଅବାଞ୍ଛନୀୟ । ଏହା ଫଳରେ ଛାତ୍ରଛାତ୍ରୀମାନେ ବିଷୟଗତ ତଥ୍ୟକୁ

ନ କରି କେବଳ ଅଭ୍ୟାସ ଦ୍ୱାରା ମନେରଖିବାକୁ ଚେଷ୍ଟିତ ହୁଅନ୍ତୁ । କାରଣ, ବିଷୟର ପ୍ରକୃତ ଧର୍ମକୁ ଉପଲବ୍‌ଧି କଲେ ହିଁ ଶିକ୍ଷା ଫଳପ୍ରଦ ହୋଇଥାଏ ।

(୭) କ୍ଳାନ୍ତି ଓ ବିରକ୍ତି ଭାବ (Fatigue and Boredom) :— ମାନସିକ ଏବଂ ଶାରୀରିକ ଅବସନ୍ନତାକୁ ହିଁ ଆମେ କ୍ଳାନ୍ତି (Fatigue) ରୂପେ ଅଭିହିତ କରିଥାଉଁ । କାର୍ଯ୍ୟ କରିବା ନିମିତ୍ତ ଅନାଗ୍ରହ ଭାବକୁ ବିରକ୍ତିଭାବ (Boredom) ବୋଲି କହିଥାଉଁ । ଶିକ୍ଷା ଲାଭ ଦ୍ୱାରା କ୍ଳାନ୍ତି ଆସେନାହିଁ ବରଂ ବିରକ୍ତିଭାବ କ୍ଳାନ୍ତି ସୃଷ୍ଟି କରିଥାଏ । ଶିକ୍ଷାଦାନ ତ୍ରୁଟିପୂର୍ଣ୍ଣ ହେଲେ ଛାତ୍ର ଛାତ୍ରୀମାନେ ବିରକ୍ତି ଭାବ ପୋଷଣକରନ୍ତି ଓ ଏହା ଫଳରେ ସେମାନଙ୍କଠାରେ କ୍ଳାନ୍ତି ଜାତ ହୁଏ । ବିଦ୍ୟାଳୟର ପରିବେଶ ଓ ଛାତ୍ର ଛାତ୍ରୀ-ମାନଙ୍କର ସ୍ୱାସ୍ଥ୍ୟ କ୍ଳାନ୍ତି ଏବଂ ବିରକ୍ତି ଭାବ ସୃଷ୍ଟି କରିବାରେ ଦାୟୀ ହୋଇଥାନ୍ତି । ଛାତ୍ର ଛାତ୍ରୀମାନଙ୍କ ମଧ୍ୟରେ କ୍ଳାନ୍ତି ଓ ବିରକ୍ତି ଭାବ ଯେପରି ଜାତ ନହୁଏ ସେଥି ନିମିତ୍ତ ଶିକ୍ଷା ଦାନ ସମୟରେ ଶିକ୍ଷକ ଯତ୍ନବାନ ହେବା ବିଧେୟ ।

(୭) ଶିକ୍ଷଣରେ ବୁଦ୍ଧିର ଭୂମିକା (Role of Intelligence in Learning) :—ବୁଦ୍ଧି ଦ୍ୱାରା ଶିକ୍ଷଣର ଗୁଣାତ୍ମକ ବିକାଶ ସଙ୍ଗଠିତ ହୋଇଥାଏ । ଶ୍ରେଣୀ କକ୍ଷରେ ବିଭିନ୍ନ ପ୍ରକାରର ଛାତ୍ର ଛାତ୍ରୀ ଅଧ୍ୟୟନ କରିଥାନ୍ତି । ସେହି ଛାତ୍ର ଛାତ୍ରୀମାନଙ୍କ ମଧ୍ୟରେ ବୁଦ୍ଧିଗତ ତାରତମ୍ୟ ପରିଦୃଷ୍ଟ ହୁଏ । କେତେକ ସ୍ୱଳ୍ପ ବୁଦ୍ଧିସମ୍ପନ୍ନ ହେଲାବେଳେ କେତେକ ଅଧିକ ବୁଦ୍ଧି ସମ୍ପନ୍ନ ହୋଇଥାନ୍ତି । ଏହା ବୁଦ୍ଧ୍ୟଙ୍କ ନିର୍ଦ୍ଧାରଣ ପ୍ରଣାଳୀ ଦ୍ୱାରା ଜଣାପଡ଼ିଥାଏ । ଶିକ୍ଷକ ବୁଦ୍ଧ୍ୟଙ୍କ ନିର୍ଦ୍ଧାରଣ ପ୍ରଣାଳୀକୁ ଅନୁସରଣ କରି ଛାତ୍ର ଛାତ୍ରୀମାନଙ୍କ ବୁଦ୍ଧିର ତାରତମ୍ୟ ଅନୁଯାୟୀ ଶିକ୍ଷା ଦାନ କରିବା ବାଞ୍ଛନୀୟ । ଅଳ୍ପ ବୁଦ୍ଧି (Feeble minded) ସମ୍ପନ୍ନ ଛାତ୍ର ଛାତ୍ରୀମାନଙ୍କୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଇପାରେ । ଯଥା— ଜଡ଼ଧୀ (Idiot), କ୍ଷୀଣଧୀ (Imbecile) ଏବଂ ଅଳ୍ପଧୀ (Moron) । ସେହିପରି ଅଧିକ ବୁଦ୍ଧି ସମ୍ପନ୍ନ ଛାତ୍ର ଛାତ୍ରୀମାନଙ୍କୁ ପ୍ରତିଭାଶାଳୀ (Genious) ରୂପେ ଅଭିହିତ କରାଯାଇଥାଏ ।

(୮) ସ୍ୱାଭାବିକ ଧର୍ମ ଏବଂ ଶିକ୍ଷଣ (Aptitude and Learning) ସ୍ୱାଭାବିକ ଧର୍ମ ଶିକ୍ଷଣ ପ୍ରକ୍ରିୟାର ଏକ ପ୍ରଧାନ ଅବଧାରକ । ଯେଉଁ ବିଷୟ ପ୍ରତି ଶିକ୍ଷାର୍ଥୀର ସ୍ୱତଃ ଆଗ୍ରହ ମନୋଭାବ ଥାଏ, ସେ ସେହି ବିଷୟ ଅଧିକ ମାତ୍ରାରେ ପଢ଼ିବାକୁ ଇଚ୍ଛାକରେ ଏବଂ ତାକୁ ଅନେକ ଦିନ ପର୍ଯ୍ୟନ୍ତ ମନେରଖିବାକୁ ସକ୍ଷମ ହୋଇଥାଏ । ଅନ୍ୟ ପକ୍ଷରେ ଯେଉଁ ବିଷୟ ପ୍ରତି ଶିକ୍ଷାର୍ଥୀର ଆଗ୍ରହ ନଥାଏ ସେ ତାକୁ ପଢିପାରେନି ଏବଂ ମନେ ରଖିବାକୁ ଅକ୍ଷମ ହୋଇଥାଏ । ସେ ଖୁବ୍ ଶୀଘ୍ର ବିଷୟଟିକୁ ଭୁଲିଯାଏ । ତେଣୁ ଶିକ୍ଷାର୍ଥୀମାନଙ୍କ ପାଠ୍ୟକ୍ରମ ପ୍ରସ୍ତୁତ ସମୟରେ ସେମାନଙ୍କର ସ୍ୱାଭାବିକ ଧର୍ମ (Aptitude) ପ୍ରତି ଦୃଷ୍ଟି ରଖିବା ବାଞ୍ଛନୀୟ ।

(୯) ମନୋଭାବ ଏବଂ ଶିକ୍ଷଣ (Attitude and Learning)— ଶିକ୍ଷାର୍ଥୀମାନଙ୍କର ମନୋଭାବ ଦ୍ୱାରା ମଧ୍ୟ ଶିକ୍ଷଣ ପ୍ରକ୍ରିୟା ବହୁଳ ମାତ୍ରାରେ ପ୍ରଭାବିତ ହୋଇଥାଏ । ଶିଶୁର ଧୃତିଶୀଳ ମନୋଭାବ, ମନଯୋଗ ଏବଂ ଆଗ୍ରହ ଥିବା ବିଷୟରେ ଶିକ୍ଷା ଦାନ କରାଗଲେ ତା'ଠାରେ ଶିକ୍ଷଣ ପ୍ରତି ଅନୁକୂଳ ମନୋଭାବ ସ୍ୱତଃ ଜାଗ୍ରତ ହୋଇଥାଏ । ଏପରି ମନୋଭାବ ଶିକ୍ଷଣ ପରିସ୍ଥିତିକୁ ଅର୍ଥଯୁକ୍ତ, ଆନନ୍ଦଦାୟକ, ଏବଂ ଫଳପ୍ରଦ ଭାବେ ସମ୍ପନ୍ନ ହେବା ନିମିତ୍ତ ଶିକ୍ଷାର୍ଥୀକୁ ସାହାଯ୍ୟ କରିଥାଏ । ଅପର ପକ୍ଷରେ ଶିଶୁ ଯଦି ବିଷୟ ପ୍ରତି ଅନମଯୋଗୀ ଏବଂ ଅନାଗ୍ରହୀ ହୁଏ, ତାର ମନୋଭାବ ପ୍ରତିକୂଳ ହେବାକୁ ବାଧ୍ୟ ହୁଏ । ଶିକ୍ଷାର୍ଥୀ ଉପରେ ଅବାଞ୍ଛିତ ବୋଝ ଲଦିଦେବା ଫଳରେ ଶିକ୍ଷଣ ବାଧାପ୍ରାପ୍ତ ହୋଇଥାଏ ।

(୧୦) ଆବେଗିକ ଅବସ୍ଥାବଳୀର ପ୍ରଭାବ :—ସୁହୃଦଣୀୟ ଆବେଗିକ ଅବସ୍ଥା ଶିକ୍ଷଣରେ ଗୁଣାତ୍ମକ ଓ ଗତି ବୃଦ୍ଧି କରିବାକୁ ସକ୍ଷମ ହୋଇଥାଏ । ସୁଖ, ଆନନ୍ଦ ଏବଂ ସନ୍ତୋଷ ସର୍ବଦା ଯେ କୌଣସି ପ୍ରକାର ଶିକ୍ଷଣ ପାଇଁ ଅନୁକୂଳ ହୋଇଥାଏ । ଅପର ପକ୍ଷରେ ଆବେଗିକ ପ୍ରତିକୂଳ ଅବସ୍ଥା ଶିକ୍ଷଣ ପ୍ରତି ପ୍ରତିକୂଳ ଅବସ୍ଥା ସୃଷ୍ଟି କରିଥାଏ । ଶିକ୍ଷଣ ପରିସ୍ଥିତିରେ ଜ୍ଞାନ ଆହରଣ କ୍ଷେତ୍ରରେ ଆବେଗିକ ଦ୍ୱନ୍ଦ୍ୱ, ବା ଭୟ, ପ୍ରସାରଣ, ଗଣ୍ଡଗୋଳ ଇତ୍ୟାଦି ପ୍ରତିବନ୍ଧକ ହୋଇଥାଏ ।

**ସାଧାରଣ ଆବେଗିକ କ୍ରୋଧୋଦ୍ଦୀପକ :**

ସାଧାରଣ ଆବେଗିକ କ୍ରୋଧଦ୍ଦୀପକମାନେ ଶିଶୁମାନଙ୍କ ଶିକ୍ଷଣରେ ବାଧା ସୃଷ୍ଟି କରିଥାନ୍ତି । ଯଥା—

(କ) ଅପୂର୍ଣ୍ଣ ଆବଶ୍ୟକତା ।

(ଖ) ଗୃହରେ ପିତା ମାତାଙ୍କ ଭୁଲ ମନୋଭାବ ।

(ଗ) ଗୃହ ସହିତ କଳହ, ଅସୁବିଧା, ନିରାପତ୍ତାର ଅଭାବ, ଅପର୍ଯ୍ୟାପ୍ତତା ଇତ୍ୟାଦି ସହିତ ସମ୍ପୃକ୍ତ ।

(ଘ) ପ୍ରକୃତ କମ୍ବା କଳ୍ପନା ପ୍ରସୂତ ଶାରୀରିକ ଅଭାବ ବା ବିରୂପତାରୁ ସୃଷ୍ଟି, ନୈରାଶ୍ୟବାଦ ଏବଂ ନ୍ୟୁନତା ।

(ଙ) ବିଦ୍ୟାଳୟରେ ଅକୃତକାର୍ଯ୍ୟତାର ସୁବଂ ଅନୁଭୂତି ।

(ଚ) ଶିକ୍ଷକ ଏବଂ ଶ୍ରେଣୀ ସାଥୀମାନଙ୍କର ଅବମାନନା ପୂର୍ଣ୍ଣ ମନୋଭାବ । ଶିଶୁର ଆବେଗ ଓ ମାନସିକ ଅବସ୍ଥା ସମ୍ପର୍କରେ ସମ୍ପୂର୍ଣ୍ଣ ଜ୍ଞାନ ଆହରଣ ପୂର୍ବକ ଶିକ୍ଷକ ତାର ଶିକ୍ଷଣ ପ୍ରତି ସତର୍କ ଦୃଷ୍ଟିଦେବା ଏକାନ୍ତ ଆବଶ୍ୟକ ।

**(୧୧) ପରିବାର ଏବଂ ସଂସ୍କୃତିର ଭୂମିକା** :—ଶିକ୍ଷଣରେ ପରିବାର ଏବଂ ସଂସ୍କୃତିର ଭୂମିକା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଶିଶୁ ଜୀବନର ବିଭିନ୍ନ ସ୍ତରରେ ପରିବାର ଏବଂ ସଂସ୍କୃତିର ପ୍ରଭାବ ପଡ଼ିଥାଏ । ପିତା ମାତାଙ୍କ ଇଚ୍ଛା ଏବଂ ଆଶା ଅନେକ ମାତ୍ରାରେ ଶିଶୁର ଶିକ୍ଷଣକୁ ପ୍ରଭାବିତ କରିଥାଏ । ପରିବାରର ଆଶା ସଂସ୍କୃତିରୁ ସଂସ୍କୃତିକୁ ଏବଂ ଗୋଟିଏ ଅଞ୍ଚଳରୁ ଅନ୍ୟ ଅଞ୍ଚଳକୁ ଭିନ୍ନ ହୋଇଥାଏ ।

ସେହିପରି ସାଂସ୍କୃତିକ ଦାବୀ ଓ ଆଶାସବୁ ଶିକ୍ଷଣକୁ ପ୍ରଭାବିତ କରିଥାଏ । ସାମାଜିକ ଏବଂ ଶୈକ୍ଷିକ ପରିବେଶ ସଂସ୍କୃତି ଦ୍ୱାରା ପ୍ରତିଫଳିତ ହୋଇଥାଏ । ତେଣୁ ଶିଶୁ ମାନଙ୍କର ଶିକ୍ଷଣ ସାଂସ୍କୃତିକ ସ୍ୱତନ୍ତ୍ରତାକୁ ଅନୁଧ୍ୟାନ ପୂର୍ବକ ତାର ସମସ୍ତ ଆଶା ଏବଂ ଦାବୀକୁ ପୂରଣ କରିବା ସ୍ତରରେ ପ୍ରୟାସୀ ହେବା ସାର୍ବଜୌନ କାମ୍ୟ । ସାଂସ୍କୃତିକ ଏବଂ ଦାର୍ଶନିକ ଚିନ୍ତାଧାରା ଦ୍ୱାରା ଶିକ୍ଷଣ ପ୍ରଭାବିତ ହୁଏ । ଏହିପରି ଗଣତାନ୍ତ୍ରିକ ସଂସ୍କୃତିରେ ଶିଶୁମାନଙ୍କଠାରେ ଗଣତାନ୍ତ୍ରିକ ମୂଲ୍ୟ ଏବଂ ମନୋଭାବ ସୃଷ୍ଟି କରିବା ମଧ୍ୟ ଆବଶ୍ୟକ ହୋଇଥାଏ ।

## କାର୍ଯ୍ୟ ଏବଂ ଖେଳ ମାଧ୍ୟମରେ ଶିକ୍ଷଣ (Learning by Doing and Playing) :—

ଯଦି ଶିକ୍ଷଣ ପ୍ରକ୍ରିୟାରେ କ୍ରୀଡ଼ା ଏବଂ କୌତୁକ ଇତ୍ୟାଦି କାର୍ଯ୍ୟକ୍ରମ ରହେ ତେବେ ଛାତ୍ର ଛାତ୍ରୀମାନେ ଶିକ୍ଷଣ ପ୍ରତି ଅଧିକ ମାତ୍ରାରେ ଆଗ୍ରହୀ ହେବେ । ବକ୍ତୃତା ମାଧ୍ୟମରେ ଶିକ୍ଷା ଦାନ ଫଳରେ ଶିକ୍ଷଣ ଫଳପ୍ରଦ ହୋଇନଥାଏ । ତେଣୁ କାର୍ଯ୍ୟ ଏବଂ ଖେଳ ମାଧ୍ୟମରେ ଶିକ୍ଷଣକୁ ଆଧୁନିକ ଶିକ୍ଷା ପ୍ରଣାଳୀ ଅଧିକ ପ୍ରାଧାନ୍ୟ ଦେଉଅଛି । ଅତ୍ୟାଧୁନିକ ଶିକ୍ଷା ପ୍ରଣାଳୀର ଉଦ୍ଭାବନ ଫଳରେ ପୁରାତନ ପଦ୍ଧତିକୁ ଛାଡ଼ି ବର୍ତ୍ତମାନ ଶ୍ରେଣୀ ଗୃହକୁ ଖେଳ ପଡ଼ିଆରେ ପରିଣତ କରାଗଲଣି ।

## ଶିକ୍ଷଣକୁ ପ୍ରଭାବିତ କରୁଥିବା ଅବସ୍ଥାବଳୀ (Factors Affecting Learning) :

ଶିକ୍ଷଣ ଏକ ପ୍ରକ୍ରିୟା । ତେବେ ଏହି ପ୍ରକ୍ରିୟା ସମ୍ବନ୍ଧରେ ମନରେ ଅନେକ ପ୍ରକାର ପ୍ରଶ୍ନଜାତ ହୋଇଥାଏ, ଯଥା—ଶିକ୍ଷଣ ପ୍ରକ୍ରିୟାର ଅବସ୍ଥାବଳୀ କାହାଦ୍ୱାରା ନିୟନ୍ତ୍ରିତ ହୁଏ ? କାହାଦ୍ୱାରା ଏହି ପ୍ରକ୍ରିୟା ପ୍ରଭାବିତ ହୁଏ । ଉତ୍ତମ ଶିକ୍ଷଣ ପାଇଁ ଏହା ଉପଯୁକ୍ତ କି ? ଏହାହିଁ ଆମର ବର୍ତ୍ତମାନର ଆଲୋଚ୍ୟ ବିଷୟ । ନିମ୍ନୋକ୍ତ ଆଲୋଚନାରୁ ତାହା ସ୍ପଷ୍ଟ ଅବଧାରଣା କରିବା ସମ୍ଭବ ।

ଆମେ ଶିକ୍ଷଣରେ ଅବସ୍ଥା ଗୁଡ଼ିକୁ ନିମ୍ନମତେ ବିଭାଗୀକରଣ କରିପାରିବା ।

୧ । ଶିକ୍ଷାର୍ଥୀର ଅନ୍ତର୍ନିହିତ ଅବସ୍ଥା ।
(ଉଦାହରଣ ସ୍ୱରୂପ : ଦକ୍ଷତା, ଅଭିପ୍ରେରଣ, ବୟସ, ଲିଙ୍ଗ ବ୍ୟବଧାନ, ଅଭିଜ୍ଞତା ଇତ୍ୟାଦି)

୨ । ବିଷୟବସ୍ତୁ ସହିତ ସମ୍ପର୍କିତ ଅବସ୍ଥା ।
(ଉଦାହରଣ ସ୍ୱରୂପ : ଶିକ୍ଷଣର ବିସ୍ତୃତି, ଜଟିଳତା ଏବଂ ବୋଧଗମ୍ୟତା ।

୩ । ପଦ୍ଧତି ସମ୍ବନ୍ଧୀୟ ।

(ଉଦାହରଣ ସ୍ୱରୂପ : ସ୍ମରଣ, ବିଶ୍ଳେଷଣ, ଅଭ୍ୟାସ, ଆବୃତ୍ତି ଇତ୍ୟାଦି)

ନିମ୍ନରେ ଏହି ଅବସ୍ଥାଗୁଡ଼ିକୁ ବିଶଦ୍‌ଭାବେ ଆଲୋଚନା କରାଗଲା ।

(୧) ଶିକ୍ଷଣକୁ ପ୍ରଭାବିତ କରିବାରେ ବୟସର ଭୂମିକା :—ବୟସ୍କ ଲୋକମାନଙ୍କ ଅପେକ୍ଷା ପିଲାମାନେ ଉତ୍ତମରୂପେ ଶିକ୍ଷା ଲାଭ କରିପାରନ୍ତି ବୋଲି ସାଧାରଣତଃ ବିଶ୍ୱାସ କରାଯାଏ । ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ନୂତନ ଜ୍ଞାନ ଆହରଣର କ୍ଷମତା ହ୍ରାସ ପାଏ ବୋଲି ବ୍ୟକ୍ତି ବିଶେଷ ବିଶ୍ୱାସ କରିଥାନ୍ତି । ତେବେ ଆମେ କଣ କହିପାରିବା ଯେ, ଶିକ୍ଷଣ ପ୍ରକ୍ରିୟା ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ବା ସର୍ବୋତ୍ତମ ବୟସ ରହିଛି । ଏତଦ୍‌ବ୍ୟତୀତ ଭାଷା, ଗଣିତ ଏବଂ ବିଜ୍ଞାନ ଇତ୍ୟାଦି ବିଷୟର ଶିକ୍ଷଣ ନିମିତ୍ତ ଗୋଟାଏ ସର୍ବୋତ୍ତମ ବୟସ ରହିଛି । ବୟସ ଏବଂ ଶିକ୍ଷଣ ମଧ୍ୟରେ ଥିବା ସମ୍ପର୍କ ସମ୍ବନ୍ଧରେ ବିଭିନ୍ନ ପ୍ରକାର ଗବେଷଣା କରାଯାଇଅଛି । ଏହାର ଫଳାଫଳରୁ ଜଣାଯାଇଛି ଯେ ନୂତନ ବିଷୟବସ୍ତୁ ସମ୍ପର୍କୀୟ ଜ୍ଞାନ ଆହରଣର ଦକ୍ଷତା ୧୦ ବର୍ଷ ବୟସ ପର୍ଯ୍ୟନ୍ତ ବୃଦ୍ଧି ପାଇ ତତ୍‌ପର ଅବସ୍ଥାରୁ ୨୦ ବର୍ଷ ପର୍ଯ୍ୟନ୍ତ ସ୍ଥିର ରହେ । ପରେ ଏହା ଧୀରେ ଧୀରେ ହ୍ରାସ ପାଇ ୫୦ ବର୍ଷ ବୟସ ବେଳକୁ ପ୍ରାୟ ସ୍ଥିର ହୋଇଥାଏ ।

(୨) ଶିକ୍ଷଣ ପ୍ରକ୍ରିୟାରେ ଲିଙ୍ଗ ଭେଦର ପ୍ରଭାବ :—ବାଳକ ଏବଂ ବାଳିକାମାନଙ୍କ ମଧ୍ୟରେ ବିଭିନ୍ନ ବିଷୟବସ୍ତୁ, ଦକ୍ଷତା ମନୋଭାବ ଇତ୍ୟାଦିର ଶିକ୍ଷଣରେ ପାର୍ଥକ୍ୟ ପରିଦୃଷ୍ଟ ହେବା ସମ୍ପର୍କରେ ବହୁ ଗବେଷଣା କରାଯାଇଅଛି । ଲିଙ୍ଗ ଭେଦ ଅନ୍ତର୍ନିହିତ ଭାବେ ଶିକ୍ଷଣରେ ପାର୍ଥକ୍ୟ ଆଣେ ବା ସେଗୁଡ଼ିକ ଆମ ସମାଜରେ ପ୍ରଚଳିତ ସଂସ୍କୃତି ଏବଂ ସାମାଜିକ ଭୂମିକା ଯାହା ପୁରୁଷ ଏବଂ ସ୍ତ୍ରୀମାନଙ୍କ ପାଇଁ ଉଦ୍ଦିଷ୍ଟ, ତାର ଫଳ ସ୍ୱରୂପ ସେହି ପ୍ରଶ୍ନର ଉତ୍ତର ଦେବା ନିମିତ୍ତ ଏହି ଗବେଷଣା ଗୁଡ଼ିକ କରାଯାଇଅଛି । ତେବେ ସେ ଯାହା ହେଉ ଶରୀର ଗତ ଲିଙ୍ଗ ଭେଦ ଯେ ଅଛି ତାହା ସ୍ୱୀକାର୍ଯ୍ୟ । କିନ୍ତୁ

ଏହି ଶାରୀରିକ ପାର୍ଥକ୍ୟ ଦକ୍ଷତା ଏବଂ ମନୋଭାବର ପରିବର୍ତ୍ତନ ପାଇଁ ଦାୟୀକି ନୁହେଁ ତାହା ଏ ଯାବତ୍ ସ୍ଥିର ହୋଇପାରି ନାହିଁ । ଲିଙ୍ଗଗତ ପାର୍ଥକ୍ୟ ସମ୍ପର୍କରେ ବିଭିନ୍ନ କ୍ଷେତ୍ରରେ ହୋଇଥିବା ପର୍ଯ୍ୟବେକ୍ଷଣ ନିମ୍ନରେ ପ୍ରଦତ୍ତ ହେଲା ।

୧ । ଲିଙ୍ଗଭେଦ ଯୋଗୁଁ ବୁଦ୍ଧିରେ ପାର୍ଥକ୍ୟ ପରିଦୃଷ୍ଟ ହୋଇନଥାଏ ।

୨ । ବାଳିକାମାନେ ଭାଷା, ବକ୍ତୃତା ଏବଂ ସଙ୍ଗୀତ ଇତ୍ୟାଦିରେ ଅଧିକ ପାରଦର୍ଶିତା ପ୍ରଦର୍ଶନ କରିଥାନ୍ତି । ବାଳକମାନେ ସମାଜ ବିଜ୍ଞାନ, ବିଜ୍ଞାନ ଓ ଗଣିତ ଇତ୍ୟାଦିରେ ପାରଦର୍ଶୀ ହୋଇଥାନ୍ତି ।

୩ । ବାଳିକାମାନଙ୍କର ଆବେଗିକ, ସାମାଜିକ ଏବଂ ଈର୍ଷାପରାୟଣ ମନୋଭାବ ବେଶୀ । ମାତ୍ର ବାଳକମାନେ ଅଧିକ ମାତ୍ରାରେ ପ୍ରଭାବଶାଳୀ, ସ୍ୱାଧୀନଚେତା, ଆତ୍ମବିଶ୍ୱାସୀ ଏବଂ ଉଚ୍ଚାଭିଳାଷୀ ହୋଇଥାନ୍ତି ।

୪ । ବାଳିକାମାନେ ଶବ୍ଦ ଉଚ୍ଚାରଣ ଦକ୍ଷତା, ସ୍ମରଣଶକ୍ତି ଏବଂ ଅନୁଭବ କରିବାର ଶକ୍ତି ଇତ୍ୟାଦି କ୍ଷେତ୍ରରେ ପାରଙ୍ଗମ ହେଲାବେଳେ ବାଳକମାନେ ନମ୍ବର ସମ୍ବନ୍ଧୀୟ ଧାରଣା ଏବଂ ସ୍ଥିତି ସମ୍ପର୍କୀୟ ଦକ୍ଷତା ଇତ୍ୟାଦିରେ ପାରଦର୍ଶୀତା ଦେଖାଇଥାନ୍ତି ।

୫ । ବାଳିକାମାନେ ସମାଜ ସେବା, ରୁଚି ଓ ସୌନ୍ଦର୍ଯ୍ୟ ଜ୍ଞାନ, ଗୃହ ବିଜ୍ଞାନ ଏବଂ ସାହିତ୍ୟ କ୍ଷେତ୍ରରେ ଅଧିକ ଆଗ୍ରହୀ ହେବାର ଦେଖାଯାଏ । ମାତ୍ର ବାଳକମାନଙ୍କର ବୈଜ୍ଞାନିକ, ଯାନ୍ତ୍ରିକ, ଏବଂ ତାନ୍ତ୍ରିକ ଆଗ୍ରହ ଅଧିକ ମାତ୍ରାରେ ଦେଖାଯାଏ ।

(ଗ) ଶିକ୍ଷଣ ଉପରେ ମାନସିକ ସ୍ଥିତିର ପ୍ରଭାବ :—ଫଳପ୍ରଦ ଶିକ୍ଷଣ, ଶିକ୍ଷା ଦାନ କାର୍ଯ୍ୟ ନିମିତ୍ତ ଏକାଗ୍ରତା ଉପରେ ନିର୍ଭର କରିଥାଏ । ଶିକ୍ଷାନିମିତ୍ତ ପ୍ରତ୍ୟକ୍ଷ ଅନୁଭୂତ ଶିଶୁମାନଙ୍କ ପାଇଁ ଶ୍ରେଣୀ ଗୃହର ପରୋକ୍ଷ ମନୋନିବେଶଠାରୁ ଅଧିକ ଗୁରୁତ୍ୱ ପୂର୍ଣ୍ଣ । ଯଦି ଛାତ୍ର ଛାତ୍ରୀମାନଙ୍କୁ ପଢ଼ିସାରିଥିବା ଗୋଟିଏ ବିଷୟକୁ ୩ଦିନ ପରେ ପରୀକ୍ଷା କରାଯାଏ ସେମାନେ ଅଧିକ ମାତ୍ରାରେ ଶିକ୍ଷା କ୍ଷେତ୍ରରେ ଆଗ୍ରହ ପ୍ରଦର୍ଶନ କରିବେ । ମାତ୍ର ସେହି ବିଷୟରେ ସେମାନଙ୍କୁ ୭ମାସ ପରେ ପରୀକ୍ଷା କରାଗଲେ ସେମାନେ ଶିକ୍ଷା ନିମିତ୍ତ ସେତେ ମାତ୍ରାରେ ତତ୍ପର ହୋଇନଥାନ୍ତି । ଯେତେବେଳେ ଛାତ୍ର ଛାତ୍ରୀମାନଙ୍କର ଉଦ୍ଦେଶ୍ୟ ନିର୍ଦ୍ଦିଷ୍ଟ ଭାବେ କେନ୍ଦ୍ରୀଭୂତ ହୁଏ, ସେତେବେଳେ ସେମାନଙ୍କର ମାନସିକ ସ୍ଥିତି ପ୍ରଭାବିତ ହୋଇଥାଏ । ତାହା ଅନ୍ୟମନସ୍କ ଅଭ୍ୟାସ ପାଠ ଅପେକ୍ଷା ଅଧିକ

ପ୍ରତ୍ୟକ୍ଷଣାଳୀ । ସେମାନଙ୍କର ମାନସିକ ସ୍ଥିତି ସେମାନେ ଗ୍ରହଣ କରିଥିବା ଏବଂ ମନେରଖିଥିବା ଧାରଣାଗୁଡ଼ିକୁ ବୁଝାଇଥାଏ ।

(୪) **ପୂର୍ବ ଅଭିଜ୍ଞତାର ପ୍ରଭାବ** :—ନୂତନ ଶିକ୍ଷଣ ପୁରାତନ ଶିକ୍ଷଣ ଉପରେ ନିର୍ଭର ଶୀଳ । ଗୋଟିଏ ସ୍ତରର ଶିକ୍ଷା ଅନ୍ୟ ସ୍ତରର ଶିକ୍ଷା ନିମିତ୍ତ ସାହାଯ୍ୟ କରିଥାଏ । ଯଦି ଶିଶୁ ଲେଖିବା, ପଢ଼ିବା, ଗଣିତ ଇତ୍ୟାଦି ଶିଖିବାକୁ ଆରମ୍ଭ କରି ଶ୍ରେଣୀମାନଙ୍କରେ ଅକୃତ କାର୍ଯ୍ୟ ହୁଏ ସେ ଏହି ଦକ୍ଷତା ଗୁଡ଼ିକ କ୍ଷେତ୍ରରେ ପ୍ରଗତି କରିପାରି ନ ଥାଏ । ଏହିପରି ଶିକ୍ଷଣ ସର୍ବଦା ପୂର୍ବ ଅଭିଜ୍ଞତା ଦ୍ୱାରା ପ୍ରଭାବିତ ହୁଏ । ଗୋଟିଏ କ୍ଷେତ୍ରରେ ପୂର୍ବ ଶିକ୍ଷଣ ବିଷୟବସ୍ତୁକୁ ଅଧିକ ପରିଚିତ କରାଇପାରିଥାଏ । ଫଳତଃ ବିଷୟବସ୍ତୁ ଗ୍ରହଣଯୋଗ୍ୟ ହୋଇଥାଏ ।

(୫) **ପାରିବାରିକ ପୃଷ୍ଠ ଭୂମି ଏବଂ ସାମାଜିକ ଓ ଅର୍ଥନୈତିକ ପ୍ରତିଷ୍ଠାର ପ୍ରଭାବ** :—ଉଭୟ ମଫସଲ ଏବଂ ସହର ପରିବେଶ ଶିକ୍ଷା କ୍ଷେତ୍ରରେ ଦକ୍ଷତା ଏବଂ ସାଫଲ୍ୟତା ଆଣିବାରେ ପାର୍ଥକ୍ୟ ସୃଷ୍ଟି କରିବାପାଇଁ ଏକାନ୍ତ ଦାୟୀ । ଏ କ୍ଷେତ୍ରରେ ହୋଇଥିବା ପରୀକ୍ଷଣରୁ ଜଣାଯାଇଛି ଯେ, ସହରୀ ଶିଶୁମାନେ କଥିତ ବିଷୟ ଉପରେ ଅପେକ୍ଷାକୃତ ଅଧିକ ଦକ୍ଷତା ହାସଲ କରିଥାନ୍ତି । ସେମାନଙ୍କର କଥା କହିବାର ଢଙ୍ଗ ମଫସଲ ପିଲାମାନଙ୍କଠାରୁ ଅଧିକ ଶାଳୀନ ହୋଇଥାଏ ।

ମଫସଲ ଓ ସହରର ଶିଶୁମାନଙ୍କର ଶିକ୍ଷଣ କ୍ଷେତ୍ରରେ ପରିଦୃଷ୍ଟ ତାରତମ୍ୟ ସେମାନଙ୍କ ପାଇଁ ସହଜ ଲଭ୍ୟ ଉଦ୍ଦୀପନାର ସ୍ତର ଉପରେ ନିର୍ଭର କରିଥାଏ । ନଗରୀ ଓ ବଡ଼ ସହର ମାନଙ୍କରେ ବହୁତ ଲାଇବ୍ରେରୀ, ପତ୍ରପତ୍ରିକା, ବହି, ବିଦ୍ୟାଳୟ, ମ୍ୟୁଜିୟମ୍, ଟେଲିଭିଜନ, ସାମାଜିକ ଏବଂ ସଙ୍ଗଠିତ କାର୍ଯ୍ୟାବଳୀର ସୁବିଧା ଥାଏ । ଶିଶୁମାନଙ୍କଠାରେ ଶିକ୍ଷଣ କ୍ଷେତ୍ରରେ ପରିଦୃଷ୍ଟ ଅନ୍ୟ ଏକ ପ୍ରଭେଦ ହେଲା ସାମାଜିକ ଶ୍ରେଣୀ ଯଥା :—ନିମ୍ନ, ମଧ୍ୟ ଏବଂ ଉପର ଶ୍ରେଣୀ । ଗୋଟିଏ ଶ୍ରେଣୀ ଅନ୍ତର୍ଗତ ଶିଶୁ ଅନ୍ୟଶ୍ରେଣୀ ଅନ୍ତର୍ଭୁକ୍ତ ଶିଶୁ-ମାନଙ୍କଠାରୁ ଭିନ୍ନ ହୋଇଥାନ୍ତି । ଏତଦ୍‌ବ୍ୟତୀତ ଶୈକ୍ଷିକ ସାଫଲ୍ୟତା ମନୋଭାବ, ସାମାଜିକ ସ୍ୱଭାବ, ମୂଲ୍ୟ ଏବଂ ଅର୍ଥନୈତିକ ପ୍ରତିଷ୍ଠା ଇତ୍ୟାଦି କ୍ଷେତ୍ରରେ ମଧ୍ୟ ଶିଶୁମାନେ ଶ୍ରେଣୀ ଅନୁଯାୟୀ ଭିନ୍ନ ହୋଇଥାନ୍ତି ।

(୬) **ଅଭିଜ୍ଞତାର ସାଫଲ୍ୟତା ଏବଂ ଅସାଫଲ୍ୟତା ଉପରେ ପ୍ରଭାବ** :—ସାଧାରଣତଃ ଦେଖାଯାଏ ଯେ, ଶିକ୍ଷା କ୍ଷେତ୍ରରେ ଅକୃତ କାର୍ଯ୍ୟ ହେଉଥିବା ଶିଶୁମାନଙ୍କଠାରେ ଏକନ୍ୟୂନ ଏବଂ ହତୋତ୍ସାହ ଭାବ ପରିଦୃଷ୍ଟ ହୁଏ । ସ୍ଥୂଳତଃ ଉଚ୍ଚାଭିଳାଷୀ

ଶିଶୁମାନେ ଜୀବନରେ ପ୍ରାୟ ସମସ୍ତ କ୍ଷେତ୍ରରେ କୃତକାର୍ଯ୍ୟ ହୋଇଥାନ୍ତି । ଏତଦ୍ବ୍ୟତୀତ ସାଫଲ୍ୟତା ଓ ଅସାଫଲ୍ୟତାର ଅଭିଜ୍ଞତା ଫଳରେ ଶିକ୍ଷଣ ମଧ୍ୟ ପ୍ରଭାବିତ ହୋଇଥାଏ ।

**(୭) ଶିକ୍ଷା ଉପରେ ଉନ୍ନତି ସମ୍ବନ୍ଧୀୟ ଜ୍ଞାନର ପ୍ରଭାବ :**—ଉନ୍ନତି ସମ୍ବନ୍ଧୀୟ ଜ୍ଞାନ ଶିକ୍ଷଣ କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଅଛି । ଯେ କୌଣସି ପରୀକ୍ଷାର ଫଳ ଶିକ୍ଷା କ୍ଷେତ୍ରରେ ଏକ ବଳିଷ୍ଠ ଉଦ୍ଦୀପକ ରୂପେ କାର୍ଯ୍ୟ କରେ । ଦେଖାଯାଇ ଅଛି ଯେ, ଯେଉଁ ଗୋଷ୍ଠୀ ଶିକ୍ଷା କ୍ଷେତ୍ରରେ ହେଉଥିବା ଉନ୍ନତି ସମ୍ବନ୍ଧରେ ଅବଗତ ହୁଏ ତାହା ଆଶାଜନକଭାବେ ଉନ୍ନତି କରିପାରିଥାଏ । ମାତ୍ର ଯେଉଁ ଗୋଷ୍ଠୀ ଏ ପ୍ରକାର ସମ୍ବାଦରୁ ବଞ୍ଚିତ ହୁଏ ତାହା ଅପେକ୍ଷାକୃତ କମ୍ ଉନ୍ନତି କରିଥାଏ । ଗୋଟିଏ ପରୀକ୍ଷଣରୁ ଜଣାଯାଇଛି ଯେ, ଫଳାଫଳର ଜ୍ଞାନ ବାସ୍ତବରେ ଉନ୍ନତି ଅସମ୍ଭବ । ଫଳାଫଳ ସମ୍ପର୍କରେ ଅବଗତ ହେବା ପର୍ଯ୍ୟନ୍ତ ଉନ୍ନତି ହୋଇଥାଏ ଏବଂ ଏହା ବନ୍ଦ ହେଲେ ଉନ୍ନତି ମଧ୍ୟ କମିଯାଏ । ତେଣୁ ଶିକ୍ଷଣ କ୍ଷେତ୍ରରେ ଶିକ୍ଷକ ଏହାର ପ୍ରାଧାନ୍ୟ ଉପଲବ୍ଧି କରିବା ଏକାନ୍ତ ଆବଶ୍ୟକ ।

**(୮) ବିଷୟ ବସ୍ତୁ ଅର୍ଥବୋଧକ ହେବା ବାଞ୍ଛନୀୟ :**—ବିଭିନ୍ନ ପରୀକ୍ଷାରୁ ଜଣା ଯାଇଛି ଯେ, ଅର୍ଥପୂର୍ଣ୍ଣ ବିଷୟବସ୍ତୁ ଅର୍ଥଶୂନ୍ୟ ବିଷୟ ବସ୍ତୁ ଅପେକ୍ଷା ଖୁବ୍ ସହଜରେ ମନେ ରହେ । ଅର୍ଥପୂର୍ଣ୍ଣ ବିଷୟବସ୍ତୁ କହିଲେ ଆମେ ବୁଝୁ ଯେ ଯାହା କିଛି ଧାରଣା ଦିଏ ଏବଂ ତାର ଶିକ୍ଷାର୍ଥୀ ସହିତ ସମ୍ପର୍କ ଓ ପୂର୍ବ ଅଭିଜ୍ଞତା ଥାଏ । ତେଣୁ ଶିକ୍ଷା କ୍ଷେତ୍ରରେ ଏହାର ଭୂମିକା ଉପଲବ୍ଧି କରିବାର ବିଷୟ । ବିଷୟବସ୍ତୁ ସର୍ବଦା ବୋଧଗମ୍ୟ ହେବା ବାଞ୍ଛନୀୟ । ଅବୋଧ ବିଷୟବସ୍ତୁକୁ ମନେରଖିବା ନିମିତ୍ତ ଶିଶୁକୁ ବାଧ୍ୟ କରିବା ଅନୁଚିତ୍ । ଶିକ୍ଷଣରେ ବିଷୟବସ୍ତୁ ଅର୍ଥପୂର୍ଣ୍ଣ ହେବା ଉଚିତ୍ । ଏତଦ୍ବ୍ୟତୀତ ସେହି ବିଷୟବସ୍ତୁ ପୂର୍ବ ଅଭିଜ୍ଞତା ସମ୍ପର୍କିତ ହେବା ସ୍ପୃହଣୀୟ ।

**(୯) ବିଷୟବସ୍ତୁର ଜଟିଳତା :**—ଶିକ୍ଷଣ କ୍ଷେତ୍ରରେ ଏହାର ଗୁରୁତ୍ୱ ସର୍ବାଧିକ । ଶିକ୍ଷାଦାନ ସର୍ବଦା ସରଳରୁ ଜଟିଳ ହେବା ବାଞ୍ଛନୀୟ । ପ୍ରଥମେ ସହଜ ଓ ସରଳ ବିଷୟ ଶିକ୍ଷା ଦ୍ୱାରା ଶିଶୁ ଏ କ୍ଷେତ୍ରରେ ସାଧାରଣତଃ ଅଧିକ ପାରଦର୍ଶିତା ଦେଖାଇଥାନ୍ତି । ମାତ୍ର ବିଷୟର ଜଟିଳତା ବୃଦ୍ଧି ସଙ୍ଗେ ସଙ୍ଗେ ସେମାନଙ୍କ ପାରଦର୍ଶିତା ସ୍ତରର ପରିମାଣ ଯଦିଓ ହ୍ରାସ ପାଏ, ତଥାପି ସେମାନେ କ୍ରମେ ଉନ୍ନତି କରିପାରନ୍ତି । ମାତ୍ର ପ୍ରଥମରୁ ଯଦି ଜଟିଳ ବିଷୟ ଶିଶୁକୁ ଶିକ୍ଷା ଦିଆଯାଏ ତେବେ ଶିଶୁ ତାର ପାରଙ୍ଗମତା ଦେଖାଇପାରେ ନାହିଁ ସତ, ମାତ୍ର ସେ ପାଠପଢ଼ା ପ୍ରତି ମଧ୍ୟ ସ୍ୱତଃ ଅବହେଳା କରେ ଓ ଏକ ପ୍ରକାର ଭୟ ମନୋଭାବ ତା'ଠାରେ ସୃଷ୍ଟି ହୁଏ । ତେଣୁ ଶିଶୁକୁ କ୍ରମାଗତଭାବେ ସରଳରୁ ଜଟିଳ ବିଷୟ ଶିକ୍ଷା ଦିଆଯିବା ଏକାନ୍ତ ଆବଶ୍ୟକ ।

(୧୦) **ବିଷୟବସ୍ତୁର ବିସ୍ତୃତ** :—ଅନେକ ସମୟରେ ପ୍ରଶ୍ନ ଆସେ ଯେ, ଶିକ୍ଷା ଦାନ କରାଯାଉଥିବା ବଡ଼ ବା ଲମ୍ବା ବିଷୟବସ୍ତୁ ଶ୍ରେଷ୍ଠ ବା କ୍ଷୁଦ୍ର ବିଷୟବସ୍ତୁ ଅପେକ୍ଷା ବେଶୀ ସମୟ ନିଏ କି ? ଏବିଙ୍ଗ୍‌ହସ (Ebbinghaus) ଦେଖିଛନ୍ତି ଯେ, ବିଷୟବସ୍ତୁ ବିସ୍ତୃତ ହେଲେ ଏହା ମନେରଖିବାକୁ ଅଧିକ ସମୟ ନିଏ । ମାତ୍ର ଏହା ଆଶ୍ଚର୍ଯ୍ୟଜନକ ଘଟଣା ଯେ, ବିସ୍ତୃତ ବିଷୟବସ୍ତୁ କ୍ଷୁଦ୍ର ବିଷୟବସ୍ତୁ ଅପେକ୍ଷା ଶୀଘ୍ର ମନେରହେ । ମନସ୍ତତ୍ତ୍ୱବିଦ୍ ଉଡ୍‌ୱର୍ଥ (Wood Worth) ୧୯୩୮ ମସିହାରେ କରିଥିବା ପରୀକ୍ଷଣର ଫଳାଫଳ ସମ୍ପର୍କରେ କହିଛନ୍ତି ଯେ, କ୍ଷୁଦ୍ର ବିଷୟ ଅପେକ୍ଷା ବୃହତ୍ ବିଷୟ ଶୀଘ୍ର ମନେରହେ । ଶିକ୍ଷଣ ନିମିତ୍ତ ଆବଶ୍ୟକ ବିଷୟବସ୍ତୁର ବିସ୍ତୃତ ମଧ୍ୟ ଶିକ୍ଷଣ ପ୍ରଣାଳୀ ଦ୍ୱାରା ପ୍ରଭାବିତ ହୁଏ । ଗୋଟିଏ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଯଦି ଗୋଟିଏ ବିଷୟ ଧାରାବାହିକ ଭାବେ ପଢ଼ାଯାଏ ତେବେ ଏହାକୁ ମନେରଖିବା ନିମିତ୍ତ ଅଧିକ ସମୟ ଆବଶ୍ୟକ ହୁଏ । ମାତ୍ର ଶିକ୍ଷଣରେ ଶ୍ରେଣୀ ବିଭାଗ ପ୍ରଣାଳୀ ଅବଲମ୍ବନ କରାଗଲେ ଶିକ୍ଷଦାନ କାର୍ଯ୍ୟ ତ୍ୱରାନ୍ୱିତ ହେବା ସଙ୍ଗେ ସଙ୍ଗେ ଫଳପ୍ରସୂ ହୋଇଥାଏ ।

(୧୧) **ପୁନଃ ସ୍ମରଣର ମୂଲ୍ୟ** :—ଫଳପ୍ରଦ ପୁନଃସ୍ମରଣ ଶିକ୍ଷଣ ଏବଂ ସ୍ମୃତିଶକ୍ତି ଉପରେ ଶକ୍ତ ପ୍ରଭାବ ବିସ୍ତାର କରିଥାଏ । ଏହାକୁ ମାନସିକ ବା ମାନସିକ ସମୀକ୍ଷାରୂପେ ଅଭିହିତ କରାଯାଏ । ଗୋଟିଏ ଅନୁଚ୍ଛେଦ ପଢ଼ିବାକୁ ପୁନଃ ସ୍ମରଣ କରିବା ଫଳରେ ଶିକ୍ଷା ଫଳପ୍ରଦ ହୁଏ । ମନୋବିଜ୍ଞାନରେ ଏହାକୁ କହି କହିକରି ପଢ଼ିବା ରୂପେ ଅଭିହିତ କରାଯାଏ ।

ପୁନଃ ସ୍ମରଣ କିପରି ସ୍ମୃତିଶକ୍ତି ବୃଦ୍ଧିରେ ସାହାଯ୍ୟ କରେ ତାହା ନିମ୍ନୋକ୍ତ ସମ୍ଭାବ୍ୟ କାରଣ ଗୁଡ଼ିକରୁ ସ୍ପଷ୍ଟ ଅନୁମେୟ ।

(କ) ସଚେତନ ଭାବରେ ପୁନଃ ସ୍ମରଣକୁ ବ୍ୟବହାର କଲେ ଶିକ୍ଷଣ କାର୍ଯ୍ୟ ଫଳପ୍ରଦ ଏବଂ ଲକ୍ଷ୍ୟପ୍ରଦ ହୋଇଥାଏ । ବିଷୟ ଉପରେ ଆଖି ବୁଲାଇ ମନ ଅସ୍ଥିର ରଖିବା ଫଳରେ ଏହା ସଙ୍ଗଠିତ ହୋଇପାରେ ନାହିଁ ।

(ଖ) ପଢ଼ିବା ଦ୍ୱାରା ସଙ୍ଗଠିତ ହେଉଥିବା ପୁନଃ ସ୍ମରଣ ଶିକ୍ଷାର୍ଥୀକୁ କ'ଣ ମନେ ରଖିବା ଉଚିତ୍ ଏବଂ ମନେ ରଖିବା ନିମିତ୍ତ କ'ଣ କରିବା ଉଚିତ୍ ଏ ସମ୍ପର୍କରେ ପରୀକ୍ଷା କରି ଦେଖିବାକୁ ସୁଯୋଗ ଦିଏ ।

(ଗ) ପୁନଃ ସ୍ମରଣର ଦକ୍ଷତା ଶିକ୍ଷାର୍ଥୀକୁ ଶିକ୍ଷଣ କ୍ଷେତ୍ରରେ ଅନେକ ସାହାଯ୍ୟ କରିଥାଏ । ଏହା ତାକୁ ଆତ୍ମ ପ୍ରତ୍ୟୟ ସୃଷ୍ଟିରେ ସାହାଯ୍ୟ କରିଥାଏ ।

ତେଣୁ ବିଦ୍ୟାଳୟ ପରିପ୍ରେକ୍ଷୀରେ ପୁନଃସ୍ମରଣ ଏବଂ ସ୍ମୃତିଶକ୍ତି ବୃଦ୍ଧିର ଅଭ୍ୟାସ ବୃଦ୍ଧି ନିମିତ୍ତ ତାଲିମ ଦିଆଯିବା ଗୁରୁତ୍ୱପୂର୍ଣ୍ଣ ଅଟେ । ଅନେକ କ୍ଷେତ୍ରରେ ପଠନ କାର୍ଯ୍ୟ ବହୁପୃଷ୍ଠା ଲେଉଟାଇବାରେ ନିବଦ୍ଧ ଥାଏ । ଶିକ୍ଷାର୍ଥୀ କ'ଣ ପଢ଼େ ସେ ନିଜେ ଜାଣି ନଥାଏ । ଶିକ୍ଷଣ ଛାତ୍ର ଛାତ୍ରୀମାନଙ୍କୁ ବିଭିନ୍ନ ପ୍ରକାର କାର୍ଯ୍ୟ ଯଥା—ପ୍ରଶ୍ନାବଳୀ, ଶୂନ୍ୟସ୍ଥାନ ପୂରଣ, ସାରକଥା ଲିଖିନ ଇତ୍ୟାଦିରେ ନିୟୋଜିତ କରିବା ଏକାନ୍ତ କାମ୍ୟ ।

(୧୨) ଅଧିକ ଶିକ୍ଷଣ (Over-Learning) ର ମୂଲ୍ୟ :—ଅଧିକ ଶିକ୍ଷଣ ଫଳରେ ଶିକ୍ଷଣ ଅଧିକ ଫଳପ୍ରଦ ହୋଇଥାଏ । ଯେଉଁ ବିଷୟବସ୍ତୁକୁ ପାଞ୍ଚ ଥର ପରୀକ୍ଷା ପରେ ମନେରଖି ହେବ ସେ ବିଷୟବସ୍ତୁ ଉପରେ ଆଉ ଦୁଇ ଥର ପରୀକ୍ଷା କଲେ ତାହା ଅଧିକ ମନେ ରହେ । ଏହା ଫଳରେ ଶିଶୁ ବିଷୟବସ୍ତୁକୁ ସଠିକ ଭାବେ ପରିବେଷଣ କରିବାକୁ ସମର୍ଥ ହୁଏ । ଅର୍ଥାତ୍ ପ୍ରଥମଥର ପାଇଁ ନିର୍ଭୁଲ ଭାବେ ଉପସ୍ଥାପିତ କରିଥିବା ବିଷୟଠାରୁ ପରିଶ୍ରମକରି ଶିକ୍ଷଣ କରିବାହିଁ ଅଧିକ-ଶିକ୍ଷଣ ପଦବାଚ୍ୟ । ଅତ୍ୟଧିକ ଶିକ୍ଷଣ ପୁନରାବୃତ୍ତି ବା ମୁଖସ୍ଥ କରିବାଠାରୁ ଭିନ୍ନ । ଶିକ୍ଷା କ୍ଷେତ୍ରରେ ପାରଦର୍ଶିତା ପ୍ରଦର୍ଶନ ପାଇଁ ମୁଖସ୍ଥ କାର୍ଯ୍ୟର ଆବଶ୍ୟକତା ଖୁବ୍ ବେଶୀ, ମାତ୍ର ଅତ୍ୟଧିକ ଶିକ୍ଷଣ ଶିକ୍ଷାର ଲକ୍ଷ୍ୟ ସ୍ଥିରୀକୃତ କରିବାରେ ସାହାଯ୍ୟ କରେ । ଅଭ୍ୟାସ ଶିକ୍ଷାର ସଠିକ ଉତ୍ତର ଦେବା ନିମିତ୍ତ ସାହାଯ୍ୟ କରେ, ମାତ୍ର ଅଧିକ ଶିକ୍ଷଣତାକୁ ସ୍ଥାୟୀରୂପେ ପ୍ରଦାନ କରେ ।

(୧୩) ଶିକ୍ଷଣ ପ୍ରକ୍ରିୟାରେ ସମୟ ବ୍ୟବଧାନର ପ୍ରଭାବ :—ସମ୍ପୂର୍ଣ୍ଣ ଦୃଷ୍ଟିକୋଣରୁ ବିଚାରକଲେ ଜଣାଯାଏ ଯେ, ଶିକ୍ଷଣ ପ୍ରକ୍ରିୟା ଏକ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ସୀମିତ । ଗୋଟିଏ ବିଷୟକୁ ଏକକାଳୀନ ଭାବେ ୨ ଘଣ୍ଟା ପଢ଼ିବା ଅପେକ୍ଷା ବିଷୟଟିକୁ ୨ଟି ସମାନ ଭାଗରେ ବିଭକ୍ତ କରି ପଢ଼ିବା ଫଳପ୍ରଦ କି ? ସେହିପରି ପରୀକ୍ଷା ନିମିତ୍ତ ପ୍ରସ୍ତୁତ ହେଲାବେଳେ ବିଷୟଟିକୁ ଦୀର୍ଘ ସମୟ ଧରି ପଢ଼ିବା ଉଚିତ କି ବିଷୟଟିକୁ ବିଭିନ୍ନ ସମୟ ବ୍ୟବଧାନରେ ପଢ଼ିବା ଉଚିତ୍ ? ଶ୍ରେଣୀରେ ବିଷୟବସ୍ତୁ ପାଠ୍ୟକ୍ରମକୁ ପ୍ରତ୍ୟେକ ଦିନ, ସପ୍ତାହ, ମାସ ଏବଂ ଋତୁ ଅନୁଯାୟୀ ବଣ୍ଟନ କରାଯାଇଥାଏ । ପରୀକ୍ଷାରୁ ଜଣାଯାଇଛି ଯେ, ସମୂହ ଶିକ୍ଷଣଠାରୁ ସମୟ ବ୍ୟବଧାନରେ ସଙ୍ଗଠିତ ହେଉଥିବା ଶିକ୍ଷଣ ଅଧିକ ଫଳପ୍ରଦ ।

(୧୪) ସମୂହ ଏବଂ ବିଭକ୍ତିକରଣ ପଦ୍ଧତି ମଧ୍ୟରେ ପ୍ରଭେଦ :—ଅତୀତରେ ବିଭକ୍ତିକରଣ ପଦ୍ଧତି ଅନୁସାରେ ଶିକ୍ଷା ଦାନ କାର୍ଯ୍ୟ ସମ୍ପାଦିତ ହେଉଥିଲା । ମାତ୍ର ଏ ଅଭ୍ୟାସ ତ୍ରୁଟିପୂର୍ଣ୍ଣ ବୋଲି ପ୍ରମାଣିତ ହୋଇଗଲା । "ଅଂଶରୁ ସମୂହ" ପ୍ରଣାଳୀରେ ମୂଳତତ୍ତ୍ୱକୁ ଏକତ୍ର କରି ରଖିବାରେ ଅସୁବିଧା ହେଲା । ସମୂହ ପଦ୍ଧତିରେ ବିଷୟବସ୍ତୁର ପଠନ ଏବଂ ପୁନଃ ପଠନ ଫଳରେ ବିଷୟବସ୍ତୁ ଉପରେ ଦକ୍ଷତା

ହାସଲ କରିବା ସୁବିଧା ହେବ । କାରଣ ଅଂଶ ବା ବିଭକ୍ତ କରି ପଢ଼ିବା ଦ୍ୱାରା ସମ୍ପୂର୍ଣ୍ଣ ବିଷୟବସ୍ତୁ ସହିତ ସମ୍ପର୍କ ନ ରହିବାରୁ ଶିକ୍ଷଣ ଫଳପ୍ରଦ ହୋଇନଥାଏ । ମାତ୍ର କାର୍ଯ୍ୟଟି ଅତ୍ୟଧିକ ବିସ୍ତୃତ ହୋଇଥିଲେ ଏହାକୁ କାର୍ଯ୍ୟକ୍ଷମ ଏବଂ ଫଳପୂର୍ଣ୍ଣ ଭାଗରେ ବିଭକ୍ତ କରାଯିବା ଆବଶ୍ୟକ । ସମୂହ ପଦ୍ଧତିରେ ସମ୍ପୂର୍ଣ୍ଣ ବିଷୟବସ୍ତୁ ଉପରେ ଗୁରୁତ୍ୱ ଦିଆଯାଏ । ତେଣୁ ଆରମ୍ଭରୁ ହିଁ ବିଷୟ ଗୁଡ଼ିକ ପରସ୍ପର ସମ୍ପର୍କିତ ଏପରିକି ମୋଟ ଉପରେ ବିଷୟ ସମ୍ବନ୍ଧିତ ହୋଇଥାନ୍ତି । ତେବେ ସମୂହ ପଦ୍ଧତିର ସଫଳତା କାର୍ଯ୍ୟର ଜଟିଳତା, ଶିକ୍ଷାର୍ଥୀର ପୂର୍ବ ଅଭିଜ୍ଞତା ଏବଂ ତାର ମନୋଭାବ ଉପରେ ନିର୍ଭର କରିଥାଏ । ବିଷୟବସ୍ତୁ ବୋଧଗମ୍ୟ ହେଲେ, ପରସ୍ପର ସମ୍ପର୍କିତ ଥିଲେ ଏବଂ ଅତ୍ୟଧିକ ବିସ୍ତୃତ ହୋଇ ନଥିଲେ ସମୂହ ପ୍ରଣାଳୀ ଫଳପ୍ରଦ ହୋଇଥାଏ । କବିତା ଶିକ୍ଷଣରେ ସମୂହ ପଦ୍ଧତି ଅଧିକ ପ୍ରଭାବ ପକାଇଥାଏ । ସମୂହ ପଦ୍ଧତି ପ୍ରତି ଶିକ୍ଷାର୍ଥୀର ମନୋଭାବ ଏହାର ସଫଳତା ଜାଣିବାରେ ସହାୟକ ହୋଇଥାଏ । ବୁଦ୍ଧିମାନ୍ ଛାତ୍ର ଛାତ୍ରୀମାନେ ସମୂହ-ପଦ୍ଧତିକୁ ଗୁରୁତ୍ୱ ଦେଉଥିବାବେଳେ ଅଳ୍ପ ବୁଦ୍ଧିମାନ ଛାତ୍ରମାନେ ଅଂଶ ପଦ୍ଧତିକୁ ଗୁରୁତ୍ୱ ଦିଅନ୍ତି ବୋଲି ପରୀକ୍ଷା ଦ୍ୱାରା ଜଣାପଡ଼ିଛି । ବିସ୍ତୃତ ଅସୁବିଧା ସମ୍ବଳିତ ବିଷୟବସ୍ତୁ କ୍ଷେତ୍ର ସମୂହ ପଦ୍ଧତି ଦ୍ୱାରା ଫଳପ୍ରଦ ହୋଇନଥାଏ ।

**(୧୫) ଶିକ୍ଷଣ ସମୟରେ ଆବୃତ୍ତି :**—ବିଭିନ୍ନ ପରୀକ୍ଷଣରୁ ଜଣାଯାଇଛି ଯେ, କେବଳ ପଢ଼ିବା ଅପେକ୍ଷା ଆବୃତ୍ତି କରିବା ଫଳରେ ଶିକ୍ଷଣ ଅଧିକ ଫଳପ୍ରଦ ହୁଏ । ବନାନ, ଶବ୍ଦ ଓ ଗଣିତ ଶିକ୍ଷାରେ ଏହାର ପ୍ରଭାବ ଅଧିକ । ପଠନ ଏବଂ ଆବୃତ୍ତି ଏହି ଅଭ୍ୟାସ ଭିନ୍ନ ଭିନ୍ନ ସମୟରେ କରିବା ଅପେକ୍ଷା ଏକ ସମୟରେ କରିବା ଭଲ ଏବଂ ଅଧିକ ଫଳପ୍ରସୂ ହୋଇଥାଏ ।

**(୧୬) ଶିକ୍ଷଣରେ ଶ୍ରାବ୍ୟ ଏବଂ ଦୃଶ୍ୟ ଉପକରଣର ବ୍ୟବହାର :**—ଅନେକ ମନେ କରନ୍ତି ଶ୍ରାବ୍ୟ ଏବଂ ଦୃଶ୍ୟ ଉପକରଣର ବ୍ୟବହାର ଦ୍ୱାରା ଶିକ୍ଷଣ ଅଧିକ ଫଳପ୍ରଦ ହୁଏ । ମାତ୍ର କେବଳ ଶ୍ରାବ୍ୟ ଏବଂ ଦୃଶ୍ୟ ଉପକରଣ ଗୁଡ଼ିକୁ ଛାତ୍ର ଛାତ୍ରୀମାନଙ୍କୁ ନ ଦେଖାଇ, ଏଗୁଡ଼ିକୁ ବିଧିବଦ୍ଧ ଯୋଜନା ଦ୍ୱାରା ବ୍ୟବହାର କରିବା ଫଳରେ ହିଁ ଶିକ୍ଷା ଦାନ କାର୍ଯ୍ୟ ଫଳପ୍ରସୂ ହୁଏ । ଏଥି ନିମିତ୍ତ ଶିକ୍ଷକଙ୍କର ପ୍ରସ୍ତୁତି ଏକାନ୍ତ ଆବଶ୍ୟକ । ପରୀକ୍ଷା କରି ଦେଖାଯାଇଛି ଯେ, ଜଣେ ଅଯୋଗ୍ୟ ଶିକ୍ଷକଙ୍କ ଅପେକ୍ଷା ଟେଲିଭିଜନ ଏବଂ ଚଳଚ୍ଚିତ୍ର ମାଧ୍ୟମରେ ଶିକ୍ଷା ଅଧିକ ମାତ୍ରାରେ ଉପଯୋଗୀ ହୋଇଥାଏ । ତେବେ ଏହି ଉପକରଣ ଗୁଡ଼ିକୁ ଶ୍ରେଣୀ ଗୃହରେ ବ୍ୟବହାର କରିବା ସମୟରେ ଶିକ୍ଷକ ଉପଯୁକ୍ତ ଶିକ୍ଷଣ ପରିବେଶ ସୃଷ୍ଟି ଦିଗରେ ଯତ୍ନଶୀଳ ହେବା ବିଧେୟ ।



# ଦ୍ୱାଦଶ ଅଧ୍ୟାୟ

## ଶିକ୍ଷଣ ତତ୍ତ୍ୱ

### (Theories of Learning)

ବିଂଶ ଶତାବ୍ଦୀର ତ୍ରିଂଶ ଦଶନ୍ଧର ଶେଷ ଭାଗରେ ମନୋବିଜ୍ଞାନର ଭିନ୍ନ ମତାବଲମ୍ବୀମାନେ ଶିକ୍ଷଣ ସମ୍ବନ୍ଧରେ ନିଜ ନିଜର ସ୍ୱତନ୍ତ୍ର ତତ୍ତ୍ୱ ପ୍ରଣୟନ କରିଥିଲେ । କିନ୍ତୁ ଶିକ୍ଷଣର କୌଣସି ଏକ ନିର୍ଦ୍ଦିଷ୍ଟ ତତ୍ତ୍ୱ ସାର୍ବଜନୀନ ଭାବେ ଗୃହୀତ ହୋଇପାରି ନାହିଁ । ପ୍ରତ୍ୟେକ ତତ୍ତ୍ୱ କେତେକ ତର୍କ ବାକ୍ୟର ସମାହାର ଏବଂ ଏହା କେତେକ ଘଟଣାନୁଗତିକ, ସାଧାରଣ ଓ ପ୍ରାକୃତିକ ନିୟମର ବ୍ୟାଖ୍ୟା କରିଥାଏ । ମନୋବିଜ୍ଞାନର ଭାଷାରେ ଏହା କେତେକ ସ୍ୱତନ୍ତ୍ରର (Independent Variable) ଓ ପରତନ୍ତ୍ରର (Dependent Variable) ମଧ୍ୟରେ ସମ୍ପର୍କକୁ ବିଶ୍ଳେଷଣ କରିଥାଏ ।

ପ୍ରତ୍ୟେକ ଶିକ୍ଷଣ ତତ୍ତ୍ୱ ଅନ୍ତତଃ ଦୁଇଗୋଟି ଉଦ୍ଦେଶ୍ୟ ସାଧନ କରିଥାନ୍ତି । ପ୍ରଥମତଃ ମନୁଷ୍ୟ ବ୍ୟବହାରର ଗୋଟିଏ ଦିଗ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ବିଧିବଦ୍ଧ ସୂଚନା ପ୍ରଦାନ କରିଥାଏ । ପରବର୍ତ୍ତୀ ଗବେଷଣା ପାଇଁ ପଥପ୍ରଦର୍ଶକରୂପେ କାର୍ଯ୍ୟକରେ । ନୂତନ ତଥ୍ୟର ଅବତାରଣା କରେ ଏବଂ ସର୍ବୋପରି ଚରମ ସତ୍ୟର ସନ୍ଧାନରେ ମନୁଷ୍ୟକୁ କିଛି ଆଗେଇ ନେଇପାରେ । ଦ୍ୱିତୀୟତଃ ପ୍ରତ୍ୟେକ ତତ୍ତ୍ୱ ବିଭିନ୍ନ ଉପାଦାନ ମଧ୍ୟରେ ପାରସ୍ପରିକ କ୍ରିୟାର କାରଣ ଓ ଫଳାଫଳ ଉପରେ ଆଲୋକପାତ କରିଥାଏ । ଶିକ୍ଷଣର ତତ୍ତ୍ୱଗୁଡ଼ିକୁ ସାଧାରଣତଃ ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଇ ପାରେ । ପ୍ରଥମତଃ ଉଦ୍ଦୀପକ-ପ୍ରତିକ୍ରିୟା ମୂଳକ ତତ୍ତ୍ୱ ଯଥା ପାଭ୍‌ଲଭ୍‌ଙ୍କର ଅନୁବନ୍ଧିତ ଅନୁକ୍ରିୟା ଯାହାକି ପୁନର୍ବଳନ ବା Reinforcementର ବିନା ସାହାଯ୍ୟରେ ସଂଘଟିତ ହୁଏ । ଦ୍ୱିତୀୟତଃ ପୁନର୍ବଳନର ସାହାଯ୍ୟରେ ଅନୁଷ୍ଠିତ ହେଉଥିବା ପରୀକ୍ଷା ଭିତ୍ତିକ ତତ୍ତ୍ୱ ଯଥା ଥର୍ଣ୍ଣଡ଼ାଇକ୍‌ଙ୍କର ସଂଯୋଗବାଦ ବା ଆୟାସ ଓ ଭ୍ରମ ସଂଶୋଧନବାଦ ତତ୍ତ୍ୱ (Trial and Error Learning) । ତୃତୀୟତଃ ଜ୍ଞାନାତ୍ମକ ଉପାଦାନଗୁଡ଼ିକୁ ସଂଗଠିତ କରୁଥିବା ମତବାଦ ଯଥା ଗେଷ୍ଟାଲ୍‌ଟ ମତ ବା ପରିଜ୍ଞାନ ମୂଳକ ଶିକ୍ଷା ।

**ଅଭ୍ୟାସ ଓ ଭ୍ରମ ସଂଶୋଧନ ବାଦ ବା ପ୍ରଯତ୍ନ-ପ୍ରମାଦ ତତ୍ତ୍ୱ ବା ସଂଯୋଗବାଦ (Trial and Error Theory of Learning or Connectionism) :**

ମନସ୍ତତ୍ତ୍ୱବିଦମାନେ ଶିକ୍ଷଣ ପ୍ରଣାଳୀ ସମ୍ପର୍କରେ ନିଜସ୍ୱ ପରୀକ୍ଷଣ ସମ୍ବନ୍ଧିତ ତଥ୍ୟ-ମାନ ବିଭିନ୍ନ ତତ୍ତ୍ୱ ଦ୍ୱାରା ପ୍ରକାଶ କରିଛନ୍ତି । ମନସ୍ତତ୍ତ୍ୱବିଦ୍ ଇ. ଏଲ୍. ଥର୍ଣ୍ଡାଇକ (୧୮୭୪-୧୯୪୯)ଙ୍କ ପ୍ରବର୍ତ୍ତିତ ପ୍ରୟାସ ଓ ଭ୍ରମ ସଂଶୋଧନ ତତ୍ତ୍ୱ ବା ପ୍ରଯତ୍ନ ପ୍ରମାଦ ତତ୍ତ୍ୱ ବା ସଂଯୋଗବାଦ ସେହି ତତ୍ତ୍ୱମାନଙ୍କ ମଧ୍ୟରୁ ଅନ୍ୟତମ ।

ମାର୍କିନ ଶିକ୍ଷାବିତ୍ ଓ ମନୋବୈଜ୍ଞାନିକ କଲମ୍ବିଆ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ରୂପେ କାର୍ଯ୍ୟ କରୁଥିବା ସମୟରେ ଶିକ୍ଷଣ କ୍ରିୟାର ତତ୍ତ୍ୱ ସମ୍ପର୍କରେ ବିଭିନ୍ନ ଗବେଷଣା କରିଥିଲେ ଓ ଶେଷରେ ଉକ୍ତ ତତ୍ତ୍ୱ ବା ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ସେ ପାଭ୍‌ଲଭ୍‌ଙ୍କ ସାପେକ୍ଷ ପ୍ରତିକ୍ରିୟା ତତ୍ତ୍ୱକୁ ଅସ୍ୱୀକାର କରି ମତ ଦେଇଥିଲେ ଯେ, ତା' ମାଧ୍ୟମରେ ଶିକ୍ଷଣ କ୍ରିୟାକୁ ବ୍ୟାଖ୍ୟା କରିବା ଅସମ୍ଭବ କାରଣ, ଉକ୍ତ ଶିକ୍ଷଣ କ୍ରିୟା ଓ ଯାନ୍ତ୍ରିକ କ୍ରିୟା ମଧ୍ୟରେ କୌଣସି ପାର୍ଥକ୍ୟ ପରିଲକ୍ଷିତ ହୋଇ ନଥାଏ । ତାଙ୍କ ମତାନୁଯାୟୀ ପରିବେଶର ଉଦ୍ଦୀପକ ବସ୍ତୁ ସହିତ ସ୍ନାୟବିକ ସମ୍ବନ୍ଧଦ୍ୱାରା ସଙ୍ଗଠିତ ହେଉଥିବା ପ୍ରତିକ୍ରିୟାହିଁ ଶିକ୍ଷଣରେ ବ୍ୟବହାର । ମନୁଷ୍ୟର ବ୍ୟବହାର ବା ଅଭ୍ୟାସ, ଗୋଟିଏ ନିର୍ଦ୍ଦିଷ୍ଟ ଉଦ୍ଦୀପକ ସହିତ ସଂଯୋଗ ହେଉଥିବା ଗୋଟିଏ ପ୍ରତିକ୍ରିୟା ମାତ୍ର, ଉଦ୍ଦୀପକ ଓ ପ୍ରତିକ୍ରିୟା ମଧ୍ୟରେ ସ୍ଥାପିତ ସମ୍ପର୍କ ଉପରେ ଥର୍ଣ୍ଡାଇକ୍ ଅଧିକ ଗୁରୁତ୍ୱ ଆରୋପ କରୁଥିବାରୁ ତାଙ୍କ ତତ୍ତ୍ୱକୁ "ସଂଯୋଗବାଦ" (Connectionism) ରୂପେ ଅଭିହିତ କରାଯାଏ । ଥର୍ଣ୍ଡାଇକ୍ ପଶୁ ମନୋବିଜ୍ଞାନ ଉପରେ ତାଙ୍କର ପରୀକ୍ଷା ଚଳାଉଥିଲେ । ତାଙ୍କ ରଚିତ "ପଶୁ ବୁଦ୍ଧି" (Animal Intelligence) ୧୮୯୮ ମସିହାରେ ପ୍ରକାଶ ପାଇଥିଲା ଓ ଏହା ତାଙ୍କର ସମସାମୟିକ ମନସ୍ତତ୍ତ୍ୱବିଦ୍‌ମାନଙ୍କ ମନକୁ ଆକର୍ଷଣ କରିପାରିଥିଲା । ଶିକ୍ଷଣ ପ୍ରଣାଳୀକୁ ବର୍ଣ୍ଣନା କରିବା ନିମିତ୍ତ ଥର୍ଣ୍ଡାଇକ୍ ପଶୁମାନଙ୍କ ଉପରେ ଅନେକଗୁଡ଼ିଏ ପରୀକ୍ଷଣ ସମ୍ପାଦନ କରିଥିଲେ ।

ଥର୍ଣ୍ଡାଇକ୍‌ଙ୍କର ସୁବିସ୍ତୃତ ପରୀକ୍ଷା ବିରାଡ଼ି ଉପରେ ପର୍ଯ୍ୟବେସିତ ଥିଲା । କ୍ଷୁଧାର୍ତ୍ତ ବିରାଡ଼ିଟିକୁ ପିଞ୍ଜରା ବା ବାକ୍‌ସରେ ରଖାଯାଉଥିଲା । ଏହା ଖୋଲିବା ନିମିତ୍ତ ଏକ ସ୍ୱତନ୍ତ୍ର ସ୍ପ୍ରିଂର ସେହି ପିଞ୍ଜରାରେ ଓହଳା ଯାଇଥିଲା । ପିଞ୍ଜରାର ବହିର୍ଦ୍ଦେଶରେ ଖଣ୍ଡେ ଲେଉଟାଣୀ ମାଛ ରଖାଯାଉଥିଲା । କ୍ଷୁଧାର୍ତ୍ତ ବିରାଡ଼ି ପିଞ୍ଜରାରୁ ବାହାରି ମାଛ ଖାଇବା ନିମିତ୍ତ ନିରୁଦ୍ଦେଶ୍ୟ ଭାବେ ତା' ଭିତରେ ଇତସ୍ତତଃ ଯିବା ଆସିବା କରେ । ମାତ୍ର ଏହି ବିକ୍ଷିପ୍ତ ପ୍ରୟାସଗୁଡ଼ିକ ପ୍ରାୟ ସଫଳ ହୋଇ ନଥାଏ । କିନ୍ତୁ କିଛି ସମୟ ପରେ ସେ

ସେହି ନିର୍ଦ୍ଦିଷ୍ଟ ରଡ଼ିକୁ ଟାଣିବାକୁ ସକ୍ଷମ ହୋଇଥାଏ । ତା' ଦ୍ୱାରା ସେ ପିଞ୍ଜରା ବାହାରକୁ ଆସେ ଏବଂ ଖାଦ୍ୟ ପାଏ । ଏହିଭଳି ବାରମ୍ବାର ଆସ୍ୱାସ ଦ୍ୱାରା ବିଲେଇଟିର ଭୁଲ୍ 'ପ୍ରୟାସ-ଗୁଡ଼ିକର ସଂଖ୍ୟା ଆସ୍ତେ ଆସ୍ତେ କମି ଆସିଥାଏ । ଶେଷରେ କେତେଗୁଡ଼ିଏ ପ୍ରୟାସ ପରେ ବିଲେଇ ପିଞ୍ଜରା ମଧ୍ୟରୁ ବାହାରକୁ ଆସିବାକୁ ଶିଖିଥାଏ । ସେ ତା'ର ପୂର୍ବ ବିଫଳ ପ୍ରୟାସ ଗୁଡ଼ିକୁ ପରିତ୍ୟାଗ ପୂର୍ବକ ସଫଳ ପ୍ରୟାସ କରିବାକୁ ସକ୍ଷମ ହୁଏ । ଏହି ପରୀକ୍ଷଣରେ ନିମ୍ନଲିଖିତ ଲକ୍ଷଣଗୁଡ଼ିକ ଅବଲୋକନ ହୋଇଥାଏ ।

୧ । ଆସ୍ୱାସର ସଂଖ୍ୟା ବୃଦ୍ଧି ହେଲେ ବିଫଳ ପ୍ରୟାସ ଗୁଡ଼ିକର ସଂଖ୍ୟା ହ୍ରାସ ହୁଏ । କାର୍ଯ୍ୟଟି କମ୍ ବିଶୃଙ୍ଖଳ ହୋଇଥାଏ ।

୨ । କାର୍ଯ୍ୟଟିକୁ ସଫଳତାର ସହିତ ସଂପାଦନ କରିବାର ସଫଳ ପ୍ରୟାସ ସହିତ ହ୍ରାସ ପାଏ ।

୩ । ଯଥେଷ୍ଟ ଆସ୍ୱାସପରେ ନିର୍ଦ୍ଦିଷ୍ଟ ରଡ଼ିକୁ ଟାଣିବାକୁ ବିଲେଇ ଶିଖିଥାଏ । ତେଣୁ ତାକୁ ପିଞ୍ଜରାରେ ରଖିବା ସଙ୍ଗେ ସଙ୍ଗେ ସେ ସେହି ଶିକ୍ଷାକୁ କାର୍ଯ୍ୟକାରୀ କରି ବାହାରକୁ ଆସିବାକୁ ସକ୍ଷମ ହୁଏ ।

୪ । ଶିକ୍ଷଣରେ ଉନ୍ନତି କ୍ରମାନ୍ୱୟରେ ସଙ୍ଗଠିତ ହୁଏ ।

୫ । ଶିକ୍ଷଣ ନିୟମିତ ଓ ସୁଗମ ନୁହେଁ । ଏପରିକି କେତେଗୁଡ଼ିଏ ଆସ୍ୱାସପରେ ଏହା ଦେଖାଯାଇଛି ଯେ, ଏହି ଆସ୍ୱାସ ଓ ଭ୍ରମ ସଂଶୋଧନ ପରୀକ୍ଷଣରେ ପ୍ରତିରି ପ୍ରୟାସରେ ବିଲେଇ ଅତ୍ୟଧିକ ସମୟ ନଷ୍ଟ କରିଥାଏ । ଫଳରେ ଶିକ୍ଷଣରେ କୌଣସି ଉନ୍ନତି ସାଧିତ ହୋଇ ନଥାଏ ।

ଥର୍ଣ୍ଡାଇକ୍ ଉକ୍ତ ପରୀକ୍ଷଣପରେ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ, ଉଦ୍ଦୀପକ ସହିତ ତାହାର ଉପଯୁକ୍ତ ପ୍ରତିକ୍ରିୟାରେ ସମନ୍ୱୟ ସ୍ଥାପନ ହେଉଛି ଶିକ୍ଷା, ଉକ୍ତ ପ୍ରକ୍ରିୟାରେ ଯୁକ୍ତି ବା ଚିନ୍ତାର କୌଣସି ସ୍ଥାନ ନାହିଁ । ଏହା ସମ୍ପୂର୍ଣ୍ଣ ଭାବେ ଯାନ୍ତ୍ରିକ । ଯେକୌଣସି ପ୍ରକାର ଶିକ୍ଷା ଯେ ଚିନ୍ତା, ବୁଦ୍ଧି, ବିଚାର ଶକ୍ତି ଇତ୍ୟାଦି ଦ୍ୱାରା ଆକସ୍ମିକ ଭାବେ ସାଧିତ ହୁଏ ତା ନୁହେଁ । ଏହା କ୍ରମାନ୍ୱୟରେ ଭ୍ରମାତ୍ମକ ଅଭ୍ୟାସଗୁଡ଼ିକ ଦ୍ୱାରା ସଙ୍ଗଠିତ ହୁଏ । ସେ ମୂଷାମାନଙ୍କୁ ନେଇ ମଧ୍ୟ ଏହି ପରୀକ୍ଷଣ କରିଥିଲେ । ଏହି ଶିକ୍ଷଣ ତତ୍ତ୍ୱ ସମ୍ପର୍କରେ ମତ ଦାନ କରିବାକୁ ଯାଇ ସେ ମୂଷା ଉପରେ ପରୀକ୍ଷା କରିଥିଲେ । ଏହା ଅନୁଯାୟୀ ବିଭିନ୍ନ ଆକୃତିର ଯନ୍ତ୍ର ଓ ବଙ୍କା ବଙ୍କା ରାସ୍ତାଦେଇ ନିର୍ଗତ ହୋଇଥିବା ଗୋଲକଧନ୍ଦା ବାକ୍ସ କରି ସେଥିରେ କ୍ଷୁଧାର୍ତ୍ତ ମୂଷାକୁ ଛାଡ଼ିଦେଉଥିଲେ । ମୂଷାକୁ ଯନ୍ତ୍ରର ଦ୍ୱାର ପାଖରେ ଛାଡ଼ିଦେବାପରେ ମୂଷା ଖାଦ୍ୟ ଅନ୍ୱେଷଣରେ ଇତସ୍ତତଃ ଭାବେ

ପୂରିବୁଲେ । ଯନ୍ତ୍ରୀର ଯେଉଁ ସ୍ଥାନରେ ଖାଦ୍ୟ ଥାଏ ସେହି ସ୍ଥାନକୁ କୌଣସି ସିଧା ରାସ୍ତା ନଥାଏ । ମୂଷା ଇତସ୍ତତଃ ବୁଲିବୁଲି ଶେଷରେ ସଠିକ ରାସ୍ତାରେ ଯାଇ ଖାଦ୍ୟ ପାଖରେ ପହଞ୍ଚିଥାଏ । ଭ୍ରମାତ୍ମକ ପଥଗୁଡ଼ିକୁ ପରିହାର କରି ସଠିକ୍ ରାସ୍ତା ନିର୍ଦ୍ଧାରଣ କରିବା ନିମିତ୍ତ ମୂଷାକୁ ବହୁତ ଥର ପ୍ରୟାସ କରିବାକୁ ପଡ଼ିଥାଏ । ଏହି ଶିକ୍ଷଣର ବେଗ ଶିଥିଳ ଓ କମ୍ । ଉକ୍ତ ପଦ୍ଧତି ଅନୁଯାୟୀ ଶିକ୍ଷଣ କାର୍ଯ୍ୟ ସଂପାଦନ ସମୟବ୍ୟାପୀ । ବିଫଳ ପ୍ରୟାସ କ୍ରମଶଃ ହ୍ରାସ ପାଇ ଶେଷରେ ସଫଳ ପ୍ରୟାସ କରିବାକୁ ପ୍ରାଣୀ ସକ୍ଷମ ହୋଇଥାଏ । ଉକ୍ତ ପ୍ରଯତ୍ନ-ପ୍ରମାଦ ଶିକ୍ଷଣକୁ ବିଶ୍ଳେଷଣ କଲେ ଏହାର ନିମ୍ନଲିଖିତ ଲକ୍ଷଣ ଗୁଡ଼ିକ ପରିଲକ୍ଷିତ ହୋଇଥାଏ ।

୧ । ଏହି ଶିକ୍ଷଣ ଅଭିପ୍ରେରଣା ଦ୍ୱାରା ସମ୍ଭବ । କାରଣ, ପ୍ରାଣୀ କ୍ଷୁଧାର୍ତ୍ତ ଥିଲେହେଁ ଖାଦ୍ୟ ପ୍ରାପ୍ତି ନିମିତ୍ତ ପ୍ରୟାସ କରି ଏହି ଶିକ୍ଷା ଲାଭକରିବ ।

୨ । ପ୍ରାଣୀ ବିଭିନ୍ନ ପ୍ରକାର ଉଦ୍ଦୀପନା ପ୍ରକାଶ କରିଥାଏ । କାରଣ ସେ ଲକ୍ଷ୍ୟ ହାସଲ ପର୍ଯ୍ୟନ୍ତ ବୁଲିବା, ଖୋଜିବା, ଟଣାଓଟରା କରିବା ଇତ୍ୟାଦି କାର୍ଯ୍ୟ ପିଞ୍ଜରା ମଧ୍ୟରେ କରିଥାଏ ।

୩ । କେତେକ ପ୍ରତିକ୍ରିୟା ଲକ୍ଷ୍ୟ ହାସଲରେ ସାହାଯ୍ୟ କରିଥାନ୍ତି । ସେଗୁଡ଼ିକୁ ସନ୍ତୋଷଜନକ ପ୍ରତିକ୍ରିୟା ରୂପେ ଅଭିହିତ କରାଯାଏ । ମାତ୍ର ଅନ୍ୟ କେତେଗୁଡ଼ିଏ ପ୍ରତିକ୍ରିୟା ଏ ଦିଗରେ ସାହାଯ୍ୟ କରିଥାନ୍ତି ତେଣୁ ଏଗୁଡ଼ିକୁ ବିରକ୍ତିକର ପ୍ରତିକ୍ରିୟା ରୂପେ ଅଭିହିତ କରାଯାଏ ।

୪ । ସନ୍ତୋଷଜନକ ପ୍ରତିକ୍ରିୟା ଗୁଡ଼ିକୁ ଉତ୍ତମ ରୂପେ ଶିକ୍ଷା କରାଯାଇ ପାରେ । କାରଣ ଏ ଗୁଡ଼ିକ ଲକ୍ଷ୍ୟ ପ୍ରାପ୍ତିରେ ସହାୟକ ହୋଇଥାନ୍ତି ।

୫ । ବିରକ୍ତିକର ପ୍ରତିକ୍ରିୟା ଗୁଡ଼ିକ କ୍ରମାନ୍ୱୟରେ ପରିହାର କରାଯାଇଥାଏ । କାରଣ, ଏଗୁଡ଼ିକ ଲକ୍ଷ୍ୟ ପୂର୍ତ୍ତି ନିମିତ୍ତ ସାହାଯ୍ୟ କରିନଥାନ୍ତି ।

ବିରାଡ଼ି ଓ ମୂଷାମାନଙ୍କ ଉପରେ ପରୀକ୍ଷଣ କରିବାପରେ ମନୁଷ୍ୟମାନଙ୍କର ଶିକ୍ଷଣକୁ ପରିଚାଳିତ କରିବାଭଳି କେତେଗୁଡ଼ିଏ ନୀତି ଥର୍ଣ୍ଡାଇକ୍ ପ୍ରବର୍ତ୍ତନ କରିଥିଲେ । ଏହା ସ୍ମରଣ ରଖାଯାଇପାରେ ଯେ, ପ୍ରସ୍ତୁତି ଅଭ୍ୟାସ ଓ ଫଳାଫଳ ବିଧି ଏହି ତିନୋଟି ନିୟମର କାର୍ଯ୍ୟ ଦ୍ୱାରା ମନୁଷ୍ୟର ଶିକ୍ଷଣ ପ୍ରକ୍ରିୟା ବହୁଳ ଭାବରେ ପ୍ରଭାବିତ ହୁଏ । ତେଣୁ ତାଙ୍କ ମତାନୁଯାୟୀ ଶିକ୍ଷଣର ତିନୋଟି ପ୍ରଧାନ ନିୟମ ହେଲା ଯଥା—ପ୍ରସ୍ତୁତି ନିୟମ **(Laws of Readiness)**, ଅଭ୍ୟାସ ନିୟମ **(Laws of Exercise)** ଓ

ଫଳାଫଳ ବିଧି ନିୟମ (Laws of Effect), ନିମ୍ନୋକ୍ତ ପର୍ଯ୍ୟାଲୋଚନାରୁ ଏହି ନିୟମ ଗୁଡ଼ିକ ସମ୍ପର୍କରେ ସ୍ପଷ୍ଟ ଜାଣିବା ସମ୍ଭବ ।

(୧) ପ୍ରସ୍ତୁତି ନିୟମ (Laws of Readiness) :—ଶିକ୍ଷଣ ପ୍ରକ୍ରିୟା ନିମିତ୍ତ ପ୍ରସ୍ତୁତିର ଆବଶ୍ୟକତା ଯଥେଷ୍ଟ ବେଶୀ, ଏହି ପ୍ରସ୍ତୁତି ଦ୍ୱିବିଧ; ଯଥା—ଶାରୀରିକ ପ୍ରସ୍ତୁତି ଓ ମାନସିକ ପ୍ରସ୍ତୁତି, ଶିକ୍ଷଣ ପ୍ରକ୍ରିୟା ନିମିତ୍ତ ଶିଶୁର ଶାରୀରିକ ପ୍ରସ୍ତୁତି ଯେପରି ଗୁରୁତ୍ୱପୂର୍ଣ୍ଣ, ଶିଶୁର ମାନସିକ ପ୍ରସ୍ତୁତି ମଧ୍ୟ ସେହିପରି ଗୁରୁତ୍ୱପୂର୍ଣ୍ଣ । ବ୍ୟକ୍ତିର ଉପଯୁକ୍ତ ମାନସିକ ବିକାଶ ହେବା ଫଳରେ ସେ ଶିକ୍ଷା ଗ୍ରହଣ କରିବାକୁ ସକ୍ଷମ ହୋଇଥାଏ । ଶିଶୁର ଶାରୀରିକ ବିକାଶ ତଥା ତାର ଅଙ୍ଗ ପ୍ରତ୍ୟଙ୍ଗର ପରିପକ୍ୱତା ସଙ୍ଗଠିତ ହେବାଫଳରେ ସେ ଲେଖିବା, ପଢ଼ିବା, କଥା କହିବା ଇତ୍ୟାଦି କାର୍ଯ୍ୟ ଉତ୍ତମରୂପେ ସମ୍ପାଦନ କରିବାକୁ ସକ୍ଷମ ହୋଇଥାଏ । ଶିଶୁର ଉପଯୁକ୍ତ ଶାରୀରିକ ଓ ମାନସିକ ବିକାଶ ଫଳରେ ସେ ସହଜ ଓ ସରଳଭାବେ ଶିକ୍ଷା ଗ୍ରହଣ କରିବାକୁ ପ୍ରସ୍ତୁତ ହୋଇପାରିଥାଏ । ତେଣୁ ଉକ୍ତ ନିୟମ ଅନୁଯାୟୀ କୌଣସି ନିର୍ଦ୍ଦିଷ୍ଟ ଶିକ୍ଷାଦେବା ପାଇଁ ଶିଶୁକୁ ପ୍ରଥମେ ପ୍ରସ୍ତୁତ କରାଇବା ଏକାନ୍ତ ଆବଶ୍ୟକ । ଯଦିଓ ଶିକ୍ଷକ ଶିଶୁଠାରେ ସର୍ବବିଧ ବିକାଶ ଆଣିବାକୁ ସକ୍ଷମ ହୋଇ ନପାରିବେ ତଥାପି ସେ ଶିକ୍ଷାଦାନ ପୂର୍ବରୁ ଅନ୍ତତଃ ଶିଶୁମାନଙ୍କଠାରେ ଶିକ୍ଷାପ୍ରତି ଆଗ୍ରହ ଓ କୌତୂହଳ ସୃଷ୍ଟି କରାଇବା ନିମିତ୍ତ ବ୍ରତୀହେବା ବାଞ୍ଛନୀୟ । ଏତଦ୍‌ବ୍ୟତୀତ ଶିକ୍ଷାଦାନ ପଦ୍ଧତିକୁ ସରସ ଓ ଜୀବନ୍ତ କରାଇବା ନିମିତ୍ତ ସେ ଚେଷ୍ଟା କରିବା ବିଧେୟ । ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ବ୍ୟକ୍ତିଗତ ପାର୍ଥକ୍ୟ ଓ ବୁଦ୍ଧି ଏବଂ ବୟସଗତ ତାରତମ୍ୟ ପରିଦୃଷ୍ଟ ହେଉଥିବାରୁ ଶିକ୍ଷାଦାନବେଳେ ଶିକ୍ଷକ ଏଗୁଡ଼ିକୁ ବିଚାର କରିବା ଆବଶ୍ୟକ । କେତେକ ସ୍ଥଳରେ ଦେଖାଯାଏ ଯେ, ପିତା ମାତା ପିଲାମାନଙ୍କୁ ଖୁବ୍ କମ୍ ବୟସରୁ ଶିକ୍ଷାଦାନ କରିବାକୁ ପ୍ରବର୍ତ୍ତାଇଥାନ୍ତି । ଖୁବ୍ କମ୍ ବୟସରେ ଶିକ୍ଷକ ଓ ପିତା ମାତା ଶିଶୁ ଉପରେ ଶିକ୍ଷା ଭାର ଲଦିଦେବା ଫଳରେ ଶିଶୁଠାରେ ଶିକ୍ଷାପ୍ରତି ଅଶ୍ରଦ୍ଧା ଓ ଭୟଭାବ ସ୍ୱତଃ ଦେଖାଯାଏ । ଏହି ମନୋଭାବ ଫଳରେ ସେ ଶିକ୍ଷାପ୍ରତି ବୀତସ୍ପୃହ ହୋଇପଡ଼େ । ତେଣୁ ଶିକ୍ଷକ ଓ ଅଭିଭାବକ ଉଭୟେ ଶିଶୁର ମାନସିକ ଓ ଶାରୀରିକ ବିକାଶ ତଥା ଶିକ୍ଷା ପ୍ରତି ସେମାନଙ୍କର ପ୍ରସ୍ତୁତିକୁ ଦୃଷ୍ଟିପଥରେ ରଖି ସେମାନଙ୍କୁ ଶିକ୍ଷାଦାନ କରିବା ସ୍ପୃହଣୀୟ । ଏହି ପ୍ରସ୍ତୁତି ନିୟମ ନିମ୍ନଲିଖିତ ତନୋଟି କ୍ଷେତ୍ରରେ ସନ୍ତୋଷଜନକ ବା ବିରକ୍ତିକର ହୋଇଥାଏ ।

(କ) ଯେତେବେଳେ ଛାତ୍ରଛାତ୍ରୀମାନେ ଶିକ୍ଷାଗ୍ରହଣ ନିମିତ୍ତ ଆଗ୍ରହୀ ହୋଇଥାନ୍ତି, ସେତେବେଳେ ଶିକ୍ଷଣ ସନ୍ତୋଷଜନକ ହୋଇଥାଏ ।

(ଖ) ଛାତ୍ର ଶିକ୍ଷା ଗ୍ରହଣ ନିମିତ୍ତ ଆଗ୍ରହୀ ଥିବାବେଳେ ତାକୁ ଶିକ୍ଷା ନଦେଲେ ସେ ସ୍ୱତଃ ବିରକ୍ତିଭାବ ପ୍ରକାଶ କରିଥାଏ ।

(ଗ) ଯୁବ ଶିକ୍ଷା ଗ୍ରହଣ ନିମିତ୍ତ ଅନାଗ୍ରହ ଭାବ ପ୍ରଦର୍ଶନ କରୁଥିବାବେଳେ ତାକୁ ଜବରଦସ୍ତ ଶିକ୍ଷାଦେଲେ ସେ ମଧ୍ୟ ବିରକ୍ତିଭାବ ପ୍ରକାଶ କରେ ।

(୨) ଅଭ୍ୟାସ ନିୟମ (Law of Exercise) :—ଥର୍ଣ୍ଡାଇକ୍‌ଙ୍କ ଉକ୍ତ ମତ ଅନୁଯାୟୀ ଅଭ୍ୟାସ ଦ୍ୱାରା ଶିକ୍ଷଣ ଅଧିକ ଫଳପ୍ରଦ ହୁଏ । କାର୍ଯ୍ୟର ପୁନରାବୃତ୍ତି ଫଳରେ ଶିକ୍ଷାଲାଭ ସହଜସାଧ୍ୟ ହୁଏ । ଅଭ୍ୟାସ ବା ପୁନରାବୃତ୍ତି ବିନା କୌଣସି କାର୍ଯ୍ୟ ଶିକ୍ଷା କରିବା କଷ୍ଟସାଧ୍ୟ ହୋଇଥାଏ । ଏହାର ଦୁଇଟି ଉପନିୟମ ରହିଛି । ଯଥା—ଅଭ୍ୟାସ ନିୟମ (Law of Use) ଓ ଅନଭ୍ୟାସ ନିୟମ (Law of Dis-use) । ପୁନଃ ଅଭ୍ୟାସ ଫଳରେ ଉଦ୍ଦୀପକ ସହିତ ପ୍ରତିକ୍ରିୟାର ସମ୍ପର୍କ ଦୃଢ ହୋଇଥାଏ । ଏହାକୁ ଅଭ୍ୟାସ ନିୟମରୂପେ ଅଭିହିତ କରାଯାଏ । ଯେତେବେଳେ ଅଭ୍ୟାସକୁ ବନ୍ଦ କରିଦିଆଯାଏ, ସେତେବେଳେ ସଂଯୋଗ ଦୁର୍ବଳ ହୋଇଥାଏ । ଏହାକୁ ଅନଭ୍ୟାସ ନିୟମ ରୂପେ ଅଭିହିତ କରାଯାଏ । ଏହି ଅଭ୍ୟାସ ନିୟମର ତିନିଗୋଟି ଉପନିୟମ ଅଛି । ଯଥା—ପୌନଃପୁନ୍ୟ ନିୟମ (Law of Frequency) ସାଂପ୍ରତ୍ୟ ନିୟମ (Law of Recency) ଓ ତୀବ୍ରତା ନିୟମ (Law of Intensity) । ପୌନଃପୁନଃ ନିୟମାନୁଯାୟୀ କାର୍ଯ୍ୟ ସାଧନରେ ବାରମ୍ବାର ଚେଷ୍ଟାକଲେ ସେହି କାର୍ଯ୍ୟକୁ ଆୟତ୍ତାଧୀନ କରିବା ସମ୍ଭବ ହୋଇଥାଏ । ଦ୍ୱିତୀୟତଃ ସାଂପ୍ରତ୍ୟ ନିୟମ ଅନୁସାରେ ଶିକ୍ଷଣ ସମୟର ବ୍ୟବଧାନ ଦ୍ୱାରା ପ୍ରଭାବିତ ହୋଇଥାଏ । କିଛି ସମୟପରେ ଲାଭ କରାଯାଇଥିବା ଶିକ୍ଷଣ ପ୍ରକ୍ରିୟାର ପ୍ରତିକ୍ରିୟା ଓ ଉଦ୍ଦୀପକ ମଧ୍ୟରେ ସମ୍ପର୍କ ଦୃଢ଼ୀଭୂତ ହୁଏ । ସମୟର ବ୍ୟବଧାନ ଅନୁପାତରେ ଏହି ସମ୍ପର୍କ କ୍ରମଶଃ କ୍ଷୀଣରୁ କ୍ଷୀଣତର ହୋଇଥାଏ । ତୀବ୍ରତା ନିୟମ ଅନୁଯାୟୀ ଉଦ୍ଦୀପକ ଓ ତତ୍‌ସମ୍ବନ୍ଧୀୟ ପ୍ରତିକ୍ରିୟା ମଧ୍ୟରେ ସ୍ଥାପିତ ହେଉଥିବା ସମ୍ପର୍କ ଅନେକାଂଶରେ ସମ୍ପର୍କର ତୀବ୍ରତା ଉପରେ ନିର୍ଭର କରିଥାଏ । ସମ୍ପର୍କ ଘନିଷ୍ଠ ହେଲେ ଏହା ଅଧିକ ସମୟ ସ୍ଥାୟୀ ରହେ । ଅଭ୍ୟାସକୁ ଯାନ୍ତ୍ରିକ ଭାବେ ସମ୍ପାଦନ କରିବା ଉଚିତ ନୁହେଁ । କାରଣ, ଅଭ୍ୟାସ ଦ୍ୱାରା ଶିକ୍ଷା କରିବା ନିମିତ୍ତ ମଧ୍ୟ ଶିଶୁର ଆଗ୍ରହ ଏକାନ୍ତ ଆବଶ୍ୟକ । ଏତଦ୍‌ବ୍ୟତୀତ ଯେଉଁ ପରିସ୍ଥିତି ଶିଶୁକୁ ଫଳପ୍ରଦଭାବେ ଶିକ୍ଷା ଲାଭ କରିବାରେ ସାହାଯ୍ୟ କରିଥାଏ ସେହି ପରିସ୍ଥିତିରେ ଶିଶୁକୁ ଅଭ୍ୟାସ କରିବା ନିମିତ୍ତ ପ୍ରବର୍ତ୍ତାଇବା ଆବଶ୍ୟକ । ଏତଦ୍‌ବ୍ୟତୀତ ଶିକ୍ଷା ଫଳପ୍ରଦ ହେବା ସମୀଚୀନ ହୋଇନଥାଏ ।

(୩) ଫଳାଫଳ ବିଧି ନିୟମ (Law of Effect) :—ସଂଯୋଗ ତଥା ପ୍ରତିକ୍ରିୟା ଏବଂ ଉଦ୍ଦୀପକ ମଧ୍ୟସ୍ଥ ସଂପର୍କକୁ ଦୃଢ଼ୀଭୂତ ଏବଂ ଦୁର୍ବଳ କରିବାରେ ପରିଣାମ ବା ଫଳାଫଳର ଗୁରୁତ୍ୱ ସମ୍ପର୍କରେ ଏହି ନିୟମ ବର୍ଣ୍ଣନା କରିଥାଏ । ଏହି ପରିଣାମ ନିୟମ ଥର୍ଣ୍ଡାଇକ୍‌ଙ୍କର ଶିକ୍ଷଣର ପ୍ରାଥମିକ ନିୟମ ଥିଲା । ଥର୍ଣ୍ଡାଇକ୍

କ୍ଷୁଧାର୍ତ୍ତ ବିରାଡ଼ିଟିକୁ ନେଇ କରିଥିବା ପରୀକ୍ଷଣର ଫଳାଫଳ ସ୍ୱରୂପ ଏ ନିୟମ ପ୍ରବର୍ତ୍ତିତ କରିଛନ୍ତି । ଉକ୍ତ ପରୀକ୍ଷଣ ଅନୁଯାୟୀ କ୍ଷୁଧାର୍ତ୍ତ ବିରାଡ଼ି ପିଞ୍ଜରା ଭିତରେ ଥାଇ ବାହାରେ ଥିବା ଖାଦ୍ୟ ଖାଇବା ନିମିତ୍ତ ଓ ସେଥିରୁ ବାହାରି ଆସିବା ନିମିତ୍ତ ଚେଷ୍ଟାରତ ଥିଲା । ବାରମ୍ବାର ପ୍ରୟାସ ପରେ ଶେଷରେ ସେ ତା'ର ଚେଷ୍ଟାରେ ସଫଳ ହୋଇ ଖାଦ୍ୟ ପାଇଲା । ସେହି ବିକ୍ଷିପ୍ତ ଚେଷ୍ଟାଗୁଡ଼ିକ ମଧ୍ୟରୁ ଯେଉଁ ନିର୍ଦ୍ଦିଷ୍ଟ ଚେଷ୍ଟାଟି ତାକୁ ସଫଳତା ପ୍ରାପ୍ତିରେ ସହାୟକ ହେଲା, ସେହି ଚେଷ୍ଟା ସହିତ ଫଳଲବ୍ଧ ପ୍ରତିକ୍ରିୟା (ଖାଦ୍ୟ)ର ମଧ୍ୟ ସମ୍ପର୍କ ପ୍ରତିଷ୍ଠା ହେଲା । ଫଳତଃ ଅନ୍ୟାନ୍ୟ ବିଫଳ ପ୍ରୟାସ ଗୁଡ଼ିକ ପରିତ୍ୟାଜ୍ୟ ହେଲା । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ସଫଳ ପ୍ରୟାସ ଆନନ୍ଦଦାୟକ ଓ ବିଫଳ ପ୍ରୟାସ ଦୁଃଖଦାୟକ ଓ ଅପ୍ରୀତିକର ମଧ୍ୟ । ତେଣୁ ଉକ୍ତ ନିୟମାନୁଯାୟୀ ନିଷ୍ପୀଡ଼ିତ ବିରକ୍ତିକର ପ୍ରତିକ୍ରିୟା ଅପେକ୍ଷା ସନ୍ତୋଷଦାୟକ ପ୍ରତିକ୍ରିୟା ଅଧିକ ଶୀଘ୍ର ଶିକ୍ଷା କରିହୁଏ । ତେଣୁ ଶିକ୍ଷଣ ଅନୁଯାୟୀ ଶିକ୍ଷାର୍ଥୀକୁ ଯେଉଁ ପ୍ରତିକ୍ରିୟା ଆନନ୍ଦଦାୟକ ଓ ସନ୍ତୋଷଜନକ ହୁଏ ସେ ତାକୁ ଶୀଘ୍ର ଗ୍ରହଣ କରିଥାଏ । ମାତ୍ର ବିରକ୍ତିରେ ଦଣ୍ଡ ବା ଶାସ୍ତିଦାୟକ କାର୍ଯ୍ୟ ଓ ପ୍ରତିକ୍ରିୟା ସମୂହ ଶିକ୍ଷାର୍ଥୀକୁ ଅନାସକ୍ତ କରିଥାଏ । ସେ ଶିକ୍ଷା ପ୍ରତି ବୀତସ୍ପୃହ ଭାବ ପ୍ରଦର୍ଶନ କରାଇଥାଏ । ତେଣୁ ଶିକ୍ଷକ ଏସବୁ ଫଳାଫଳ ପ୍ରତି ସତର୍କ ଦୃଷ୍ଟି ରଖିବା ଏକାନ୍ତ କାମ୍ୟ । କେଉଁ କ୍ରିୟା ଶିଶୁଠାରେ ବିରକ୍ତିକର ଭାବ ଓ କେଉଁ କ୍ରିୟା ତା'ଠାରେ ସନ୍ତୋଷଦାୟକ ଭାବ ଜାତକରାଏ ତାହା ଶିକ୍ଷକ ବିଚାର କରିବା ଆବଶ୍ୟକ । ପୁନଶ୍ଚ ଶିକ୍ଷକ ଏହି ଫଳାଫଳ ନିୟମକୁ ଅନୁସରଣ କରିବା ପୂର୍ବକ ଶିକ୍ଷଣ ପ୍ରକ୍ରିୟାରେ ଦଣ୍ଡ ଓ ପ୍ରଶଂସାର କିପରି ସଦ୍ ବ୍ୟବହାର ହୋଇପାରିବ ସେଥିପ୍ରତି ଦୃଷ୍ଟି ନିକ୍ଷେପ କରିବା ବିଧେୟ ।

ଉକ୍ତ ତିନିଗୋଟି ପ୍ରଧାନ ନିୟମ ବ୍ୟତୀତ ଥର୍ଣ୍ଡାଇକ୍ ଶିକ୍ଷଣ ପ୍ରଣାଳୀକୁ ବର୍ଣ୍ଣନା କରିବା ନିମିତ୍ତ ଆଉ ପାଞ୍ଚଗୋଟି ଗୌଣ ନିୟମ ବା ଉପନିୟମ ସଂପର୍କରେ ବର୍ଣ୍ଣନା କରିଛନ୍ତି ।

**(କ) ବହୁ ପ୍ରତିକ୍ରିୟା ନୀତି (Law of Multiple Response)** :—ଗୋଟିଏ ଉଦ୍ଦୀପକ ହେଲେହେଁ ଏଥିପ୍ରତି ବ୍ୟକ୍ତିର ବିଭିନ୍ନ ପ୍ରତିକ୍ରିୟା ପ୍ରଦର୍ଶିତ ହୋଇଥାଏ ।

**(ଖ) ମାନସିକ ପ୍ରସ୍ତୁତି ନୀତି (Law of Mental set)** :— ଯେ କୌଣସି ଉଦ୍ଦୀପକ ପ୍ରତି ମନୁଷ୍ୟ କେଉଁ ପ୍ରତିକ୍ରିୟା ପ୍ରଦର୍ଶନକରେ ତାହା ମୁଖ୍ୟତଃ ବ୍ୟକ୍ତିର ମାନସିକ ଅବସ୍ଥା ଉପରେ ନିର୍ଭର କରିଥାଏ । ତେଣୁ ଶିକ୍ଷଣ ସମୟରେ ଶିକ୍ଷାର୍ଥୀର ମାନସିକ ଅବସ୍ଥାକୁ ଦୃଷ୍ଟି ପଥରେ ରଖିବା ବାଞ୍ଛନୀୟ । ଶିଶୁ କୌଣସି କାରଣରୁ କ୍ଳାନ୍ତ

ବା ଅବସନ୍ନ ଥିଲାବେଳେ ଏବଂ ମନଦୁଃଖରେ ଥିବାବେଳେ ତାକୁ ଶିକ୍ଷା ଦାନ କଲେ ସେ ଗ୍ରହଣ କରିବାକୁ ଅକ୍ଷମ ହୋଇଥାଏ ଓ ଶିକ୍ଷା ଫଳପ୍ରସୂ ହୋଇ ନଥାଏ ।

(ଗ) ଆଂଶିକ କ୍ରିୟା ନୀତି (Law of Partial Activity):— କୌଣସି ଉଦ୍ଦୀପକ ପ୍ରତ୍ୟକ୍ଷ ଭାବେ ଯେଉଁ ପ୍ରତିକ୍ରିୟା ଜାତ କରାଏ, ତାହା ଉଦ୍ଦୀପକ ପ୍ରତି ସଂପୂର୍ଣ୍ଣଭାବେ ପ୍ରଯୁଜ୍ୟ ହୋଇ ନଥାଏ । ଏହା ତା'ର ଏକ ବିଶେଷ ଅଂଶ ବା ସତ୍ତା ପ୍ରତି ପ୍ରଯୁଜ୍ୟ ଥାଏ । ଉଦାହରଣ ସ୍ୱରୂପ—ଯେ କୌଣସି ବ୍ୟକ୍ତି ବିଶେଷ ଅନ୍ୟ ଲୋକ ପାଇଁ ଉଦ୍ଦୀପକର ସମୂହ ଅଂଶ ହୋଇଥିଲେ ହେଁ ତା'ର ମୁହଁ ପ୍ରତ୍ୟକ୍ଷ ଭାବେ ପ୍ରତିକ୍ରିୟା ଜାତ କରାଇଥାଏ । ଅନ୍ୟ ବ୍ୟକ୍ତିର ପ୍ରତିକ୍ରିୟା ତା'ର ପୋଷାକ ପରିଚ୍ଛଦ ନୁହେଁ, କେବଳ ମୁଖ ପ୍ରତି ପ୍ରଯୁଜ୍ୟ । ଏହା ସମଗ୍ର ଉଦ୍ଦୀପକର ପ୍ରଧାନ ଅଂଶ ହୋଇଥିବାରୁ ପ୍ରତିକ୍ରିୟା ଉତ୍ପାଦନରେ ବିଶେଷ ସହାୟକ ହୋଇଥାଏ । ଶିକ୍ଷଣ ପ୍ରତିକ୍ରିୟା ତେଣୁ ଏହି ନୀତିର ଗୁରୁତ୍ୱ ବେଶ୍ ଉପଲବ୍‌ଧି କରିବାର ବିଷୟ । ଶିକ୍ଷକ ଶିଶୁକୁ କୌଣସି ବିଷୟ ଶିକ୍ଷାଦାନ କଲାବେଳେ ଯେଉଁ ଅଂଶଟି ପ୍ରଧାନ ଓ ଶିକ୍ଷଣୀୟ ତା' ଉପରେ ଅଧିକ ଗୁରୁତ୍ୱଦେଲେ ତାହା ଫଳପ୍ରସୂ ହୁଏ । ଉଦ୍ଦୀପକର ଅନ୍ୟ ଅଂଶ ବିଶେଷ ଶିକ୍ଷା କ୍ଷେତ୍ରରେ ଯେପରି ଅଧିକ ପ୍ରାଧାନ୍ୟ ବିସ୍ତାର ନକରେ ସେଥିପ୍ରତି ଦୃଷ୍ଟିଦେବା ବାଞ୍ଛନୀୟ ।

(ଘ) ସାଦୃଶ୍ୟ ନୀତି (The Principle of Analogy) :— କୌଣସି ନୂତନ ପରିସ୍ଥିତି ବା ଉଦ୍ଦୀପକର ସମ୍ମୁଖୀନ ହେଲେ ଶିଶୁ ତା'ର ପୂର୍ବ ଅଭିଜ୍ଞତାକୁ ସ୍ମରଣ କରି ପୂର୍ବବତ୍ ପ୍ରତିକ୍ରିୟା ପ୍ରଦର୍ଶନ କରେ । ତେଣୁ ଶିକ୍ଷା ଦାନ କ୍ଷେତ୍ରରେ ଏହି ଅଭିଜ୍ଞତାର ସ୍ଥାନ ବେଶ୍ ଗୁରୁତ୍ୱପୂର୍ଣ୍ଣ । ନୂତନ ପାଠ୍ୟ ବସ୍ତୁକୁ ପୁରାତନ ପାଠ୍ୟବସ୍ତୁ ସହିତ ତୁଳନା କରି ଶିକ୍ଷାଦାନ କଲେ ଶିଶୁ ପୂର୍ବ ଅଭିଜ୍ଞତାକୁ ସ୍ମରଣ କରି ନୂତନ ପରିବେଶ ସହିତ ଆଶାନୁରୂପ ପ୍ରତିକ୍ରିୟା ଦେଖାଇବାକୁ ସକ୍ଷମ ହୋଇଥାଏ । ଜ୍ଞାତ ବିଷୟବସ୍ତୁ ସହିତ ଅଜ୍ଞାତ ବିଷୟ ବସ୍ତୁର ସଂପର୍କ ସ୍ଥାପନ ଦ୍ୱାରା ଶିକ୍ଷା ଦାନ ଫଳପ୍ରଦ ହୁଏ । ତେବେ ଭବିଷ୍ୟତ ଜୀବନରେ ଶିଶୁ ଯେଉଁ ସମସ୍ତ ପରିସ୍ଥିତିର ସମ୍ମୁଖୀନ ହେବ ସେଥି ନିମିତ୍ତ ଛାତ୍ର ଛାତ୍ରୀମାନଙ୍କୁ ପ୍ରସ୍ତୁତ କରିବା ଶିକ୍ଷକ ଓ ବିଦ୍ୟାଳୟ ଅସମର୍ଥ । ମାତ୍ର ଶିକ୍ଷାଦାନ ବେଳେ ନୂତନ ଜ୍ଞାନ ସହ ପୂର୍ବାର୍ଜିତ ଜ୍ଞାନର ତୁଳନାତ୍ମକ ବିଚାର କରିବା ଶିକ୍ଷକଙ୍କର ପ୍ରଧାନ କର୍ତ୍ତବ୍ୟ ହେବା ବାଞ୍ଛନୀୟ ।

(ଙ) ପାରସ୍ପରିକ ସମ୍ବନ୍ଧିକରଣ ନୀତି (The Principle of Associative Shifting) :—ଉକ୍ତ ନୀତି ଅନୁଯାୟୀ ଗୋଟିଏ ନିର୍ଦ୍ଦିଷ୍ଟ ଉଦ୍ଦୀପକ ପ୍ରତି ପ୍ରକାଶ ପାଉଥିବା ପ୍ରତିକ୍ରିୟା ଅନ୍ୟ ଏକ ଉଦ୍ଦୀପକର ସମ୍ବନ୍ଧୀକରଣ ଦ୍ୱାରା ମଧ୍ୟ ସଙ୍ଗଠିତ ହୁଏ । ପରସ୍ପର ସମ୍ବନ୍ଧିତ ଉଦ୍ଦୀପକ ଏକ ନିର୍ଦ୍ଦିଷ୍ଟ ପ୍ରତିକ୍ରିୟା ପ୍ରଦର୍ଶନ କରିବାକୁ ସକ୍ଷମ ହୋଇଥାଏ ।

**ଅଭ୍ୟାସ ଓ ଭ୍ରମ ସଂଶୋଧନ ବାଦ ଏବଂ ଶିକ୍ଷା :**

ଏହି ଶିକ୍ଷଣ ତତ୍ତ୍ୱ ଅନୁଯାୟୀ ସୂକ୍ଷ୍ମ ଚିନ୍ତା ଓ ଅଙ୍କ ତୁଳନା ଜନିତ ଶିକ୍ଷା ସମ୍ଭବ ହୋଇଥାଏ । ବିଜ୍ଞାନ ଓ ଗଣିତ ଇତ୍ୟାଦି ବିଷୟ କ୍ଷେତ୍ରରେ ଏହି ନିୟମ ଶିକ୍ଷଦାନ ନିମିତ୍ତ ଅନେକାଂଶରେ ସାହାଯ୍ୟ କରିଥାଏ । ଶିଶୁ ଶିକ୍ଷା କ୍ଷେତ୍ରରେ ଉପସ୍ଥିତ ସଫଳତା ପ୍ରାପ୍ତି ପର୍ଯ୍ୟନ୍ତ ଅନେକ ବିଫଳ ଚେଷ୍ଟା କରିଥାଏ । ମାତ୍ର ଏଥିରେ ସେ ବିରକ୍ତ ବା ଅଧୈର୍ଯ୍ୟ ନ ହୋଇ ଲକ୍ଷ୍ୟ ହାସଲ ଦିଗରେ ବ୍ରତୀ ହେବା ସମୁଚିତ । ଛାତ୍ରଛାତ୍ରୀମାନେ ଏପରି ଧାରଣା ବୃଦ୍ଧି କରାଇବା ନିମିତ୍ତ ଯେପରି ଚେଷ୍ଟିତ ହେବେ ସେଥି ନିମିତ୍ତ ଶିକ୍ଷକ ଦୃଷ୍ଟି ଦେବା ବିଧେୟ । ଶିକ୍ଷା କ୍ଷେତ୍ରରେ ସଫଳତା ନିମିତ୍ତ ପୁନରାବୃତ୍ତି । ଅଭ୍ୟାସ ଓ ପରୀକ୍ଷଣ ଏ ବିଷୟରେ ଗୁରୁତ୍ୱ ଯଥେଷ୍ଟ । ଶିକ୍ଷାର୍ଥୀ ପରିକଳ୍ପନା, ଯୁକ୍ତି ଓ ଚିନ୍ତା ଇତ୍ୟାଦି ଦ୍ୱାରା ବିଷୟଟିକୁ ବୁଝିବା ନିମିତ୍ତ ଚେଷ୍ଟା କରିବା ଉଚିତ୍ । ନଚେତ୍ ଏହା ସମୟ ଓ ଶକ୍ତିର ବୃଥା ଅପଚୟ ଘଟାଇଥାଏ । ଶ୍ରେଣୀ ଗୃହରେ ଶିକ୍ଷଣ କେଉଁ କେଉଁ ଅବସ୍ଥା ଉପରେ ନିର୍ଭର କରେ ତାହା ଥର୍ଣ୍ଡାଇକ୍ ବର୍ଣ୍ଣନା କରିଛନ୍ତି । ଯଥା— (୧) ସଂଯୋଗର ଚିହ୍ନଟ କରଣ, (୨) ସନ୍ତୋଷ ଓ ବିରକ୍ତିଭାବ ସୃଷ୍ଟି କରୁଥିବା ପରିସ୍ଥିତିର ଚିହ୍ନଟ କରଣ, (୩) ସନ୍ତୋଷ ଓ ବିରକ୍ତି ଭାବର ପ୍ରୟୋଗ । ଉପରୋକ୍ତ ତିନୋଟି ଚିନ୍ତାଧାରା ଅନୁଯାୟୀ ଅଭ୍ୟାସକୁ ଏଭଳି ଭାବେ ନିୟନ୍ତ୍ରିତ କରାଯିବ ଯାହା ଫଳରେ ଭ୍ରମାତ୍ମକ ସଂଯୋଗଗୁଡ଼ିକ ଦୃଢ଼ୀଭୂତ ହେବ ନାହିଁ ଏବଂ ଅନଭ୍ୟାସ ଦ୍ୱାରା ଅଭିଳଷିତ ସଂଯୋଗଗୁଡ଼ିକ ନଷ୍ଟ ହୋଇଯିବ ନାହିଁ ।

ଥର୍ଣ୍ଡାଇକ୍ କେତେଗୁଡ଼ିଏ ପ୍ରୋତ୍ସାହିତ ଘଟଣା ସଂପର୍କରେ ମତବାଦ କରିଥିଲେ, ଯାହା ଦ୍ୱାରା ଶିକ୍ଷଣର ଉନ୍ନତି ସଙ୍ଗଠିତ ହୋଇପାରିବ । ସେଗୁଡ଼ିକ ହେଲା—

୧ । କାର୍ଯ୍ୟପ୍ରତି ଆଗ୍ରହ ।

୨ । ଉନ୍ନତି ପ୍ରତି ଆଗ୍ରହ ।

୩ । ସମସ୍ୟା ମୂଳକ ମନୋଭାବ ।

୪ । ତାତ୍ପର୍ଯ୍ୟ ବା ଅର୍ଥବୋଧକତା ।

୫ । ମନଯୋଗ ।

ଏସବୁ ସହିତ ବ୍ୟକ୍ତି ଜୀବନରେ ଆଉ ଦୁଇଟି ଅବସ୍ଥା ପରିଲକ୍ଷିତ ହୁଏ । ସେଗୁଡ଼ିକ ହେଲା—ଅନାବଶ୍ୟକ ଆବେଗର ଅନୁପସ୍ଥିତି ଏବଂ ବ୍ୟଗ୍ରତାର ଅନୁପସ୍ଥିତି । ଏହି ଦୁଇଟି ନୀତି ଦ୍ୱାରା ଥର୍ଣ୍ଡାଇକ୍ ଶିକ୍ଷାର୍ଥୀର ସକ୍ରିୟ ଭୂମିକା ସଂପର୍କରେ ଚିହ୍ନଟ କରିପାରିଥିଲେ ।

## ଅନ୍ତର୍ଦୃଷ୍ଟି ତତ୍ତ୍ୱ (Theory of Insight)

ବର୍ଲିନ୍ ବିଶ୍ୱବିଦ୍ୟାଳୟରେ ମାକ୍ସ ଓ୍ୱେର୍ଥେମର (Mx Wertheimor 1880—1983) କର୍ଟକୋଫ୍‌କା (Kurtkoffka, 1886—1941) ଓ ଉଲଫଗାଙ୍ଗ୍ କୋହଲର (wolfgangkohler) ଗବେଷକ ଭାବେ କାର୍ଯ୍ୟ କରୁଥିଲେ । ସେଠାରେ ସେମାନେ ଅନେକଗୁଡ଼ିଏ ମନୋବିଜ୍ଞାନ ସମ୍ବନ୍ଧୀୟ ଗବେଷଣା କାର୍ଯ୍ୟରେ ଲିପ୍ତ ଥିଲେ । ଅନ୍ତର୍ଦୃଷ୍ଟି ମାଧ୍ୟମରେ ଶିକ୍ଷଣ ଉତ୍ତମ ରୂପେ ସଂଗଠିତ ହୋଇପାରେ ବୋଲି ସେମାନେ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ଏହି ତତ୍ତ୍ୱକୁ ସମଗ୍ରାକୃତି ବା ଗେଷ୍ଟାଲ୍ଟ (Gestalt) ଶିକ୍ଷଣ ତତ୍ତ୍ୱ ରୂପେ ଅଭିହିତ କରାଯାଏ ଏବଂ ଉପରୋକ୍ତ ମନୋବିଜ୍ଞାନୀ ତ୍ରୟଙ୍କୁ ଗେଷ୍ଟାଲ୍ଟ ମତବାଦର ପ୍ରବର୍ତ୍ତକ ରୂପେ ଅଭିହିତ କରାଯାଏ । ଜର୍ମାନ ଶବ୍ଦ "ଗେଷ୍ଟାଲ୍ଟ"ର ଅର୍ଥ ହେଉଛି ସମଗ୍ର (whole) ବା ଗଠନ ପ୍ରଣାଳୀ (Contiguration) ଏମାନଙ୍କ ମତାନୁଯାୟୀ, କୌଣସି ପରିସ୍ଥିତିରେ କୌଣସି ପଦାର୍ଥ ବା ପ୍ରକ୍ରିୟାର ଅଂଶ ଅପେକ୍ଷା ବସ୍ତୁର ସମଗ୍ରତା ଉପରେ ଅଧିକ ଗୁରୁତ୍ୱ ଅଛି ଓ ଶିକ୍ଷଣ ବସ୍ତୁ ବା ପରିସ୍ଥିତିର ସମଗ୍ରତା ଉପରେ ନିର୍ଭରଶୀଳ । ଅନ୍ତର୍ଦୃଷ୍ଟି ମାଧ୍ୟମରେ ଶିକ୍ଷାର ଅର୍ଥ ହେଲା କୌଣସି ସମସ୍ୟା ସମାଧାନ ସମ୍ବନ୍ଧରେ ଆକସ୍ମିକ ଭାବେ ହୃଦୟଙ୍ଗମ କରିବା । ଏହି ଗେଷ୍ଟାଲ୍ଟ ମନସ୍ତତ୍ତ୍ୱବିଦ୍‌ମାନେ ଥର୍ଣ୍ଡାଇକ୍ ଓ ଅନ୍ୟ ବ୍ୟବହାରବାଦୀମାନଙ୍କ ପ୍ରତ୍ୟକ୍ଷ ସମ୍ବନ୍ଧୀୟ ତତ୍ତ୍ୱକୁ ଅସ୍ୱୀକାର କରିଥିଲେ ।

### ଗେଷ୍ଟାଲ୍ଟ ମତବାଦ କଣ :

ଡାଭିଡ୍ କାଟ୍‌ଜ (David Katz)ଙ୍କ ମତାନୁଯାୟୀ, ଗେଷ୍ଟାଲ୍ଟ ତତ୍ତ୍ୱର ସବଂବିଧ ଉନ୍ନତି ସତ୍ତ୍ୱେ, ବର୍ତ୍ତମାନ ପର୍ଯ୍ୟନ୍ତ ଶିକ୍ଷଣ ତତ୍ତ୍ୱ ଓ ମନୁଷ୍ୟର ବ୍ୟବହାର ସମ୍ପର୍କରେ ଏକ ନିର୍ଦ୍ଦିଷ୍ଟ ଧାରଣା ବା ଜ୍ଞାନ ଆହରଣ ନିମିତ୍ତ ଆମେ ସକ୍ଷମ ହୋଇପାରି ନାହୁଁ । ସେ ଯାହା ହେଉ, ଗେଷ୍ଟାଲ୍ଟ ତତ୍ତ୍ୱ ଦ୍ୱାରା ଆମେ ଅନେକ ଜ୍ଞାନ ଅର୍ଜନ କରିବାକୁ ସମର୍ଥ ହୋଇଥାଉ । ତାହା ଆମେ ନିମ୍ନୋକ୍ତ ସଂଜ୍ଞା ଗୁଡ଼ିକରୁ ଉପଲବ୍ଧି କରି ପାରିବା ।

(୧) ଓ୍ୱେର୍ଥେମର (Wertheimer) "ଗେଷ୍ଟାଲ୍ଟ୍ ଏକ ସାମଗ୍ରିକ ତତ୍ତ୍ୱ ଯାହାର ଗୁଣାବଳୀ ବ୍ୟକ୍ତିର କେତେଗୁଡ଼ିଏ ଗୁଣାତ୍ମକ ଦ୍ୱାରା ନୁହେଁ ଏହା ଅନ୍ତର୍ନିହିତ ପ୍ରକୃତିର ସମଗ୍ରତାରୁ ଜଣାପଡ଼େ ।

**A gestalt is a whole whose characteristics are determined, not by the characteristics of its individual elements, but by the internal nature of the whole.**

(୨) କୋହଲର (Kohler) "ଗେଷ୍ଟାଲ୍ଟ ଅର୍ଥ ଏକ ସ୍ୱତନ୍ତ୍ର ସମଗ୍ର" । ଯେତେବେଳେ ଗୋଟିଏ ପ୍ରଣାଳୀକୁ ସକ୍ରିୟଭାବେ ବଣ୍ଟନ କରାଯାଏ ଏବଂ ନିର୍ଦ୍ଦିଷ୍ଟ ପରିସ୍ଥିତି ଗୁଡ଼ିକର ଏକତ୍ର ସମାବେଶ ଦ୍ୱାରା ସ୍ୱତଃ ପ୍ରସ୍ତୁତ ହୁଏ, ସେତେବେଳେ ସେହି ପ୍ରଣାଳୀ ଗେଷ୍ଟାଲ୍ଟ ମନୋବିଜ୍ଞାନର ଅନ୍ତର୍ଭୁକ୍ତ ହୋଇଥାଏ ।"

Gestalt means a separate whole, with regard to field concept he says, whenever a process becomes dynamically distributed and arranges itself in accordance with the constellation of determining circumstances in its centre field, that process belongs in the realm of Gestalt Psychology—(1933).

(୩) କୋଫ୍କୋ (Koffka) "ସଗଠନ ଏକ ପ୍ରଣାଳୀ ଯାହା ଗେଷ୍ଟାଲ୍ଟ ଆଡ଼କୁ ଅଗ୍ରସର ହୁଏ ।" (Organisation is the process that Leads to a Gestalt).

ଗେଷ୍ଟାଲ୍ଟ ତତ୍ତ୍ୱର ତାତ୍ପର୍ଯ୍ୟପୂର୍ଣ୍ଣ ଅଙ୍ଗ ବିଶେଷ ଉପରେ ଉକ୍ତ ପ୍ରତିଷ୍ଠିତ ଗେଷ୍ଟାଲିଷ୍ଟମାନଙ୍କ ସଙ୍କ୍ଷିପ୍ତ ଆଲୋକପାତ କରିଥାଏ ।

## ଗେଷ୍ଟାଲଟ୍ ପଦ୍ଧତିର ଗୁଣାବଳୀ :

ଗେଷ୍ଟାଲ୍ଟ ମନସ୍ତତ୍ତ୍ୱବିତ୍‌ମାନଙ୍କ ମତ ଉପରେ ପ୍ରତିଷ୍ଠିତ ଗେଷ୍ଟାଲ୍ଟ ପଦ୍ଧତିକୁ କେତେଗୁଡ଼ିଏ ସାଧାରଣ ଗୁଣାବଳୀ ପ୍ରଦତ୍ତ ହୋଇପାରେ । ନିମ୍ନଲିଖିତ ଗୁଣାବଳୀ ଗୁଡ଼ିକ ସେଥିମଧ୍ୟରୁ ଅନ୍ୟତମ ।

୧ । ଗୋଟିଏ ପଦ୍ଧତି ବଳ ଏବଂ ସଙ୍ଗଠିତ ହୋଇଥାଏ । ଏହାକୁ ପୃଥକ୍ ମଧ୍ୟ କରାଯାଇପାରେ ।

୨ । ସମଗ୍ର ପଦ୍ଧତିର ଗୁଣ ଅଂଶ ବିଶେଷର ଗୁଣ ଉପରେ ପ୍ରାଧାନ୍ୟ ବିସ୍ତାର କରିଥାଏ ।

୩ । ନିର୍ଦ୍ଦିଷ୍ଟ ପଦ୍ଧତିର ଅଭିନ୍ନତାକୁ କୌଣସି ନିରୀକ୍ଷକ ପକ୍ଷରେ ପରିବର୍ତ୍ତନ କରିବା ଅସମ୍ଭବ ପଡ଼ିଥାଏ ।

୪ । ଯଦି ଅଂଶବିଶେଷ ଗୁଡ଼ିକ ପରସ୍ପର ସହିତ ସମ୍ପର୍କିତ ହୁଏ, ପଦ୍ଧତିର ଗୁଣ ଅଦୃଶ୍ୟ ହେବାକୁ ଆରମ୍ଭ କରିଥାଏ ।

୫। ନିରୀକ୍ଷଣ ପଦ୍ଧତିକୁ ଉପଲବ୍ଧି କରିବା ପରେ ସେ ଏହା ଅଂଶବିଶେଷକୁ ପୃଥକୀକରଣ କରିପାରି ନଥାଏ। କାରଣ, ଏପରି କଲେ ପଦ୍ଧତି ସମ୍ପର୍କୀୟ ଧାରଣା ବାଧାପ୍ରାପ୍ତ ହୁଏ।

୬। ଯେତେବେଳେ ଅଂଶଗୁଡ଼ିକ ସମ୍ପର୍କରେ ଧାରଣା ସୁସ୍ପଷ୍ଟ ଓ ସମ୍ପୂର୍ଣ୍ଣ ହୁଏ ସେତେବେଳେ ପଦ୍ଧତିଟି ଅଧିକ ମାତ୍ରାରେ ସରଳ ହୋଇଥାଏ। ପଦ୍ଧତିଟି ଗୋଟିଏ ମୌଳିକ ଉପାଦାନକୁ ନେଇ ଗଠିତ ହୋଇଥାଏ ଏହା କମ୍ ମାତ୍ରାରେ ସରଳ ରହେ। ଉଦାହରଣ ସ୍ୱରୂପ : ଯେତେବେଳେ ଶିଶୁ 'ଅ' ଅକ୍ଷରଟିକୁ ବୁଝିବାକୁ ସକ୍ଷମ ହୁଏ ସେତେବେଳେ ସେ 'ହ' ଅକ୍ଷରକୁ ଉପଲବ୍ଧି କରିବାକୁ ଅକ୍ଷମ ହୋଇଥାଏ।

୭। ଗୋଟିଏ ଆକୃତି (Form)ର ଭିନ୍ନ ଭିନ୍ନ ଅଂଶର ବିଭିନ୍ନ ମୂଲ୍ୟବୋଧ ପରିଦୃଷ୍ଟ ହୁଏ। ଉଦାହରଣ ସ୍ୱରୂପ : ଯଦି ମୁହଁରେ ପାଟିନଥାଏ, ଏହା କୌଣସି ଧାରଣା ଦେଇ ପାରିବ ନାହିଁ। ମାତ୍ର ଅନ୍ୟ ଅଂଶ ଗୁଡ଼ିକ ନଥିଲେ ମୁହଁଟା ସେତେ ମାତ୍ରାରେ ବିକୃତ ଜଣାଯିବ ନାହିଁ।

୮। ପ୍ରତ୍ୟେକ ବ୍ୟକ୍ତିର ବିକାଶ କ୍ଷେତ୍ରରେ ତା'ର ଆକୃତି ଅନ୍ୟ ଅଂଶ ଗୁଡ଼ିକ ଉପରେ ପ୍ରାଧାନ୍ୟ ବିସ୍ତାର କରିଥାଏ।

## ଶିକ୍ଷଣର ସମଗ୍ରାକୃତ ନିୟମ (Gestalt Laws of Learning) :

ଥର୍ଣ୍ଣଡାଇକଙ୍କ ପ୍ରବର୍ତ୍ତିତ ଶିକ୍ଷଣର ପ୍ରଯତ୍ନ-ପ୍ରମାଦ ତତ୍ତ୍ୱକୁ ଉକ୍ତ ସମଗ୍ରାକୃତ (Gestalt) ମତବାଦର ପ୍ରବର୍ତ୍ତକ ମନସ୍ତତ୍ତ୍ୱବିତ୍‌ମାନେ ଅସ୍ୱୀକାର କରିଥାନ୍ତି। ଆଧୁନିକ ମନସ୍ତତ୍ତ୍ୱବିତ୍ ଟଲ୍‌ମ୍ୟାନ (Tolman) ମଧ୍ୟ ପ୍ରଯତ୍ନ-ପ୍ରମାଦ ବା ଆୟାସ ଓ ଭ୍ରମ ସଂଶୋଧନ ବାଦ ମାଧ୍ୟମରେ ଶିକ୍ଷଣକୁ ଅଗ୍ରାହ୍ୟ ବୋଲି ମତ ଦାନ କରିଛନ୍ତି। ତାଙ୍କ ମତାନୁଯାୟୀ ଶିକ୍ଷଣ ପ୍ରଣାଳୀ ଅନେକ ମାତ୍ରାରେ ବୁଦ୍ଧି ଦ୍ୱାରା ପ୍ରଭାବିତ ହୁଏ। ଶିକ୍ଷାର୍ଥୀ ନୂତନ ଜ୍ଞାନ ଆହରଣ କରିବା ସମୟରେ ସେ ତା'ର ପ୍ରତ୍ୟକ୍ଷ ଜ୍ଞାନ (Perception) ଓ ପର୍ଯ୍ୟବେକ୍ଷଣ (Observation) ଅଭିଜ୍ଞତାକୁ ସଂଗଠିତ କରେ। ମନୁଷ୍ୟର ସମଗ୍ର ମାନସିକ ପ୍ରକ୍ରିୟା ଶିକ୍ଷଣ ନିମିତ୍ତ ଆବଶ୍ୟକ ହୋଇଥାଏ। କାରଣ, ସମଗ୍ର ପରିସ୍ଥିତିକୁ ଉତ୍ତମରୂପେ ନିରୀକ୍ଷଣ କରିବା ସଙ୍ଗେ ସଙ୍ଗେ ନୂତନ ଅଭିଜ୍ଞତା ସଞ୍ଚୟ କରିବା ହିଁ ପ୍ରକୃତ ଶିକ୍ଷଣ। ସମଗ୍ରାକୃତ (Gestalt) ତତ୍ତ୍ୱ ସମ୍ବନ୍ଧରେ ନିମ୍ନରେ କେତେଗୁଡ଼ିଏ ତଥ୍ୟ ଆଲୋଚନା କରାଗଲା।

**(କ) ଅକୃତ ଓ ଭିତ୍ତି ଭୂମିର ସମ୍ପର୍କ (Figure and Ground-relationship)** :—ଗୋଟିଏ ବସ୍ତୁର ଆକୃତି ନିରୀକ୍ଷଣ କରିବା ସମୟରେ ତାର ପୃଷ୍ଠଭୂମିକୁ ଉତ୍ତମ ରୂପେ ନିରୀକ୍ଷଣ କରିବା ବାଞ୍ଛନୀୟ । କାରଣ ଭିତ୍ତି ଭୂମି ଉପରେ ହିଁ ବସ୍ତୁ ପ୍ରତିଷ୍ଠିତ । ଉଦାହରଣ ସ୍ୱରୂପ, ଜଣେ ବ୍ୟକ୍ତି ବିଶେଷଙ୍କ ଆକୃତି ଦେଖିବାବେଳେ ତା'ର ମନୋଭାବ, ବୈଶିଷ୍ଟ୍ୟଗୁଣ, ବୃଦ୍ଧି, ଜ୍ଞାନ ତଥା ତା'ର ମାନସିକ ଓ ଶାରୀରିକ ଅବସ୍ଥାଗୁଡ଼ିକୁ ଦେଖିବା ସଙ୍ଗେ ସଙ୍ଗେ ତା'ର ପରିବେଶ, ପରିସ୍ଥିତି ଓ ବଂଶାନୁଗୁଣ ସମ୍ପର୍କରେ ଧ୍ୟାନ ଦେବା ଆବଶ୍ୟକ । କାରଣ, ଉକ୍ତ ବଂଶାନୁଗୁଣ ଓ ପରିବେଷ୍ଟନୀ ବ୍ୟକ୍ତିର ବ୍ୟକ୍ତିତ୍ୱର ପୃଷ୍ଠଭୂମି ରୂପେ କାର୍ଯ୍ୟ କରିଥାଏ । ସେହିଭଳି ଶିକ୍ଷଣବେଳେ କେବଳ ଗୋଟିଏ ଦିଗ ଉପରେ ଧ୍ୟାନ ନଦେଇ ସମଗ୍ର ପରିସ୍ଥିତିକୁ ନିରୀକ୍ଷଣ କରାଯିବା ବିଧେୟ ।

**(ଖ) ସାନ୍ନିଧ୍ୟ ବା ସ୍ଥାନର ସାମୀପ୍ୟ (Proximity of being near in Space)** :- ବସ୍ତୁ ବା ବସ୍ତୁ ମଧ୍ୟରେ ଥିବା ସମ୍ପର୍କ ତଥା ସ୍ଥାନର ଦୂରତ୍ୱ କମ୍ ଥିଲେ ସେଗୁଡ଼ିକ ପରସ୍ପରର ସାନ୍ନିଧ୍ୟ ଲାଭ କରୁଛନ୍ତି ବା ସମୀପରେ ଅଛନ୍ତି ବୋଲି ବୁଝିବାକୁ ହେବ । ସେହିପରି ଶ୍ଳେଟ ଶ୍ଳେଟ ବିନ୍ଦୁ କେତୋଟି ଯଦି ପରସ୍ପରର ଖୁବ୍ ନିକଟରେ ଥାଆନ୍ତି ତେବେ ସେମାନଙ୍କୁ ଏକ ନିର୍ଦ୍ଦିଷ୍ଟ ଦଳଭୁକ୍ତ କରିବା ସମ୍ଭବ । ଏତଦ୍‌-ବ୍ୟତୀତ ସେମାନଙ୍କ ମଧ୍ୟରେ ସମ୍ପର୍କ ପ୍ରତିଷ୍ଠା କରିବା ମଧ୍ୟ ସହଜ ସାଧ୍ୟ । ମାତ୍ର ଉକ୍ତ ବିନ୍ଦୁଗୁଡ଼ିକ ପରସ୍ପରଠାରୁ ଖୁବ୍ ଦୂରରେ ଅବସ୍ଥିତ ଥିଲେ ସେଗୁଡ଼ିକୁ ଏକତ୍ର କରିବା ଓ ସମ୍ପର୍କ ସ୍ଥାପନ କରିବା ଅସମ୍ଭବ ହୋଇପଡ଼ିଥାଏ ।

**(ଗ) ଅନ୍ତର୍ଭୁକ୍ତ (Inch Siveness)** :—ବିଭିନ୍ନ ପୂର୍ଣ୍ଣତର ଗୁଡ଼ିଏ ଯଦି ଭାବଉଦ୍ଦୀପକ ହୋଇଥାଏ ଓ ପୂର୍ଣ୍ଣତା ପ୍ରାପ୍ତି ଯୋଗୁଁ ସମ୍ପୂର୍ଣ୍ଣ ଧାରଣା ଜନ୍ମାଇବାକୁ ଅକ୍ଷମ ହୋଇଥାଏ, ତେବେ ସେହି ତଥ୍ୟଗୁଡ଼ିକ ସାମୂହିକଭାବେ ସେଗୁଡ଼ିକର ସାମଗ୍ରିକ ଭାବ ପ୍ରତିପାଦନ କରିବାକୁ ସକ୍ଷମ ହୋଇଥାନ୍ତି । ତେବେ ବ୍ୟକ୍ତିର ସମ୍ଚିତ ଅଭିଜ୍ଞତା ବ୍ୟକ୍ତିକୁ ଅଧିକ ମାତ୍ରାରେ ସହାୟକ ହୋଇଥାଏ ।

**(ଘ) ପୂର୍ତ୍ତି (Closure)** :—ଏ କ୍ଷେତ୍ରରେ ମଧ୍ୟ ବ୍ୟକ୍ତିର ଅଭିଜ୍ଞତା କାର୍ଯ୍ୟ କରିଥାଏ । କୌଣସି ତଥ୍ୟ ସମ୍ପୂର୍ଣ୍ଣ ଅବସ୍ଥାରେ ଥିବା ସମୟରେ ମଧ୍ୟ ବ୍ୟକ୍ତି ବିଶେଷ କେବଳ ତା'ର ଅଭିଜ୍ଞତାକୁ ପାଥେୟ କରି ସେହି ଅସଂପୂର୍ଣ୍ଣ ବା ପ୍ରାୟ ସମ୍ପୂର୍ଣ୍ଣ ତଥ୍ୟକୁ ମନ ମଧ୍ୟରେ ପୂର୍ଣ୍ଣକରି ତାକୁ ସମଗ୍ରଭାବେ ଉପଲବ୍ଧି କରିଥାଏ ।

**(ଙ) ଅବିଚ୍ଛିନ୍ନତା (Continuity)** :—କେତେଗୁଡ଼ିଏ ବିନ୍ଦୁକୁ କ୍ରମାଗତ ଭାବେ ଅନବଚ୍ଛିନ୍ନ ଅବସ୍ଥାରେ ରଖାଗଲେ, ତାହା ଏକ ରେଖାରୂପେ

ଅନୁମିତ ହୋଇ ପାରିଥାଏ । ମାତ୍ର ବିନ୍ଦୁଗୁଡ଼ିକ ବିଚ୍ଛିନ୍ନ ହୋଇ ରହିଥିଲେ ଏହା କୌଣସି ଧାରଣା ମନରେ ଆଣିଦେଇପାରେ ନାହିଁ ।

(ଡ) ପରିଚୟ (Familiarity) :—ବ୍ୟକ୍ତିର ପୂର୍ବ ଅଭିଜ୍ଞତା ଏ କ୍ଷେତ୍ରରେ ପ୍ରଯୁଜ୍ୟ ହୋଇଥାଏ । ବିଭିନ୍ନ ବିନ୍ଦୁ ଓ ରେଖା ମିଶ୍ରିତ ଗୋଟିଏ ଚିତ୍ରକୁ ଦେଖି ବ୍ୟକ୍ତି ତା'ର ଅଭିଜ୍ଞତା ଅନୁଯାୟୀ ମନରେ ତା'ର ଅବଧାରଣା କରିଥାଏ । କୌଣସି ବ୍ୟକ୍ତି ଏହି ବିନ୍ଦୁ ଓ ରେଖାମିଶ୍ରିତ ଅର୍ଥହୀନ ଚିତ୍ରକୁ ବୃକ୍ଷ ବୋଲି ଅବଧାରଣା କଲାବେଳେ କେହି ଏହି ଚିତ୍ରକୁ ମନୁଷ୍ୟ ଓ ଅନ୍ୟ କେହି ପ୍ରାଣୀ ଇତ୍ୟାଦି ବିଭିନ୍ନ ରୂପରେ ରୂପାୟିତ କରିଥାନ୍ତି ।

(ଢ) ସାଦୃଶ୍ୟ (Likeness or Similarity) :—କେତେଗୁଡ଼ିଏ ବର୍ଗକ୍ଷେତ୍ର, ଆୟତକ୍ଷେତ୍ର, ତ୍ରିଭୁଜ ଓ କେତେକ ବିନ୍ଦୁ ସମ୍ବଳିତ ଚିତ୍ର ଦେଖିଲେ ଆମେ ସ୍ୱତଃ ଏକ ପ୍ରକାର ଗୁଣ ବିଶିଷ୍ଟ ବସ୍ତୁ ବା ଚିତ୍ରକୁ ଅନ୍ୟଠାରୁ ପୃଥକ୍ କରିଥାଉଁ । ମୁଖ୍ୟତଃ କହିବାକୁ ଗଲେ ସାଦୃଶ୍ୟ ପରିଲକ୍ଷିତ ହେଉଥିବା ଚିତ୍ରଗୁଡ଼ିକୁ ଏକ ଶ୍ରେଣୀଭୁକ୍ତ କରୁଥାଉଁ । ଯଥା—ବର୍ଗକ୍ଷେତ୍ର ଓ ଆୟତ କ୍ଷେତ୍ରକୁ ବିନ୍ଦୁ ଓ ତ୍ରିଭୁଜଠାରୁ ଅଲଗା କରିଥାଉଁ ।

ମନୋବିଜ୍ଞାନ କ୍ଷେତ୍ରରେ ସମଗ୍ରାକୃତି (Gestalt) ତତ୍ତ୍ୱର ପ୍ରବର୍ତ୍ତକ ତ୍ରୟଙ୍କ ମଧ୍ୟରୁ ମନସ୍ତତ୍ତ୍ୱବିଦ୍ କୋହ୍ଲାର (Kohler) ଅନ୍ୟତମ । ସେ ଉକ୍ତ ତତ୍ତ୍ୱକୁ ପରୀକ୍ଷା ମୂଳକ ଭାବେ ପ୍ରମାଣିତ କରିବା ନିମିତ୍ତ ନିମ୍ନମତେ ପରୀକ୍ଷଣ ନିରୀକ୍ଷଣ କରିଥିଲେ, ତାଙ୍କ ମତାମତ ସମ୍ବଳିତ ପରୀକ୍ଷାଟିକୁ ନିମ୍ନମତେ ଆଲୋଚନା କରାଗଲା ।

ମନସ୍ତତ୍ତ୍ୱବିଦ୍ କୋହ୍ଲାର ଉକ୍ତ ମତରେ ପହଞ୍ଚିବା ପୂର୍ବରୁ ଶିମ୍ପାଞ୍ଜିମାନଙ୍କ ଶିକ୍ଷଣ ପ୍ରକ୍ରିୟା ସମ୍ବନ୍ଧରେ ଅନେକଗୁଡ଼ିଏ ଗବେଷଣା କରିଥିଲେ । ସେ ତାଙ୍କର ପରୀକ୍ଷଣ କାର୍ଯ୍ୟ ଆଫ୍ରିକା ମହାଦେଶର ଉପକୂଳରେ ଥିବା ଏକ ଦ୍ୱୀପର ପ୍ରାକୃତିକ ପରିବେଶ ମଧ୍ୟରେ ସଙ୍ଗଠିତ କରିଥିଲେ । ଏହି ନୂତନ ତତ୍ତ୍ୱର ଯଥାର୍ଥତା ସେ ଆମେରିକାର ଅନ୍ୟ ବିଶିଷ୍ଟ ମନୋବିଜ୍ଞାନୀମାନଙ୍କ ଆଗରେ ପ୍ରତିପାଦନ କରିଥିଲେ । ଉକ୍ତ ପରୀକ୍ଷଣ ସେ ଅନେକଗୁଡ଼ିଏ ଶିମ୍ପାଞ୍ଜିକୁ ନେଇ କରିଥିଲେ ହେଁ ସୁଲତାନ ନାମକ ଶିମ୍ପାଞ୍ଜି ତାଙ୍କ ପରୀକ୍ଷଣରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା ।

ଏହି ସୁଲତାନ୍ ନାମ୍ନୀ ଶିମ୍ପାଞ୍ଜିକୁ କ୍ଷୁଧାର୍ତ୍ତ ଅବସ୍ଥାରେ ଗୋଟିଏ ବିରାଟ ଲୌହ ପିଞ୍ଜରା ମଧ୍ୟରେ ଆବଦ୍ଧ କରି ରଖାଯାଇଥିଲା । ପିଞ୍ଜରାର ବାହାରେ କଦଳୀଟିଏ ରଖାଯାଇଥିଲା । ପିଞ୍ଜରା ମଧ୍ୟରେ ଦୁଇଟି କାଠବାଡ଼ି ରଖାଯାଇଥିଲା । ଏଗୁଡ଼ିକ ଏଭଳି ତିଆରି ହୋଇଥିଲା ଯେ ଗୋଟିଏ ବାଡ଼ିକୁ ଅନ୍ୟବାଡ଼ି ମଧ୍ୟରେ ଭର୍ତ୍ତିକରି ଏକ ଲମ୍ବା ବାଡ଼ି ରୂପେ

ବ୍ୟବହୃତ ହୋଇପାରିବ । ତେବେ କଦଳୀଟି ଏପରି ସ୍ଥାନରେ ରଖାଯାଇଥିଲା ଯାହାକୁ କି କୌଣସି ଗୋଟିଏ ବାଡ଼ିର ସାହାଯ୍ୟରେ ଆଣିହେବ ନାହିଁ । ମାତ୍ର ଦୁଇଟିଯାକ ବାଡ଼ିକୁ ଏକାଠି ଯୋଡ଼ି ଗୋଟିଏ ଲମ୍ବା ବାଡ଼ିକରି କଦଳୀଟିକୁ ବାହାରୁ ଆଣିବା ସମ୍ଭବ ଥିଲା । କ୍ଷୁଧାର୍ତ୍ତ ସିଂପାଞ୍ଜିଟି କଦଳୀକୁ ଖାଇବା ନିମିତ୍ତ ତାକୁ ଆଣିବାପାଇଁ ବିଭିନ୍ନ ପ୍ରକାର ଚେଷ୍ଟା କଲା । ପିଞ୍ଜରାର ରେଲିଙ୍ଗ ଭିତରେ ହାତ ବଢ଼ାଇ ଉଭୟ ବାଡ଼ିକୁ ବ୍ୟବହାର କରି ମଧ୍ୟ ସେ କଦଳୀଟିକୁ ପାଇବାକୁ ଅସମର୍ଥ ହେଲା । ସମସ୍ତ ଚେଷ୍ଟା ପରେ ନିରାଶ ହୋଇ ସେ ପିଞ୍ଜରାର ଗୋଟିଏ କୋଣରେ ବସି ରହି ବାଡ଼ି ଦୁଇଟିକୁ ଧରି ଖେଳିବାରେ ଲାଗିଲା । ଖେଳିଲାବେଳେ ସେ ଦେଖିଲା ଯେ ବାଡ଼ି ଦୁଇଟିକୁ ପରସ୍ପର ସହିତ ସଂଯୁକ୍ତ କରିହେଉଛି । ସେ କଦଳୀଟିକୁ ଆଣିବାପାଇଁ ତାକୁ ବ୍ୟବହାର କରିବା ସମ୍ପର୍କରେ ଚିନ୍ତାକଲା । ଶେଷରେ ସେ କଦଳୀଟିକୁ ଆଣିବା ନିମିତ୍ତ ଯେଉଁ ସମସ୍ୟାର ସମ୍ମୁଖୀନ ହୋଇଥିଲା ତାକୁ ସମାଧାନ କରିବାକୁ ସକ୍ଷମ ହେଲା ଓ କଦଳୀଟିକୁ ବାଡ଼ି ଦୁଇଟିର ସଂଯୋଗଦ୍ୱାରା ସୃଷ୍ଟି ଲମ୍ବା ବାଡ଼ି ଦ୍ୱାରା ଆଣିପାରିଲା ।

ଏତଦ୍‌ବ୍ୟତୀତ ସେ ଅନ୍ୟ ଏକ ପରୀକ୍ଷା ମଧ୍ୟ ଏହି ସିଂପାଞ୍ଜିକୁ ନେଇ କରିଥିଲେ । ଏଥିରେ ସେ କ୍ଷୁଧାର୍ତ୍ତ ସିଂପାଞ୍ଜିଟିକୁ ଗୋଟିଏ ବଡ଼ ଲୌହ ପିଞ୍ଜରା ମଧ୍ୟରେ ରଖି ତା'ର ଛାତରେ ତଳକୁ କଦଳୀ ଝୁଲାଇ ଦେଇଥିଲେ । କଦଳୀ ଏତେ ଉଚ୍ଚରେ ଝୁଲାଇ ଦିଆଯାଇଥିଲା ଯେ ସିଂପାଞ୍ଜି ତାହାକୁ ହାତରେ ଆଣିବା ଅସମ୍ଭବ, ମାତ୍ର ସେହି ଲୌହ ପିଞ୍ଜରା ମଧ୍ୟରେ ଗୋଟିଏ ଟେବୁଲ ରଖିଥିଲେ ଯାହା ଉପରେ ଛିଡ଼ା ହେଲେବି କଦଳୀଟିକୁ ଆଣିବା ଅସମ୍ଭବ । ଏତଦ୍‌ବ୍ୟତୀତ ଆଉ ଦୁଇଗୋଟି ବଡ଼ ସାନ କରି ବାଉଁଶ ରଖାଯାଇଥିଲା । ଏ ବାଉଁଶରୁ କୌଣସି ଗୋଟିଏକୁ ବ୍ୟବହାର କରି କଦଳୀ ଆଣିବା ମଧ୍ୟ ସମ୍ଭବ ହେଉ ନଥିଲା ମାତ୍ର ବାଉଁଶ ଦୁଇଟି ଏଭଳି ନିର୍ମିତ ହୋଇଥିଲା ଯେ, ଏହି ଦୁଇଟିକୁ ଏକାଠି ସଂଯୋଗ କରି ଗୋଟିଏ ଲମ୍ବା ବାଉଁଶ ତିଆରି କରିହେବ ଏବଂ ସେହି ଲମ୍ବା ବାଡ଼ି ଦ୍ୱାରା କଦଳୀ ଆଣିବା ସମ୍ଭବ ହେବ । କ୍ଷୁଧାର୍ତ୍ତ ସିଂପାଞ୍ଜି ପ୍ରଥମେ କଦଳୀଟିକୁ ଦେଖି ଖାଇବା ପାଇଁ ଇଚ୍ଛାକଲା, ତେଣୁ ସେ ପିଞ୍ଜରା କାନ୍ଥରେ ଚଢ଼ି କଦଳୀଟିକୁ ପାଇବା ପାଇଁ ହାତ ବଢ଼ାଇଲା । ମାତ୍ର ଏଥିରେ ଅସଫଳ ହେବାରୁ ସେ ଟେବୁଲ ଉପରେ ଛିଡ଼ା ହୋଇ କଦଳୀକୁ ହାତ ବଢ଼ାଇଲା । ଏ ଚେଷ୍ଟା ମଧ୍ୟ ବିଫଳ ହେଲା, ତେଣୁ ସେ ପିଞ୍ଜରାକୁ ଉତ୍ତମ ରୂପେ ନିରୀକ୍ଷଣ କରିବାକୁ ଲାଗିଲା । ତା'ପରେ ଗୋଟିଏ ବାଉଁଶ ନେଇ କଦଳୀଟିକୁ ଆଣିବାକୁ ଚେଷ୍ଟାକଲା, ଏଥର ମଧ୍ୟ ସେ ସଫଳ ହୋଇ ପାରିଲା ନାହିଁ । ସେ ପୁନର୍ବାର ଚିନ୍ତାକରି କିଛି ସମୟ ପରେ ଅନ୍ୟ ବାଉଁଶ ଖଣ୍ଡିକ ଆଣି ସେଥିରେ ଯୋଡ଼ି ତାକୁ ଗୋଟିଏ ଲମ୍ବା ବାଉଁଶରେ ପରିଣତ କଲା । ଶେଷରେ ଟେବୁଲ ଉପରେ ଛିଡ଼ାହୋଇ ଲମ୍ବା ବାଉଁଶଟି ଦ୍ୱାରା କଦଳୀଟିକୁ ଆଣିବା ପାଇଁ ସମର୍ଥ ହେଲା ।

କୋହଲର ପରୀକ୍ଷା କରି ପ୍ରତିପାଦିତ କରିଥିଲେ ଯେ, ଶିକ୍ଷଣ ପ୍ରକ୍ରିୟା ଏକ ଯାନ୍ତ୍ରିକ ପ୍ରକ୍ରିୟା ନୁହେଁ । ପ୍ରାଣୀ ବିଶେଷ କୌଣସି ନୂତନ ପରିସ୍ଥିତି ବା ସମସ୍ୟାର ସମ୍ମୁଖୀନ ହେଲେ ସେ ତାର ସମାଧାନ ପାଇଁ କେତେଗୁଡ଼ିଏ ପ୍ରାଥମିକ ପ୍ରୟାସ କରିଥାଏ । ସେହି ପ୍ରାଥମିକ ପ୍ରୟାସ ଗୁଡ଼ିକ ବ୍ୟର୍ଥତାରେ ପର୍ଯ୍ୟବସିତ ହେଲେହେଁ ପରେ ପୂର୍ବ ଅଭିଜ୍ଞତା ସାହାଯ୍ୟରେ ସେ ସମସ୍ତ ପରିସ୍ଥିତିକୁ ନୂତନ ଭାବେ ଅବଧାରଣ କରିବାକୁ ସମର୍ଥ ହୋଇଥାଏ ଫଳତଃ ସେ ପ୍ରାଥମିକ ବ୍ୟର୍ଥ ପ୍ରୟାସ ଗୁଡ଼ିକ ତ୍ୟାଗ କରିବା ସଙ୍ଗେ ସଙ୍ଗେ ନୂତନ ପ୍ରୟାସ ଦ୍ୱାରା ନିଜର ସମସ୍ୟାର ସମାଧାନ କରିବାକୁ ସକ୍ଷମ ହୋଇଥାଏ ।

## ଅଭ୍ୟାସ ଓ ଭ୍ରମ ସଂଶୋଧନ ମତବାଦ ଏବଂ ଅନ୍ତର୍ଦୃଷ୍ଟି—

ମତବାଦ ମଧ୍ୟରେ ପାର୍ଥକ୍ୟ **(Difference between Trial and Error Learning and Insightful Learning)** ଥର୍ଣ୍ଡାଇକଙ୍କ ପ୍ରବର୍ତ୍ତିତ ପରୀକ୍ଷା ଓ ଭ୍ରମ ସଂଶୋଧନ ମତବାଦ ଏବଂ ଗେଷ୍ଟାଲ୍ଟମାନଙ୍କ ପ୍ରବର୍ତ୍ତିତ ଅନ୍ତର୍ଦୃଷ୍ଟି, ପରିଜ୍ଞାନ ବା ସମସ୍ୟା ସମାଧାନ ମତବାଦ ମଧ୍ୟରେ କେତେ ଗୁଡ଼ିଏ ମୌଳିକ ପାର୍ଥକ୍ୟ ପରିଲକ୍ଷିତ ହୁଏ । ପ୍ରଥମତଃ, ଥର୍ଣ୍ଡାଇକଙ୍କ ପରୀକ୍ଷାରେ ବିରାଡ଼ି ବିକ୍ଷିପ୍ତ ଏବଂ ଉଦ୍ଦେଶ୍ୟହୀନ ଭାବେ ପ୍ରୟାସ କରିଥାଏ । ମାତ୍ର ବିରାଡ଼ିର ବିଫଳ ପ୍ରୟାସ କ୍ରମଶଃ ତାକୁ ସଫଳ କରାଏ । ସେ ଯେଉଁ ପ୍ରୟାସ ଦ୍ୱାରା ସଫଳତା ପ୍ରାପ୍ତି ହୁଏ, ସେହି ପ୍ରୟାସ ଗୁଡ଼ିକ ସୁଚିନ୍ତିତ ସୁସମ୍ବନ୍ଧିତ ଏବଂ ଉଦ୍ଦେଶ୍ୟ ମୂଳକ ହୋଇଥାଏ । ପ୍ରାଣୀ ଯେତେବେଳେ ତା'ର ପୂର୍ବ ଅଭିଜ୍ଞତା ଫଳରେ ସମଗ୍ର ପରିସ୍ଥିତିକୁ ନୂତନ ଭାବେ ଦେଖିବାକୁ ପାଏ, ସେତେବେଳେ ତା' ଆଗରେ ସମସ୍ୟା ସମାଧାନର କୌଶଳଟି ହଠାତ୍ ଉନ୍ମୋଚିତ୍ ହୁଏ ଏବଂ ସେ ସେହିକ୍ଷଣି ତାର ଭୂତପୂର୍ବ ଭ୍ରମାତ୍ମକ ପ୍ରୟାସ ଗୁଡ଼ିକୁ ପରିହାର କରିଥାଏ ।

ମାତ୍ର ସମଗ୍ରାକୃତି **(Gestalt)** ମତବାଦର ପ୍ରବର୍ତ୍ତକମାନେ ଥର୍ଣ୍ଡାଇକଙ୍କ ପରୀକ୍ଷଣ ଦୋଷମୁକ୍ତ ବୋଲି ବିବେଚିତ କରନ୍ତି । କାରଣ, ଗବେଷଣା ଦୃଷ୍ଟିରୁ ଏହାର ଅନ୍ତର୍ଦୃଷ୍ଟି ଦୋଷମୁକ୍ତ ନୁହେଁ । ଥର୍ଣ୍ଡାଇକଙ୍କ ପରୀକ୍ଷଣ ଅନୁଯାୟୀ ଯେଉଁ ନିର୍ଦ୍ଦିଷ୍ଟ କବ୍‌ଜା ଦ୍ୱାରା ପିଞ୍ଜରାର ଦ୍ୱାର ଖୋଲିବ ତାହା ଗୁପ୍ତ ଓ ଅଦୃଶ୍ୟ । ତେଣୁ ବିରାଡ଼ି ତାହାକୁ ଦେଖିବା ଅସମ୍ଭବ । ଏଣୁ ଉକ୍ତ ସମସ୍ୟାର ସମ୍ପୂର୍ଣ୍ଣ ପରିସ୍ଥିତିକୁ ଉତ୍ତମ ରୂପେ ଅବଧାରଣା କରି ଅନ୍ତର୍ଦୃଷ୍ଟି ବା ପରିଜ୍ଞାନ ଦ୍ୱାରା ସମସ୍ୟାର ସମାଧାନ କରିବା ବିରାଡ଼ି ପକ୍ଷରେ ଅସମ୍ଭବ ବ୍ୟାପାର ହୋଇପଡ଼ିବ । ସମଗ୍ରାକୃତି ମତବାଦ ଅନୁସାରେ ଶିକ୍ଷଣ ପ୍ରକ୍ରିୟା ମୂଳରେ ସମଗ୍ର ପରିସ୍ଥିତିର ଅବଧାରଣା ଓ ସଙ୍ଗଠନର ଭୂମିକା ଯଥେଷ୍ଟ ବେଶୀ । କୌଣସି ସମସ୍ୟା ମୂଳକ ପରିସ୍ଥିତିକୁ ସାମୂହିକ ଭାବେ ଏବଂ ତା'ର ବିଭିନ୍ନ

ଅଂଶ ବିଶେଷକୁ ପ୍ରତ୍ୟକ୍ଷ ଭାବେ ପାରିପାର୍ଶ୍ୱିକ ସମ୍ବନ୍ଧଯୁକ୍ତ ଭାବେ ଅନୁଧ୍ୟାନ କରିବା ଦ୍ୱାରା ପରିସ୍ଥିତିରେ ଯେଉଁସବୁ ପୁନର୍ଗଠନ ଏବଂ ବିନ୍ୟାସ ଘଟେ, ତାହାଦ୍ୱାରା ସମାଧାନର ପଥ ସହସା ଉନ୍ମୋଚିତ ହୁଏ ଏବଂ ତାହାହିଁ ଶିକ୍ଷଣ ପଦ୍ଧତି । ଶିକ୍ଷା କ୍ଷେତ୍ରରେ ପ୍ରତ୍ୟକ୍ଷ ଉପଲବ୍ଧି ଜନିତ ଅବଧାରଣ (Perceptual Comprehension) ପଦ୍ଧତି ପ୍ରତ୍ୟକ୍ଷ ଉପଲବ୍ଧି କ୍ଷେତ୍ରରେ ଦେଖାଯାଏ, ଯେ କୌଣସି ବିଷୟ ବସ୍ତୁରେ ଯଦି ଅସମ୍ପୂର୍ଣ୍ଣତା ପରିଲକ୍ଷିତ ହୁଏ, ତେବେ ଆମେ ତାକୁ ଅଗ୍ରାହ୍ୟକରି ସେହି ବିଷୟଟିକୁ ସମ୍ପୂର୍ଣ୍ଣ ଆକୃତି ଗ୍ରହଣ କରିଥାଉ । ଠିକ୍ ସେହିପରି ଶିକ୍ଷଣ କ୍ଷେତ୍ରରେ ମଧ୍ୟ ଆମେ ଅସମ୍ପୂର୍ଣ୍ଣତାକୁ ଅଗ୍ରାହ୍ୟ କରି ତାକୁ ସମଗ୍ର ଭାବେ ଗ୍ରହଣ କରୁ । କୋହ୍ଲରଙ୍କ ପରୀକ୍ଷାରୁ ଏହା ସ୍ପଷ୍ଟ ଅନୁମେୟ । ପିଞ୍ଜରାବଦ୍ଧ କ୍ଷୁଧାର୍ତ୍ତ ସିମ୍ପାଞ୍ଜି କେତେଗୁଡ଼ିଏ ବିଫଳ ପ୍ରୟାସ ପରେ ଦୁଇଖଣ୍ଡ ବାଉଁଶକୁ ଯୋଡ଼ି କଦଳୀ ଆଣି ହେବ ବୋଲି ଜାଣିବାପରେ ସେ ତା'ର ପ୍ରୟାସରେ ସଫଳ ହେଲା । ଉକ୍ତ ସ୍ଥାନରେ ପିଞ୍ଜରା ମଧ୍ୟରେ ସିମ୍ପାଞ୍ଜିର ଅବସ୍ଥିତି । ତା'ଉପରେ ଝୁଲୁଥିବା କଦଳୀର ଅବସ୍ଥିତି ଏବଂ ବାଉଁଶ ଦୁଇ ଖଣ୍ଡକୁ ଯୋଡ଼ିବା ଦ୍ୱାରା ଏହାର ବ୍ୟବଧାନ କମିଯିବା ଏସବୁ ପରିସ୍ଥିତି ସିମ୍ପାଞ୍ଜିର ପରିଜ୍ଞାନ ବା ଅନ୍ତର୍ଦୃଷ୍ଟି ଦ୍ୱାରା ସମ୍ଭବ ହେଲା ଓ ତାର ଶିକ୍ଷଣ ଫଳପ୍ରସୂ ହେଲା । ଉକ୍ତମତେ ଥର୍ଣ୍ଡାଇକଙ୍କ ସଂଯୋଗବାଦ ବା ଆୟାସ ଓ ଭ୍ରମ ସଂଶୋଧନବାଦ ଏବଂ ଅନ୍ତର୍ଦୃଷ୍ଟି ମତବାଦ ମଧ୍ୟରେ ପାର୍ଥକ୍ୟ ପରିଦୃଷ୍ଟ ହୁଏ ।

**ଅନ୍ତର୍ଦୃଷ୍ଟି ତତ୍ତ୍ୱର ଶିକ୍ଷାଗତ ସୂଚନା (Educational Implication of Learning through insight) :**

ଶିକ୍ଷାବିତ୍ ଓ ମନସ୍ତତ୍ତ୍ୱବିତ୍‌ମାନଙ୍କ ମତାନୁସାରେ ଶିକ୍ଷଣ ଗତି ଦୃଷ୍ଟିରୁ ଅନ୍ୟ ଶିକ୍ଷଣ ତତ୍ତ୍ୱ ଅପେକ୍ଷା ଅନ୍ତର୍ଦୃଷ୍ଟି ମୂଳକ ଶିକ୍ଷଣ ତତ୍ତ୍ୱର ଭୂମିକା ବେଶ ଗୁରୁତ୍ୱପୂର୍ଣ୍ଣ । ଶିକ୍ଷଣ ପ୍ରକ୍ରିୟାକୁ ଏହା କିପରି ଭାବେ ପ୍ରଭାବିତ କରେ ତାହା ନିମ୍ନମତେ ଆଲୋଚିତ ହେଲା ।

**(୧) ପ୍ରବର୍ତ୍ତନା ବା ପ୍ରବେଗନାର ସୃଷ୍ଟି (Creation of Motivation) :**—ମନସ୍ତତ୍ତ୍ୱବିଦ୍ କୋହ୍ଲରଙ୍କ ମତାନୁଯାୟୀ ସୁଲ୍‌ତାନ ନାମ୍ନୀ ସିମ୍ପାଞ୍ଜି କ୍ଷୁଧାର୍ତ୍ତ ଥିବା ଯୋଗୁଁ ହିଁ ଖାଦ୍ୟ ଆହରଣ ନିମିତ୍ତ ତା ମନ ମଧ୍ୟରେ ପ୍ରବର୍ତ୍ତନା ବା ଅନ୍ତଃପ୍ରେରଣା ସୃଷ୍ଟି ହେଲା । ପ୍ରବଳ କ୍ଷୁଧା ଯୋଗୁଁ ସେ ଖାଦ୍ୟ ନିମିତ୍ତ ଅଧିକ ବ୍ୟଗ୍ର ହୋଇ ପଡ଼ିଥିଲା ଏବଂ ଏହି ବ୍ୟଗ୍ରତା ତାକୁ ଖାଦ୍ୟ ପାଇପାରିବା ନିମିତ୍ତ ଚେଷ୍ଟା କରିବାକୁ ପ୍ରେରଣା ଯୋଗାଇ ଦେଇଥିଲା । ସେହିପରି ଶିକ୍ଷଣ ନିମିତ୍ତ ଛାତ୍ର ମଧ୍ୟରେ ବ୍ୟଗ୍ରତା ସୃଷ୍ଟି କରିବା ଶିକ୍ଷକଙ୍କର ପ୍ରଧାନ କର୍ତ୍ତବ୍ୟ ହେବା ବାଞ୍ଛନୀୟ । ଶିକ୍ଷା ନିମିତ୍ତ ଛାତ୍ର ମନରେ ପ୍ରବର୍ତ୍ତନା ବା ପ୍ରବେଗନା (Motivation) ସୃଷ୍ଟି ଏକ ପ୍ରଧାନ ବିଷୟବସ୍ତୁ ।

**(୬) ସମଗ୍ରରୁ ଆରମ୍ଭ କରି ଅଂଶ ବିଶେଷକୁ ଅଗ୍ରସର ହେବା । (Proceeding from whole to the Part) :—**ଉକ୍ତ ମତାନୁଯାୟୀ ଶିକ୍ଷଣ ପ୍ରକ୍ରିୟା ସମଗ୍ର ବିଷୟବସ୍ତୁ ବା ପରିସ୍ଥିତିରୁ ବିଭିନ୍ନ ଅଂଶ ଆଡ଼କୁ ଅଗ୍ରସର ହେବା ବାଞ୍ଛନୀୟ । ସମଗ୍ର ବିଷୟ ବସ୍ତୁ ଶିକ୍ଷା ଦେବା ଦ୍ୱାରା ଶିଶୁ ମନରେ ତା'ର ଏକ ସମ୍ପୂର୍ଣ୍ଣ ଧାରଣା ସୃଷ୍ଟି ହେବା ସମ୍ଭବ ହୁଏ । ଉଦାହରଣ ସ୍ୱରୂପ—ଭୂଗୋଳ ଶିକ୍ଷାଦାନ ସମୟରେ ପ୍ରଥମେ ସୌର ଜଗତରୁ ଆରମ୍ଭ କରି ପୃଥିବୀ, ମହାଦେଶ, ଦେଶ, ରାଷ୍ଟ୍ର, ସହର, ଗ୍ରାମ ଇତ୍ୟାଦି ବିଭିନ୍ନ ଅଂଶ ସମ୍ପର୍କରେ ଶିକ୍ଷା ଦିଆଯିବା ଗ୍ରହଣୀୟ । ସେହିପରି ମାତୃଭାଷା ଶିକ୍ଷା ଦେବାବେଳେ ପ୍ରଥମେ ସମଗ୍ର ବାକ୍ୟ ଓ ପରେ ପରେ ବାକ୍ୟସ୍ଥ ବିଭିନ୍ନ ଶବ୍ଦ ଓ ଅକ୍ଷର ଇତ୍ୟାଦି ସମ୍ପର୍କରେ ଶିକ୍ଷା ଦିଆଯିବା ଉଚିତ୍ ।

**ବୋଧ ଶକ୍ତିରେ ଗୁରୁତ୍ୱ ଆରୋପ (Emphassis on Understanding) :**

ଯାନ୍ତ୍ରିକ ଭାବେ ପୁନରାବୃତ୍ତି ଓ ମୁଖସ୍ଥ କରିବା (Learning by note) ବା ଆୟାସ ଓ ଭ୍ରମ ସଂଶୋଧନ ମାଧ୍ୟମରେ ଶିକ୍ଷା ଲାଭ କରିବା ଉଚ୍ଚତର ଶିକ୍ଷା କ୍ଷେତ୍ରରେ ଅନାବଶ୍ୟକ ବିବେଚିତ ହୁଏ । ତେଣୁ ସମସ୍ୟା ସମାଧାନ ନିମିତ୍ତ ଅନ୍ତର୍ଦୃଷ୍ଟିର ଆବଶ୍ୟକତା ଜାଗ୍ରତ କରାଇବା ଆବଶ୍ୟକ ହୋଇଥାଏ । ସମସ୍ୟା ବା ବିଜ୍ଞାନ ସମ୍ବନ୍ଧୀୟ ଯେ କୌଣସି କ୍ଷେତ୍ରରେ ଅନ୍ତର୍ଦୃଷ୍ଟି ମାଧ୍ୟମରେ ଶିକ୍ଷଣ ଦ୍ୱାରା ସମୟ ଓ ଶକ୍ତିର ଅପଚୟ ଘଟି ନଥାଏ ।

ତେବେ ଅନ୍ତର୍ଦୃଷ୍ଟି ମାଧ୍ୟମରେ ଶିକ୍ଷଣ ବୁଦ୍ଧିହୀନ ତଥା କ୍ଷୀଣ ବୁଦ୍ଧିଯୁକ୍ତ ଶିଶୁଙ୍କ ପାଇଁ ସେତେ ଫଳପ୍ରଦ ହୋଇ ନଥାଏ । ସେମାନେ ପ୍ରମାଦ ତତ୍ତ୍ୱ ମାଧ୍ୟମରେ ଶୀଘ୍ର ଶିକ୍ଷା ଲାଭ କରିବାକୁ ସକ୍ଷମ ହୋଇଥାନ୍ତି । ଏତଦ୍‌ବ୍ୟତୀତ କେତେଗୁଡ଼ିଏ କଠିନ ସମସ୍ୟାର ସମାଧାନ ଅନ୍ତର୍ଦୃଷ୍ଟି ମାଧ୍ୟମରେ ସମ୍ଭବ ପର ହେଲେ ହେଁ ଅତି ଜଟିଳ ଓ ଦୁର୍ବୋଧ ସମସ୍ୟା ଗୁଡ଼ିକର ସମାଧାନ ବ୍ୟକ୍ତିର ଏତାଦୃଶ ସାଧାରଣ ବୋଧଶକ୍ତି ଓ ଅନ୍ତର୍ଦୃଷ୍ଟି ଦ୍ୱାରା ଅସମ୍ଭବ ହୋଇଥାଏ ।

ଉକ୍ତ ଦୃଷ୍ଟି ସତ୍ତ୍ୱେ ବିଦ୍ୟାଳୟରେ ଅନ୍ତର୍ଦୃଷ୍ଟି ମାଧ୍ୟମରେ ଶିକ୍ଷା ମୂଲ୍ୟହୀନ ହୋଇ ନଥାଏ । ଶିକ୍ଷକ ଶିକ୍ଷାର୍ଥୀମାନଙ୍କୁ ବିଭିନ୍ନ ସମସ୍ୟା ସମାଧାନର ପନ୍ଥା ଆବିଷ୍କାର ନିମିତ୍ତ ଆବଶ୍ୟକୀୟ ପ୍ରରୋଚନା ଦେବା ସର୍ବାଦୌ ବିଧେୟ । ଶିକ୍ଷକ ଶିକ୍ଷା ଦାନ ବେଳେ କେବଳ ସଙ୍କଳିତ ଜ୍ଞାନ ପ୍ରଦାନ ନକରି ସମସ୍ୟା ସମାଧାନ ନିମିତ୍ତ ପନ୍ଥା ଅନୁସନ୍ଧାନ କରିବା ପାଇଁ ସେମାନଙ୍କୁ ଉତ୍ସାହିତ କରାଇବା ଉଚିତ୍ । ଅନୁସନ୍ଧାନ ଦ୍ୱାରା କିପରି ସମସ୍ୟା ସମାଧାନ କରାଯାଇ ପାରିବ ଓ ସେମାନଙ୍କପରି ଜ୍ଞାନ ଆହରଣ କରିବାକୁ ସମର୍ଥ ହେବେ ସେଥିପ୍ରତି ସତର୍କ ଦୃଷ୍ଟି ରଖିବା ଶିକ୍ଷକଙ୍କର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ହେବା ବାଞ୍ଛନୀୟ ।"

## ଅନୁବନ୍ଧିତ ଅନୁକ୍ରିୟା (Conditional Response Theory) :

ବହୁ ମନସ୍ତତ୍ତ୍ୱବିଦ୍ ଶିକ୍ଷଣ କ୍ଷେତ୍ରରେ ଜୀବନ ବଞ୍ଚନ ସମ୍ବନ୍ଧୀୟ ତତ୍ତ୍ୱମାନ ପ୍ରବର୍ତ୍ତନ କରିଛନ୍ତି । ସେମାନେ ମତ ଦାନ କରନ୍ତି ଯେ, ଶିକ୍ଷଣ ପ୍ରକ୍ରିୟା ଏକ ଜୀବନ ବଞ୍ଚନ ସମ୍ବନ୍ଧୀୟ ଅନୁଭୂତ । ସେମାନେ ବିଶ୍ୱାସ କରନ୍ତି ଯେ, ଶିକ୍ଷଣ କ୍ରିୟାର ପ୍ରଭାବ ଦ୍ୱାରା ଆମ ବ୍ୟବହାରରେ ଯେଉଁ ସବୁ ପରିବର୍ତ୍ତନ ପରିଦୃଷ୍ଟ ହୁଏ, ତାହା ମୁଖ୍ୟ ସ୍ନାୟବିକ ପ୍ରଣାଳୀରେ ହିଁ ସଙ୍ଗଠିତ ହୋଇଥାଏ । ଶିକ୍ଷଣ ଏବଂ ସ୍ନାୟବିକ ପ୍ରଣାଳୀ ମଧ୍ୟରେ ଥିବା ସମ୍ପର୍କକୁ ସ୍ପଷ୍ଟରୂପେ ଜାଣିବା ନିମିତ୍ତ ସେମାନେ ବହୁପ୍ରକାର ପରୀକ୍ଷା ନିରୀକ୍ଷା କରିଥିଲେ । ଏହି ମନସ୍ତତ୍ତ୍ୱବିତ୍‌ମାନ ବ୍ୟବହାରବାଦୀ (Behaviourist) ଗୋଷ୍ଠୀଭୁକ୍ତ କରାଯାଇଥାଏ । ଏହି ବ୍ୟବହାରବାଦୀମାନଙ୍କ ମଧ୍ୟରେ ଜନ୍ ବ୍ରୋଡ୍‌ସ୍ ଓ୍ୱାଟସନ୍ (Jonn Broaddus Watson), ମାକ୍ସ ମେୟର (Max Mayer), ଡବ୍ଲ୍ୟୁ. ଏସ୍. ହଣ୍ଟର (W. S. Hunter) ଏ. ପି. ୱଇସ୍ (A. P. Weiss), କେ. ଏସ୍. ଲସିଲ. (K. S. Lashly), ବି. ଏଫ୍ ସ୍କିନର (B. F. Skinner), ସି. ଏଲ୍. ହଲ (C. L. Hall), ଇ. ସି. ଟଲ୍‌ମ୍ୟାନ (E. C. Tolman) ଏବଂ ପାଭଲଭ (Pavlov) ଅନ୍ୟତମ । ରୁଷିଆର ବିଶିଷ୍ଟ ଶରୀର ତତ୍ତ୍ୱବିତ୍ ତଥା ବ୍ୟବହାରବାଦୀ ଇଭାନ୍ ପାଭଲଭ୍ (୧୯୨୮) ଅନୁବନ୍ଧିତ କ୍ରିୟାଦ୍ୱାରା ପ୍ରଥମେ ଶିକ୍ଷଣର ପ୍ରକୃତି ସମ୍ବନ୍ଧରେ ପରୀକ୍ଷଣ କରି ମତ ଦାନ କରିଥିଲେ । ତାହା ନିମ୍ନରେ ଆଲୋଚନା କରାଗଲା ।

ପରୀକ୍ଷଣରୁ ଆଲୋଚନା କରିବା ପୂର୍ବରୁ ଅନୁବନ୍ଧିତ କ୍ରିୟା ଅର୍ଥ ଜାଣିବା ଏକାନ୍ତ ଆବଶ୍ୟକ । କୌଣସି ବାହ୍ୟ ଉଦ୍ଦୀପକ ପ୍ରୟୋଗ ହେବାକ୍ଷଣି ଆମମାନଙ୍କର ଶରୀର ସ୍ୱତଃ ପ୍ରତିକ୍ରିୟା ପ୍ରଦର୍ଶନ କରେ । ମାତ୍ର ଯେତେବେଳେ ଏହି ସ୍ୱତଃଶୀଳ ପ୍ରତିକ୍ରିୟା ଇଚ୍ଛାଧୀନ ହୋଇନଥାଏ ଏହାକୁ ସେତେବେଳେ ପ୍ରତ୍ୟାବର୍ତ୍ତୀ କ୍ରିୟା ରୂପେ ଅଭିହିତ କରାଯାଏ । ଉଦାହରଣ ସ୍ୱରୂପ :—କୌଣସି ସ୍ଥାନକୁ ମଶା, ପୋକ, ପିମ୍ପୁଡ଼ି କ କଣ କାମୁଡ଼ିଦେଲେ ହାତଟା ହଠାତ୍ ସେହି ସ୍ଥାନକୁ ଚାଲିଯାଏ । ସେହିପରି କୌଣସି ଉତ୍ତପ୍ତ ପଦାର୍ଥ ସଂସ୍ପର୍ଶରେ ହାତ ବା ଗୋଡ଼ ଆସିଲେ ତତ୍‌କ୍ଷଣାତ୍ ଆମେ ସଙ୍କୁଚିତ ସେହି ଇନ୍ଦ୍ରିୟକୁ କରିଥାଉ । ଏହି କାର୍ଯ୍ୟ ବା ପ୍ରତିକ୍ରିୟା ବ୍ୟକ୍ତିର ଇଚ୍ଛାଧୀନ ବା ଆୟତ୍ତାଧୀନ ନୁହେଁ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, କୌଣସି ବାହ୍ୟ ଉଦ୍ଦୀପକ (External Stimulus) ସହିତ ଶରୀରର କୌଣସି ନିର୍ଦ୍ଦିଷ୍ଟ ଇନ୍ଦ୍ରିୟର ସମ୍ପର୍କ ସ୍ଥାପନ ଫଳରେ ଉପଯୁକ୍ତ ପ୍ରତିକ୍ରିୟା ପରିଦୃଷ୍ଟ ହୋଇଥାଏ । ଏହି କ୍ଷେତ୍ରରେ ପ୍ରତ୍ୟେକ ଉଦ୍ଦୀପକ ଏକ ସ୍ୱତନ୍ତ୍ର ଧରଣର ପ୍ରତିକ୍ରିୟା ସୃଷ୍ଟି କରିଥାଏ । ମାତ୍ର ପ୍ରକୃତ ପ୍ରତିକ୍ରିୟାର ରୂପାନ୍ତରୀକରଣ ଦ୍ୱାରା ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୁଏ ତାହାକୁ ଅନୁବନ୍ଧିତ ଅନୁକ୍ରିୟା ରୂପେ ଅଭିହିତ କରାଯାଏ । ସାଧାରଣତଃ ଯେ କୌଣସି ପ୍ରକୃତ ଉଦ୍ଦୀପକ ବ୍ୟକ୍ତିଠାରେ

ଏକ ନିର୍ଦ୍ଦିଷ୍ଟ ପ୍ରତିକ୍ରିୟା ଜାତ କରାଯାଇଥାଏ । ମାତ୍ର ପ୍ରକୃତ ଉଦ୍ଦୀପକ ପରିବର୍ତ୍ତେ ଏକ ଅପ୍ରକୃତ ବା ସାପେକ୍ଷ ଉଦ୍ଦୀପକ ବ୍ୟବହାର କରାଯାଇ ଏହାଦ୍ୱାରା ମଧ୍ୟ ପ୍ରକୃତ ପ୍ରତିକ୍ରିୟା ଉଦ୍ରେକ କରାଯାଇ ପାରୁଛି । ଏହି ସଂପର୍କୀୟ ତତ୍ତ୍ୱର ଯଥାର୍ଥତା ପରୀକ୍ଷଣ-ଦ୍ୱାରା ଇଭାନ୍ ପାଭଲଭ୍ ପ୍ରତିପାଦନ କରିଥିଲେ । ପାଭଲଭ୍‌ଙ୍କ ନିମ୍ନ ପରାମର୍ଶରୁ ଏହି ସାପେକ୍ଷ ପ୍ରତିବର୍ତ୍ତିବାଦ ବା ଅନୁବନ୍ଧିତ ଅନୁକ୍ରିୟା ସମ୍ପର୍କରେ ସ୍ପଷ୍ଟ ଧାରଣା ଆଣିଦେବ ।

## କୁକୁର ଉପରେ ପାଭଲଭ୍‌ଙ୍କ ପରୀକ୍ଷା (Pavlov's Experiment on Dog) :

ଇଭାନ୍ ପାଭ୍‌ଲଭ୍ ୧୯୦୩ ମସିହାରେ ଉଦ୍ଦୀପକ ଓ ପ୍ରତିକ୍ରିୟା କିଭଳି ପରସ୍ପର ସହ ସଂଶ୍ଳିଷ୍ଟ ତାହା ପ୍ରଥମେ ପରୀକ୍ଷା କରିଥିଲେ । ସେ ତାଙ୍କର ପରୀକ୍ଷା କୁକୁରକୁ ନେଇ କରିଥିଲେ । କୁକୁରର ପରିପାକ ପ୍ରଣାଳୀକୁ ନିରୀକ୍ଷଣ କଲାବେଳେ ସେ ପର୍ଯ୍ୟବେକ୍ଷଣ କଲେ ଯେ, କୁକୁର କେବଳ ଖାଦ୍ୟର ଉପସ୍ଥିତିରେ ଯେ ଲାଳ ନିଃସରଣ କରୁଛି ତା ନୁହେଁ ଖାଦ୍ୟ ଦେବା ପୂର୍ବରୁ ସେ ଖାଦ୍ୟ ବାହକର ପାଦ ଶବ୍ଦ ଓ ଅନ୍ୟାନ୍ୟ ଉଦ୍ଦୀପକ ଦ୍ୱାରା ପ୍ରଭାବିତ ହୋଇ ମଧ୍ୟ ଲାଳ ନିଃସରଣ କରୁଛି । ଏହି ପ୍ରକାର ଉଦ୍ଦୀପକ ପ୍ରତି ଲାଳ ନିଃସରଣକୁ ପାଭଲଭ୍ "ମାନସିକ ନିଃସରଣ" (Psychic Secnetion) ରୂପେ ନାମିତ କରିଥିଲେ ।

ବୈଜ୍ଞାନିକ ପାଭଲଭ୍ ଏହି ପରୀକ୍ଷଣ କରିବା ନିମିତ୍ତ ଗୋଟିଏ କୁକୁରକୁ ଏକ ଶବ୍ଦ ପ୍ରବେଶ କରିପାରୁ ନଥିବା କୋଠରୀରେ ରଖିଥିଲେ । ଉକ୍ତ କୋଠରୀରେ ଗୋଟିଏ ଗ୍ଲେଜ୍ ଝରକା ଥିଲା । ଯାହାଦ୍ୱାରା କୋଠରୀ ବାହାରୁ ଭିତରକୁ ନିରୀକ୍ଷଣ କରିବା ସୁବିଧା-ଜନକ ଥିଲା । ପାଭଲଭ୍ କୁକୁରଟିକୁ ମାଂସ ଦେଇ ଲକ୍ଷ୍ୟ କରିଥିଲେ ଯେ, ମାଂସ ଦେଖିବା ମାତ୍ରେ ତା' ପାଟିରୁ ସ୍ୱତଃ ଲାଳ ନିଃସୃତ ହେଉଅଛି । ଲାଳ ନିଃସୃତ ହେବା ଏକ ସ୍ୱାଭାବିକ ଓ ପ୍ରାକୃତିକ ପ୍ରତିକ୍ରିୟା । ତେଣୁ ଉକ୍ତ ପ୍ରତିକ୍ରିୟାକୁ ପ୍ରତିବର୍ତ୍ତ କ୍ରିୟାରୂପେ ମଧ୍ୟ ଅଭିହିତ କରାଯାଏ । ଖଟା ଦେଖିଲେ ପିଲାଙ୍କ ପାଟିରୁ ଯେପରି ଲାଳ ବାହାରେ ସେହିପରି ମାଂସ ଦେଖିବା ଦ୍ୱାରା କୁକୁର ପାଟିରୁ ଲାଳ ନିସୃତ ହେବା ସ୍ୱାଭାବିକ୍ କଥା । ମାତ୍ର ପାଭ୍‌ଲଭ୍ ପ୍ରତ୍ୟେକ ଥର ମାଂସ ଦେବା ପୂର୍ବରୁ ଏକ ଘଣ୍ଟି ବଜାଉଥିଲେ । ଏହି ପ୍ରକ୍ରିୟାର ପୁନରାବୃତ୍ତି ଫଳରେ ଘଣ୍ଟି ଶବ୍ଦ ଓ ମାଂସ ମଧ୍ୟରେ ସଂଯୋଗ ସ୍ଥାପନ ହେଲା । ଫଳରେ ଘଣ୍ଟି ଶବ୍ଦ ସହିତ କୁକୁରଟି ସଂଶ୍ଳିଷ୍ଟ ହୋଇଗଲା ଓ ସେ ଶବ୍ଦ ପରେ ତାକୁ ଖାଦ୍ୟ ଦିଆଯାଉଛି ଏହା ମଧ୍ୟ ଜାଣିଲା । ଏହାପରେ ପାଭ୍‌ଲଭ୍ କେବଳ ଘଣ୍ଟି ବଜାଇଲେ ମାତ୍ର ମାଂସ ଦେଲେ ନାହିଁ । କିନ୍ତୁ ଏଥରକ ବି ସେ ଲକ୍ଷ୍ୟ କଲେ ଯେ, ମାଂସ ଦିଆ ନଯିବା ସତ୍ତ୍ୱେ ଘଣ୍ଟିର ଶବ୍ଦ ଶୁଣିବା ସଙ୍ଗେ ସଙ୍ଗେ କୁକୁର ପାଟିରୁ ଲାଳ ନିଃସୃତ ହେଲା । ଅର୍ଥାତ୍ ଏହି ଲାଳ ନିଃସୃତ ହେବା ପ୍ରତିକ୍ରିୟା ନିମିତ୍ତ ପ୍ରକୃତ ଉଦ୍ଦୀପକ (ମାଂସ) ପରିବର୍ତ୍ତେ ଅପ୍ରକୃତ ଉଦ୍ଦୀପକ (ଘଣ୍ଟି ଶବ୍ଦ) କୁକୁରଠାରେ ଲାଳ ନିଃସରଣ କରିବାକୁ

ସକ୍ଷମ ହୋଇପାରନ୍ତି । ଏଠାରେ ମାଂସ ପ୍ରକୃତ ଉଦ୍ଦୀପକ ଓ କୁକୁର ଲାଳ ନିଃସୃତ ହେବା ପ୍ରତିକ୍ରିୟାର ପ୍ରଧାନ କାରଣ । ଏହା ସ୍ୱାଭାବିକ ସ୍ଥିତିରେ କୁକୁରଠାରେ ପ୍ରତିକ୍ରିୟା ସୃଷ୍ଟି କରିଥାଏ । ଅନ୍ୟ ପକ୍ଷରେ ଘଣ୍ଟି ଶବ୍ଦ ଅପ୍ରକୃତ ବା ଅନୁବନ୍ଧିତ ଉଦ୍ଦୀପକ । ମାତ୍ର ପ୍ରକୃତ ଉଦ୍ଦୀପକର ଅନୁପସ୍ଥିତିରେ ଏହି ଅପ୍ରକୃତ ଉଦ୍ଦୀପକ ପ୍ରତିକ୍ରିୟା ଜନ୍ମାଇବାରେ ସକ୍ଷମ ହୋଇପାରନ୍ତି । ତେଣୁ ଯେତେବେଳେ ପ୍ରକୃତ ଉଦ୍ଦୀପକର ଅନୁପସ୍ଥିତିରେ ଅନ୍ୟ ଏକ ଅପ୍ରକୃତ ଉଦ୍ଦୀପକ ଦ୍ୱାରା ପ୍ରାକୃତିକ ବା ସ୍ୱାଭାବିକ ପ୍ରତିକ୍ରିୟା ସୃଷ୍ଟି କରାଯାଇପାରେ ସେତେବେଳେ ସେହି ଉଦ୍ଦୀପକକୁ ଅନୁବନ୍ଧିତ ଉଦ୍ଦୀପକ ରୂପେ ଅଭିହିତ କରାଯାଏ । ନୂତନ ଉଦ୍ଦୀପକ ସହିତ ପ୍ରାକୃତିକ ପ୍ରତିକ୍ରିୟାର ସମ୍ପର୍କ ପ୍ରତିଷ୍ଠାପରେ ପ୍ରାକୃତିକ ପ୍ରତିକ୍ରିୟାକୁ ଅନୁବନ୍ଧିତ ପ୍ରତିକ୍ରିୟା ବା ଅନୁବନ୍ଧିତ ଅନୁକ୍ରିୟା କୁହାଯାଇଥାଏ ।

**ପାଭଲଭଙ୍କ ତତ୍ତ୍ୱ ବୁଝିବା ନିମିତ୍ତ ସୂତ୍ର :**

ପାଭଲଭ୍‌ଙ୍କ ବର୍ଣ୍ଣିତ ପରୀକ୍ଷାଟିର ସିଦ୍ଧାନ୍ତ ଅନୁଯାୟୀ ପ୍ରାକୃତିକ ଉଦ୍ଦୀପକ, ପ୍ରାକୃତିକ ବା ସ୍ୱାଭାବିକ ପ୍ରତିକ୍ରିୟା ଅନୁବନ୍ଧିତ ଉଦ୍ଦୀପକ ଓ ଅନୁବନ୍ଧିତ ପ୍ରତିକ୍ରିୟା ଇତ୍ୟାଦି ମଧ୍ୟରେ କିଭଳି ସମ୍ପର୍କ ସ୍ଥାପିତ ହୁଏ ତାହା ନିମ୍ନଲିଖିତ ସୂତ୍ରରୁ ସ୍ପଷ୍ଟ ଅନୁମେୟ ।

| ପରିବେଷ୍ଟନୀ | ସ୍ୱାଭାବିକ ଉଦ୍ଦୀପକ | ଅପ୍ରକୃତ ବା ଅନୁବନ୍ଧିତ ଉଦ୍ଦୀପକ | ସ୍ୱାଭାବିକ ପ୍ରତିକ୍ରିୟା | ଅପ୍ରକୃତ ବା ଅନୁବନ୍ଧିତ ପ୍ରତିକ୍ରିୟା |
|---|---|---|---|---|
| ୧ । ସମ୍ପର୍କ ପ୍ରତିଷ୍ଠା ପୂର୍ବରୁ | ସ୍ୱାଭାବିକ ବା ଅପ୍ରକୃତ ଉଦ୍ଦୀପକ (U.C.S) ଖାଦ୍ୟ | | ଲାଳ ନିଃସରଣ (U.C.R.) ସ୍ୱାଭାବିକ ପ୍ରତିକ୍ରିୟା | |
| ୨ । ସମ୍ପର୍କ ପ୍ରତିଷ୍ଠା ପୂର୍ବରୁ | ଅସ୍ୱାଭାବିକ ଉଦ୍ଦୀପକ (U.C.S.) ଘଣ୍ଟା | ଘଣ୍ଟି ଶବ୍ଦ | ପ୍ରତିକ୍ରିୟା ଶୂନ୍ୟ (No response) | |
| ୩ । ସମ୍ପର୍କ ପ୍ରତିଷ୍ଠା ସମୟରେ | ସ୍ୱାଭାବିକ ଉଦ୍ଦୀପକ (U.C.S) ଖାଦ୍ୟ | ତତ୍ସଙ୍ଗେ ସଙ୍ଗେ ଘଣ୍ଟି ଶବ୍ଦ ଅପ୍ରକୃତ ଉଦ୍ଦୀପକ | ଲାଳ ନିଃସରଣ (ସ୍ୱାଭାବିକ ପ୍ରତିକ୍ରିୟା) | |
| ୪ । ସମ୍ପର୍କ ସ୍ଥାପନ ପରେ | ............ | ଅନୁବନ୍ଧିତ ଉଦ୍ଦୀପକ (C.S.) ଘଣ୍ଟି ଶବ୍ଦ | ଲାଳ ନିଃସରଣ (C.R.) (ସ୍ୱାଭାବିକ ପ୍ରତିକ୍ରିୟା ଅର୍ଥାତ୍ ଅନୁବନ୍ଧିତ ପ୍ରତିକ୍ରିୟା) | |

S--Stimulus (ଉଦ୍ଦୀପକ)

R -Response (ପ୍ରତିକ୍ରିୟା)

CS -Conditioned Stimulus (ସାପେକ୍ଷିକ ଉଦ୍ଦୀପକ)

CR—Conditioned Response(ସାପେକ୍ଷିକ ପ୍ରତିକ୍ରିୟା)

UCS—Unconditioned Stimulus (ଅସାପେକ୍ଷିକ ଉଦ୍ଦୀପକ)

UCR—Unconditioned Response (ଅସାପେକ୍ଷିକ ପ୍ରତିକ୍ରିୟା)

**ୱାଟସନ୍‌ଙ୍କ ପରୀକ୍ଷା (Watson's Rabbit baby Experiment) :**

ୱାଟସନ୍ ଗୋଟିଏ ମାନବଶିଶୁକୁ ନେଇ ଉକ୍ତ ପରୀକ୍ଷା ଚଳାଇଥିଲେ । ଅନୁବନ୍ଧିତ କ୍ରିୟା ସମ୍ବନ୍ଧୀୟ ତତ୍ତ୍ୱ ନିର୍ଦ୍ଧାରଣ ନିମିତ୍ତ ସେ ଗୋଟିଏ ଠେକୁଆକୁ ନେଇ ଓ ଶିଶୁକୁ ନେଇ ତାଙ୍କ ଗବେଷଣା ଚଳାଉଥିଲେ । ସାଧାରଣତଃ ଶିଶୁମାନେ କୌତୁକିଆ ଓ ଚିତ୍ତାକର୍ଷକ ବସ୍ତୁ ବା ପ୍ରାଣୀ ଦେଖିଲେ ତାକୁ ଧରି ଖେଳିବାକୁ ଇଚ୍ଛା କରିଥାନ୍ତି । ଶିଶୁକୁ ପ୍ରଥମେ ୱାଟସନ୍ ଠେକୁଆଟି ଦେଲେ । ଶିଶୁ ଠେକୁଆଟିକୁ ସ୍ପର୍ଶ କରି ତା'ର କୋମଳ ଲୋମଦ୍ୱାରା ଆନନ୍ଦିତ ହୁଏ । ଶିଶୁ ତେଣୁ ଠେକୁଆକୁ ଧରି ଖେଳିବାକୁ ଲାଗିଲା । ମାତ୍ର ପରୀକ୍ଷା ସମୟରେ ଶିଶୁଟି ଠେକୁଆକୁ ସ୍ପର୍ଶ କରି ଖେଳିବାବେଳେ ଏକ ଜୋର୍ ଶବ୍ଦ କରାଗଲା ଯାହାଦ୍ୱାରା ଶିଶୁ ଭୟଭୀତ ହୋଇପଡ଼ିଲା । ଏହି ଜୋର୍ ଶବ୍ଦ କରିବା କାର୍ଯ୍ୟ ବାରମ୍ବାର ହେବା ଫଳରେ ଶିଶୁଟି ଭୟଭୀତ ହେଲା । ଏହି ପ୍ରକ୍ରିୟା ଶିଶୁଟି ଠେକୁଆ ସହିତ ଖେଳିବାକୁ ଆରମ୍ଭ କରିବା ସଙ୍ଗେ ସଙ୍ଗେ କରାଗଲା । ଫଳତଃ ଦେଖାଗଲା ଯେ, ଶିଶୁଟି ସେ ଶବ୍ଦ ସହିତ ଏପରି ସମ୍ପର୍କିତ ହୋଇଗଲା ଯେ, ସେ ବିନା ଶବ୍ଦରେ ମଧ୍ୟ ଠେକୁଆ ଦେଖିବା ମାତ୍ରେ ଭୟଭୀତ ହୋଇଗଲା ।

**ଶିକ୍ଷାକ୍ଷେତ୍ରରେ ଅନୁବନ୍ଧିତ କ୍ରିୟାର ବ୍ୟବହାର :**

ଶିକ୍ଷା କ୍ଷେତ୍ରରେ ଅନେକ ବିଷୟରେ ଅନୁବନ୍ଧିତ କ୍ରିୟାର ଉପଯୋଗିତା ରହିଛି । ଉଚ୍ଚ ଶିକ୍ଷା କ୍ଷେତ୍ରରେ ଏହି ତତ୍ତ୍ୱର ଉପାଦେୟତା ଓ ଆବଶ୍ୟକତା ପ୍ରାୟ ନାହିଁ କହିଲେ ଚଳେ । ମାତ୍ର ଶୈଶବାବସ୍ଥାରେ ଓ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଏହାର ଭୂମିକା ସର୍ବଜନ ସ୍ୱୀକାର୍ଯ୍ୟ । ଶୈଶବାବସ୍ଥାରେ କେବଳ ଅଭ୍ୟାସ ଗଠନ ନିମିତ୍ତ ଏହାର ଆବଶ୍ୟକତା ଅନୁଭୂତ ହୁଏ । କାରଣ ଉକ୍ତ ତତ୍ତ୍ୱରେ ପୁନରାବୃତ୍ତି (Repitition) ଉପରେ ଅଧିକ ପ୍ରାଧାନ୍ୟ ଦିଆଯାଏ । ପୁନରାବୃତ୍ତି ଉଭୟ ଅନୁବନ୍ଧିତ ଉଦ୍ଦୀପକ ଓ ପ୍ରତିକ୍ରିୟା ମଧ୍ୟରେ ସମ୍ପର୍କ ପ୍ରତିଷ୍ଠା ଓ ଅଭ୍ୟାସ ଗଠନରେ ସାହାଯ୍ୟ କରିଥାଏ । ଭୂଗୋଳ, ଇତିହାସ, ଇତ୍ୟାଦି ପାଠ୍ୟ ବିଷୟବସ୍ତୁଗୁଡ଼ିକରେ ପୁନରାବୃତ୍ତିର ଆବଶ୍ୟକତା ଓ ଗୁରୁତ୍ୱ ଅଧିକ । ଦଣ୍ଡ ଓ

ପ୍ରଶଂସା ଦ୍ୱାରା ଏହି କ୍ରିୟା ପ୍ରବଳିତ ହୋଇଥାଏ । ପ୍ରଶଂସା ଦ୍ୱାରା ଅନୁବନ୍ଧିତ ବା ଅପ୍ରକୃତ ଉଦ୍ଦୀପକ ସହିତ ପ୍ରତିକ୍ରିୟା ସମ୍ପର୍କ ଦୃଢ଼ ହୁଏ ଓ ଦଣ୍ଡଦ୍ୱାରା ଏହି ସମ୍ପର୍କ ଦୁର୍ବଳ ହୋଇଥାଏ । ତେଣୁ ଉପଯୁକ୍ତ ସମୟରେ ଶିଶୁକୁ ପ୍ରଶଂସା କିମ୍ବା ଦଣ୍ଡଦେବା ଗ୍ରହଣୀୟ । କାରଣ, ବିଳମ୍ବରେ ଦେଲେ ଏହା ଫଳପ୍ରଦ ହୋଇ ନଥାଏ ।

ଶିଶୁମାନେ ଅନେକ ସମୟରେ ଉକ୍ତ ଅନୁବନ୍ଧିତ ଅନୁକ୍ରିୟା ମାଧ୍ୟମରେ ଅଭିବୃତ୍ତି ଗଠନ **(Attitude Formation)** କରିଥାନ୍ତି । ତେଣୁ ଶିକ୍ଷକ ଓ ପିତାମାତା ତଥା ଅଭିଭାବକମାନେ ଉପଯୁକ୍ତ ହାବଭାବ ଗଠନରେ ସହାୟକ ହେବା ନିମିତ୍ତ ଏପରି ପରିସ୍ଥିତି ସୃଷ୍ଟି କରିବା ଏକାନ୍ତ ଆବଶ୍ୟକ । ଉକ୍ତ ନୀତି ଶିକ୍ଷଣ କ୍ରିୟାର ପରିବେଶ ସମ୍ପର୍କରେ ସୂଚନା ଦେଇଥାଏ । ଶିକ୍ଷା ସମୟରେ ଶ୍ରେଣୀ ପ୍ରକୋଷ୍ଠରେ ଶିକ୍ଷାର୍ଥୀମାନେ ନାନାପ୍ରକାର ବହୁଳାଙ୍କବାପନ୍ନ ଉଦ୍ଦୀପକମାନଙ୍କର ସମ୍ମୁଖୀନ ହୋଇଥାନ୍ତି । ଫଳତଃ ସେମାନଙ୍କ ମନ ବିକ୍ଷିପ୍ତ ହୋଇଥାଏ । ତେଣୁ ଏପରି ଅବସ୍ଥାରେ ଶିକ୍ଷଣ କାର୍ଯ୍ୟ ସମ୍ପାଦିତ ହେଲେ ଶିକ୍ଷଣ ପ୍ରକ୍ରିୟା ବ୍ୟାହତ ହୋଇଥାଏ । ସେଥି ନିମିତ୍ତ ଶ୍ରେଣୀ ଗୃହର ବିଭିନ୍ନ ଅବସ୍ଥା ଗୁଡ଼ିକୁ ନିୟନ୍ତ୍ରଣାଧୀନ ଓ ଆନ୍ତରିକତା ସୃଷ୍ଟି କରିବା ସର୍ବାଦୌ କାମ୍ୟ ।

ଏହି ଅନୁବନ୍ଧିତ ଅନୁକ୍ରିୟା ଫଳରେ ଶିଶୁମାନଙ୍କର ଅନ୍ଧବିଶ୍ୱାସ ସୃଷ୍ଟି ହେବାର ଦେଖାଯାଏ । ଶିଶୁ ବିଦ୍ୟାଳୟକୁ ଯିବା ବାଟରେ ଦେଉଳଟିଏ ଦେଖିଲେ ତାହା ଶୁଭ ଓ ବିରାଡ଼ିକୁ ଦେଖିଲେ ଏହା ଅଶୁଭ ସୂଚନା ବୋଲି ଧରିନିଏ । ଏପରିକି ଏପ୍ରକାର ଅନ୍ଧ ବିଶ୍ୱାସ ବୟସ୍କ ବ୍ୟକ୍ତିମାନଙ୍କଠାରେ ମଧ୍ୟ ପରିଦୃଷ୍ଟ ହୁଏ । ତେବେ ଅନୁବନ୍ଧିତ ପ୍ରକ୍ରିୟା ସାହାଯ୍ୟରେ ଏପ୍ରକାର ଅନ୍ଧ ବିଶ୍ୱାସ ଗୁଡ଼ିକୁ ଦୂରୀଭୂତ କରିବା ସମ୍ଭବପର ହୋଇଥାଏ । ଏପରି ପରିସ୍ଥିତି ସୃଷ୍ଟି କରାଯିବା ଆବଶ୍ୟକ ଯାହାଦ୍ୱାରା ଅନୁବନ୍ଧିତ ବା ଅପ୍ରକୃତ ଉଦ୍ଦୀପକ ପ୍ରକୃତ ପ୍ରକ୍ରିୟା ସୃଷ୍ଟି କରିବାରେ ଅସମର୍ଥ ହୁଏ । ଏହା ଫଳରେ ଅନୁବନ୍ଧିତ ଉଦ୍ଦୀପକ ଓ ପ୍ରକ୍ରିୟା ମଧ୍ୟରେ ପ୍ରତିଷ୍ଠିତ ସମ୍ପର୍କ କ୍ଷୀଣରୁ କ୍ଷୀଣତର ହୁଏ ଓ ଶେଷରେ ନିଶ୍ଚିହ୍ନ ହୋଇଯାଇଥାଏ ।

ଭାଷା ଶିକ୍ଷା କ୍ଷେତ୍ରରେ ମଧ୍ୟ ଏହି ତତ୍ତ୍ୱର ଭୂମିକା ମହତ । ନୂତନ ସଂଖ୍ୟା ଓ ଅକ୍ଷର ଶିକ୍ଷା ନିମିତ୍ତ ବିଭିନ୍ନ ପ୍ରକାର ଛବି ଓ ଚାର୍ଟ ବ୍ୟବହାର ମୂଳରେ ଉକ୍ତ ନୀତିର ତାତ୍ପର୍ଯ୍ୟ ପରିଲକ୍ଷିତ ହୁଏ । ପ୍ରଥମେ "ଗାଈ" ଶବ୍ଦଟି ଉଚ୍ଚାରଣ କରିବା ସଙ୍ଗେ ସଙ୍ଗେ ଶିଶୁକୁ ଗାଈର ଛବିଟିଏ ଦେଖାଇ ଦିଆଗଲେ, ପରେ ମଧ୍ୟ ଏ ଛବି ବିନା ଶବ୍ଦ ଓ ପଶୁ ମଧ୍ୟରେ ସଂଯୋଗ ପ୍ରତିଷ୍ଠା ଲାଭ କରିପାରିଥାଏ । ଏହିପରି ଅନୁବନ୍ଧିତ ଅନୁକ୍ରିୟା ଏକ ସାଧାରଣ ଅର୍ଥରେ ବ୍ୟବହୃତ ହୁଏ । ଆମେ ଅଭ୍ୟାସ, ସାଂସ୍କୃତିକ ଐତିହ୍ୟ, ସାମାଜିକ ଚଳଣି, ଏବଂ ଭାଷା ଶିକ୍ଷଣ ଇତ୍ୟାଦି ଏହି ତତ୍ତ୍ୱଦ୍ୱାରା ଅର୍ଜନ କରିଥାଉଁ ।

ଉପରୋକ୍ତ ଆଲୋଚନାରୁ ଶିକ୍ଷଣ କ୍ଷେତ୍ରରେ ଏହି ଅନୁବନ୍ଧିତ ଅନୁକ୍ରିୟା ତତ୍ତ୍ୱର ଗୁରୁତ୍ୱ ସମ୍ପର୍କରେ ସ୍ପଷ୍ଟ ଜାଣିହୁଏ । ଅନୁବନ୍ଧିତ ଅନୁକ୍ରିୟାକୁ ଉପରୋକ୍ତ କାର୍ଯ୍ୟକ୍ରମର ଶିକ୍ଷା କ୍ଷେତ୍ରରେ ବ୍ୟବହାର କରିବା ସମ୍ଭବ ହୋଇଥାଏ ।

## କରଣବାଦୀ ଅନୁବନ୍ଧନ (Instrumental Coperant Conditioning)

କୌଣସି ପ୍ରତିକ୍ରିୟା, ଶିକ୍ଷା ପରବର୍ତ୍ତୀ କାର୍ଯ୍ୟକୁଶଳତା ଆୟତ୍ତ କରିବା ପାଇଁ ଏକସାଧନ ଭାବରେ କାର୍ଯ୍ୟକରୁଥିଲେ ସେହି ପ୍ରକାର ପ୍ରଶିକ୍ଷଣକୁ କରଣବାଦୀ ଅନୁବନ୍ଧନ ବୁଝାଯାଏ । ସମସ୍ତ ସମୟରେ ଶିଶୁର ପ୍ରତିକ୍ରିୟା ପୁରସ୍କାରର ଆଶା ବା ଦଣ୍ଡର ଆଶଙ୍କା ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ଉକ୍ତ ପ୍ରତିକ୍ରିୟାଟି ପରବର୍ତ୍ତୀ ଜୀବନରେ ଏକ ସ୍ଥାୟୀ ଶିକ୍ଷା ପାଇଁ ସାଧନ ଭାବରେ କାର୍ଯ୍ୟ କରେ । କରଣବାଦୀ ଅନୁବନ୍ଧନରେ ଉଦ୍ଦୀପକ ପରିବେଷଣ କରାଯିବା ପୂର୍ବରୁ ପ୍ରତିକ୍ରିୟା ପରିଦୃଷ୍ଟ ହୋଇଥାଏ । ଅର୍ଥାତ୍ ଶିଶୁ ପ୍ରଥମେ ପ୍ରତିକ୍ରିୟା ପ୍ରଦର୍ଶନ କରେ ଏବଂ ପରେ ପୁରସ୍କାର ଦିଆଯାଏ ବା ଦଣ୍ଡର ଭୟ ଦୂର କରାଯାଏ ।

ଆଧୁନିକ ମନୋବିଜ୍ଞାନର ଜଣେ ପ୍ରଖ୍ୟାତ ମନୋବିଜ୍ଞାନୀ ବି.ଏଫ୍. ସ୍କିନର କରଣବାଦୀ ଅନୁବନ୍ଧନ ଉପରେ ଅନେକ ପରୀକ୍ଷା ଚଳାଇଥିଲେ । ଥର୍ଣ୍ଡାଇକଙ୍କ ମତ ସହ ସ୍କିନରଙ୍କ ମତର ଅନେକ ସାଦୃଶ୍ୟ ଦେଖାଯାଏ । କାରଣ ଶିକ୍ଷା କ୍ଷେତ୍ରରେ ପୁନର୍ବଳନ ବା Reinforcementର ଗୁରୁତ୍ୱକୁ ଉଭୟେ ପ୍ରାଧାନ୍ୟ ଦେଇଥିଲେ । ସ୍କିନର ଉଦ୍ଦୀପକ ଓ ପ୍ରତିକ୍ରିୟା ମଧ୍ୟରେ ଥିବା ସମ୍ପର୍କ ବିଷୟରେ କୌଣସି ମତ ପ୍ରଦାନ ନକରି ଶିଶୁ ଏକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ କିପରି ପ୍ରତିକ୍ରିୟା ପ୍ରକାଶ କରେ ସେ ସମ୍ପର୍କରେ ଆଲୋଚନା କରିଥିଲେ । ତାଙ୍କ ମତରେ ପ୍ରତ୍ୟେକ ପ୍ରତିକ୍ରିୟାର ପୁନର୍ବଳନ ସହ ଗଭୀର ସମ୍ପର୍କ ଥାଏ । ତେଣୁ ତାଙ୍କୁ ଜଣେ ପୁନର୍ବଳନ ସଂଯୋଗବାଦୀ ତତ୍ତ୍ୱବିଦ୍ ବୁଝାଯାଏ ।

## ସ୍କିନରଙ୍କ ପରୀକ୍ଷା :

ସ୍କିନର ପ୍ରତିକ୍ରିୟାବାଦୀ ବ୍ୟବହାର ଓ କରଣବାଦୀ ବ୍ୟବହାର ମଧ୍ୟରେ ପାର୍ଥକ୍ୟ ଦର୍ଶାଇଥିଲେ । ପ୍ରତିକ୍ରିୟାବାଦୀ ବ୍ୟବହାରର ଉଦ୍ରେକ ପାଇଁ ସ୍ୱତନ୍ତ୍ର ଉଦ୍ଦୀପକ ଆବଶ୍ୟକ ହୋଇଥାଏ ଏହା ଶିକ୍ଷଣର ପ୍ରାରମ୍ଭରେ ଉଦ୍ଦୀପନା ବା ଉଦ୍ଦୀପକ ଅବସ୍ଥାର ଆବଶ୍ୟକତା ସ୍ୱୀକାର କରିଥାଏ । ପ୍ରତିକ୍ରିୟାବାଦୀ ବ୍ୟବହାର ଏକ ଅନୈଚ୍ଛିକ ଆଚରଣ । ଏଥିରେ ପରିବେଶ ପରୀକ୍ଷଣ ପାତ୍ର ଉପରେ ଏକ ନିର୍ଦ୍ଦିଷ୍ଟ ପ୍ରକାର ଆଚରଣ ପ୍ରଦର୍ଶନ କରିବା ପାଇଁ ପ୍ରଭାବ ପକାଇଥାଏ । ସ୍କିନରଙ୍କ ମତରେ ପାଭ୍‌ଲଭ୍‌ଙ୍କର ସାପେକ୍ଷ ଅନୁବନ୍ଧନ ଏକ ପ୍ରତିକ୍ରିୟାବାଦୀ ବ୍ୟବହାର କାରଣ ପ୍ରତ୍ୟେକ ସମୟରେ ପ୍ରତିକ୍ରିୟା କୌଣସି ଉଦ୍ଦୀପକ ସହ ସମ୍ପୃକ୍ତ ହୋଇ ନପାରେ । ସେ ଦୁଇ ପ୍ରକାର ପ୍ରତିକ୍ରିୟା ବିଷୟରେ ଆଲୋଚନା

କରିଥିଲେ । ପ୍ରଥମଟି ପ୍ରକାଶିତ ପ୍ରତିକ୍ରିୟା, ଯେ କୌଣସି ଉଦ୍ଦୀପକ ଯୋଗୁଁ ସୃଷ୍ଟି ହୋଇଥାଏ । ଉଦାହରଣ ସ୍ୱରୂପ ମନୁଷ୍ୟର ପ୍ରତିବର୍ତ୍ତୀ କ୍ରିୟା ବା Reflex action ଯଥା ଅତ୍ୟଧିକ ଆଲୋକ ଯୋଗୁଁ ଆଖିପତା ସଙ୍କୁଚିତ ହେବା ବା ଖାଦ୍ୟ ପଦାର୍ଥ ସନ୍ଦର୍ଶନରେ ଲାଳ କ୍ଷରିତ ହେବା ଇତ୍ୟାଦି ।

ଅନ୍ୟ ଦ୍ୱିତୀୟ ପ୍ରକାର ପ୍ରତିକ୍ରିୟାକୁ ନିଃସୃତ ପ୍ରତିକ୍ରିୟା କୁହାଯାଇ ପାରେ । ଏହା କୌଣସି ଜ୍ଞାତ ଉଦ୍ଦୀପକ ସହ ସମ୍ପୃକ୍ତ ନୁହେଁ । ଏହି ନିଃସୃତ ପ୍ରତିକ୍ରିୟାକୁ କରଣବାଦୀ ଅନୁବନ୍ଧିତ ପ୍ରତିକ୍ରିୟା କୁହାଯାଏ । ଏପରି କୌଣସି ନିର୍ଦ୍ଦିଷ୍ଟ ଉଦ୍ଦୀପକ ନାହିଁ ଯାହା ନିଶ୍ଚିତ ଭାବରେ କରଣବାଦୀ ଅନୁବନ୍ଧିତ ପ୍ରତିକ୍ରିୟା ସୃଷ୍ଟି କରିବ । ମାତ୍ର ଏହାର ଅର୍ଥ ନୁହେଁ ଯେ କରଣବାଦୀ ଅନୁବନ୍ଧିତ ପ୍ରତିକ୍ରିୟା ଓ ଉଦ୍ଦୀପକ ମଧ୍ୟରେ କୌଣସି ସମ୍ପର୍କ ରହିନଥାଏ ବା ଏହାଦ୍ୱାରା ପ୍ରଭାବିତ ହୁଏ ନାହିଁ । କରଣବାଦୀ ଅନୁବନ୍ଧନ ଅବସ୍ଥିତ ସଂସ୍ଥାନ ବା Organisation ଦ୍ୱାରା ନିଃସୃତ ହୁଏ । ଉଦ୍ଦୀପକର ପ୍ରଭାବଠାରୁ ଏହା ସ୍ୱତନ୍ତ୍ର ଭାବରେ କାର୍ଯ୍ୟକରେ । ବରଂ ଏହା ପ୍ରତିକ୍ରିୟାର ପ୍ରଭାବ ଓ ଫଳାଫଳ ଉପରେ ନିର୍ଭର କରେ । କରଣବାଦୀ ଅନୁବନ୍ଧନରେ ଅବସ୍ଥିତ ସଂସ୍ଥାନର କାର୍ଯ୍ୟ ମୁଖ୍ୟ ପରିବେଷ୍ଟନୀର କାର୍ଯ୍ୟ ଗୌଣ । ଏହା ଏକ ଇଚ୍ଛାକୃତ କାର୍ଯ୍ୟ । ଉଦାହରଣ ସ୍ୱରୂପ ଖାଦ୍ୟ ଦେଖିଲେ ଯଦି ଆମେ ଖାଇବାକୁ ଆରମ୍ଭ କରୁ ତେବେ ଏ କ୍ଷେତ୍ରରେ ଖାଦ୍ୟ ପାଖରେ ପହଞ୍ଚିବାର ପ୍ରତିକ୍ରିୟାଟି କେବଳ ଏହାକୁ ଦେଖିବା ଯୋଗୁଁ ଘଟେ ନାହିଁ । ଏହା ଅନ୍ୟ କେତେକ ଉପାଦାନ ଯଥା କ୍ଷୁଧା ଏବଂ ତାର ମାତ୍ରା, ସ୍ୱାଦ, ସାମାଜିକ ପରିବେଶ ଇତ୍ୟାଦି ଉପରେ ମଧ୍ୟ ନିର୍ଭର କରେ । ଅତଏବ ମନୁଷ୍ୟର ଅଧିକାଂଶ ବ୍ୟବହାର ଯଥା ଭୋଜନ, ଲିଖନ, ଯାନବାହନ ଚାଳନା, ପଠନ ଇତ୍ୟାଦି କରଣବାଦୀ ଅନୁବନ୍ଧନର ଅନ୍ତର୍ଭୁକ୍ତ ।

ଉପରୋକ୍ତ ମତକୁ ପରୀକ୍ଷା ସାହାଯ୍ୟରେ ପ୍ରମାଣିତ କରିବା ପାଇଁ ସ୍କିନର ଏକ ବାକ୍ସ ନିର୍ମାଣ କରିଥିଲେ । ଏହାର ନାମ Skinner Box । ଏହି ବାକ୍ସ ମଧ୍ୟରେ ଏକ କ୍ଷୁଧାତୁର ମୂଷାକୁ ଛାଡ଼ିଦିଆଗଲା । ବାକ୍ସର ସ୍ୱଚ୍ଛ ତିନୋଟି କାନ୍ଥ ମଧ୍ୟରୁ ତିନୋଟି ସାଧାରଣ ଏବଂ ଚତୁର୍ଥ କାନ୍ଥରୁ ଖଣ୍ଡିଏ ଛଡ଼ ବାହାରିଥିଲା । ବାକ୍ସ ବାହାରପଟେ ଖାଦ୍ୟ ରଖାଯାଇଥିଲା । ଛଡ଼ଟିରେ ସାମାନ୍ୟ ଚାପ ପ୍ରଦାନ କଲେ ଖାଦ୍ୟ ସ୍ୱୟଂକ୍ରିୟ ଭାବରେ ମୂଷା ପାଖରେ ପହଞ୍ଚିବାର ବ୍ୟବସ୍ଥା କରାଯାଇଥିଲା । ବାକ୍ସ ମଧ୍ୟରେ ମୂଷାଟିକୁ ଛାଡ଼ିଦିଆଯିବା ମାତ୍ରେ ସେ ପ୍ରଥମେ ଇତଃସ୍ତତଃ ଓ ଚପଳ ଭାବ ପ୍ରଦର୍ଶନ କଲା । ଏହାପରେ ଅଜାଣତରେ ହଠାତ୍ ତା ଦେହର କୌଣସି ଅଂଶ ଦ୍ୱାରା ଛଡ଼ଟି ଚାପପାଇବା ମାତ୍ରେ ଖାଦ୍ୟ ପରିବେଶିତ ହୋଇଥିଲା । ଏହାର ପରବର୍ତ୍ତୀ ଚେଷ୍ଟାରେ ମୂଷାର ଇତଃସ୍ତତଃ ବ୍ୟବହାର ଖାଦ୍ୟ ପରିବେଷଣ ଦିଗଠାରେ କେନ୍ଦ୍ରୀଭୂତ ହେଲା ଏବଂ କ୍ରମଶଃ ସେ ଛଡ଼ଟିକୁ ଚାପ ପ୍ରଦାନ କରି ଖାଦ୍ୟ ହାସଲ କରିବାର କୌଶଳଟି

ଶିକ୍ଷା କରିଥିଲା । ଏହି ପରୀକ୍ଷାରେ ମୂଷାଟି ଯେଉଁ ପ୍ରତିକ୍ରିୟା ପ୍ରକାଶ କରିଥିଲା ତାହା କୌଣସି ଉଦ୍ଦୀପକ ଦ୍ୱାରା ସୃଷ୍ଟି ନହୋଇ ଅବୟବ ସଞ୍ଚାଳନ ଦ୍ୱାରା ନିଃସୃତ ହୋଇଥିଲା । ତା'ର ପ୍ରତିକ୍ରିୟା ସଠିକତା ଏହାର ଫଳାଫଳ ଉପରେ ନିର୍ଭର କରିଥିଲା । ଅନ୍ୟ ଭାଷାରେ କହିବାକୁ ଗଲେ ପ୍ରତିକ୍ରିୟାର ଶିକ୍ଷା ପୁନର୍ବଳନ ଯୋଗୁଁ ଘଟିଥିଲା । ଅତଏବ ଯଦି ଜଣେ କରଣବାଦୀ ପୁନର୍ବଳନ ଦ୍ୱାରା ପୁରସ୍କୃତ ହୁଏ ତେବେ ସେ ଉକ୍ତ ପ୍ରତିକ୍ରିୟାଟିକୁ ବାରମ୍ବାର ପୁନରାବୃତ୍ତି କରିଥାଏ । ଯଦ୍ୱାରା ସେ ଏକ ନିର୍ଦ୍ଦିଷ୍ଟ ଆଚରଣ ଶିକ୍ଷା କରିଥାଏ । ଉପରୋକ୍ତ ପରୀକ୍ଷାରେ ଛଡ଼ଟି ସ୍ୱାଭାବିକ ଉଦ୍ଦୀପକ (CS) ଓ ଏହାକୁ ଚାପ ପ୍ରଦାନ କରିବା କାର୍ଯ୍ୟ ସ୍ୱାଭାବିକ ପ୍ରତିକ୍ରିୟା (C.R) । ସେହିପରି ଖାଦ୍ୟ ଅସ୍ୱାଭାବିକ ଉଦ୍ଦୀପକ (U.S) ଓ ଖାଇବା କାର୍ଯ୍ୟଟି ଅସ୍ୱାଭାବିକ ପ୍ରତିକ୍ରିୟା (U.R)

**କରଣବାଦୀ ଅନୁବନ୍ଧନ ଦ୍ୱାରା ପ୍ରଶିକ୍ଷଣର ବିଭିନ୍ନ ପନ୍ଥା :**

ଏକ ନିର୍ଦ୍ଦିଷ୍ଟ ପ୍ରତିକ୍ରିୟାର ଶିକ୍ଷଣ ନିମିତ୍ତ କରଣବାଦୀ ଅନୁବନ୍ଧନକୁ ଚାରିଗୋଟି ଭିନ୍ନ ଉପାୟରେ ପ୍ରୟୋଗ କରାଯାଇପାରେ । ପ୍ରଥମଟି ପୁରସ୍କାର ଦ୍ୱାରା ପ୍ରଶିକ୍ଷଣ, ଅର୍ଥାତ୍ ପ୍ରାଣୀକୁ କୌଣସି ପ୍ରତିକ୍ରିୟା ପାଇଁ ପୁରସ୍କାର ପ୍ରଦାନ କଲେ ସେ ଉକ୍ତ ପ୍ରତିକ୍ରିୟାର ପୁନଃ ପ୍ରଦର୍ଶନ ପାଇଁ ଚେଷ୍ଟିତ ହୁଏ । ଏହିପରି ବାରମ୍ବାର ପୁନଃ ପ୍ରଦର୍ଶନ ଫଳରେ ପ୍ରତିକ୍ରିୟାର ଶିକ୍ଷଣ ସ୍ଥାୟୀ ହୋଇଥାଏ । ଦ୍ୱିତୀୟଟି ଦଣ୍ଡ ଦ୍ୱାରା ପ୍ରଶିକ୍ଷଣ । ଯେଉଁ ପ୍ରତିକ୍ରିୟା ଗୁଡ଼ିକର ପୁନଃ ପ୍ରଦର୍ଶନ ଅନାବଶ୍ୟକ । ସେହି ପ୍ରତିକ୍ରିୟା ସହିତ କୌଣସି କଷ୍ଟ ଦାୟକ ଅନୁଭୂତି ସଂଯୁକ୍ତ କରିପାରିଲେ ଶିଶୁ ଉକ୍ତ ପ୍ରତିକ୍ରିୟାର ପ୍ରଦର୍ଶନ ନିମିତ୍ତ ଆଗ୍ରହୀ ହୁଏନାହିଁ ।

ପ୍ରଥମେ କଷ୍ଟ ପ୍ରଦାନ କରି ଓ ପରେ ଉପଯୁକ୍ତ ପ୍ରତିକ୍ରିୟା ପ୍ରଦର୍ଶନ ଯୋଗୁଁ କଷ୍ଟରୁ ଅବ୍ୟାହତି ଦେଇ ମଧ୍ୟ ପ୍ରଶିକ୍ଷଣ ପ୍ରଦାନ କରାଯାଇପାରେ । ଏହା ଦ୍ୱାରା ଶିଶୁ କୌଣସି କଷ୍ଟରୁ ରକ୍ଷା ପାଇବାର ଉପାୟ ଶିକ୍ଷା କରିବା ସଙ୍ଗେ ସଙ୍ଗେ ଯେଉଁ ପ୍ରତିକ୍ରିୟା ଯୋଗୁଁ ସେ କଷ୍ଟ ଭୋଗ କରୁଥିଲା, ତାହାର ପୁନରାବୃତ୍ତି କରିବାକୁ ଆଗ୍ରହୀ ହୁଏ ନାହିଁ ।

ଶିଶୁ ଶିକ୍ଷା କରିଥିବା କୌଣସି ପ୍ରତିକ୍ରିୟାକୁ ରଦ୍ଦ କରିବାକୁ ହେଲେ ପୁରସ୍କାର ବନ୍ଦ କରିବାକୁ ହୋଇଥାଏ । ଏହା ଦ୍ୱାରା ଉକ୍ତ ପ୍ରତିକ୍ରିୟାର ପୁନଃ ପ୍ରବର୍ତ୍ତନ ହ୍ରାସ ପାଇଥାଏ ଓ କ୍ରମଶଃ ଏହାର ବିଲୋପନ ଘଟିଥାଏ ।

**ପୁନର୍ବଳନ (Re-inforcement)—**

ପୁନର୍ବଳନର ବ୍ୟବହାର ଓ ଏହାର ପ୍ରଭାବ ସମ୍ପର୍କରେ ସ୍କିନରଙ୍କ ପରୀକ୍ଷା ଆଧୁନିକ ମନୋବିଜ୍ଞାନର ଏକ ପ୍ରଧାନ ବିଷୟ । ତାଙ୍କ ପରୀକ୍ଷାରେ କରଣବାଦୀ

ପ୍ରତିକ୍ରିୟାର ବେଗ କମ୍ ବେଶୀ କରାଇବା ନିମିତ୍ତ ପୁନର୍ବଳନ ବ୍ୟବହାର କରାଯାଇଥାଏ । କୌଣସି ଉଦ୍ଦୀପକ ଯଦି ପ୍ରତିକ୍ରିୟାକୁ ସାମ୍ଭାବ୍ୟ ଗତିବେଗ ପ୍ରଦାନ କରିପାରେ ତାହାକୁ ପୁନର୍ବଳନ କୁହାଯାଇପାରେ । ପ୍ରତିକ୍ରିୟାର ସଂଖ୍ୟାରୁ ତାହାର ତୀବ୍ରତା ଜାଣିହୁଏ । ସ୍କିନର ଲକ୍ଷ୍ୟ କରିଥିଲେ ଯେ ଗୋଟିଏ ଥର ମାତ୍ର ପୁନର୍ବଳନ ପ୍ରଦାନ ଯୋଗୁଁ କରଣୀୟ ଅନୁବନ୍ଧିତ କ୍ରିୟା ବହୁବାର ପ୍ରଦର୍ଶିତ ହୁଏ । ତାଙ୍କ ପରୀକ୍ଷାରେ ଛଡ଼ଟିକୁ ଚାପ ପ୍ରଦାନ କରି ମୂଷାଟି ଥରେ ମାତ୍ର ଖାଦ୍ୟ ପାଇବା ଫଳରେ ବିନା ଖାଦ୍ୟରେ ମଧ୍ୟ ବହୁବାର ଛଡ଼ଟିକୁ ଚାପ ପ୍ରଦାନ କରିବା କ୍ରିୟା ଚାଲୁରଖେ । ଅଧିକ ପୁନର୍ବଳନ ଶିକ୍ଷଣରେ ଉନ୍ନତି ଘଟାଏ ମାତ୍ର ଏହି ଉନ୍ନତି ସାଧାରଣତଃ ଧୀର ହୋଇଥାଏ କାରଣ ପ୍ରତିକ୍ରିୟାର ସାମଗ୍ରିକ ସଂଖ୍ୟା ପୁନର୍ବଳନର ବର୍ଦ୍ଧନ ସହ ସମାନୁପାତରେ ବର୍ଦ୍ଧିତ ହୁଏ ନାହିଁ । କାରଣ ଜୀବର ଆବେଗିକ ଅବସ୍ଥା ପାଇଁ ପୁନର୍ବଳନ ସାହାଯ୍ୟକାରୀ ହୋଇଥାଏ । ପୁନର୍ବଳନ ପାଇଁ ପ୍ରଶିକ୍ଷଣ ସମୟରେ ଜଣେ ପୁନର୍ବଳନକାରୀର ଆବଶ୍ୟକତା ପଡ଼ିଥାଏ ।

ପୁନର୍ବଳନକାରୀ ଜଣେ ବ୍ୟକ୍ତି, ବସ୍ତୁ, ଉଦ୍ଦୀପନା ବା ଅନ୍ୟ କିଛି ହୋଇପାରେ । ସ୍କିନରଙ୍କ ମତରେ ପୁନର୍ବଳନକାରୀ ଦୁଇ ପ୍ରକାରର ଦେଖାଯାଏ । ଗୋଟିଏ ପ୍ରାଥମିକ ପୁନର୍ବଳନକାରୀ ଓ ଅନ୍ୟଟି ଦ୍ୱିତୀୟକ ପୁନର୍ବଳନକାରୀ । ପରୀକ୍ଷାଗାରର ପରିବେଶ ମଧ୍ୟରେ ଯେଉଁ ପ୍ରୋତ୍ସାହନ ଗୁଡ଼ିକ ଜୀବର ଆବେଗିକ ଅବସ୍ଥା ସହ ପାରସ୍ପରିକ କ୍ରିୟା କରିଥାନ୍ତି ସେଗୁଡ଼ିକ ମଧ୍ୟରୁ କେତୋଟି ହେଲେ ଖାଦ୍ୟ, ପାନୀୟ, ବସିବା ସ୍ଥାନ, ଉପକରଣ ପୋଷାକ ଇତ୍ୟାଦି । ଏଗୁଡ଼ିକୁ ପ୍ରାଥମିକ ପୁନର୍ବଳନକାରୀ କୁହାଯାଇପାରେ । କିନ୍ତୁ ଯେଉଁ ଉଦ୍ଦୀପକଗୁଡ଼ିକ ପୁନର୍ବଳନ ଧର୍ମୀ ହୋଇଥାନ୍ତି ସେଗୁଡ଼ିକୁ ଦ୍ୱିତୀୟକ ପୁନର୍ବଳନକାରୀ କୁହାଯାଏ । କୌଣସି ନିରପେକ୍ଷ ଉଦ୍ଦୀପକ ପ୍ରାଥମିକ ପୁନର୍ବଳନକାରୀ ସହ ବାରମ୍ବାର ବ୍ୟବହୃତ ହେଲେ ଏହା ଏକ ପ୍ରକାର ପୁନର୍ବଳନକାରୀ ଭଳି କାର୍ଯ୍ୟ କରିଥାଏ । କିନ୍ତୁ ମୌଳିକ ଭାବରେ ଏହା ଏକ ପୁନର୍ବଳନକାରୀ ନୁହେଁ । ଏହା ସ୍କିନରଙ୍କ ବାକ୍ସ ସାହାଯ୍ୟରେ ପରୀକ୍ଷା କରାଯାଇପାରେ । ଏକ ସ୍ୱତନ୍ତ୍ର ବ୍ୟବସ୍ଥା ଦ୍ୱାରା ଏହି ବାକ୍ସର ଛଡ଼ଟି ସହିତ ରଙ୍ଗୀନ ବିଦ୍ୟୁତ୍ ବଲବ୍ ଟିଏ ଏପରି ଭାବରେ ସଂଯୋଗ କରାଯାଏ ଯେ ଛଡ଼ଟିକୁ ଚାପ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଏହି ରଙ୍ଗୀନ ଆଲୋକଟି ଜଳି ଉଠେ ଓ ପ୍ରାୟ ଏକ ମିନିଟ ପରେ ଖାଦ୍ୟ ପରିବେଷିତ ହୁଏ । ଏହିପରି କେତେବାର ଖାଦ୍ୟ ପରିବେଷଣ ପରେ ଛଡ଼ଟିକୁ ଚାପ ପ୍ରଦାନ ଦ୍ୱାରା ଆଲୋକ ଜଳାଯାଏ ଅଥଚ କୌଣସି ଖାଦ୍ୟ ପରିବେଷିତ ହୁଏ ନାହିଁ । ତଥାପି ମଧ୍ୟ ମୂଷାଟି ଛଡ଼ଟିକୁ ଚାପ ପ୍ରଦାନ କରିବା କାର୍ଯ୍ୟ ଚାଲୁରଖେ । ଏହି ପରୀକ୍ଷାରେ ଆଲୋକଟି ଦ୍ୱିତୀୟକ ପୁନର୍ବଳନକାରୀ ଭାବରେ କାର୍ଯ୍ୟକଲା । ଥରେ ଧାରଣା ଦୃଢ଼ୀଭୂତ ହୋଇଯିବା ପରେ ଦ୍ୱିତୀୟକ

ପୁନର୍ବଳନକାରୀ ସ୍ୱତନ୍ତ୍ର ଓ ସ୍ୱାଧୀନ ଭାବରେ କାର୍ଯ୍ୟ କରିଥାଏ । ଏହା ଯେ କେବଳ ମୂଳ ପୁନର୍ବଳନକାରୀ ଦ୍ୱାରା ସୃଷ୍ଟ ପ୍ରତିକ୍ରିୟାକୁ ଅଧିକ ସ୍ଥାୟୀ କରିବ ସେତିକି ନୁହେଁ ବରଂ ଏହା ଏକ ନୂତନ ପ୍ରତିକ୍ରିୟାର ଅନୁବନ୍ଧନ କରେ । ଉଦାହରଣ ସ୍ୱରୂପ ଯଦି ଗୋଟିଏ ଗାଈକୁ ଷ୍ଟିଲ୍ ପାତ୍ରରେ ପ୍ରତିଦିନ ଖାଇବାକୁ ଦିଆଯାଏ ତେବେ ଉକ୍ତ ପାତ୍ରଟି ଏକ ପୁନର୍ବଳନକାରୀ ଭାବରେ କାର୍ଯ୍ୟ କରିବ । କାରଣ ଏହା ଖାଦ୍ୟ ସହିତ ସଂଯୁକ୍ତ । ସେହିପରି ମନୁଷ୍ୟର ଆବଶ୍ୟକତା ପୂରଣ କରିବା ପାଇଁ ଟଙ୍କାର କୌଣସି ପ୍ରତ୍ୟକ୍ଷ କ୍ଷମତା ନଥିଲେ ମଧ୍ୟ ଜୀବନର ପ୍ରଧାନ ଆବଶ୍ୟକତାଗୁଡ଼ିକ ସହିତ ସମ୍ପର୍କିତ ହୋଇ ଥିବାରୁ ଏହା ମୂଲ୍ୟବାନ ହୋଇଥାଏ । ସଂକ୍ଷିପ୍ତରେ କୁହାଯାଇପାରେ ଯେ ଜୀବର ମୌଳିକ ଆବଶ୍ୟକତା ଗୁଡ଼ିକ ପାଇଁ ପୁନର୍ବଳନକାରୀ ଭାବରେ କାର୍ଯ୍ୟ କରୁଥିବା ଉପାଦାନଗୁଡ଼ିକୁ ପ୍ରାଥମିକ ପୁନର୍ବଳନକାରୀ କୁହାଯାଏ ଯଥା, ଭୋକ ଓ ଶୋଷ । ଅନ୍ୟ ପକ୍ଷରେ ଦ୍ୱିତୀୟକ ପୁନର୍ବଳନକାରୀ ଗୁଡ଼ିକର ଜୀବର ଅନ୍ତର୍ନିହିତ ଆବଶ୍ୟକତା ପୂରଣ କରିବା ପାଇଁ ପ୍ରତ୍ୟକ୍ଷ ସାମର୍ଥ୍ୟ ନଥାଏ । ବରଂ ସେଗୁଡ଼ିକର ପୁନର୍ବଳନକାରୀ ଗୁଣ ପ୍ରଶିକ୍ଷଣରୁ ସୃଷ୍ଟି ହୋଇଥାଏ ଏବଂ ଏଥିପାଇଁ ତାହା ପ୍ରାଥମିକ ପୁନର୍ବଳନକାରୀ ସହ ସଂଯୁକ୍ତ ହେବା ଅତ୍ୟନ୍ତ ଆବଶ୍ୟକ ।

ଏହାଛଡ଼ା ଏକ ତୃତୀୟ ପ୍ରକାର ପୁନର୍ବଳନକାରୀ ରହିଛି ଯାହାକୁ ସାଧାରଣକୃତ ପୁନର୍ବଳନକାରୀ କୁହାଯାଏ । ଯେଉଁ ଦ୍ୱିତୀୟକ ପୁନର୍ବଳନକାରୀ ଅନେକଗୁଡ଼ିଏ ପ୍ରତି-କ୍ରିୟାର ଉଦ୍ରେକ କରିପାରିବାର ସାମର୍ଥ୍ୟ ହାସଲ କରିପାରିଥାଏ, ତାହାକୁ ସାଧାରଣୀକୃତ ପୁନର୍ବଳନକାରୀ କୁହାଯାଏ । ଟଙ୍କା ଏହି ଶ୍ରେଣୀର ଗୋଟିଏ ପୁନର୍ବଳନକାରୀ । ପ୍ରାଥମିକ ପୁନର୍ବଳନକାରୀର ଅନୁପସ୍ଥିତିରେ ମଧ୍ୟ ଏହି ପ୍ରକାର ପୁନର୍ବଳନକାରୀ ପ୍ରତିକ୍ରିୟା ସୃଷ୍ଟି କରିବାରେ ସକ୍ଷମ ହୋଇଥାଏ ।

ପୁନର୍ବଳନକାରୀ ସମ୍ପର୍କରେ ସ୍କିନରଙ୍କ ପରୀକ୍ଷା ଅନ୍ୟ ଏକ ଦିଗ ପ୍ରତି ଆଲୋକ-ପାତ କରେ, ତାହାହେଲା ଅସ୍ତିବାଚକ ପୁନର୍ବଳନକାରୀ ଓ ନାସ୍ତି ସୂଚକ ପୁନର୍ବଳନକାରୀ । କୌଣସି ପୁନର୍ବଳନକାରୀକୁ ପରିବେଷ୍ଟନୀ ମଧ୍ୟରେ ସଂଯୋଜନ କଲେ ତାହା ଯଦି ପ୍ରତିକ୍ରିୟା ପ୍ରଦର୍ଶନକାରୀଠାରେ ପ୍ରତିକ୍ରିୟାର ସମ୍ଭାବନାକୁ ସୁନିଶ୍ଚିତ କରିଥାଏ ତାହାକୁ ଅସ୍ତିବାଚକ ବା (Positive) ପୁନର୍ବଳନକାରୀ କୁହାଯାଏ । ଉଦାହରଣ ସ୍ୱରୂପ ଖାଦ୍ୟ, ଜଳ, ପ୍ରଶଂସା ଇତ୍ୟାଦି । ନାସ୍ତିବାଚକ ପୁନର୍ବଳନକାରୀ ବିପରୀତ ଧର୍ମର ଯାହାଠାରୁ ପ୍ରତିକ୍ରିୟା ପ୍ରଦର୍ଶନକାରୀ ଦୂରେଇ ରହିବାକୁ ଚେଷ୍ଟାକରେ । ନାସ୍ତିବାଚକ ପୁନର୍ବଳନକାରୀ ପରିବେଷଣ ବନ୍ଦ କରିଦେଲେ ତାହା ଅସ୍ତିବାଚକ ପୁନର୍ବଳନକାରୀ ଭାବରେ କାର୍ଯ୍ୟ ପ୍ରଦର୍ଶନ କରେ, ଉଦାହରଣ ସ୍ୱରୂପ ବିଦ୍ୟୁତ୍ ଆଘାତ, ଭୟଙ୍କର ଶବ୍ଦ, ତୀବ୍ର ଆଲୋକ ଇତ୍ୟାଦି । ଉଭୟ ଅସ୍ତିବାଚକ ଓ ନାସ୍ତିବାଚକ

ପୁନର୍ବଳନକାରୀକୁ ଅନୁବନ୍ଧିତ କରାଯାଇପାରେ । କୌଣସି ଉଦ୍ଦୀପକକୁ ବାରମ୍ବାର ଅସ୍ତିବାଚକ ପୁନର୍ବଳନକାରୀ ସହିତ ପରିବେଷଣ କରାଗଲେ ଏହା ପ୍ରାଧାନ ସ୍ୱରରେ ଏକ ପୁନର୍ବଳନକାରୀ ସ୍ୱରରେ କାର୍ଯ୍ୟ କରିବାର ସାମର୍ଥ୍ୟ ହାସଲ କରିଥାଏ ।

ସ୍ଥଳ ବିଶେଷରେ ଅସ୍ତିବାଚକ ବା ନାସ୍ତିବାଚକ ପୁନର୍ବଳନକାରୀକୁ ପରିବେଷଣ କରିବା ପ୍ରଶିକ୍ଷଣର ଚରିତ୍ର ଓ ପରିବେଷଣକାରୀର ବୁଦ୍ଧିମତ୍ତା ଓ ପ୍ରତିକ୍ରିୟାର ଆବଶ୍ୟକତା ଉପରେ ନିର୍ଭର କରେ । ଅସ୍ତିବାଚକ ପୁନର୍ବଳନର ପ୍ରୟୋଗରେ ପ୍ରତିକ୍ରିୟାର ପୁନରାବୃତ୍ତିର ସମ୍ଭାବନା ବୃଦ୍ଧି ପାଇଥାଏ । ଅନ୍ୟ ପକ୍ଷରେ ନାସ୍ତିବାଚକ ପୁନର୍ବଳନ ପ୍ରୟୋଗ କଲେ ପ୍ରତିକ୍ରିୟାର ପୁନରାବୃତ୍ତିର ତୀବ୍ରତା ହ୍ରାସପାଏ ଅଥବା ସଂପୂର୍ଣ୍ଣ ବନ୍ଦ ହୋଇଥାଏ । ସାଧାରଣ ଦଣ୍ଡ ବା କଷ୍ଟ ପ୍ରଦାନ ଦ୍ୱାରା ନାସ୍ତିବାଚକ ପୁନର୍ବଳନ ପ୍ରୟୋଗ କରାଯାଏ; କିନ୍ତୁ ନାସ୍ତିବାଚକ ପୁନର୍ବଳନ ଓ ଦଣ୍ଡ ବିଧାନ ମଧ୍ୟରେ ପ୍ରଭେଦ ଥାଏ । ନାସ୍ତିବାଚକ ପୁନର୍ବଳନ ପ୍ରତିକ୍ରିୟାର ଅସ୍ୱୀକୃତ ବା ଅସାମାଜିକ ଦିଗକୁ ସଂଶୋଧିତ ବା କମ୍ କରିବା ପାଇଁ ପ୍ରୟୋଗ କରାଯାଏ । ମାତ୍ର ଦଣ୍ଡ ଦ୍ୱାରା ସମୁଦାୟ ପ୍ରତିକ୍ରିୟାଟି ବନ୍ଦ ହୋଇ ଯିବାର ଭୟ ଥାଏ । ଆହୁରି ମଧ୍ୟ ଦଣ୍ଡର ପ୍ରଭାବ ବିଷୟ କଳନା କରିବା କଷ୍ଟକର ହୋଇଥାଏ । ଏବଂ ଏହି ପ୍ରଭାବ ଅନିଶ୍ଚିତ ହୋଇଥାଏ । ଦଣ୍ଡ ପ୍ରତିକ୍ରିୟା ପ୍ରଦର୍ଶନକାରୀଠାରେ ଆବେଗାତ୍ମକ ଅବସ୍ଥା ସୃଷ୍ଟି କରେ ଏବଂ ପ୍ରତିକ୍ରିୟା ଶିକ୍ଷଣ ପରେ ମଧ୍ୟ ଦଣ୍ଡର ଭୟ ମାନସିକ ସ୍ତରରେ ଅବସ୍ଥାନ କରେ । ମନୁଷ୍ୟର ଅବଚେତନ ମନରୁ ତାହାର ଓ ଇଡ୍ (ID) ଦ୍ୱାରା ପରିଚାଳିତ ହୋଇ ଦଣ୍ଡମାପ୍ତ ପ୍ରତିକ୍ରିୟାଟି ସମୟ ସମୟରେ ପୁନଃ ପ୍ରକାଶିତ ହୁଏ ଓ ଏଥର ଏହାର ତୀବ୍ରତା ବୃଦ୍ଧିପାଇଥାଏ । ଏହି କାରଣରୁ ସ୍କିନରଙ୍କ ମତରେ ବ୍ୟବହାରକୁ ସଂଗଠିତ କରିବା ପାଇଁ ଦଣ୍ଡ ପ୍ରଦାନ ଏକ ନିକୃଷ୍ଟ ଉପାୟ ।

## ପୁନର୍ବଳନ ଅନୁସୂଚୀ :

ସ୍କିନରଙ୍କ ମତରେ ପ୍ରଶିକ୍ଷଣ ଓ ଅଭିପ୍ରେରଣାକୁ ପ୍ରଭାବିତ କରିବାର ଭିତ୍ତିଭୂମିରେ ପୁନର୍ବଳନଗୁଡ଼ିକର ଏକ ଅନୁସୂଚୀ ବା ତାଲିକା ପ୍ରସ୍ତୁତ କରାଯାଇପାରେ । ପ୍ରତ୍ୟେକ ତାଲିକାରେ ଏକ ନିର୍ଦ୍ଦିଷ୍ଟ ଧରଣର ଓ ଧର୍ମର ପୁନର୍ବଳନକାରୀଗୁଡ଼ିକୁ ଅନ୍ତର୍ଭୁକ୍ତ କରାଯାଇଥାଏ । ସାଧାରଣତଃ ଦୁଇଟି ଶ୍ରେଣୀର ପୁନର୍ବଳନ ତାଲିକା ପ୍ରସ୍ତୁତ କରାଯାଏ । ପ୍ରଥମଟି ନିମାନ୍ତ୍ରିତ ପୁନର୍ବଳନ ତାଲିକା ଏବଂ ଦ୍ୱିତୀୟଟି ଆଂଶିକ ପୁନର୍ବଳନ ତାଲିକା । ନିମାନ୍ତ୍ରିତ ପୁନର୍ବଳନ ତାଲିକାରେ ପ୍ରତ୍ୟେକ ଥରର ପ୍ରତିକ୍ରିୟା ପାଇଁ ପ୍ରୟୋଗ କରାଯାଉଥିବା ପୁନର୍ବଳନଗୁଡ଼ିକୁ ଅନ୍ତର୍ଭୁକ୍ତ କରାଯାଏ । କିନ୍ତୁ ଆଂଶିକ ପୁନର୍ବଳନ ତାଲିକାରେ ସମସ୍ତ ପ୍ରତିକ୍ରିୟା ପାଇଁ ପୁନର୍ବଳନ ପ୍ରୟୋଗ କରା ନଯାଇ ମାତ୍ର ଅଳ୍ପ

କେତେକ ଥର ପ୍ରୟୋଗ କରାଯାଏ । ଆଂଶିକ ପୁନର୍ବଳନର ଚାରିଗୋଟି ମୌଳିକ ତାଲିକା ପ୍ରସ୍ତୁତ କରାଯାଇଥାଏ ।

(୧) **ନିର୍ଦ୍ଦିଷ୍ଟ ଅନୁପାତକ ତାଲିକା** :—କେତେକ ନିର୍ଦ୍ଦିଷ୍ଟ ଥର ଠିକ୍ ପ୍ରତିକ୍ରିୟା ପ୍ରଦର୍ଶନ କଲେ ଯେଉଁ ପୁନର୍ବଳନ ପ୍ରଦାନ କରାଯାଏ ତାହା ଏହି ତାଲିକାର ଅନ୍ତର୍ଭୁକ୍ତ । ଉଦାହରଣ ସ୍ୱରୂପ ଜଣେ ଶିଶୁ ପାଞ୍ଚଥର ଠିକ୍ ପ୍ରତିକ୍ରିୟା ପ୍ରଦର୍ଶନ କଲେ ତାକୁ ଥରେ ପୁନର୍ବଳନ ପରିବେଷଣ କରାଯାଇପାରେ । ନିର୍ଦ୍ଦିଷ୍ଟ ଆନୁପାତିକ ତାଲିକାର ପୁନର୍ବଳନ ଦ୍ୱାରା ବ୍ୟବହାର ସାଧାରଣତଃ ଗତିଶୀଳ ହୋଇଥାଏ ।

(୨) **ପରିବର୍ତ୍ତନଶୀଳ ଅନୁପାତକ ତାଲିକା** :—କେତେକ ନିର୍ଦ୍ଦିଷ୍ଟ ଥର ଠିକ୍ ପ୍ରତିକ୍ରିୟା ପ୍ରକାଶ କଲେ ପୁନର୍ବଳନ ପ୍ରଦାନ କରାଯାଏ; କିନ୍ତୁ ପ୍ରତ୍ୟେକ ଥର ପ୍ରତିକ୍ରିୟାର ସାମଗ୍ରିକ ସଂଖ୍ୟା ସମାନ ନଥାଏ । ଏ କ୍ଷେତ୍ରରେ କେତୋଟି ସଠିକ ପ୍ରତିକ୍ରିୟା ପ୍ରଦର୍ଶନ ପରେ ପୁନର୍ବଳନ ମିଳିବ ତାହା ପରୀକ୍ଷଣ ପାତ୍ର ଜାଣି ନଥାଏ । ଏହି ତାଲିକାରେ ମଧ୍ୟ ବ୍ୟବହାରର ବେଗ ଯଥେଷ୍ଟ ବୃଦ୍ଧି ପାଏ ।

(୩) **ନିର୍ଦ୍ଦିଷ୍ଟ ମଧ୍ୟାନ୍ତର ତାଲିକା** :—ଏହି ତାଲିକାରେ ପୁନର୍ବଳନ ଏକ ନିର୍ଦ୍ଦିଷ୍ଟ ସମୟାନ୍ତରରେ ପ୍ରଦାନ କରାଯାଏ । ଉଦାହରଣ ସ୍ୱରୂପ ପ୍ରତି ଏକ ମିନିଟ୍ ବ୍ୟବଧାନରେ ପୁନର୍ବଳନ ପ୍ରଦାନ କରାଯାଇପାରେ । ଏ କ୍ଷେତ୍ରରେ ପରୀକ୍ଷଣ ପାତ୍ର ଯେତେ ସଂଖ୍ୟକ ପ୍ରତିକ୍ରିୟା ପ୍ରଦର୍ଶନ କରୁଥିଲେ ମଧ୍ୟ ଏହାର ପୁନର୍ବଳନ ଉପରେ କୌଣସି ପ୍ରଭାବ ନଥାଏ । ମନେକରାଯାଉ ଯେ ସ୍କିନର ବକ୍ସ ମଧ୍ୟରେ ମୂଷାଟି ପ୍ରଥମ ୩୦ ସେକେଣ୍ଡ ମଧ୍ୟରେ ଛଡ଼ଟିକୁ ୫୦ ଥର ଚାପ ପ୍ରଦାନ କରିବା ପରେ ମଧ୍ୟ ପୁନର୍ବଳନ ପ୍ରାପ୍ତ ହେଉନାହିଁ । ମାତ୍ର ୩୦ ସେକେଣ୍ଡ ପରେ ପ୍ରଥମ ଥର ଚାପ ପ୍ରଦାନ ଫଳରେ ସେ ପୁନର୍ବଳନ ପ୍ରାପ୍ତହେବ । ଏହି ତାଲିକାରୁ ଦେଖାଯାଏ ଯେ ଉକ୍ତ ନିର୍ଦ୍ଦିଷ୍ଟ କୃତ ସମୟର ମଧ୍ୟାବସ୍ଥାରେ ପ୍ରତିକ୍ରିୟା ସ୍ଥିର ହୋଇଯାଏ ବା ସମ୍ପୂର୍ଣ୍ଣ ବନ୍ଦ ହୋଇଥାଏ ମାତ୍ର ପୁନର୍ବଳନର ସମୟ ନିକଟତର ହେଲେ ପ୍ରତିକ୍ରିୟାର ବେଗ ଓ ବାରମ୍ବାରତା ବୃଦ୍ଧି ପାଏ ।

(୪) **ପରିବର୍ତ୍ତନ ଶୀଳ ମଧ୍ୟାନ୍ତର ତାଲିକା** :—ଏହି ତାଲିକା ପରିବର୍ତ୍ତନଶୀଳ ଆନୁପାତିକ ତାଲିକାର ସଦୃଶ । ଏ କ୍ଷେତ୍ରରେ ପ୍ରତିକ୍ରିୟା ଓ ପୁନର୍ବଳନ ମଧ୍ୟରେ ସମୟାନ୍ତର ପ୍ରତିଥର ପରିବର୍ତ୍ତିତ ହେଉଥାଏ । କେଉଁ ସମୟରେ ପୁନର୍ବଳନ ପରିବେଷିତ ହେବ ତାହା ପରୀକ୍ଷଣ ପାତ୍ର ଜାଣିପାରେ ନାହିଁ । ଏ ପ୍ରକ୍ରିୟା ଯୋଗୁଁ ମନ୍ଥର ଅଥଚ ଦୃଢ଼ ପ୍ରତିକ୍ରିୟା ପ୍ରକାଶ ପାଇଥାଏ ।

**ବିଲୁପ୍ତିକରଣ (Extinction) :**

ବିଲୁପ୍ତିକରଣ ଅନ୍ୟ ଏକ ପ୍ରକାର ପୁନର୍ବଳନ ଅନୁସୂଚୀ । ଏହା କ୍ରମଗତିଶୀଳ ପୁନର୍ବଳନର ବିପରୀତ ଧର୍ମୀ । ଏ କ୍ଷେତ୍ରରେ ପ୍ରତିକ୍ରିୟା ଶେଷରେ ପରୀକ୍ଷଣ ପାତ୍ରକୁ

କୌଣସି ପୁନର୍ବଳନ ପ୍ରଦାନ କରାଯାଏ ନାହିଁ । ଫଳତଃ ପ୍ରତିକ୍ରିୟାର ବାରମ୍ବାରତା ଓ ତୀବ୍ରତା କ୍ରମଶଃ କମ୍ ହୋଇଯାଏ । କୌଣସି ଆଚରଣର ବିଲୋପନ ପାଇଁ ଏହା ଏକ ଉପଯୁକ୍ତ ଧର୍ମୀ ଦଣ୍ଡ । ପ୍ରଥମେ ପ୍ରତ୍ୟେକ ପ୍ରତିକ୍ରିୟାରେ ପୁନର୍ବଳନର ପରିଣାମ କମ୍ କରାଯାଇ ଶେଷରେ ବନ୍ଦ କରି ଦିଆଯାଏ । ଫଳରେ ପରୀକ୍ଷଣ ପାତ୍ରର ପ୍ରତିରୋଧ କ୍ଷମତା ବୃଦ୍ଧି ପାଇଥାଏ ।

## କରଣବାଦୀ ଅନୁବନ୍ଧନ ଓ ପାଭ୍‌ଲଭ୍‌ଙ୍କ ଅନୁବନ୍ଧିତ ଅନୁକ୍ରିୟା ମଧ୍ୟରେ ପାର୍ଥକ୍ୟ ଓ ସାଦୃଶ୍ୟ :

୧ । ପାଭ୍‌ଲଭ୍‌ଙ୍କ ପରୀକ୍ଷାରେ ପରୀକ୍ଷଣ ପାତ୍ର ସ୍ୱାଭାବିକ ଉଦ୍ଦୀପକ ଓ ଅସ୍ୱାଭାବିକ ଉଦ୍ଦୀପକ ମଧ୍ୟରେ ସମ୍ପର୍କ ସ୍ଥାପନ ଦ୍ୱାରା ଶିକ୍ଷା ଲାଭ କରିଥାଏ । ତେଣୁ ଏପରି ପ୍ରଶିକ୍ଷଣରେ ଦୁଇଟି ଉଦ୍ଦୀପକ କାର୍ଯ୍ୟକାରୀ ହୋଇଥାନ୍ତି । କିନ୍ତୁ ବାସ୍ତବରେ ଗୋଟିଏ ଉଦ୍ଦୀପକ ଦ୍ୱାରା ପ୍ରତିକ୍ରିୟା ସୃଷ୍ଟି ହେବା ସମୟରେ ଅନ୍ୟଟି ମଧ୍ୟ ପ୍ରଶିକ୍ଷଣ ମାଧ୍ୟମରେ ପ୍ରତିକ୍ରିୟା ସୃଷ୍ଟି କରେ । କିନ୍ତୁ କରଣବାଦୀ ଅନୁବନ୍ଧନରେ ପ୍ରଶିକ୍ଷଣ ଲାଭ ପାଇଁ ପରୀକ୍ଷଣ ପାତ୍ର ପ୍ରତିକ୍ରିୟା ଓ ଉଦ୍ଦୀପକ ମଧ୍ୟରେ ସମ୍ପର୍କ ସ୍ଥାପନ କରିବାକୁ ପଡ଼େ ।

୨ । ପାଭ୍‌ଲଭ୍‌ଙ୍କ ପରୀକ୍ଷାରେ ସ୍ୱୟଂକ୍ରିୟ ସ୍ନାୟବିକ ସଂସ୍ଥାର ଅନିଚ୍ଛାକୃତ କାର୍ଯ୍ୟର ପରିମାପ କରାଯାଏ । କିନ୍ତୁ କରଣବାଦୀ ଅନୁବନ୍ଧନରେ କେନ୍ଦ୍ରୀୟ ସ୍ନାୟବିକ ସଂସ୍ଥାର ସ୍ୱେଚ୍ଛାକୃତ କାର୍ଯ୍ୟ ବା ପ୍ରତିକ୍ରିୟାର ପରିମାପ କରାଯାଏ । ପ୍ରତିକ୍ରିୟାଶୀଳ ବ୍ୟବହାରଟି କୌଣସି ଜଣାଶୁଣା ଉଦ୍ଦୀପକଦ୍ୱାରା ଏବଂ ସ୍ୱପ୍ରଚେଷ୍ଟା ଦ୍ୱାରା ସୃଷ୍ଟି ହୋଇଥାଏ । ପ୍ରଶିକ୍ଷଣରେ [illegible] ଉଦ୍ଦୀପକର ପରିବେଷଣ ଉପରେ ନିର୍ଭର କରେ । ଅନୁବନ୍ଧିତ ଅନୁକ୍ରିୟାରେ ପରିବେଷ୍ଟନୀ ଭାବରେ ବ୍ୟବହାରକୁ ପ୍ରଭାବିତ କରେ । ଅନ୍ୟ ପକ୍ଷରେ କରଣବାଦୀ ଅନୁବନ୍ଧନର ବ୍ୟବହାର ଏହାର ଫଳାଫଳ ଉପରେ ନିର୍ଭର କରେ । ଜୀବ ନିଜ ଲକ୍ଷ୍ୟ ହାସଲ କରିବା ପାଇଁ ପରିବେଷ୍ଟନୀକୁ ଆବଶ୍ୟକୀୟ ସଙ୍ଗଠିତ, ସଜ୍ଜିତ ଓ ପରିବର୍ତ୍ତିତ କରିଥାଏ ।

୩ । ଉଭୟ ପ୍ରକାର ଅନୁବନ୍ଧନରେ ଉଦ୍ଦୀପକ ଭିନ୍ନ ଭିନ୍ନ କାର୍ଯ୍ୟ କରିଥାଏ । ପାଭ୍‌ଲଭ୍‌ଙ୍କ ପରୀକ୍ଷାରେ ଅସ୍ୱାଭାବିକ ଉଦ୍ଦୀପକ (U.C.S) ପୁନର୍ବଳନକାରୀ ଭାବରେ କାର୍ଯ୍ୟ କରିବା ପାଇଁ ଉଦ୍ଦିଷ୍ଟ କିନ୍ତୁ ଏହାର କାର୍ଯ୍ୟ ଧାରା କରଣବାଦୀ ଅନୁବନ୍ଧନରେ ପୁନର୍ବଳନକାରୀ ଭାବରେ କାର୍ଯ୍ୟ କରିବାକୁ ନିୟୋଜିତ କରାଯାଇଥିବା ଉଦ୍ଦୀପକର କାର୍ଯ୍ୟଧାରାଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଏ କ୍ଷେତ୍ରରେ

ପୁନର୍ବଳନକାରୀ ଉଦ୍ଦୀପକଟି ପ୍ରତିକ୍ରିୟା ଦ୍ୱାରା ହାସଲ କରାଯାଇଥାଏ । ପରୀକ୍ଷଣ ପାତ୍ର ନିଜ ଇଚ୍ଛା ମୁତାବକ ପରିବେଷ୍ଟନୀର ବିଭିନ୍ନ ଉପାଦାନ ମାଧ୍ୟମରେ ପ୍ରତିକ୍ରିୟା ପ୍ରକାଶ କରିଥାଏ । କିନ୍ତୁ ପାଭ୍‌ଲଭ୍‌ଙ୍କ ଅନୁବନ୍ଧନ କ୍ରିୟାରେ ଉଦ୍ଦୀପକ ପୁନର୍ବଳନକାରୀଟି ପ୍ରତିକ୍ରିୟା ପ୍ରକାଶର ପୂର୍ବରୁ ପରିବେଷଣ କରାଯାଏ । ତେଣୁ ଏହାର ପରିବେଷ୍ଟନୀ ଉପରେ କୌଣସି ପ୍ରଭାବ ନଥାଏ । ମୋଟାମୋଟି ଭାବରେ କହିବାକୁ ଗଲେ କରଣବାଦୀ ଅନୁବନ୍ଧନରେ ପ୍ରତିକ୍ରିୟାଟି ପରିବେଷ୍ଟନୀରେ ପରିବର୍ତ୍ତନ ଆଣିଥାଏ । କିନ୍ତୁ ପାଭ୍‌ଲଭ୍‌ଙ୍କ ଅନୁବନ୍ଧନରେ ଠିକ୍ ବିପରୀତ ଅର୍ଥାତ୍ ପରିବେଷ୍ଟନୀଗତ ପରିବର୍ତ୍ତନରୁ ପ୍ରତିକ୍ରିୟା ସୃଷ୍ଟି ହୋଇଥାଏ ।

୭ । ଦୁଇ ପ୍ରକାର ଅନୁବନ୍ଧନରେ ପରୀକ୍ଷଣ ପାତ୍ରର କାର୍ଯ୍ୟଧାରା ମଧ୍ୟ ପୃଥକ୍ ହୋଇଥାଏ । ପାଭ୍‌ଲଭ୍‌ଙ୍କ ଅନୁବନ୍ଧନରେ ପରୀକ୍ଷଣ ପାତ୍ର ନିଷ୍କ୍ରିୟ ଏବଂ ପରିବେଷ୍ଟନୀରେ ପରିବର୍ତ୍ତନ ଘଟିବା ପର୍ଯ୍ୟନ୍ତ ତାହାକୁ ଅପେକ୍ଷା କରିବାକୁ ପଡ଼ିଥାଏ । ପ୍ରଥମେ ସ୍ୱାଭାବିକ ଉଦ୍ଦୀପକ (CS) ପରେ ଅସ୍ୱାଭାବିକ ଉଦ୍ଦୀପକ (U.C.S) ଏବଂ ଶେଷରେ ସେ ପ୍ରତିକ୍ରିୟା ପ୍ରକାଶ କରେ । ସେ କୌଣସି ପ୍ରକାରେ ଉଦ୍ଦୀପକକୁ ନିୟନ୍ତ୍ରଣ କରିପାରେ ନାହିଁ । ବରଂ ଏପରି ମଧ୍ୟ କୁହାଯାଇପାରେ ଯେ ସେ ନିଜ ପ୍ରତିକ୍ରିୟାକୁ ମଧ୍ୟ ଇଚ୍ଛାମତେ ନିୟନ୍ତ୍ରଣ କରି ପାରେ ନାହିଁ । କାରଣ ଅସ୍ୱାଭାବିକ ଉଦ୍ଦୀପକ ଦ୍ୱାରା ପ୍ରତିକ୍ରିୟା ସ୍ୱତଃ ପ୍ରବୃତ୍ତ ଭାବେ ନିଃସୃତ ହୋଇଥାଏ । କୁକୁରଟିର ସମ୍ମୁଖରେ ଖାଦ୍ୟ ରଖାଗଲେ ସେ ନିଜ ଚେଷ୍ଟାରେ ଲାଳ ଗଡ଼ାଏ ନାହିଁ । ବରଂ ଏହା ପ୍ରାକୃତିକ ଉପାୟରେ ସ୍ୱତଃ ଘଟିଥାଏ । କିନ୍ତୁ କରଣବାଦୀ ଅନୁବନ୍ଧନରେ ପରୀକ୍ଷଣ ପାତ୍ର ସ୍ୱାଧୀନ ଭାବରେ ଏବଂ ସ୍ୱେଚ୍ଛାକୃତ ଭାବରେ ପ୍ରତିକ୍ରିୟା ପ୍ରଦର୍ଶନ କରିପାରେ ।

୮ । କେତେକ ଗବେଷକ ମତ ପ୍ରଦାନ କରନ୍ତି ଯେ ଉକ୍ତ ଦୁଇ ପ୍ରକାରର ଅନୁବନ୍ଧନରେ ପ୍ରଶିକ୍ଷଣର ଶୈଳୀ ଯେ କେବଳ ଭିନ୍ନ ତା ନୁହେଁ ବରଂ ଶିକ୍ଷଣର ଦୁଇଟି ଭିନ୍ନ ନିୟମ ଅନୁସାରେ ଏହି ଦୁଇଟି ପଦ୍ଧତି କାର୍ଯ୍ୟକାରୀ ହୋଇଥାଏ । ପାଭ୍‌ଲଭ୍‌ଙ୍କ ଅନୁବନ୍ଧନ ସନ୍ନିଧି-ନିୟମ (Law of Contiguity) ଓ କରଣବାଦୀ ଅନୁବନ୍ଧନର ଫଳାଫଳ ବିଧିନିୟମ (Law of Effect) ଦ୍ୱାରା ପ୍ରଭାବିତ ହୋଇଥାଏ ।

୨ । ପାଭ୍‌ଲଭ୍‌ଙ୍କ ଅନୁବନ୍ଧନର ମୂଳ ଉଦ୍ଦେଶ୍ୟ ହେଉଛି ଗୋଟିଏ ଉଦ୍ଦୀପକ ସ୍ଥାନରେ ଅନ୍ୟ ଉଦ୍ଦୀପକକୁ ପ୍ରଶିକ୍ଷଣ କାର୍ଯ୍ୟରେ ନିଯୋଜିତ କରିବା ।

କିନ୍ତୁ କରଣବାଦୀ ଅନୁବନ୍ଧନର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ବ୍ୟବହାରର ପରିମାର୍ଜିତ କରଣ । ପ୍ରଥମଟି ଉଦ୍ଦୀପକ-ଉଦ୍ଦେଶ୍ୟ-ପ୍ରଣୋଦିତ କିନ୍ତୁ ଦ୍ୱିତୀୟଟି ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହାସଲକାରୀ ।

ଏସବୁ ପ୍ରଭେଦ ସତ୍ତ୍ୱେ ଏହା ନିର୍ବିବାଦରେ ସ୍ୱୀକାର କରାଯାଏ ଯେ ଅନୁବନ୍ଧନର ନିୟମ ବିଶେଷତଃ ପାଭ୍‌ଲଭ୍‌ଙ୍କର ଅନୁବନ୍ଧନର ବିଲୁପ୍ତିକରଣ ନିୟମ କରଣବାଦୀ ଅନୁବନ୍ଧନ ପ୍ରତି ମଧ୍ୟ ପ୍ରଯୁଜ୍ୟ । ଯଦି କରଣବାଦୀର ପ୍ରତ୍ୟେକ ପ୍ରତିକ୍ରିୟା ପାଇଁ ପୁନର୍ବଳନ ପ୍ରଦାନ କରାଯାଏ ତେବେ ପ୍ରତିକ୍ରିୟା କ୍ରମଶଃ ଦୃଢ଼ ଓ ସ୍ଥିର ହୋଇଥାଏ କିନ୍ତୁ ପୁନର୍ବଳନ ବନ୍ଦ କରିଦେଲେ ପ୍ରତିକ୍ରିୟା କ୍ରମଶଃ ଦୁର୍ବଳ ହୋଇ ବିଲୁପ୍ତ ହୋଇଥାଏ । ମନୋବିଜ୍ଞାନୀ Heartଙ୍କ ମତରେ ପ୍ରତ୍ୟେକ ପ୍ରଶିକ୍ଷଣ ପରୀକ୍ଷାରେ ଉଭୟ ପାଭ୍‌ଲଭ୍‌ଙ୍କ ଅନୁବନ୍ଧିତ ଅନୁକ୍ରିୟା ଓ କରଣବାଦୀ ଅନୁବନ୍ଧନ ଘଟିଥିବା ହୋଇଥାଏ । ଯଥା ସ୍କିନରଙ୍କ ପରୀକ୍ଷାରେ ମୂଷାଟି ଖାଦ୍ୟର ଦର୍ଶନରେ ଲାଳ ସ୍ରାବ କରିପାରିଥାଏ କିନ୍ତୁ ଗବେଷକ ସେଥିପ୍ରତି ଦୃଷ୍ଟି ପ୍ରଦାନ କରି ନଥାଇ ପାରନ୍ତି । ସେହିପରି ପାଭ୍‌ଲଭ୍‌ଙ୍କ ପରୀକ୍ଷାରେ କୁକୁରଟି ନିଜ ଚେଷ୍ଟାରେ ଖାଦ୍ୟ ହାସଲ କରିବାକୁ ଚେଷ୍ଟିତ ହୋଇଥାଇପାରେ ଅଥଚ ତାକୁ ସେପରି ସୁଯୋଗ ମିଳି ନ ଥାଇପାରେ ।

ପରିଶେଷରେ ଏହା କୁହାଯାଇପାରେ ଯେ ଦୁଇଟି ପ୍ରକାର ଅନୁବନ୍ଧନ ମଧ୍ୟରେ ପ୍ରଭେଦ ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ଓ ବ୍ୟାପକ ସମ୍ପର୍କ ସାଦୃଶ୍ୟ ପରିଲକ୍ଷିତ ହୁଏ । ଉଭୟ ପ୍ରକାର ପ୍ରଶିକ୍ଷଣ ଭିନ୍ନତା ପ୍ରକରଣ (Discrimination) ଏବଂ ସାଧାରଣୀକରଣ (Generalisation), ବିଲୁପ୍ତିକରଣ (Extinction), ନିରୋଧ (Inhibition), ପୁନର୍ବଳନ (Reinforement), ଦ୍ୱିତୀୟକ ସ୍ତର (Second Order) ଏବଂ ଉଚ୍ଚତର ସ୍ତର (Higher Order) ଅନୁବନ୍ଧନ ଆଦି କ୍ରିୟା ଓ ଉପାଦାନ ଗୁଡ଼ିକର ସାହାଯ୍ୟରେ ଅନୁଷ୍ଠିତ ହୋଇଥାନ୍ତି । ଅତିଏବ ମଧ୍ୟ ଉଭୟର କାର୍ଯ୍ୟଧାରା ପୃଥକ୍ ହେଲେ ମଧ୍ୟ ପ୍ରତିକ୍ରିୟା ପ୍ରଦର୍ଶନକାରୀର ପ୍ରତିକ୍ରିୟାକୁ ନିୟନ୍ତ୍ରିତ ଓ ସ୍ଥାୟୀ କରିବା ଉଭୟ ପ୍ରକାର ଅନୁବନ୍ଧନର ଲକ୍ଷ୍ୟ ।

### କରଣବାଦୀ ଅନୁବନ୍ଧନର ଶିକ୍ଷା କ୍ଷେତ୍ରରେ ଉପଯୋଗୀତା :

ଶିକ୍ଷା କ୍ଷେତ୍ରରେ ଛାତ୍ରମାନଙ୍କ ବିଭିନ୍ନ ଦିଗରେ ପ୍ରଶିକ୍ଷଣ ପାଇଁ ଶିକ୍ଷକଙ୍କୁ କରଣବାଦୀ ଅନୁବନ୍ଧନ ଅନେକ ସାହାଯ୍ୟ କରିପାରେ । ବାସ୍ତବ କ୍ଷେତ୍ରରେ ଶିକ୍ଷକମାନେ ଜ୍ଞାତ ସାରରେ ବା ଅଜ୍ଞାତ ସାରରେ ଏହି ଅନୁବନ୍ଧନର ନିୟମ ବ୍ୟବହାର କାର୍ଯ୍ୟକାରୀ କରୁଥାନ୍ତି ।

**(୧) କ୍ରମାନ୍ୱିତ ସ୍ତରରେ ଜଟିଳତର ହେବା** :—କାରଣବାଦୀ ଅନୁବନ୍ଧନର ଗବେଷକମାନଙ୍କ ମତରେ ବ୍ୟବହାରକୁ କ୍ରମାନ୍ୱିତ ଭାବରେ ସଙ୍ଗଠିତ ଓ ନିୟନ୍ତ୍ରିତ କରାଯାଇପାରେ । ଏଥିପାଇଁ ପ୍ରତ୍ୟେକ ସ୍ତର ପୁନର୍ବଳନର ବ୍ୟବହାର ଅପରିହାର୍ଯ୍ୟ । ଏହି ପ୍ରକ୍ରିୟା ଦ୍ୱାରା ଜଟିଳ କାର୍ଯ୍ୟ ଗୁଡ଼ିକୁ ବିଭିନ୍ନ କ୍ଷୁଦ୍ର କ୍ଷୁଦ୍ର ସ୍ତରରେ ବିଭକ୍ତ କରି ଶିକ୍ଷା ପ୍ରଦାନ କରାଯାଏ । ମନେକର ଛାତ୍ର ଏକ ବଡ଼ କବିତା ମୁଖସ୍ଥ କରିବାର ଅଛି । ଏ କ୍ଷେତ୍ରରେ କବିତାଟିର ପଦଗୁଡ଼ିକୁ ଗୋଟିକ ପରେ ଗୋଟିଏ ଶିକ୍ଷା ଦିଆଯାଇପାରେ ଓ ପ୍ରତ୍ୟେକ ପଦର ଶିକ୍ଷା ସମାପ୍ତି ପରେ ଛାତ୍ରକୁ ପୁନର୍ବଳନ ପରିବେଷଣ କରାଯାଇପାରେ । ଏଠାରେ ପୁନର୍ବଳନ ଅସ୍ତିବାଚକ ହେବା ଆବଶ୍ୟକ । କିନ୍ତୁ ଭୁଲ୍ ପଥରେ ପରିଚାଳିତ ହେଲେ ଛାତ୍ରକୁ ନାସ୍ତିବାଚକ ପୁନର୍ବଳନ ପ୍ରଦାନ କରାଯାଇ ପୁନଶ୍ଚ ଠିକ୍ ପଥକୁ ଫେରାଇ ଅଣାଯାଇପାରେ ।

**(୨) ବିଲୁପ୍ତିକରଣ ସାହାଯ୍ୟରେ ଭ୍ରମାତ୍ମକ ବ୍ୟବହାରର ସଂଶୋଧନ ବା ବିଲୋପ ସାଧନ** :—କୌଣସି ଶିକ୍ଷା ହୋଇଯାଇଥିବା ପାଠଟି ବିନା ପୁନର୍ବଳନରେ ପୁନଃ ପଠନ ସମୟରେ ପ୍ରତିକ୍ରିୟାର ତୀବ୍ରତା ଓ ଶକ୍ତି ହ୍ରାସପାଏ । ତେଣୁ ବିଲୁପ୍ତିକରଣ ଶୈଳୀ ପ୍ରୟୋଗ କରି ଶିକ୍ଷକ ଶ୍ରେଣୀ ଗୃହରେ ଛାତ୍ରର ଭ୍ରମାତ୍ମକ ବ୍ୟବହାରର ବିଲୋପ ସାଧନ କରିପାରନ୍ତି । କିନ୍ତୁ ସାଧାରଣତଃ ଦେଖାଯାଏ ଯେ ବିଲୁପ୍ତିକରଣ ଶୈଳୀର ବ୍ୟବହାର ସମୟରେ ଛାତ୍ରର ଭ୍ରମାତ୍ମକ ବ୍ୟବହାର ବିଲୋପିତ ହେବା ପୂର୍ବରୁ ଅଧିକରୁ ଅଧିକ ଭ୍ରମାତ୍ମକ ଦିଗକୁ ଗତି କରିଥାଏ । ଏପରି ସ୍ଥଳରେ ଶିକ୍ଷକ ଧୈର୍ଯ୍ୟର ସହିତ ଅପେକ୍ଷା କରିବାକୁ ପଡ଼ିଥାଏ । ଅସ୍ତିବାଚକ ପୁନର୍ବଳନ ପ୍ରୟୋଗ ଦ୍ୱାରା ବିଲୁପ୍ତିକରଣ ସାଧାରଣତଃ ଅଧିକ ଫଳପ୍ରଦ ହେବାର ଦେଖାଯାଇଥାଏ ।

**(୩) ପୁନର୍ବଳନ** :—ଶିକ୍ଷା କ୍ଷେତ୍ରରେ ପୁନର୍ବଳନ ଏକ ପ୍ରମୁଖସ୍ଥାନ ଅଧିକାର କରିଥାଏ । ଏହା କାରଣବାଦୀ ଅନୁବନ୍ଧନର ଏକ ପ୍ରଧାନ ଅବଦାନ । ଶ୍ରେଣୀ ଗୃହରେ ପୁନର୍ବଳନ ପ୍ରୟୋଗ କରି ଶିକ୍ଷକ ଛାତ୍ରର ଶିକ୍ଷଣ ପ୍ରକ୍ରିୟାକୁ ଯେ କୌଣସି ଢଙ୍ଗରେ ପରିଚାଳିତ କରିପାରନ୍ତି । ଅସ୍ତିବାଚକ ପୁନର୍ବଳନ ସର୍ବାଧିକ ବ୍ୟବହୃତ ବ୍ୟବହାର ପରିବର୍ତ୍ତନକାରୀ ଶୈଳୀ ଭାବରେ ଗୃହୀତ । କୌଣସି ଅସ୍ତିବାଚକ ବ୍ୟବହାର ପାଇଁ ଛାତ୍ରକୁ ପ୍ରବୃତ୍ତ କରିବା ଏହି ଶୈଳୀର ମୁଖ୍ୟ ଉଦ୍ଦେଶ୍ୟ । ଏପରି ପୁରସ୍କାର କୌଣସି ପଦାର୍ଥ ରୂପରେ ବା ମୌଖିକ ଆଶ୍ୱାସନା ବା ପ୍ରଶଂସା ରୂପରେ ପ୍ରଦାନ କରାଯାଇପାରେ । ଅସ୍ତିବାଚକ ପୁନର୍ବଳନ ପରିବେଷଣଦ୍ୱାରା ଛାତ୍ର ଉକ୍ତ କାର୍ଯ୍ୟକୁ ପୁନରାବୃତ୍ତି କରିବାର ଉତ୍ସାହ ଲାଭ କରେ ଫଳତ ବ୍ୟବହାରଟି ସ୍ଥାୟୀ ହୋଇଥାଏ ।

**(୪) ଅନ୍ୟାନ୍ୟ ଶିକ୍ଷା** :—କାରଣବାଦୀ ଅନୁବନ୍ଧନର ସାହାଯ୍ୟ ନେଇ ଛାତ୍ରର ଅଭ୍ୟାସ ନିୟମିତ କରାଯାଇପାରେ । ଏହା ବ୍ୟତୀତ ଗୁଣନ କାର୍ଯ୍ୟ, ବନାନ,

ପଠନ ଅଭ୍ୟାସ କାର୍ଯ୍ୟକୁ ସହଜ ଉପାୟରେ ଶିକ୍ଷା କରାଯାଇପାରେ । ଖରାପ ଅଭ୍ୟାସ ଗୁଡ଼ିକ ମଧ୍ୟ ଏହି ପରିସ୍ଥିତି ମାଧ୍ୟମରେ ବନ୍ଦ କରାଯାଇପାରେ । ଉଦ୍ଦୀପନା ଏବଂ କଷ୍ଟପ୍ରଦ ଅନୁଭୂତି ମଧ୍ୟରେ ସମ୍ପର୍କ ସ୍ଥାପିତ ହେଲେ ଛାତ୍ର ମନରେ ଭୟ, ଆତଙ୍କ ଓ ପକ୍ଷପାତିତା ଆଦି ମାନସିକ ଦୁରବସ୍ଥା ସୃଷ୍ଟି ହୋଇଥାଏ । କିନ୍ତୁ ପ୍ରତି ଅନୁବନ୍ଧନ ବା ପୁନଃ ଅନୁବନ୍ଧନ ପରିସ୍ଥିତିରେ ଉକ୍ତ ଉଦ୍ଦୀପନାକୁ ଆନନ୍ଦ ପ୍ରଦ ଅନୁଭୂତି ସହ ସଂଯୁକ୍ତ କରି ଭୟ, ଆତଙ୍କ ଆଦି ଦୂର କରାଯାଇପାରେ । କେତେକ ଛାତ୍ରଙ୍କର ଶିକ୍ଷା, ଶିକ୍ଷକ ଓ ଶିକ୍ଷାନୁଷ୍ଠାନ ପ୍ରତି ମନୋଭାବ ଅନୁକୂଳ ହୋଇନଥାଏ । କାରଣ ଏ ସବୁକୁ ସେ ଏକ କଷ୍ଟକର ଅନୁଭୂତି ପ୍ରଦାୟକ ଉଦ୍ଦୀପକ ଭାବରେ ଗ୍ରହଣ କରିଥାଏ । କିନ୍ତୁ ବିପରୀତ ଅନୁବନ୍ଧନ ମାଧ୍ୟମରେ ଶିଶୁ ମନର କଷ୍ଟକର ଅନୁଭୂତିକୁ ଆନନ୍ଦ ଦାୟକ ଅନୁଭୂତିରେ ପରିବର୍ତ୍ତିତ କରାଯାଇ ଶିକ୍ଷାପ୍ରତି ତା ମନରେ ଆଗ୍ରହ ସୃଷ୍ଟି କରାଯାଇପାରେ ।

**(୫) ଦଣ୍ଡ ପ୍ରଦାନ** :—ଶିକ୍ଷା କ୍ଷେତ୍ରରେ ଦଣ୍ଡର ପ୍ରୟୋଗ ନେଇ ସାଧାରଣତଃ ଅନେକ ବାଦାନୁବାଦ ଶୁଣିବାକୁ ମିଳେ । ତେଣୁ ମନୋବିଜ୍ଞାନୀମାନେ ଏ ଦିଗରେ ଗବେଷଣା କରି ଦଣ୍ଡ ପ୍ରଦାନ ସୀମା ନିର୍ଣ୍ଣୟ କରିଛନ୍ତି । ଆଧୁନିକ ମନୋ-ବିଜ୍ଞାନୀମାନଙ୍କ ମତରେ ନାସ୍ତିବାଚକ ବ୍ୟବହାରକୁ ପୁରସ୍କାର ପ୍ରଦାନ କରିବା ପଦ୍ଧତି ନାସ୍ତିବାଚକ ବ୍ୟବହାର ପ୍ରତି ଦଣ୍ଡ ବିଧାନ କରିବା ପଦ୍ଧତିଠାରୁ ଅଧିକ ଫଳପ୍ରଦ, କିନ୍ତୁ ସମସ୍ତ ସମୟରେ ବାସ୍ତବ କ୍ଷେତ୍ରରେ ଦଣ୍ଡ ପ୍ରଦାନ ମଧ୍ୟ ଫଳପ୍ରଦ ହେବାର ଦେଖାଯାଏ । କେତେକ ଶିକ୍ଷାବିତ୍‌ମାନଙ୍କ ମତରେ କୌଣସି ଭୁଲ ବ୍ୟବହାର ପାଇଁ ଛାତ୍ରକୁ ଯଦି କ୍ରମାଗତଭାବେ ଦଣ୍ଡ ପ୍ରଦାନ କରାଯାଏ ତେବେ ଉକ୍ତ ଭ୍ରମାତ୍ମକ ବ୍ୟବହାରର ତୀବ୍ରତା ହ୍ରାସ ପାଇଥାଏ । ତେଣୁ ପ୍ରଥମେ ଭୁଲର ତୀବ୍ରତା ଅନୁଧ୍ୟାନ କରି ଦଣ୍ଡର ପରିମାଣ, ସମୟ ଓ ପ୍ରକୃତି ସ୍ଥିର କରିବାକୁ ପଡ଼ିଥାଏ । ଦଣ୍ଡ ବାସ୍ତବ କ୍ଷେତ୍ରରେ ଫଳପ୍ରଦ ହେବାକୁ ହେଲେ ଏହି କେତେକ ନିୟମ ପାଳନ କରିବା ଆବଶ୍ୟକ ।

୧ । ଦଣ୍ଡକୁ ଫଳପ୍ରଦ କରାଇବାକୁ ହେଲେ ଛାତ୍ର କୌଣସି ଭୁଲ ବ୍ୟବହାର ପ୍ରଦର୍ଶନ କରିବାର ଠିକ୍ ପରେ ପରେ ଏହା ପ୍ରୟୋଗ କରାଯିବା ଉଚିତ୍ । ଭୁଲ ବ୍ୟବହାର ଓ ଦଣ୍ଡ ପ୍ରଦାନ ମଧ୍ୟରେ ସମୟର ବ୍ୟବଧାନ ଯେତେ ଅଧିକ ହେବ ଏହାର କାର୍ଯ୍ୟକାରିତା ସେତେ ହ୍ରାସ ପାଇବ ।

୨ । କୌଣସି ଭୁଲପାଇଁ ଛାତ୍ର ପ୍ରଥମଥର ଦଣ୍ଡପାଇ ଯଦି ପୁଣିଥରେ ଉକ୍ତ ଭୁଲ୍ କରି ଦଣ୍ଡ ପାଏନାହିଁ ତେବେ ଦଣ୍ଡ ଫଳପ୍ରଦ ହୋଇପାରେ ନାହିଁ ।

୩ । କୌଣସି ଛାତ୍ରକୁ ବିରକ୍ତିପୂର୍ଣ୍ଣ ଦୃଷ୍ଟିରେ ଚାହିଁବା ଏକ ଦଣ୍ଡ ଏବଂ ଶାରୀରିକ ଆଘାତ ଦେବା ମଧ୍ୟ ଏକ ଦଣ୍ଡ । କିନ୍ତୁ ଶିକ୍ଷକଙ୍କୁ ଛାତ୍ରର ଭୁଲ ଅନୁସାରେ

ଦଣ୍ଡର ତୀବ୍ରତା ନିର୍ଣ୍ଣୟ କରିବାକୁ ପଡ଼େ । ଗୁରୁ ଭୁଲପାଇଁ ଅଧିକ ତୀବ୍ର ଦଣ୍ଡ ଛାତ୍ର ମନରେ ଆବେଗାତ୍ମକ ଅବସ୍ଥା ବା ଆକ୍ରମଣାତ୍ମକ ମନୋଭାବ ଏବଂ କେତେକ କ୍ଷେତ୍ରରେ ବ୍ୟର୍ଥତା ଭାବ ସୃଷ୍ଟି କରିପାରେ ।

୪ । କୌଣସି ଛାତ୍ରକୁ ସର୍ବଦା ଦଣ୍ଡ ପ୍ରଦାନ କରିବା ଉଚିତ୍ ନୁହେଁ । ଏହା ଫଳରେ ଛାତ୍ର ଅନୁକୂଳ ପରିସ୍ଥିତି ଓ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ପ୍ରଭେଦ ନିର୍ଣ୍ଣୟ କରିପାରେ ନାହିଁ ।

୫ । ଦଣ୍ଡ ପ୍ରଦାନ ପୂର୍ବରୁ ଶିକ୍ଷକ ବିଚାର କରିବା ଉଚିତ୍ ଯେ ଛାତ୍ର ତାର ଭୁଲ ବ୍ୟବହାରକୁ କିପରି ସଂଶୋଧନ କରିପାରିବ ଏବଂ ତା' ପାଇଁ ଅନ୍ୟ ଠିକ୍ ବ୍ୟବହାରଟି କଣ, ଏହା ମଧ୍ୟ ଶିକ୍ଷକ ଛାତ୍ରକୁ ଦଣ୍ଡ ପ୍ରଦାନ ପୂର୍ବରୁ ଅବଗତ କରାଇଦେବା ଉଚିତ୍ । ଏକ ଭିନ୍ନ ପଥ ବିଷୟ ଜାଣି ନପାରି କେବଳ ଦଣ୍ଡ ଭୋଗ କଲେ ଛାତ୍ରଠାରେ ମାନସିକ ଅସ୍ୱାଭାବିକ ପ୍ରବୃତ୍ତି ଜନ୍ମ ନେଇଥାଏ ।

ସର୍ବଶେଷରେ ଶିକ୍ଷକ ମନେରଖିବା ଉଚିତ୍ ଯେ ଭ୍ରମାତ୍ମକ ବ୍ୟବହାରର ସଂଶୋଧନ ବା ଆବେଗିକ ତଥା ବୌଦ୍ଧିକ ବିକାଶକୁ ତ୍ୱରାନ୍ୱିତ କରାଇବା ପାଇଁ ଦଣ୍ଡ ସ୍ୱତଃ ଏକ ପ୍ରଭାବଶାଳୀ ଉପାୟ ନୁହେଁ । କେବଳ ଦଣ୍ଡ ପ୍ରଦାନ ଦ୍ୱାରା ମଧ୍ୟ ଶ୍ରେଣୀ ଗୃହରେ ଶୃଙ୍ଖଳା ରକ୍ଷା ସମ୍ଭବ ହୋଇନପାରେ । ଯଦି କୌଣସି ସ୍ଥାନରେ ଦଣ୍ଡ ପ୍ରଦାନ ଆବଶ୍ୟକ ହୁଏ । ଏହା ଛାତ୍ରର ମଙ୍ଗଳ ବିଧାନ ନିମିତ୍ତ ବ୍ୟବହୃତ ହେବା ବିଧେୟ । ଶିକ୍ଷକଙ୍କ ଦୃଢ଼ତା ପ୍ରଦର୍ଶନ ନିମିତ୍ତ ନୁହେଁ ।



# ତ୍ରୟୋଦଶ ଅଧ୍ୟାୟ

## ଶ୍ରେଣୀ ଗୃହରେ ଅଭିପ୍ରେରଣା

## (Motivation in Classroom Learning)

ମନୁଷ୍ୟର ବ୍ୟବହାର ଅଭିପ୍ରେରିତ । ଏହି ବ୍ୟବହାର କେତେକ ଅଭିପ୍ରାୟ (Motives) ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ମନୁଷ୍ୟର ବ୍ୟବହାର ଏବଂ ଅଭିପ୍ରେରଣା ପ୍ରଣାଳୀ ସମ୍ପର୍କରେ ଅବଗତ ହେବା ଜଣେ ଶିକ୍ଷକଙ୍କ ପକ୍ଷେ ଏକାନ୍ତ ଆବଶ୍ୟକ । ଶିକ୍ଷଣ ପ୍ରତି ଛାତ୍ରଛାତ୍ରୀମାନେ କିପରି ପ୍ରେରିତ ହୋଇପାରିବେ ତାହା ଶିକ୍ଷକ ଅଭିପ୍ରେରଣା ସମ୍ବନ୍ଧୀୟ ଜ୍ଞାନବୃଦ୍ଧି ଉତ୍ତମ ରୂପେ ଜାଣିପାରିବେ । ଶ୍ରେଣୀରେ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ବ୍ୟବହାର ଏବଂ ଶିକ୍ଷାଗତ ସମ୍ପାଦନରେ ପରିଦୃଷ୍ଟ ପାର୍ଥକ୍ୟ ସମ୍ପର୍କରେ ଅବଗତ ହେବା ନିମିତ୍ତ ଏହା ଶିକ୍ଷକଙ୍କୁ ସାହାଯ୍ୟ କରିଥାଏ । ଶିକ୍ଷଣ କ୍ରିୟା ଅନ୍ୟାନ୍ୟ କ୍ରିୟାମାନଙ୍କ ପରି ଏକ ବ୍ୟବହାର ବା ଆଚରଣ । ପ୍ରତ୍ୟେକ ଆଚରଣ ବା ବ୍ୟବହାର ମୂଳରେ ପ୍ରୟୋଜନ ବା ଆବଶ୍ୟକତା ପରିପୂର୍ତ୍ତିର ଆକାଙ୍କ୍ଷା ନିହିତ । ପ୍ରୟୋଜନ ବା ଆବଶ୍ୟକତା ବ୍ୟତିରେକେ ଆଚରଣର ସମ୍ଭାବନା ନାହିଁ । ସେହିପରି ଶିକ୍ଷଣ କ୍ରିୟା ମଧ୍ୟ ଏକ ଉଦ୍ଦେଶ୍ୟ ମୂଳକ କ୍ରିୟା । ଏଥି ନିମିତ୍ତ ଉପଯୁକ୍ତ ପରିବେଶ ଓ ଅନୁକୂଳ ମାନସିକ ଅବସ୍ଥା ଉଭୟ ଛାତ୍ର ଛାତ୍ରୀ ଏବଂ ଶିକ୍ଷକଙ୍କ ନିମିତ୍ତ ଆବଶ୍ୟକ । ଶୃଙ୍ଖଳାପୂର୍ଣ୍ଣ ସୁସ୍ଥ ବାତାବରଣରେ ଶିକ୍ଷଣ ଫଳପ୍ରଦ ଭାବେ ଶିକ୍ଷାଦାନ କରିବା ସମ୍ଭବ । ତେବେ ଉପଯୁକ୍ତ ଶିକ୍ଷଣ ପ୍ରକ୍ରିୟା ନିମିତ୍ତ ଅଭି-ପ୍ରେରଣାର ଆବଶ୍ୟକତା ଅପରିହାର୍ଯ୍ୟ । ଅଭିପ୍ରେରଣା ସମ୍ବନ୍ଧିତ ଜ୍ଞାନ ବ୍ୟତିରେକେ ଫଳପ୍ରଦ ଭାବେ ଶିକ୍ଷାଦାନ କରିବା ଶିକ୍ଷକଙ୍କ ପକ୍ଷେ ଅତ୍ୟନ୍ତ କଷ୍ଟସାଧ୍ୟ କାର୍ଯ୍ୟ । ଏହା ଶ୍ରେଣୀରେ ଶିକ୍ଷାର୍ଥୀମାନଙ୍କ ମନରେ ଆଗ୍ରହ ସୃଷ୍ଟି କାର୍ଯ୍ୟ କରିବାକୁ ପ୍ରେରଣା ଏବଂ ଅନାଗ୍ରହ ଭାବରୁ ନିବୃତ୍ତି କରାଇବାରେ ଶିକ୍ଷକଙ୍କୁ ସାହାଯ୍ୟ କରିଥାଏ ।

### ଅଭିପ୍ରେରଣାର ଅର୍ଥ (Meaning of Motivation) :—

ଲାଟିନ୍ ଶବ୍ଦ 'ମୁଭର' ବା "Mover"ରୁ ଶିକ୍ଷଣର ଅଭିପ୍ରେରଣା ବା 'Motivation' ଶବ୍ଦର ଉତ୍ପତ୍ତି । ଏହି ଲାଟିନ୍ ଶବ୍ଦ 'Mover'ର ପ୍ରକୃତ ଅର୍ଥଗତ ବା କ୍ରିୟା ସୃଷ୍ଟି କରାଇବା । ଯେଉଁସବୁ ଦୈନନ୍ଦିନ କାର୍ଯ୍ୟ ଉଭୟ ମନସ୍ତାତ୍ତ୍ୱିକ ଏବଂ

ଶରୀର ବୃତ୍ତୀୟ ଅବସ୍ଥା ସୃଷ୍ଟି ଫଳରେ ବ୍ୟକ୍ତି କାର୍ଯ୍ୟ କରିବା ନିମିତ୍ତ ଅଭିପ୍ରେରିତ ହୁଏ ଏବଂ ନିଜର ପ୍ରୟୋଜନ ତଥା ଅଭାବ, ଅସୁବିଧା ପରିପୂରଣ କରେ ତାହାହିଁ "ଅଭିପ୍ରେରଣା" ପଦବାଚ୍ୟ । ମନୁଷ୍ୟର ବ୍ୟବହାର ବା ଆଚରଣର ଗତିଶୀଳତାକୁହିଁ ଅଭିପ୍ରେରଣା ରୂପେ ଅଭିହିତ କରାଯାଏ । ମନସ୍ତତ୍ତ୍ୱବିତ୍ ଉଡ୍‌ୱାର୍ଥଙ୍କ ମତରେ "ଗତିଶୀଳ ବ୍ୟବହାରହିଁ" ଅଭିପ୍ରେରଣା ପଦବାଚ୍ୟ" (Motviation is the Activity in Progress) । ବ୍ୟକ୍ତି ବିଶେଷଙ୍କୁ କାର୍ଯ୍ୟରେ ନିୟୋଜିତ କରିବାପାଇଁ ଅଭିପ୍ରାୟଗୁଡ଼ିକ ଶକ୍ତି ରୂପେ କାର୍ଯ୍ୟ କରେ । ଏ ଦୃଷ୍ଟିରୁ ବିଚାର କଲେ ଅଭିପ୍ରେରଣାର ଅନୁପସ୍ଥିତରେ ଶିକ୍ଷଣ ଅସମ୍ଭବ । ଅଭିପ୍ରେରଣା ଏକ ଅନ୍ତର୍ନିହିତ ପ୍ରଣାଳୀ । ମାତ୍ର କେବଳ ବ୍ୟବହାରର ପର୍ଯ୍ୟବେକ୍ଷଣ ଦ୍ୱାରାହିଁ ଆମେ ଅଭିପ୍ରେରଣାର ପ୍ରକୃତ ସମ୍ପର୍କରେ ଜାଣିପାରିବା । ମ୍ୟାକ୍ ଡୋନାଲଡ୍ (Mc. Donald)ଙ୍କ ମତରେ ବ୍ୟକ୍ତି ମଧ୍ୟରେ ଏକ ଅନ୍ତର୍ନିହିତ ଶକ୍ତିଗତ ପରିବର୍ତ୍ତନହିଁ ଅଭିପ୍ରେରଣା ଯାହା ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଏବଂ ଉଦ୍ଦୀପନା ସହିତ ସଂଯୁକ୍ତ ।" ଉକ୍ତ ସଂଜ୍ଞାରୁ ଆମେ ଅଭିପ୍ରେରଣାର ତିନୋଟି ଦିଗ ସମ୍ପର୍କରେ ଧାରଣା ଆଣିପାରିଥାଉ ।

୧ । ବ୍ୟକ୍ତି ମଧ୍ୟରେ ଜାତ ଶକ୍ତିଗତ ପରିବର୍ତ୍ତନରୁହିଁ ଅଭିପ୍ରେରଣା ଆରମ୍ଭ ହୁଏ ।

୨ । ଅଭିପ୍ରେରଣା ହେଉଛି ଏକ ପ୍ରବର୍ତ୍ତନା ଯାହା ବ୍ୟକ୍ତିକୁ ପ୍ରଭାବିତ କରେ । ଏହା ଦ୍ୱାରା ମନସ୍ତାତ୍ତ୍ୱିକ ଉତ୍ତେଜନା ସୃଷ୍ଟି ହୋଇଥାଏ ।

୩ । ଲକ୍ଷ୍ୟ ପୂର୍ତ୍ତିର ଆକାଙ୍କ୍ଷା ଦ୍ୱାରା ବ୍ୟକ୍ତିବିଶେଷଙ୍କଠାରେ ପରିଦୃଷ୍ଟ ପ୍ରତିକ୍ରିୟାହିଁ ଅଭିପ୍ରେରଣା, ଏହା ଲକ୍ଷ୍ୟ ସାଧନ କରିବାରେ ବ୍ୟକ୍ତିକୁ ସାହାଯ୍ୟ କରିଥାଏ ।

ଅଭିପ୍ରାୟ ବା ପ୍ରବର୍ତ୍ତନା ଶିଶୁଠାରେ ନିହିତ ଏକ ଅବସ୍ଥା ବା ମାନସିକ ପ୍ରବୃତ୍ତିକୁ ବୁଝାଏ, ଯାହା ଲକ୍ଷ୍ୟ ସାଧନ ନିମିତ୍ତ କାର୍ଯ୍ୟ କରିବାକୁ ପ୍ରେରଣା ଯୋଗାଇଥାଏ । ଶିଶୁଠାରେ ନିହିତ ଅଭିପ୍ରେରଣା ଦ୍ୱାରା ତାକୁ ତା'ର ଲକ୍ଷ୍ୟ ପୂର୍ତ୍ତି ନିମିତ୍ତ ଅଧିକ ମାତ୍ରାରେ ଉତ୍ସାହିତ କରିବା ଏବଂ ପରବର୍ତ୍ତୀ ଜୀବନରେ ଶିକ୍ଷଣ କ୍ଷେତ୍ରରେ ଉନ୍ନତ କରିବା ନିମିତ୍ତ ତା' ଠାରେ ନୂତନ ଅଭିପ୍ରେରଣା ସୃଷ୍ଟି କରାଇବା ଶିକ୍ଷକଙ୍କର ପ୍ରଧାନ କର୍ତ୍ତବ୍ୟ ହେବା ବାଞ୍ଛନୀୟ ।

## ଅଭିପ୍ରେରଣା ବା ପ୍ରବର୍ତ୍ତନାର ପ୍ରକାର ଭେଦ :

ପ୍ରବର୍ତ୍ତନା ପ୍ରୟୋଜନା ଦ୍ୱାରା ଆରମ୍ଭ ହୁଏ ଏବଂ ପ୍ରତିଯୋଜନରେ ଶେଷହୁଏ । କାର୍ଯ୍ୟକୁ ତ୍ୱରାନ୍ୱିତ କରିବାରେ ଏହା ସାହାଯ୍ୟ କରେ । ଏହାକୁ ଧାରଣ କରେ ଏବଂ ଏହାକୁ ନିର୍ଦ୍ଦିଷ୍ଟ ଲକ୍ଷ୍ୟଗାମୀ କରାଏ । ଏହାକୁ ନିମ୍ନମତେ ବିଭାଗୀକରଣ କରାଯାଇ ଅଛି ।

୧। ପ୍ରାଥମିକ ବା ଶାରୀରିକ ପ୍ରବୃତ୍ତିନା ଉଦାହରଣ ସ୍ୱରୂପ—ଶୋଷ, କ୍ଷୋଭ, ଯନ୍ତ୍ରଣା, ଲିଙ୍ଗ ଇତ୍ୟାଦି।

୨। ମାଧ୍ୟମିକ ବା ମନସ୍ତତ୍ତ୍ୱଗତ ପ୍ରବୃତ୍ତିନା। ଉଦାହରଣସ୍ୱରୂପ—ସାମାଜିକ ପ୍ରତିଷ୍ଠା ପାଇଁ ଇଚ୍ଛା, ପ୍ରଶଂସା, ପ୍ରତିପତ୍ତି, ଅନୁସନ୍ଧିତ୍ସା ପୂର୍ତ୍ତି କରିବାର ଇଚ୍ଛା।

ଯଦି ଓ ଅଭିପ୍ରେରଣାକୁ ଦୁଇ ଭାଗରେ ବିଭକ୍ତ କରାଯାଇଛି ତଥାପି ଏହି ବିଭକ୍ତକରଣ ସର୍ବଦା ଗ୍ରହଣୀୟ ନୁହେଁ। ଉଦାହରଣ ସ୍ୱରୂପ ଯୌନଗତ ସନ୍ତୋଷ ବିଧାନ ପ୍ରାଥମିକ ପ୍ରବୃତ୍ତିନା ହେଲେହେଁ ଏହା ସାମାଜିକ ପ୍ରତିଷ୍ଠା ଏବଂ ସମ୍ମାନ ଉପରେ ନିର୍ଭର କରିଥାଏ। ତେବେ ଶାରୀରିକ ପ୍ରବୃତ୍ତିନାଗୁଡ଼ିକ ଶିକ୍ଷଣ କ୍ଷେତ୍ରରେ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ। ମନସ୍ତତ୍ତ୍ୱବିତ୍‌ମାନେ ଏ ସମ୍ପର୍କରେ ନାନାପ୍ରକାର ମତ ପ୍ରଦାନ କରିଛନ୍ତି। ମନସ୍ତତ୍ତ୍ୱବିତ୍ ସାଫର୍ (Shaffer)ଙ୍କ ମତାନୁଯାୟୀ ପ୍ରବୃତ୍ତିନାକୁ ଚାରି ଭାଗରେ ବିଭକ୍ତ କରାଯାଇଛି। ଯଥା—ନିରାପତ୍ତା, ପ୍ରତ୍ୟୁତ୍ତର, ସ୍ୱୀକୃତି ଏବଂ ନୂତନ ଅନୁଭୂତି। ଅନ୍ୟ ଏକ ଶ୍ରେଣୀ ବିଭାଗୀକରଣ ଅନୁଯାୟୀ ପ୍ରବୃତ୍ତିନା ସମ୍ମାନ, ନିରାପତ୍ତା, ସାମାଜିକ ମୂଲ୍ୟ, ନିଜର ପ୍ରାଧାନ୍ୟ, ଗୋଷ୍ଠୀ ସମ୍ବନ୍ଧୀୟ, ସାମାଜିକତା, ସାଦୃଶ୍ୟ ଲାଭ କରିବାର ପ୍ରବଣତା ଇତ୍ୟାଦି।

## ଅଭିପ୍ରେରଣାର ବିଭିନ୍ନ ଦିଗ :

ଅଭିପ୍ରେରଣା ସମ୍ପର୍କରେ ବର୍ଣ୍ଣନା ବେଳେ କେବଳ ପ୍ରୟୋଜନ, ପ୍ରଣୋଦନା ଓ ପ୍ରେରଣା ଇତ୍ୟାଦି ଶବ୍ଦ ବ୍ୟବହୃତ ହେବାର ପରିଲକ୍ଷିତ ହୋଇଥାଏ। ଫଳତଃ ଅଭିପ୍ରେରଣାକୁ ଉତ୍ତମରୂପେ ବୁଝିବାକୁ ଅସମର୍ଥ ହୋଇଥାଉ। ତେଣୁ ଏହି ଶବ୍ଦଗୁଡ଼ିକୁ ପୃଥକ୍ ପୃଥକ୍ ଭାବେ ବର୍ଣ୍ଣନା କରିବା ଏକାନ୍ତ ଆବଶ୍ୟକ।

(୧) ପ୍ରୟୋଜନ (Needs) :—ସମାଜରେ ବଞ୍ଚିବା ନିମିତ୍ତ ମନୁଷ୍ୟର ବିଭିନ୍ନ ପ୍ରକାର ପ୍ରୟୋଜନ ଅଛି। କେତେଗୁଡ଼ିଏ ପ୍ରୟୋଜନ ଆବେଗାତ୍ମକ, ଯଥା—ସ୍ନେହ, ଦୟା, କ୍ଷମା, ଭୟ, କ୍ରୋଧ, ସହାନୁଭୂତି, ପ୍ରେମ ଇତ୍ୟାଦି। ସେହିପରି କେତେଗୁଡ଼ିଏ ପ୍ରୟୋଜନ ସାମାଜିକ ଯଥା—ଆସନ, ଖ୍ୟାତି, ମର୍ଯ୍ୟାଦା ଇତ୍ୟାଦି ମନୁଷ୍ୟ ଏକ ସାମାଜିକ ପ୍ରାଣୀ। ସାମାଜିକ ପ୍ରୟୋଜନୀୟତା ହେତୁ ମନୁଷ୍ୟ ତାର ଇଚ୍ଛା ପୂର୍ତ୍ତି ନିମିତ୍ତ ବିଭିନ୍ନ ପ୍ରକାର କୌଶଳ ଅବଲମ୍ବନ କରିଥାଏ। ଉଦାହରଣ ସ୍ୱରୂପ—କ୍ଷୁଧାର୍ତ୍ତ ବ୍ୟକ୍ତି ନିମିତ୍ତ ଖାଦ୍ୟ ଖୁବ୍ ପ୍ରୟୋଜନୀୟ। ତେଣୁ କ୍ଷୁଧା ନିବାରଣ ନିମିତ୍ତ ସେ ବିଭିନ୍ନ ପ୍ରକାର କୌଶଳ ଅବଲମ୍ବନ କରିଥାଏ। ଫଳତଃ ବ୍ୟକ୍ତିର

ବ୍ୟବହାରରେ ପରିବର୍ତ୍ତନ ପରିଦୃଷ୍ଟ ହୁଏ । ମନସ୍ତତ୍ତ୍ୱବିଦ୍ ମସ୍ଲୋ (Maslow) ମନୁଷ୍ୟର ପ୍ରୟୋଜନଗୁଡ଼ିକୁ ଛଅ ସ୍ତରରେ ବିଭକ୍ତ କରିଛନ୍ତି । ଯଥା—

୧ । ଶାରୀରିକ ପ୍ରୟୋଜନ ତଥା ଜୀବନ ଧାରଣ ନିମିତ୍ତ ପ୍ରୟୋଜନ, ବଞ୍ଚିରହିବା ନିମିତ୍ତ ଖାଦ୍ୟ, ଜଳ, ବାୟୁ, ବିଶ୍ରାମ, ଗୃହ, ପରିଶ୍ରମ ଇତ୍ୟାଦିର ଆବଶ୍ୟକତା ।

୨ । ନିରାପତ୍ତା ବା ଆତ୍ମରକ୍ଷାମୂଳକ ପ୍ରୟୋଜନ-ଦୁଃଖ, ଅଭାବ, ଅସହାୟ ଜନିତ ପରିସ୍ଥିତିକୁ ଦୂର କରିବାର ଆବଶ୍ୟକତା ।

୩ । ଆବେଗାତ୍ମକ ବା ମାନସିକ ପ୍ରୟୋଜନ—ସ୍ନେହ, ଆଦର, ସହାନୁଭୂତି ଇତ୍ୟାଦି ପାଇବାର ଆବଶ୍ୟକତା ।

୪ । ସାମାଜିକ ପ୍ରୟୋଜନ—ସମାଜରେ ପ୍ରତିଷ୍ଠା ଲାଭ କରିବାର ପିପାସା ।

୫ । ସୌନ୍ଦର୍ଯ୍ୟାନୁଭୂତି ପ୍ରୟୋଜନ ।

୬ । ଆତ୍ମପ୍ରକାଶମୂଳକ ପ୍ରୟୋଜନ ।

(୨) ପ୍ରଣୋଦନା (Drives) :—ପ୍ରୟୋଜନର ପରିପୂର୍ତ୍ତି ନହେଲେ ମନୁଷ୍ୟ ଅସ୍ଥିରାବସ୍ଥାରେ ରହିଥାଏ । ଏହି ଅବସ୍ଥାରୁ ମୁକ୍ତି ପାଇବା ନିମିତ୍ତ ମନୁଷ୍ୟ କର୍ମତତ୍ପର ହେବା ସଙ୍ଗେ ସଙ୍ଗେ ବିଭିନ୍ନ ପ୍ରକାର କୌଶଳ ଅବଲମ୍ବନ କରିଥାଏ । ଉକ୍ତ ଅସ୍ଥିରାବସ୍ଥା ବ୍ୟକ୍ତିକୁ ଲକ୍ଷ୍ୟ ସ୍ଥଳରେ ଉପନୀତ ହେବା ନିମିତ୍ତ ଆବଶ୍ୟକୀୟ ଶାରୀରିକ ତଥା ମାନସିକ ବଳ, ତେଜ ଓ ପ୍ରଣୋଦନା ଯୋଗାଇ ଦେଇଥାଏ । କାରଣ ବ୍ୟକ୍ତିଠାରେ ପ୍ରଣୋଦନା ବିନା କର୍ମତତ୍ପରତା ପରିଦୃଷ୍ଟ ହେବା ଅସମ୍ଭବ ।

(୩) ପ୍ରେରଣା (Incentives) :—ବ୍ୟକ୍ତି ପରିବେଷ୍ଟନୀ ଦ୍ୱାରା ଅନେକାଂଶରେ ପ୍ରଭାବିତ ହୁଏ । ପରିବେଶଗତ ଅନେକ ବିଷୟବସ୍ତୁ ତା ପାଇଁ ଆକର୍ଷଣୀୟ ହୋଇଥାଏ ଓ ଅନେକ ବିଷୟବସ୍ତୁ ଅନାକର୍ଷଣୀୟ ମଧ୍ୟ ହୋଇଥାଏ । ଏଗୁଡ଼ିକ ବ୍ୟକ୍ତିର ବ୍ୟବହାର ଓ କାର୍ଯ୍ୟକୁ ନିୟନ୍ତ୍ରିତ ମଧ୍ୟ କରିଥାଏ । ବ୍ୟକ୍ତିର ସଂଶ୍ଳିଷ୍ଟ ପ୍ରୟୋଜନ, ଯଥା—ଶାରୀରିକ, ମାନସିକ ଇତ୍ୟାଦି ଅନୁସାରେ ଏହି ବିଷୟବସ୍ତୁ ଗୁଡ଼ିକ ପ୍ରେରଣା ଯୋଗାଇ ଦେଇଥାନ୍ତି । ପ୍ରେରଣା ଦ୍ୱାରା ବ୍ୟକ୍ତିର ଇଚ୍ଛା ପରିପୂର୍ଣ୍ଣ ହୋଇଥାଏ ଓ ଏହା ଫଳରେ ସ୍ୱତଃ ବ୍ୟକ୍ତି ବିଶେଷଠାରେ ସନ୍ତୋଷ ଜାତ ହୁଏ । ନୂତନ ନୂତନ ବିଷୟବସ୍ତୁ ଶିକ୍ଷା ଦାନବେଳେ ଶିକ୍ଷକ ପ୍ରୟୋଜନୀୟତାକୁ ଲକ୍ଷ୍ୟ ରଖି 'ପ୍ରେରଣା'ର ସାହାଯ୍ୟ ନେବା ବାଞ୍ଛନୀୟ । କାରଣ, ଉତ୍ସାହଜନକ ବିଷୟବସ୍ତୁର ଆଶ୍ରୟ ନେଲେ ଶିଶୁକୁ

ଲକ୍ଷ୍ୟ ସ୍ଥଳରେ ପହଞ୍ଚାଇବା ସମ୍ଭବ ହୋଇଥାଏ । ପ୍ରେରଣାଦାୟକ ବା ଉତ୍ସାହଜନକ ବିଷୟବସ୍ତୁର ବ୍ୟବହାର ଦ୍ୱାରା ଶିକ୍ଷଣ କିମ୍ବା କେତେଦୂର ଫଳପ୍ରଦ ହୁଏ ତାହା କହିବା ଅସମ୍ଭବ । ମାତ୍ର ବିଦ୍ୟାଳୟ ପରିପ୍ରେକ୍ଷୀରେ ପ୍ରେରଣା ସାହାଯ୍ୟରେ ଶିକ୍ଷା ଦାନ କରାଯିବା ବିଧେୟ । ତେବେ ପରିବେଶରେ ପ୍ରଣୋଦନକୁ ଯେଉଁ ବିଷୟବସ୍ତୁ ଗୁଡିକ ସାହାଯ୍ୟ କରନ୍ତି, ସେଗୁଡ଼ିକୁ ପ୍ରେରଣା ରୂପେ ଅଭିହିତ କରାଯାଏ ।

## ଶିକ୍ଷଣରେ ଅଭିପ୍ରେରଣାର ଭୂମିକା :

ଅଭିପ୍ରେରଣା ବିନା ଶିକ୍ଷଣ ଅସମ୍ଭବ । ଶିକ୍ଷଣ ନିମିତ୍ତ ଶିଶୁଠାରେ ପ୍ରୋତ୍ସାହନ ସୃଷ୍ଟି କରିବା ଉପଯୁକ୍ତ ଶିକ୍ଷକଙ୍କର ପ୍ରଧାନ କର୍ତ୍ତବ୍ୟ, ପ୍ରାରମ୍ଭରେ ଶିକ୍ଷଣ ବାହ୍ୟ ଅଭିପ୍ରାୟଗୁଡ଼ିକ ଦ୍ୱାରା ସମ୍ପନ୍ନ ହୋଇଥାଏ । ମାତ୍ର ପରେ ଶିଶୁ କାର୍ଯ୍ୟଟି ସମାହିତ କରିଥାଏ । କାରଣ, ଏହା ତାକୁ ସନ୍ତୋଷ ପ୍ରଦାନ କରେ । ଶେଷରେ ସେ ଯୁକ୍ତି ବା ଉପଦେଶ ଦ୍ୱାରା ପ୍ରଭାବିତ କରିବାକୁ ଇଚ୍ଛା କରେ । କାରଣ, ସେ ସଦ୍‌ଗୁଣ ଓ ପାରଦର୍ଶିତା ଇତ୍ୟାଦି ସାଫଲ୍ୟତା ଅର୍ଜ୍ଜନ ନିମିତ୍ତ ଅଭିପ୍ରେରିତ ହୋଇଥାଏ । ଶିକ୍ଷଣ ପ୍ରଣାଳୀରେ ପ୍ରୋତ୍ସାହନର ତିନୋଟି କାର୍ଯ୍ୟ ଦେଖିବାକୁ ମିଳେ ।

୧। ଅଭିପ୍ରାୟଗୁଡ଼ିକ ବ୍ୟବହାରକୁ ଶକ୍ତି ସମ୍ପନ୍ନ କରେ । ଏହା ମନୁଷ୍ୟଙ୍କୁ କାର୍ଯ୍ୟକ୍ଷମ କରେ ଏବଂ ଗୋଟିଏ ନିର୍ଦ୍ଦିଷ୍ଟ ଦିଗରେ କାର୍ଯ୍ୟ କରିବା ପାଇଁ ସକ୍ଷମ କରିଥାଏ ।

୨। ଅଭିପ୍ରାୟଗୁଡ଼ିକ ବ୍ୟବହାରର ନିର୍ବାଚନ । ଆମେ ପ୍ରୋତ୍ସାହିତ ହେଲାବେଳେ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ଉଦ୍ଦୀପକ ପ୍ରତି ପ୍ରତିକ୍ରିୟା ପ୍ରଦର୍ଶନ କରିଥାଉ କିନ୍ତୁ ଅନ୍ୟ ଉଦ୍ଦୀପକର ଉପସ୍ଥିତିକୁ ଉପେକ୍ଷା କରିଥାଉ ।

୩। ଗୋଟିଏ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ପ୍ରତି ବ୍ୟବହାରକୁ ଅଭିପ୍ରେରଣା ନିର୍ଦ୍ଦେଶ ଦେଇଥାଏ । ସେହି ଲକ୍ଷ୍ୟ ହାସଲ ନିମିତ୍ତ ଆମେ ସମସ୍ତ ଆୟାସ ପ୍ରୟୋଗ କରୁ । ସେତେବେଳେ ଆମେ ଯେ କେବଳ ସଫଳତା ଉପଲବ୍ଧ କରୁ ତା' ନୁହେଁ ଆମେ କାର୍ଯ୍ୟାବଳୀର ବହୁତ ସନ୍ତୋଷ ପାଇଥାଉ ।

## ପ୍ରେରଣା ସୃଷ୍ଟିକାରୀ କେତେକ କୌଶଳ :

ଶ୍ରେଣୀ ଗୃହରେ ଶିକ୍ଷଣରେ ଅଭିପ୍ରେରଣାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରେରଣା ବା ଆଗ୍ରହ ଜାତ ହେବା ନିମିତ୍ତ ଶିକ୍ଷା ଦାନ ସମୟରେ ବିଭିନ୍ନ କୌଶଳ ଅବଲମ୍ବନ କରାଯାଇଥାଏ । ସେଥିରୁ କେତେଗୁଡ଼ିଏ କୌଶଳ ସଂପର୍କରେ ନିମ୍ନରେ ଆଲୋଚନା କରାଗଲା ।

(୧) ପୁରସ୍କାର ଏବଂ ଶାସ୍ତି :—ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷା ତଥା ଅନ୍ୟାନ୍ୟ କ୍ଷେତ୍ରରେ ଦକ୍ଷ କରିବାର ପ୍ରେରଣା ପୁରସ୍କାର ଦ୍ୱାରା ସମ୍ଭବ । ପୁରସ୍କାର ଦିଆଗଲେ ଛାତ୍ରଛାତ୍ରୀମାନେ ସେହି କ୍ଷେତ୍ରରେ ଅଧିକ ଦକ୍ଷତା ହାସଲ ନିମିତ୍ତ ପ୍ରୟାସୀ ହୋଇଥାନ୍ତି । ତେବେ ଶିକ୍ଷାବିତ୍‌ଙ୍କ ମତରେ ମତଦ୍ୱୈଧ ପରିଦୃଷ୍ଟ ହୁଏ । କେତେକ ଶିକ୍ଷାବିତ୍‌ଙ୍କ ମତାନୁଯାୟୀ ପୁରସ୍କାର ଦିଆଗଲେ ଛାତ୍ରଛାତ୍ରୀମାନେ ଶିକ୍ଷାର ପ୍ରକୃତ ଲକ୍ଷ୍ୟ ଭୁଲିଯାଆନ୍ତି । ପୁରସ୍କାର ଏକ ବାହ୍ୟ ଉପାଦାନ, ଏହାଦ୍ୱାରା ବ୍ୟକ୍ତିର ଆତ୍ମ ବିକାଶ ଏକାନ୍ତ ଅସମ୍ଭବ । ଶାସ୍ତି ଦ୍ୱାରା ଶିଶୁ ପାଉଥିବା ଯନ୍ତ୍ରଣା ଯୋଗୁଁ ସେ ଭୁଲ୍ କାର୍ଯ୍ୟରୁ ସ୍ୱତଃ ନିବୃତ୍ତ ହେବାକୁ ଚେଷ୍ଟିତ ହୋଇଥାଏ । ଏହା ଫଳରେ ପ୍ରକୃତ ବ୍ୟବହାର ଶିକ୍ଷା ମଧ୍ୟ କରିବାକୁ ସକ୍ଷମ ହୋଇଥାଏ । ତେବେ କଠୋର ଶାରୀରିକ ଦଣ୍ଡ ଦେବା ଅସମୀଚୀନ । ସ୍ଥଳ ବିଶେଷରେ ଶିକ୍ଷକ ସତର୍କତାର ସହିତ ଶାସ୍ତି ମାଧ୍ୟମରେ ଶିଶୁର କୁ-ଅଭ୍ୟାସଗୁଡ଼ିକୁ ଦୂରକରିବା ନିମିତ୍ତ ପ୍ରୟାସୀ ହୋଇପାରନ୍ତି । ଏତଦ୍‌ବ୍ୟତୀତ ଶାସ୍ତି ପାଇବାର କାରଣ ଶିଶୁ ନିଜେ ଜାଣିବା ଏକାନ୍ତ ଆବଶ୍ୟକ । କାରଣ, ସେ କେଉଁ କାର୍ଯ୍ୟ ଯୋଗୁଁ ଦଣ୍ଡ ପାଇଲା ତାହା ଜାଣିବା ଦ୍ୱାରା ନିଜେ ସେ କାର୍ଯ୍ୟରୁ ନିବୃତ୍ତ ହେବାକୁ ଚେଷ୍ଟା କରିଥାଏ । ପୁରସ୍କାର ଅଭିପ୍ରେରଣାର ଉପାୟ, ମାତ୍ର ଉଦ୍ଦେଶ୍ୟ ନୁହେଁ । ମାତ୍ର ବିଦ୍ୟାଳୟ ପରିପ୍ରେକ୍ଷୀରେ କ୍ରମଶଃ ଏହା ଉଦ୍ଦେଶ୍ୟ ରୂପେ ବ୍ୟବହୃତ ହେବାଦ୍ୱାରା ଶିକ୍ଷାର ପ୍ରକୃତ ଲକ୍ଷ୍ୟ ପୂରଣରେ ବାଧା ସୃଷ୍ଟି ହେଉଅଛି । ବସ୍ତୁଗତ ପୁରସ୍କାର ଶିଶୁମାନଙ୍କ ଉପରେ ଖରାପ ପ୍ରଭାବ ପକାଇଥାଏ । ବିଦ୍ୟାଳୟରେ ସର୍ବଦା ପୁରସ୍କାର ପ୍ରଦାନ କାର୍ଯ୍ୟକ୍ରମ ରହିଲେ ଶିଶୁ ମନେ କରିଥାଏ ଯେ ସେ କେବଳ କୃତିତ୍ୱ ଅର୍ଜନ କରି ପ୍ରଶଂସା ପତ୍ର ଓ ପୁରସ୍କାର ପାଇବା ପାଇଁ ଆସୁଛି, ଶିକ୍ଷାପାଇଁ ନୁହେଁ ।

(୨) ପ୍ରଶଂସା ଓ ଅପମାନ :—ଶ୍ରେଣୀ ପ୍ରକୋଷ୍ଠରେ ପ୍ରଶଂସା ଏକ ସାଧାରଣ ପ୍ରେରଣା ରୂପେ କାର୍ଯ୍ୟ କରିଥାଏ । ଅପମାନ ବା ନିନ୍ଦା ଅପେକ୍ଷା ପ୍ରଶଂସା କରିବା ଦ୍ୱାରା ଶିକ୍ଷଣ ଅଧିକ ଫଳପ୍ରଦ ହୋଇଥାଏ । ଏହା ସବୁ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କ ପାଇଁ ପ୍ରରୋଚକ ରୂପେ କାର୍ଯ୍ୟ କରିଥାଏ । ତେବେ ଏ କ୍ଷେତ୍ରରେ ଶିକ୍ଷକ ସତର୍କ ହେବା ବିଧେୟ । କାରଣ ପ୍ରଶଂସା ହିଁ ଶିଶୁକୁ କରିବା ଯୁକ୍ତିଯୁକ୍ତ । ତେବେ ଶ୍ରେଷ୍ଠ ଶିଶୁମାନଙ୍କ କ୍ଷେତ୍ରରେ ନିନ୍ଦା ବା ଅପମାନ ଶିକ୍ଷଣ ନିମିତ୍ତ ଅଧିକ ଫଳପ୍ରଦ ହୋଇଥାଏ ।

ଏତଦ୍‌ବ୍ୟତୀତ ପ୍ରତିଭାବାନ୍ ଶିଶୁମାନଙ୍କ ଅପେକ୍ଷା ସାଧାରଣ ଶିଶୁମାନଙ୍କ ପାଇଁ ପ୍ରଶଂସା ଅଧିକ ଆବଶ୍ୟକ ଏବଂ ପ୍ରକୃତ ପକ୍ଷେ କହିବାକୁ ଗଲେ ବାଳକମାନଙ୍କ ଅପେକ୍ଷା ବାଳିକାମାନଙ୍କ ଠାରେ ଏହାର ପ୍ରଭାବ ଅଧିକ । ତେବେ ମନସ୍ତତ୍ତ୍ୱବିଦ୍‌ମାନଙ୍କ ମତରେ ପ୍ରଶଂସା ଓ ଅପମାନ ଉଭୟ ପ୍ରେରଣା ରୂପେ କାର୍ଯ୍ୟକଲେ ମଧ୍ୟ ଏହାର ସଫଳତା

ଶିକ୍ଷକଙ୍କ ଉପରେ ନିର୍ଭର କରିଥାଏ । ତେବେ ପିତା ମାତା ଓ ଶିକ୍ଷକ ସମସ୍ତେ ପ୍ରଶଂସା ଦ୍ୱାରା ଶିଶୁକୁ ଶିକ୍ଷାପ୍ରତି ଆଗ୍ରହୀ କରାଇବା ବାଞ୍ଛନୀୟ । ନିନ୍ଦା ପ୍ରାୟ ସବୁ ଶ୍ରେଣୀର ଶିଶୁ ତଥା ଛାତ୍ରଛାତ୍ରୀମାନଙ୍କ ନିମିତ୍ତ କ୍ଷତିକାରକ ହୋଇଥାଏ । ତେବେ ବହିର୍ମୁଖୀ ଛାତ୍ରଛାତ୍ରୀମାନେ ନିନ୍ଦାଦ୍ୱାରା ଠିକ୍ ମାର୍ଗକୁ କିୟଦଂଶରେ ଆସିଥାନ୍ତି । ମାତ୍ର ଅନ୍ତର୍ମୁଖୀ ଛାତ୍ରଛାତ୍ରୀମାନଙ୍କଠାରେ ଏହା ଦ୍ୱାରା ଅଧିକ କ୍ଷତି ଦେଖାଯାଇଥାଏ । ଶିକ୍ଷକ ଛାତ୍ରଛାତ୍ରୀମାନଙ୍କୁ ବ୍ୟକ୍ତିଗତ ଭାବେ ଜାଣିବା ସଙ୍ଗେ ସଙ୍ଗେ ପ୍ରଶଂସା ହେଉ ବା ଅପମାନ ହେଉ କେମିତି ବ୍ୟବହୃତ କଲେ ଶିକ୍ଷା ଫଳପ୍ରଦ ହେବ ସେଥିନିମିତ୍ତ ଧ୍ୟାନ ଦେବା ଏକାନ୍ତ କାମ୍ୟ ।

(୩) **ପ୍ରତିଦ୍ୱନ୍ଦ୍ୱିତା** :—ଶ୍ରେଣୀ ଗୃହରେ ଏବଂ ବାହାରେ ସର୍ବଦା ଏହି ପ୍ରତିଦ୍ୱନ୍ଦ୍ୱିତା ରୂପକ ପ୍ରେରଣା ବ୍ୟବହୃତ ହୋଇଥାଏ । ପ୍ରତିଦ୍ୱନ୍ଦ୍ୱିତା ଶିକ୍ଷଣରେ ଏକ ଶକ୍ତିଶାଳୀ ପ୍ରେରଣାର ଉତ୍ସ । ସାଧାରଣତଃ ଏହା ଅଧିକାଂଶ ଶିଶୁମାନଙ୍କର ସାଧନାରେ ସିଦ୍ଧି ଆଣିବା କ୍ଷେତ୍ରରେ ସହାୟକ ହୋଇଥାଏ । ତେବେ ବ୍ୟକ୍ତିଗତ ପ୍ରତିଦ୍ୱନ୍ଦ୍ୱିତା ଗୋଷ୍ଠୀଗତ ପ୍ରତିଦ୍ୱନ୍ଦ୍ୱିତା ଅପେକ୍ଷା ଅଧିକ ଫଳପ୍ରଦ ହୋଇଥାଏ । ତେବେ ଅତ୍ୟଧିକ ପ୍ରତିଦ୍ୱନ୍ଦ୍ୱିତା ଗର୍ବ ଓ ଅହଂଭାବ ସୃଷ୍ଟି କରାଇଥାଏ । ଏହାଦ୍ୱାରା ଈର୍ଷା ଭାବ, ଘୃଣା ଭାବ ଇତ୍ୟାଦି ଅନାବଶ୍ୟକ ଆବେଗ ବୃଦ୍ଧି ପାଇଥାଏ । ଶିକ୍ଷଣ କ୍ଷେତ୍ରରେ ଦକ୍ଷତା ବୃଦ୍ଧିନିମିତ୍ତ ପ୍ରତିଦ୍ୱନ୍ଦ୍ୱିତା ଯେ ସାହାଯ୍ୟ କରେ ଏହା ନିଃସନ୍ଦେହ ମାତ୍ର ଅତ୍ୟଧିକ ପ୍ରତିଦ୍ୱନ୍ଦ୍ୱିତା ସାମାଜିକ ନିୟମର ବିରୁଦ୍ଧାଚରଣ କରିଥାଏ । ଶିଶୁର ସାମାଜିକ ବୃଦ୍ଧି କ୍ଷେତ୍ରରେ ଏହା କ୍ଷତିକାରକ ପ୍ରଭାବ ପକାଇଥାଏ । ଏ ଦୃଷ୍ଟିରୁ ବିଦ୍ୟାଳୟ ବ୍ୟକ୍ତିଗତ ପ୍ରତିଯୋଗିତା ଅପେକ୍ଷା ଦଳଗତ ପ୍ରତିଯୋଗିତାକୁ ଅଧିକ ଗୁରୁତ୍ୱ ଦେବା ବାଞ୍ଛନୀୟ । ତେଣୁ ଏହା ଶିକ୍ଷକମାନଙ୍କ ଦ୍ୱାରା ସତର୍କତାର ସହିତ ବ୍ୟବହୃତ ହେବା ଆବଶ୍ୟକ ।

(୪) **ଉନ୍ନତି ସମ୍ବନ୍ଧୀୟ ଜ୍ଞାନ** :—ଏହା ଏକ ପ୍ରଧାନ ପ୍ରେରଣା ରୂପେ କାର୍ଯ୍ୟ କରିଥାଏ । ନିଜ ଉନ୍ନତି ସମ୍ବନ୍ଧରେ ଶିଶୁ ଜାଣିବା ଫଳରେ ସେ ଅଧିକ ମାତ୍ରାରେ ଏହି ଜ୍ଞାନରୁ ଉତ୍ସାହିତ ଓ ଅଭିପ୍ରେରିତ ହୋଇଥାଏ । ଏହା ନିଜର ଭ୍ରମ ସଂଶୋଧନରେ ଓ କାର୍ଯ୍ୟ ସମ୍ପାଦନରେ ମଧ୍ୟ ସାହାଯ୍ୟ କରିଥାଏ । ଏ ଦୃଷ୍ଟିରୁ ଶିକ୍ଷକ ଶିଶୁକୁ ତାର ଉନ୍ନତି ସମ୍ବନ୍ଧରେ ଧାରଣା ଦେବା ଆବଶ୍ୟକ ।

(୫) **ଲକ୍ଷ୍ୟ ସିଦ୍ଧି ସମ୍ବନ୍ଧୀୟ ଜ୍ଞାନ** :—ଶିକ୍ଷାର ଲକ୍ଷ୍ୟ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ସ୍ୱୀକୃତ ହେବା ବାଞ୍ଛନୀୟ । ସେମାନେ ପାଠ୍ୟବସ୍ତୁଗୁଡ଼ିକର ଲକ୍ଷ୍ୟ ସମ୍ପର୍କରେ ଅବଗତ ହେବା ଆବଶ୍ୟକ । ତେବେ ଅଧୁନା ପ୍ରଚଳିତ ଶିକ୍ଷା ପଦ୍ଧତିରେ ଶିକ୍ଷାର ଲକ୍ଷ୍ୟ ଶିକ୍ଷା କମିଟିଙ୍କ ଦ୍ୱାରା ସ୍ୱୀକୃତ ହେଉଥିବାରୁ ତଦନୁଯାୟୀ ଛାତ୍ରଛାତ୍ରୀମାନଙ୍କୁ ଏହି

ଲକ୍ଷ୍ୟପୂର୍ତ୍ତି ନିମିତ୍ତ ଉଦ୍ୟମ କରିବାକୁ ପଡ଼ିଥାଏ । ସେମାନେ ଲକ୍ଷ୍ୟ ହାସଲରେ କେତେଦୂର ଫଳପ୍ରଦ ହୋଇଛନ୍ତି ତାହା ସେହି ଶିକ୍ଷକ ଓ ଶିକ୍ଷା କମିଟି ଦ୍ୱାରା ସ୍ଥିର ହୋଇଥାଏ । ଛାତ୍ରଛାତ୍ରୀମାନେ ନିଜର ସାଧନାର ଫଳ ସମ୍ପର୍କରେ ଅବଗତ ହେବା ଏକାନ୍ତ ଆବଶ୍ୟକ । କାରଣ, ଏହା ଶିଶୁକୁ ପ୍ରୋତ୍ସାହନ ଯୋଗାଇଥାଏ । ତେଣୁ ପ୍ରତ୍ୟେକ ବିଦ୍ୟାଳୟରେ "ପ୍ରୋଗ୍ରେସ କାର୍ଡ" ଦ୍ୱାରା ପ୍ରତ୍ୟେକ ଛାତ୍ରଛାତ୍ରୀମାନଙ୍କର ବିଭିନ୍ନ ସମୟରେ ଲକ୍ଷ୍ୟସାଧନର ସୀମାଗୁଡ଼ିକ ସୂଚିତ ହେବା ଉଚିତ୍ । ବିଦ୍ୟାଳୟ ମାନଙ୍କରେ ପ୍ରଚଳିତ ସାମୟିକ ମୂଲ୍ୟାୟନ ପଦ୍ଧତିଦ୍ୱାରା ଶିକ୍ଷାର ଲକ୍ଷ୍ୟ ସାଧନାର ସୀମା ସ୍ଥିର ହୋଇଥାଏ । ତେବେ ଉକ୍ତ ମୂଲ୍ୟାୟନ ନିମିତ୍ତ ଉଦ୍ଦିଷ୍ଟ ପ୍ରଶ୍ନଗୁଡ଼ିକ ବସ୍ତୁନିଷ୍ଠ ହେବା ସଙ୍ଗେ ସଙ୍ଗେ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟମୂଳକ ହେବା ବାଞ୍ଛନୀୟ । ପରୀକ୍ଷା ପରେ ପରେ ସେମାନଙ୍କୁ ଏହାର ଫଳାଫଳ ସମ୍ପର୍କରେ ସୂଚନା ଦେବା ଉଚିତ୍ । ଶିକ୍ଷକ ଏଥି ନିମିତ୍ତ ଯତ୍ନଶୀଳ ହେବା ଏକାନ୍ତ କାମ୍ୟ ।

(୬) **ନୂତନତ୍ୱ** :—ଗତାନୁଗତିକ ପାଠ୍ୟକ୍ରମର ପୁନଃବିଶ୍ଳେଷଣ ଓ ପରିବର୍ତ୍ତନ ଏକାନ୍ତ ଆବଶ୍ୟକ । ଶିଶୁମାନେ ସର୍ବଦା ନୂତନତ୍ୱ ପ୍ରିୟ । ତେଣୁ ଶିକ୍ଷା ପଦ୍ଧତିକୁ ସମ୍ପୂର୍ଣ୍ଣରୂପେ ପରିବର୍ତ୍ତନ ନକରି କିୟଦଂଶରେ ସେଥିରେ ନୂତନ ବିଷୟବସ୍ତୁ ଯୋଗ କରିବା ବାଞ୍ଛନୀୟ । ଏହା ସେମାନଙ୍କୁ ପ୍ରୋତ୍ସାହନ ଯୋଗାଇଥାଏ । ନୂତନତ୍ୱର ମିଶ୍ରଣ ଜୀବନକୁ ଅଧିକ ତୃପ୍ତିପୂର୍ଣ୍ଣ କରିଥାଏ । ତେଣୁ ଶିକ୍ଷକ ଏଥିପ୍ରତି ଦୃଷ୍ଟି ଦେବା ଆବଶ୍ୟକ । ପ୍ରଚଳିତ ପାଠ୍ୟକ୍ରମକୁ ନୂତନ ପରିପ୍ରେକ୍ଷୀରେ ଉପସ୍ଥାପିତ କରାଇବା ଶିକ୍ଷକଙ୍କର କର୍ତ୍ତବ୍ୟ । ପାଠ୍ୟକ୍ରମରେ ନୂତନତ୍ୱର ସନ୍ଧାନ ଜ୍ଞାନ ଲାଭ ନିମିତ୍ତ ଶିଶୁଠାରେ ଅଧିକ ଉତ୍କଣ୍ଠା ଭରିଦିଏ । ସେ ଜ୍ଞାନାର୍ଜ୍ଜନ ନିମିତ୍ତ ପ୍ରୋତ୍ସାହିତ ହୋଇଥାଏ ।

(୭) **ଶ୍ରାବ୍ୟ-ଦୃଶ୍ୟ ଉପକରଣ** :—କେବଳ ବକ୍ତୃତା ଦ୍ୱାରା ଶିକ୍ଷା ଦାନ ଅଧିକ ଫଳପ୍ରଦ ହୋଇ ନଥାଏ । ଶିକ୍ଷାଦାନବେଳେ ଏହାକୁ ଛାତ୍ରଛାତ୍ରୀମାନଙ୍କପାଇଁ ଅଧିକ ରୁଚିକର କରାଇବା ନିମିତ୍ତ ଶିକ୍ଷକ ଯତ୍ନଶୀଳ ହେବା ଆବଶ୍ୟକ । ତେଣୁ ଶିକ୍ଷା ଦାନ ସମୟରେ ବିଭିନ୍ନ ଶ୍ରାବ୍ୟ-ଦୃଶ୍ୟ ସାମଗ୍ରୀର ବ୍ୟବହାର ଅଧୁନା ପ୍ରଚଳିତ ଶିକ୍ଷା ପଦ୍ଧତିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ଏହା ଉପକରଣଗୁଡ଼ିକୁ ଦେଖି ଓ ଶୁଣି ତା' ମାଧ୍ୟମରେ ଶିଶୁ ଶିକ୍ଷା ଲାଭ କରିବାକୁ ସକ୍ଷମ ହୋଇଥାଏ । ଏହି ପଦ୍ଧତି ଦ୍ୱାରା ଶିକ୍ଷା ଦାନ ଅଧିକ ଫଳପ୍ରଦ ଓ ଚିତ୍ତାକର୍ଷକ ମଧ୍ୟ ହୋଇଥାଏ । ଶିକ୍ଷକ ଏଥି ନିମିତ୍ତ ଯତ୍ନଶୀଳ ହେବା ଏକାନ୍ତ ବରଣୀୟ ।

(୮) **ଆଗ୍ରହ** :—ଶିଶୁମାନେ ସାଧାରଣତଃ ସବୁ କଥା ଜାଣିବାପାଇଁ ଆଗ୍ରହୀ ହୋଇଥାନ୍ତି । ଶିକ୍ଷା ପ୍ରତି ସେମାନଙ୍କଠାରେ ଆଗ୍ରହ ଉଦ୍ରେକ କରାଇବା ଶିକ୍ଷକଙ୍କର ପ୍ରଧାନ

କରିବା । ପଠନ କ୍ରିୟାକୁ କେବଳ ପଠନ ମଧ୍ୟରେ ସୀମିତ ନ ରଖିବା ଅନ୍ୟାନ୍ୟ କାର୍ଯ୍ୟକ୍ରମ ତଥା ଲିଖନ, ସଙ୍ଗୀତ, ବାଦ୍ୟ ଅଭିନୟ ଇତ୍ୟାଦି ଦ୍ୱାରା ସମ୍ପାଦନ କରାଇବା ବାଞ୍ଛନୀୟ । ଏହା ଶିଶୁମାନଙ୍କ ପାଇଁ ଅଭିପ୍ରେରଣା ରୂପେ କାର୍ଯ୍ୟ କରିଥାଏ । ତେଣୁ ଶିକ୍ଷକ ବହୁମୁଖୀ କ୍ରିୟାକଳାପ ଦ୍ୱାରା ଶିକ୍ଷା ଦାନବେଳେ ଛାତ୍ରଛାତ୍ରୀମାନଙ୍କଠାରେ ଆଗ୍ରହ ସୃଷ୍ଟି କରାଇବା ଉଚିତ୍ ।

**(୯) ମର୍ଯ୍ୟାଦା ବୋଧ :**—ପ୍ରତ୍ୟେକ ବ୍ୟକ୍ତି ସ୍ୱ-ମର୍ଯ୍ୟାଦାର ବିକାଶ ଓ ସମ୍ପ୍ରସାରଣ କରିବାରେ ବ୍ରତୀ । ଆତ୍ମମର୍ଯ୍ୟାଦା ବିପନ୍ନ ହେଲେ ମାନସିକ ସ୍ଥିରତା ନଷ୍ଟ ହୁଏ । ଏହା ଏକ ସାମାଜିକ ଆବଶ୍ୟକତା । ଅନ୍ୟାନ୍ୟ ପ୍ରୟୋଜନ ଭଳି ସ୍ୱ-ମର୍ଯ୍ୟାଦାର ସଂରକ୍ଷଣ ବ୍ୟକ୍ତିର ଏକ ଅତ୍ୟାବଶ୍ୟକ ପ୍ରୟୋଜନୀୟ ବସ୍ତୁ । ଶିକ୍ଷକମାନେ ଏହି ମର୍ଯ୍ୟାଦା-ବୋଧ ଭାବ ଛାତ୍ରଛାତ୍ରୀମାନଙ୍କଠାରେ ଜାଗ୍ରତ କରାଇବା ଏକାନ୍ତ କାମ୍ୟ । ଶିକ୍ଷଣ କ୍ଷେତ୍ରରେ ନିଜ ମର୍ଯ୍ୟାଦା ସମ୍ପର୍କରେ ସଚେତନ ରହିଲେ ସେମାନେ ଅଧିକ ଜ୍ଞାନ ଲାଭ ନିମିତ୍ତ ପ୍ରୋତ୍ସାହିତ ହୋଇପାରିବେ । ଶିକ୍ଷଣଙ୍କର ସଚେତନତା ଶିଶୁମାନଙ୍କୁ ନିଜ ମର୍ଯ୍ୟାଦା ଅବ୍ୟାହତ ରଖିବାକୁ ପ୍ରେରଣା ଯୋଗାଇ ଥାଏ ।

ଉପରୋକ୍ତ କୌଶଳଗୁଡ଼ିକୁ ଅନୁଧ୍ୟାନ କଲେ ଏହା ସ୍ପଷ୍ଟ ଜଣାଯିବ ଯେ, ଶିକ୍ଷଣ କ୍ଷେତ୍ରରେ ଅଭିପ୍ରେରଣାର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ଶିକ୍ଷଣ କ୍ଷେତ୍ରରେ ସମସ୍ତ ଅଭିପ୍ରେରଣାମୂଳକ କାର୍ଯ୍ୟ ଶିକ୍ଷକଙ୍କ ଦକ୍ଷତା ଉପରେ ନିର୍ଭର କରିଥାଏ । ଶିକ୍ଷକ ଛାତ୍ରଛାତ୍ରୀମାନଙ୍କର ସାମର୍ଥ୍ୟ, ଶକ୍ତି, ଦକ୍ଷତା, ଆଗ୍ରହ, ରୁଚି ଓ ତା'ର ପାରିପାର୍ଶ୍ୱିକ ପରିବେଷ୍ଟନୀ ଇତ୍ୟାଦିକୁ ଉତ୍ତମରୂପେ ଅନୁଧ୍ୟାନ କରି ଶିକ୍ଷଣବେଳେ ଉପଯୁକ୍ତ ପ୍ରେରଣା ହେବା ଏକାନ୍ତ ଆବଶ୍ୟକ ।

ଶ୍ରେଣୀ ପ୍ରକୋଷ୍ଠରେ ଛାତ୍ରଛାତ୍ରୀମାନଙ୍କୁ ଅଭିପ୍ରେରିତ କରାଇବା ନିମିତ୍ତ ନିମ୍ନୋକ୍ତ ପ୍ରସ୍ତାବଗୁଡ଼ିକ ଗ୍ରହଣ ଯୋଗ୍ୟ ।

୧ । ବିଷୟ ବସ୍ତୁର ଉପଯୋଗିତା ସମ୍ପର୍କରେ ଜାଣିବା ନିମିତ୍ତ ଛାତ୍ରଛାତ୍ରୀମାନେ ସାହାଯ୍ୟ ପାଇବା ଉଚିତ୍ । ଶିକ୍ଷଣ ବା ପଠନ କ୍ରିୟା ଜୀବନର ପ୍ରକୃତ ପରିସ୍ଥିତି ସହ ସମ୍ପର୍କିତ ହୋଇଥିଲେ ଏହା ସମ୍ଭବ ହୁଏ ।

୨ । ନୂତନ ଶିକ୍ଷାଦାନ ପୁରାତନ ଶିକ୍ଷା ଉପରେ ପ୍ରତିଷ୍ଠିତ ହେବା ଆବଶ୍ୟକ । ଏହା ପୂର୍ବବର୍ତ୍ତୀ ବିଷୟକୁ ଅନୁକରଣ କରିବା ଉଚିତ୍ ।

୩ । ଶିକ୍ଷଣ ବିଷୟ ଉତ୍ତମରୂପେ ଏକ ନିର୍ଦ୍ଦିଷ୍ଟ କ୍ରମରେ ସଜ୍ଜିତ ଏବଂ ସଂଗଠିତ ହେବା ଉଚିତ୍ । ଏହା ମଧ୍ୟ ବିଷୟବସ୍ତୁର କ୍ଲିଷ୍ଟତା ଅନୁଯାୟୀ ହେବା ବାଞ୍ଛନୀୟ ।

୪ । ଶିଶୁ ଉପରେ ଆବଶ୍ୟକୀୟ ଫଳାଫଳ ପ୍ରଦର୍ଶନ ପାଇଁ ଚାପ ପକାଇବା ଆବଶ୍ୟକ ।

୫ । ପୁରସ୍କାର ବସ୍ତୁ ମାଧ୍ୟମରେ ସଙ୍ଗଠିତ ହେବା ଅବାଞ୍ଛନୀୟ । ଏହି ପୁରସ୍କାର ତା'ର ଉନ୍ନତି ସମ୍ବନ୍ଧୀୟ ସାଙ୍କେତିକ ପ୍ରତୀକ ଦ୍ୱାରା ଦିଆଯିବା ଉଚିତ୍ ।

୬ । ଶିଶୁ କୌଣସି ଭୁଲ୍ ଉଦ୍ଦୀପନା ପ୍ରକାଶ କଲେ ତାକୁ ଗାଳି ନଦେଇ ପରିଷ୍କାର ଭାବେ ବୁଝାଇ ଦେବା ଉଚିତ୍ । ଶାସ୍ତି କେବଳ ଖରାପ ଅଭ୍ୟାସ ଛାଡ଼ିବା-ପାଇଁ ଦିଆଯାଇପାରେ । ମାତ୍ର ଆବଶ୍ୟକୀୟ ଅଭ୍ୟାସ ପରିବର୍ତ୍ତନ ପାଇଁ ଦିଆଯିବା ଅନୁଚିତ୍ ।

୭ । ଶିକ୍ଷକ ଶିଶୁକୁ ତା'ର ପ୍ରତ୍ୟେକ ବିଷୟର ଉନ୍ନତି ସମ୍ବନ୍ଧରେ ଜଣାଇଦେବା ଏକାନ୍ତ ଆବଶ୍ୟକ ।

୮ । ଶିକ୍ଷକ ଛାତ୍ରଛାତ୍ରୀମାନଙ୍କୁ ପ୍ରୋତ୍ସାହିତ କରିବା ନିମିତ୍ତ ବ୍ୟକ୍ତିଗତ ପ୍ରତିଦ୍ୱନ୍ଦ୍ୱିତା ଅପେକ୍ଷା ସ୍ୱ-ପ୍ରତିଦ୍ୱନ୍ଦ୍ୱିତା ଏବଂ ଗୋଷ୍ଠୀଗତ ପ୍ରତିଦ୍ୱନ୍ଦ୍ୱିତା ପ୍ରବର୍ତ୍ତନ କରାଇବା ଆବଶ୍ୟକ ।

ତେବେ ଶିକ୍ଷକଙ୍କର କର୍ତ୍ତବ୍ୟ ସମ୍ପାଦନ ନିମିତ୍ତ ଆଗ୍ରହ ଓ ଉତ୍ସାହ ଛାତ୍ରଛାତ୍ରୀମାନଙ୍କୁ ଉପଯୁକ୍ତ ଭାବେ ଅଭିପ୍ରେରିତ କରିପାରି ନଥାଏ । ତେଣୁ ଶିକ୍ଷକଙ୍କର ତତ୍ପରତା ଅଭିପ୍ରେରଣା ପାଇଁ ଏକାନ୍ତ ଆବଶ୍ୟକ ହୋଇଥାଏ ।



# ଚତୁର୍ଦ୍ଦଶ ଅଧ୍ୟାୟ

## ପ୍ରଶିକ୍ଷଣ ସଂକ୍ରମଣ

## (Transfer of Training)

ମନୁଷ୍ୟର ଜୀବନ ବର୍ଷ, ମାସ, ଦିନ, ଦଣ୍ଡ ମଧ୍ୟରେ ସୀମିତ ନୁହେଁ । କର୍ମ ହିଁ ତାର ଜୀବନ ଓ କର୍ମହିଁ ତା'ର ଜୀବନର ମାନଦଣ୍ଡ । ଅତଏବ ସମସ୍ତ ବାଧା ବିଘ୍ନକୁ ସଫଳତାର ସହ ସମ୍ମୁଖୀନ ହୋଇ ଉତ୍ତମ ମାନବିକତା ଓ ସାମାଜିକତା ପ୍ରଦର୍ଶନ କରିପାରିଲେ ଶିକ୍ଷାର ସର୍ବପ୍ରଧାନ ଉଦ୍ଦେଶ୍ୟ ସାଧିତ ହୁଏ । ମନୁଷ୍ୟ ଏପରିକି ପଶୁମାନେ ମଧ୍ୟ ନିଜ ନିଜ ଅତୀତ ଅଭିଜ୍ଞତାରୁ ଶିକ୍ଷା ଲାଭ କରିଥାନ୍ତି । ପୁନଶ୍ଚ ବିଦ୍ୟାଳୟ ଓ ଶିକ୍ଷାନୁଷ୍ଠାନ ମାନଙ୍କରେ ଲବ୍ଧ ଶିକ୍ଷା ଜୀବନରେ ବାସ୍ତବିକତାର ସମ୍ମୁଖୀନ ହେବାପାଇଁ ଏକ ପ୍ରସ୍ତୁତି ମାତ୍ର । ବ୍ୟକ୍ତି ସମାଜରେ ତାର ଜୀବନ ନିର୍ବାହ କରିବା ସମୟରେ ଯେଉଁସବୁ ପରିସ୍ଥିତିର ସମ୍ମୁଖୀନ ହୁଏ, ସେଗୁଡ଼ିକ ସହ ଉତ୍ତମ ଭାବରେ ସମାଯୋଜନ କରିପାରିବାର ଦକ୍ଷତା ସୃଷ୍ଟି କରିବା ପାଇଁ ବିଦ୍ୟାଳୟରେ ବିଷୟ ଓ ପାଠ୍ୟକ୍ରମ ଗୁଡ଼ିକୁ ସେମାନଙ୍କର ଉପକାରିତା ଓ ଆବଶ୍ୟକତା ଅନୁସାରେ ଅନ୍ତର୍ଭୁକ୍ତ କରାଯାଇଥାଏ । ଅତଏବ ଗୋଟିଏ ବିଷୟର ଶିକ୍ଷା ଅନ୍ୟ ବିଷୟକୁ, ବିଦ୍ୟାଳୟ ଜୀବନର ଶିକ୍ଷା ବାସ୍ତବିକ ସାମାଜିକ ସମ୍ପର୍କକୁ ସଂକ୍ରମିତ ହେବା ଏକାନ୍ତ ଆବଶ୍ୟକ । ଅର୍ଜିତ ଜ୍ଞାନକୁ ବିଭିନ୍ନ କାର୍ଯ୍ୟକ୍ରମରେ ନିୟୋଜିତ କରିବା ପ୍ରଶିକ୍ଷଣ ସଂକ୍ରମଣର ମୂଳ ଅର୍ଥ, ବିଦ୍ୟାଳୟରେ ଯେଉଁ ଶିକ୍ଷା ପ୍ରଦାନ କରାଯାଏ ତହିଁରୁ ଲବ୍ଧ ଜ୍ଞାନ ଛାତ୍ରମାନେ ତାକୁ ପରବର୍ତ୍ତୀ ଜୀବନରେ ବିଭିନ୍ନ ସମସ୍ୟା ସମାଧାନ କରିବାକୁ ନିୟୋଜିତ କରିଥାନ୍ତି । ଆମ ଦୈନନ୍ଦିନ ଜୀବନର ହିସାବ ପତ୍ର କାର୍ଯ୍ୟପାଇଁ ଆମକୁ ଗଣିତ ଶିକ୍ଷା ସାହାଯ୍ୟ କରେ । ସେହିପରି ନାଗରିକ ବିଜ୍ଞାନ ଶିକ୍ଷା ଦ୍ୱାରା ମନୁଷ୍ୟର ସାମାଜିକତା ପରିପୁଷ୍ଟ ହୋଇଥାଏ । ଏହିପରି ପ୍ରତ୍ୟେକ ପଠିତ ବିଷୟର ବାସ୍ତବ ମୂଲ୍ୟ ରହିଥାଏ । ଗୋଟିଏ ବିଷୟରେ ଜ୍ଞାନ ଅର୍ଜନ କରି ଅନ୍ୟ ବିଷୟରେ ଉକ୍ତ ଜ୍ଞାନକୁ ଉପଯୋଗ କରିପାରିଲେ ଶିକ୍ଷାର ଉଦ୍ଦେଶ୍ୟ ସାଧିତ ହୁଏ । ତେଣୁ ସଂକ୍ରମଣର ଧାରଣା ଶିକ୍ଷାର ପ୍ରଧାନ ବିଷୟବସ୍ତୁ ।

**ସଂକ୍ରମଣର ଅର୍ଥ :**

ଗ୍ରୀକ୍ ଶିକ୍ଷା ପଦ୍ଧତିରେ ମଧ୍ୟ ପ୍ରଶିକ୍ଷଣର ସଂକ୍ରମଣର ସୂଚନା ମିଳିଥାଏ । ଏଥେନସ୍‌ରେ ଶାରୀରିକ ସ୍ୱାସ୍ଥ୍ୟପାଇଁ ଜିମ୍ନାଷ୍ଟିକ୍‌କୁ ଏବଂ ଆତ୍ମାର ବିକାଶ ପାଇଁ

ସବୁ ସଙ୍ଗୀତକୁ ଗୁରୁତ୍ୱ ପ୍ରଦାନ କରାଯାଉଥିଲା । ଗ୍ରୀକ୍ ଦାର୍ଶନିକ ପ୍ଲାଟୋ ମତ ପ୍ରଦାନ କରିଥିଲେ ଯେ ମାନସିକ ପ୍ରଶିକ୍ଷଣ ପାଇଁ ଜ୍ୟାମିତି ଶିକ୍ଷା ଏକାନ୍ତ ଆବଶ୍ୟକ । ସାଧାରଣତଃ ଲୋକଙ୍କର ଧାରଣା ଯେ ଗଣିତ ଶାସ୍ତ୍ର ବ୍ୟକ୍ତିର ଚିନ୍ତନ ଶକ୍ତିକୁ ତୀକ୍ଷ୍ଣ କରିଥାଏ । ସେହିପରି ବିଜ୍ଞାନ ପାଠ କରି ବ୍ୟକ୍ତିର ସୂକ୍ଷ୍ମ ପର୍ଯ୍ୟବେକ୍ଷଣ କ୍ଷମତା ବୃଦ୍ଧି ପାଏ ଓ ସାହିତ୍ୟ ପାଠକଲେ ବ୍ୟକ୍ତିର ରୁଚି ପରିମାର୍ଜିତ ହୋଇଥାଏ । ଏଗୁଡ଼ିକୁ ସାଧାରଣ ବ୍ୟକ୍ତି ବିଶ୍ୱାସ କଲେ ମଧ୍ୟ ବିଭିନ୍ନ ମନୋବିଜ୍ଞାନୀମାନେ ବିଭିନ୍ନ ପରୀକ୍ଷା ଦ୍ୱାରା ଭୁଲ ପ୍ରମାଣିତ କରିଛନ୍ତି ।

ମନୋବିଜ୍ଞାନୀମାନେ ପ୍ରଶିକ୍ଷଣ ସଂକ୍ରମଣ ସଂପର୍କରେ ନାନା ପ୍ରକାର ମତ ପ୍ରଦାନ କରିଥାନ୍ତି । କେତେକ ମନେକରନ୍ତି ଜୀବନର ସମସ୍ୟାଗୁଡ଼ିକୁ ସମାଧାନ କରିବା ପାଇଁ ଚିନ୍ତନ ଶକ୍ତିର ଆବଶ୍ୟକତା ରହିଛି । ଏଲିସ (H.C. Ellis) ତାଙ୍କ ପୁସ୍ତକ 'The Transfer'ରେ ଉଲ୍ଲେଖ କରିଛନ୍ତି ଯେ ପ୍ରଶିକ୍ଷଣ ସଂକ୍ରମଣର ଅର୍ଥ ହେଲା ଗୋଟିଏ କାର୍ଯ୍ୟକରି ଅର୍ଜନ କରାଯାଇଥିବା ଅଭିଜ୍ଞତାକୁ ଅନ୍ୟ ଏକ କାର୍ଯ୍ୟ ସମ୍ପାଦନ ପାଇଁ ବିନିଯୋଗ କରାଯିବ । ତାଙ୍କ ମତରେ ସଂକ୍ରମଣରେ ତିନୋଟି ରୂପ ରହିଛି । ପ୍ରଥମତଃ ଗୋଟିଏ କାର୍ଯ୍ୟର ସମ୍ପାଦନ ଅନ୍ୟ ଏକ କାର୍ଯ୍ୟ ସମ୍ପାଦନ କରିବାକୁ ସୁବିଧା, ସୁଯୋଗ ଓ ସାହାଯ୍ୟ ଯୋଗାଇଥାଏ । ଏ କ୍ଷେତ୍ରରେ କୌଣସି ନିର୍ଦ୍ଦିଷ୍ଟ ବିଷୟରେ ଜ୍ଞାନ ଲାଭ କଲେ ତାହା ଅନ୍ୟ ଏକ ବିଷୟରେ ଜ୍ଞାନ ଲାଭର ପଥକୁ ସୁଗମ କରିଥାଏ । ଏପରି ସଂକ୍ରମଣକୁ ଅସ୍ତିବାଚକ ବା ସଦର୍ଥକ ସଂକ୍ରମଣ କୁହାଯାଏ । ଦ୍ୱିତୀୟତଃ କୌଣସି ବିଷୟରେ ଜ୍ଞାନ ଲାଭ ଦ୍ୱାରା ଅନ୍ୟ ଏକ ବିଷୟରେ ଅର୍ଜିତ ଜ୍ଞାନ ବିକ୍ଷିପ୍ତ ହୋଇଥାଏ କିମ୍ବା ଏହି ଦ୍ୱିତୀୟ ବିଷୟରେ ଜ୍ଞାନ ଅର୍ଜନ କରିବାର ସୁଯୋଗ ବନ୍ଦ ହୋଇଯାଏ । ଏ କ୍ଷେତ୍ରରେ ଗୋଟିଏ ବିଷୟର ଶିକ୍ଷା ଅନ୍ୟ ବିଷୟ ପାଇଁ ବ୍ୟାଘାତ ବା ଅସୁବିଧା ସୃଷ୍ଟି କରେ । ଏପରି ସଂକ୍ରମଣକୁ ନାସ୍ତିବାଚକ ସଂକ୍ରମଣ କୁହାଯାଏ । ତୃତୀୟତଃ ଦୁଇଟି ଶିକ୍ଷା ପରସ୍ପର ସମାନ୍ତରାଳ ଭାବରେ ଗତି କରି ପାରନ୍ତି । ଅନ୍ୟ ଭାଷାରେ କହିଲେ ଗୋଟିଏ ବିଷୟର ଶିକ୍ଷା ଅନ୍ୟ ଏକ ବିଷୟର ଶିକ୍ଷା ଉପରେ କୌଣସି ପ୍ରକାର ପ୍ରଭାବ ପକାଏ ନାହିଁ । ଏ କ୍ଷେତ୍ରରେ ଏ ଦୁଇଟି ବିଷୟ ମଧ୍ୟରେ କୌଣସି ସମ୍ପର୍କ ନଥାଏ, ଏହାକୁ ଶୂନ୍ୟ ସଂକ୍ରମଣ କୁହାଯାଏ ।

ଲଭେଲ (Lovell) ନାମକ ମନୋବୈଜ୍ଞାନିକଙ୍କ ମତରେ ଗୋଟିଏ ବିଷୟର ପ୍ରଶିକ୍ଷଣ ଅନ୍ୟ ଏକ ବିଷୟର ପ୍ରଶିକ୍ଷଣ ବା କାର୍ଯ୍ୟାନୁଷ୍ଠାନ ଉପରେ ଯେଉଁ ପ୍ରଭାବ ପାତ କରିଥାଏ ତାହାକୁ ସଂକ୍ରମଣ କୁହାଯାଏ । ସଂକ୍ରମଣ ସାହାଯ୍ୟକାରୀ ବା ବିରୋଧକାରୀ ହୋଇପାରେ । Crow and Crowଙ୍କ ମତରେ ଶିକ୍ଷାର ବିଭିନ୍ନ ବିଭାଗ ରହିଛି । ଗୋଟିଏ ବିଭାଗରୁ ଅର୍ଜିତ ଅଭ୍ୟାସ, ଚିନ୍ତନ, ଅନୁଭୂତ ଜ୍ଞାନ ଓ

କୌଶଳ ଯେତେବେଳେ ଅନ୍ୟ ଏକ ବିଷୟ ପାଇଁ ଆବଶ୍ୟକୀୟ ହୁଏ ତାହାହିଁ ପ୍ରଶିକ୍ଷଣ ସଂକ୍ରମଣ ।

ପ୍ରଶିକ୍ଷଣ ସଂକ୍ରମଣ ବ୍ୟକ୍ତିର ବ୍ୟବହାର ଓ କାର୍ଯ୍ୟକଳାପ ମାଧ୍ୟମରେ ପ୍ରକାଶିତ ହୁଏ । ବିଭିନ୍ନ ଶିଶୁ ବିଦ୍ୟାଳୟକୁ ପ୍ରବେଶ କାଳରେ ଭିନ୍ନ ଭିନ୍ନ ଆଚରଣ ପ୍ରଦର୍ଶନ କରିଥାନ୍ତି । ଏହି ଆଚରଣ ତାଙ୍କର ପୂର୍ବରୁ ଗୃହରେ ଶିକ୍ଷା କରିଥିବା ବିଭିନ୍ନ କାର୍ଯ୍ୟକଳାପ ଦ୍ୱାରା ପ୍ରଭାବିତ ହୋଇଥାଏ । ଗୋଟିଏ ଖେଳରେ ଦକ୍ଷତା ଅର୍ଜନ କଲେ ତାର ଅନ୍ୟ ଏକ ଖେଳପାଇଁ ସାହାଯ୍ୟ କରିଥାଏ । ଗୋଟିଏ ଗାଣିତିକ ସୂତ୍ରର ବ୍ୟାଖ୍ୟା ଅନ୍ୟ ଏକ ସୂତ୍ରର ଅବଧାରଣା ପାଇଁ ସାହାଯ୍ୟ କରିଥାଏ । ଇତିହାସର ଶିକ୍ଷା ରାଜନୀତି ବିଜ୍ଞାନ ଶିକ୍ଷାକୁ ସୁଗମ କରିଥାଏ । ସେହିପରି ଅନ୍ୟ ପକ୍ଷରେ ଶିଶୁକୁ ଏକକାଳୀନ ଦୁଇଟି ଭାଷା ଶିକ୍ଷା ଦେଲେ ଗୋଟିଏ ଭାଷା ଅନ୍ୟ ଭାଷା ଶିକ୍ଷା କରିବା କ୍ଷେତ୍ରରେ ବାଧା ସୃଷ୍ଟି କରିଥାଏ । ଏହି କାରଣରୁ ଛାତ୍ରମାନଙ୍କର ଇଂରାଜୀ ଉଚ୍ଚାରଣ ସେମାନଙ୍କ ମାତୃଭାଷା ଦ୍ୱାରା ପ୍ରଭାବିତ ହୋଇଥାଏ । ତେଣୁ ମନୋବିଜ୍ଞାନୀମାନେ ବିଦ୍ୟାଳୟରେ ସଂକ୍ରମଣର ନାସ୍ତିମୂଳକ ପ୍ରଭାବକୁ ବିଲୋପ କରି ଅସ୍ତିମୂଳକ ପ୍ରଭାବକୁ ବିକାଶିତ କରିବାର ଉପାୟମାନ ନିର୍ଦ୍ଧିଷ୍ଟ କରିବାରେ ଆଗ୍ରହୀ ।

## ପ୍ରଶିକ୍ଷଣ ସଂକ୍ରମଣର ବିଭିନ୍ନ ତତ୍ତ୍ୱ :

ପ୍ରଶିକ୍ଷଣର ସଂକ୍ରମଣ କିପରି ସଂଘଟିତ ହୁଏ ? ଏହି ପ୍ରଶ୍ନର ଉତ୍ତର ବହୁ କାଳରୁ ବିଭିନ୍ନ ଦାର୍ଶନିକ ଓ ମନୋବୈଜ୍ଞାନିକ ନାନା ଉପାୟରେ ପ୍ରଦାନ କରିଛନ୍ତି । ଅନେକ ତତ୍ତ୍ୱ ପୁରାତନ ମତବାଦ ପ୍ରଚାର କରୁଥିବା ସମୟରେ ଅନ୍ୟଗୁଡ଼ିକ ବୈଜ୍ଞାନିକ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଉପରେ ପର୍ଯ୍ୟବେଶିତ । ନିମ୍ନରେ କେତେକ ତତ୍ତ୍ୱର ଆଲୋଚନା କରାଗଲା ।

**(୧) ମାନସିକ ବୃତ୍ତି ଶୃଙ୍ଖଳା ସମ୍ବନ୍ଧୀୟ ତତ୍ତ୍ୱ (Theory of Formal Mental Discipline')**—ପ୍ରଶିକ୍ଷଣ ସଂକ୍ରମଣ ସମ୍ବନ୍ଧରେ ଏହା ଏକ ପୁରାତନ ତତ୍ତ୍ୱ । ଏହି ମତବାଦ ଅନୁସାରେ ମନର ଅନେକ ବିଭାଗ ରହିଛି । ଏହି ବିଭାଗ ଗୁଡ଼ିକର ଭିନ୍ନ ଭିନ୍ନ ଶକ୍ତି ରହିଛି ଏବଂ ଏହି ଶକ୍ତି ଅନୁସାରେ ସେଗୁଡିକ ବିଭିନ୍ନ କାର୍ଯ୍ୟ କରିଥାନ୍ତି । ସେହି କାର୍ଯ୍ୟଗୁଡ଼ିକ ହେଲା ମନନ, କଳ୍ପନା, ତର୍କଣା, ସ୍ମୃତି, ବୋଧନ ଏବଂ ଚରିତ୍ର ବୋଧ ଇତ୍ୟାଦି । ଏହି ବିଭାଗ ଗୁଡ଼ିକ ପରସ୍ପରଠାରୁ ସ୍ୱାଧୀନ ଓ ସ୍ୱତନ୍ତ୍ର ଭାବରେ ରହି କାର୍ଯ୍ୟ କରିଥାନ୍ତି । କିନ୍ତୁ ସେମାନଙ୍କ ମଧ୍ୟରେ କେତେକ ସାଧାରଣ ସାଦୃଶ୍ୟ ରହିଥାଏ । ଉଦାହରଣ ସ୍ୱରୂପ ଜଣକର ସ୍ମୃତି ଶକ୍ତି ପ୍ରଖର ହୋଇଥିଲେ ସେ ସବୁ କିଛି ମନେ ରଖିବାକୁ ସମର୍ଥ ହୋଇଥାଏ । ତେଣୁ ଏହି ସବୁ ବିଭାଗ ଗୁଡ଼ିକୁ

ଏକଥ ଭାବରେ ଶିକ୍ଷାଦାନ କରାଯାଇପାରେ । ଅତ୍ୟବ ମଧ୍ୟ ସୁନିର୍ବାଚିତ ଓ ସୁସଙ୍ଗଠିତ ଅନୁଶୀଳନ ଦ୍ୱାରା ସବୁ ବୃତ୍ତିର ଗୁଡ଼ିକର ଏକକାଳୀନ ବିକାଶ ସମ୍ଭବ । ବିଦ୍ୟାଳୟରେ ଗୋଟିଏ ବିଷୟର ଶିକ୍ଷାଦାନ ଏକ ସମୟରେ ଅନେକ ବୃତ୍ତିରକୁ ପ୍ରଶିକ୍ଷଣ ପ୍ରଦାନ କରିଥାଏ । ସାହିତ୍ୟ ବିଷୟରେ ଶିକ୍ଷାଦାନ ଚିନ୍ତନ, ପର୍ଯ୍ୟବେକ୍ଷଣ, ତୁଳନା ଏବଂ ସାରାଂଶ କରଣ ପ୍ରଭୃତିକୁ ପ୍ରଶିକ୍ଷିତ କରିଥାଏ । ସେହିପରି ଗଣିତ ଶିକ୍ଷା ଚିନ୍ତନ ଓ ମନନ କ୍ରିୟାକୁ ସଙ୍ଗଠିତ କରିବା ସହିତ ଏକାଗ୍ରତା ବୃଦ୍ଧି କରିଥାଏ । ପୁରାତନ ଦାର୍ଶନିକମାନଙ୍କ ମତରେ କ୍ରୀଡ଼ା ହେଉଛି ସର୍ବଶ୍ରେଷ୍ଠ ବୃତ୍ତି ଯାହାଦ୍ୱାରା ଆତ୍ମବିଶ୍ୱାସ ବୃଦ୍ଧିପାଇବା ସଙ୍ଗେ ସଙ୍ଗେ ମନୁଷ୍ୟର ଚିର ପ୍ରବୃତ୍ତି ବା ମିଜାଜ (Temperament)ର ସାମୂହିକ ବିକାଶ ସାଧିତ ହୋଇଥାଏ ।

ଏହି ମତବାଦ ମନୁଷ୍ୟର କାର୍ଯ୍ୟକଳାପ ପ୍ରତି ଗୁରୁତ୍ୱ ଆରୋପ କରିଥାଏ । କୌଣସି ବିଷୟକୁ ମନେରଖିବାକୁ ଚେଷ୍ଟାକରାଗଲେ ଏହା ସ୍ମୃତି ଶକ୍ତିର ବିକାଶ ସାଧନ କରିଥାଏ । ଏହି ତତ୍ତ୍ୱ ଅନୁସାରେ ଶୃଙ୍ଖଳାର ଅର୍ଥ କଷ୍ଟକର ପ୍ରଶିକ୍ଷଣ । ଶିକ୍ଷାର ବିଷୟ ଯେତେ କଠିନ ହେବ ଏବଂ ଶିକ୍ଷା ଲାଭର ପ୍ରଣାଳୀ ଯେତେ କଷ୍ଟକର ହେବ ମାନସିକ ବିକାଶ ସେତେ ଅଧିକ ହେବବୋଲି ଏହି ମତବାଦୀମାନେ ଚିନ୍ତା କରିଥାନ୍ତି । ଏଣୁ ବିଭିନ୍ନ ବିଷୟର ଶିକ୍ଷା ସହିତ ମନର ବିଭିନ୍ନ ବୃତ୍ତିଗୁଡ଼ିକ ପରସ୍ପର ହୋଇଥାନ୍ତି । ଏଠାରେ ବିଷୟଗତ ଶିକ୍ଷାରୁ ମାନସିକ ଶକ୍ତିକୁ ସିଧାସଳଖ ସଂକ୍ରମଣ ଘଟିଥାଏ ।

ଗ୍ରୀକ୍ ଦାର୍ଶନିକ ପ୍ଲାଟୋଙ୍କ ମତରେ ବିଭିନ୍ନ ପୁରାତନ ଭାଷା ଶିକ୍ଷା କରିବା ଦ୍ୱାରା ମନର ଏହି ବିଭିନ୍ନ ବୃତ୍ତି ଗୁଡ଼ିକ ବିକଶିତ ହୁଅନ୍ତି । ୧୮୯୦ ଖ୍ରୀଷ୍ଟାବ୍ଦରେ ବିଶିଷ୍ଟ ଆମେରିକୀୟ ମନୋବିଜ୍ଞାନୀ ୱିଲିୟମ୍ ଜେମ୍ସ (William James) ଏହି ତତ୍ତ୍ୱ ଉପରେ କେତେକ ପରୀକ୍ଷା କରିଥିଲେ । ତାଙ୍କ ପରୀକ୍ଷାରୁ ଏହି ତତ୍ତ୍ୱଟି ତ୍ରୁଟିପୂର୍ଣ୍ଣ ପ୍ରମାଣିତ ହେଲା । ପୁନଶ୍ଚ ୧୯୦୩ ଖ୍ରୀଷ୍ଟାବ୍ଦରେ ଥର୍ଣ୍ଡାଇକ୍ (Thorndike) ଏବଂ ଉଡ୍‌ୱର୍ଥ (Wood worth) ପ୍ରତ୍ୟକ୍ଷଣର ସଂକ୍ରମଣ ବିଷୟରେ କେତେକ ପରୀକ୍ଷା କରିଥିଲେ । ଏହି ପରୀକ୍ଷାରୁ ମାତ୍ର ଏକ କ୍ଷୁଦ୍ରାଂଶ ସଫଳତା ମିଳିଥିଲା । ୧୯୧୧ ଖ୍ରୀଷ୍ଟାବ୍ଦରେ ସ୍ଲେଟ୍ (Sleight) ତାଙ୍କର ପରୀକ୍ଷଣ ପାତ୍ର ମାନଙ୍କୁ (Subjects) ଗୁରୁତି ଗ୍ରୁପରେ ବିଭକ୍ତ କରି ପରୀକ୍ଷା କରିଥିଲେ । ସେମାନଙ୍କୁ ବିଭିନ୍ନ ବିଷୟରେ ଶିକ୍ଷା ଦିଆଯାଇ ସଂକ୍ରମଣ ପରୀକ୍ଷା କରାଗଲା । ଫଳାଫଳରୁ ଜଣାଗଲା ଯେ ଅଭ୍ୟାସ ଦ୍ୱାରା କୌଣସି ନିର୍ଦ୍ଦିଷ୍ଟ ବିଷୟ ମନେ ରଖୁଥିଲେ ମଧ୍ୟ ସ୍ମୃତିଶକ୍ତି ଉପରେ ଏହାର କୌଣସି ପ୍ରଭାବ ପଡ଼ୁନାହିଁ କିମ୍ବା ଗୋଟିଏ ବିଷୟର ଶିକ୍ଷା ଅନ୍ୟ ବିଷୟର ଶିକ୍ଷା ଉପରେ ନିର୍ଦ୍ଦିଷ୍ଟ ଭାବରେ କୌଣସି ପ୍ରଭାବ ପକାଉ ନାହିଁ ।

ଏହିପରି ବିଭିନ୍ନ ପରୀକ୍ଷାର ଫଳାଫଳ ଏହି ତତ୍ତ୍ୱକୁ ଦୁର୍ବଳ କରିଥିଲା । ତେଣୁ ପ୍ରଶିକ୍ଷଣର ସଂକ୍ରମଣ ମାନସିକ ଶକ୍ତିର ଗୁଡ଼ିକର ସାମୂହିକ ବିକାଶ ଉପରେ ନିର୍ଭର କରେନାହିଁ । ଗୋଟିଏ ଭାଷା ଶିକ୍ଷା କଲେ ତାହା ଅନ୍ୟ ଏକ ଭାଷାର ଶିକ୍ଷାକୁ ତ୍ୱରାନ୍ୱିତ କରିବ ନାହିଁ । ଅବଶ୍ୟ ଦୁଇଟି ଭାଷା ମଧ୍ୟରେ ସାଦୃଶ୍ୟ ଥିଲେ ତାହା ଶୀଘ୍ର ଓ ସହଜରେ ଶିକ୍ଷା କରାଯାଇପାରେ । କିନ୍ତୁ ଏହା ପ୍ରଶିକ୍ଷଣ ସଂକ୍ରମଣ ଯୋଗୁଁ ନହୋଇ ସାଦୃଶ୍ୟ ଯୋଗୁଁ ହୋଇଥାଏ । ବରଂ ସମୟ ସମୟରେ ଗୋଟିଏ ବିଷୟର ଶିକ୍ଷା ଅନ୍ୟ ବିଷୟର ଶିକ୍ଷା କ୍ଷେତ୍ରରେ ବାଧା ସୃଷ୍ଟି କରିଥାଏ ।

(୨) ସମ ଉପାଦାନ ତତ୍ତ୍ୱ ( **Theory of Identical Elements** )—କଲମ୍ବିଆ ବିଶ୍ୱ ବିଦ୍ୟାଳୟର ସୁପ୍ରସିଦ୍ଧ ଅଧ୍ୟାପକ ଥର୍ଣ୍ଡାଇକ ଓ ତାଙ୍କ ସହକର୍ମୀ ଉଡ଼୍‌ୱାର୍ଥ ସମ ଉପାଦାନ ତତ୍ତ୍ୱ ପ୍ରବର୍ତ୍ତନ କରିଥିଲେ । ସେମାନଙ୍କ ମତରେ ଦୁଇଟି ବିଷୟ ମଧ୍ୟରେ ସାଦୃଶ୍ୟ ବା ସାମଞ୍ଜସ୍ୟ ଥିଲେ ଗୋଟିଏରୁ ଅନ୍ୟଟିକୁ ସଂକ୍ରମଣ ଘଟିଥାଏ । ଅର୍ଥାତ୍ ପ୍ରଶିକ୍ଷଣ ସଂକ୍ରମଣ ପାଇଁ ଦୁଇଟି ବିଷୟ ମଧ୍ୟରେ ସାଧାରଣ ଉପାଦାନର ଉପସ୍ଥିତି ଏକାନ୍ତ ଆବଶ୍ୟକ । ଦୁଇଟି ବିଷୟ ମଧ୍ୟରେ ସମତା ଯେତିକି ଅଧିକ ହବ ସଂକ୍ରମଣ ସେତିକି ବ୍ୟାପକ ହୋଇଥାଏ । ଅନ୍ୟ ପକ୍ଷରେ ସମତା ଯେତିକି କମ୍ ହବ ସଂକ୍ରମଣ ତଦନୁସାରେ ଦୁର୍ବଳ ହୋଇଥାଏ । ଏହାର କାରଣ ସ୍ୱରୂପ ଥର୍ଣ୍ଡାଇକ୍ ବର୍ଣ୍ଣନା କରିଥିଲେ ଯେ ଗୋଟିଏ କାର୍ଯ୍ୟ ପାଇଁ ଉଦ୍ଦିଷ୍ଟ କୋଷ ମାନସିକ ଓ ଶାରୀରିକ ସ୍ତରରେ ଯେଉଁ କାର୍ଯ୍ୟ କରିଥାଏ ଉକ୍ତ କାର୍ଯ୍ୟ ସହ ସମତା ରକ୍ଷା କରୁଥିବା ଅନ୍ୟ ଏକ କାର୍ଯ୍ୟ ପାଇଁ ଉଦ୍ଦିଷ୍ଟ କୋଷ ତା'ର ମାନସିକ ଓ ଶାରୀରିକ ସ୍ତରରେ ସେହିପରି କାର୍ଯ୍ୟ କରିଥାଏ ।

ମନୁଷ୍ୟର ବିଭିନ୍ନ ବିଷୟକ ସାମର୍ଥ୍ୟଗୁଡ଼ିକର ସଂଖ୍ୟା ଯଥେଷ୍ଟ ଅଧିକ । ପ୍ରତ୍ୟେକ ସାମର୍ଥ୍ୟ ସ୍ୱାଧୀନ ଓ ସ୍ୱତନ୍ତ୍ର ଭାବରେ ବିକଶିତ ହୁଅନ୍ତି । କୌଣସି ବିଷୟରେ ପ୍ରଶିକ୍ଷଣ ପାଇଲେ ବ୍ୟକ୍ତିର ସ୍ନାୟବିକ ସିନାପ୍‌ସଗୁଡ଼ିକ ଏକ ନିର୍ଦ୍ଦିଷ୍ଟ ପ୍ରକାର କାର୍ଯ୍ୟକରିବା ପାଇଁ ପରିବର୍ତ୍ତିତ ହୋଇ ରହିଥାନ୍ତି । ଫଳରେ ଠିକ୍ ସେହିଭଳି ଅନ୍ୟ ଏକ କାର୍ଯ୍ୟ ପଡ଼ିଲେ ସ୍ନାୟବିକ ପରିବର୍ତ୍ତନ ଯୋଗୁଁ ଉକ୍ତ କାର୍ଯ୍ୟଟି ସୁଗମ ହୋଇଥାଏ । ଥର୍ଣ୍ଡାଇକଙ୍କ ମତରେ ଉପାଦାନ ଗୁଡ଼ିକର ସମତା ତିନି ପ୍ରକାରର ହୋଇଥାଏ । ସେଗୁଡ଼ିକ ହେଲା— (୧) ବିଷୟବସ୍ତୁଗତ ସାଦୃଶ୍ୟ **(Identity of Contents)**, (୨) ପଦ୍ଧତି ଗତ ସାଦୃଶ୍ୟ, **(Identiy of method)** ଏବଂ (୩) ମନୋବୃତ୍ତି ଗତ ସାଦୃଶ୍ୟ **(Identity of attitude)** । ସମ ଉପାଦାନ ତତ୍ତ୍ୱ ଅନୁସାରେ ସଂକ୍ରମଣ ଏକାଗ୍ରତା, ଅବଧାନ **(Attention)** ବା ସଂକଳ୍ପ **(Will)** କ୍ଷେତ୍ରରେ ନହୋଇ କାର୍ଯ୍ୟର କୌଶଳ, ପଦ୍ଧତି ଓ ମନୋବୃତ୍ତି ଇତ୍ୟାଦିରେ ହୋଇଥାଏ । ଗୋଟିଏ

ଉଦାହରଣ ମାଧ୍ୟମରେ ଏହାକୁ ବ୍ୟାଖ୍ୟା କରାଯାଇପାରେ । ବ୍ୟାଡ଼ମିଣ୍ଟନ ଖେଳରେ ଅଭ୍ୟସ୍ତ ବ୍ୟକ୍ତିର ଯେଉଁ ଏକାଗ୍ରତା, ଅବଧାନ ବା ସଙ୍କଳ୍ପ ଏହି ଖେଳ ଯୋଗୁଁ ବିକଶିତ ହୋଇଥାଏ ତାହା ସବୁ ପରିସ୍ଥିତିରେ କାର୍ଯ୍ୟକାରୀ ହୁଏ ନାହିଁ । କିନ୍ତୁ ଏହି କ୍ରିଡ଼ାରୁ ଆହରଣ କରାଯାଇଥିବା କେତେକ କୌଶଳ, ପଦ୍ଧତି ଓ ମନୋବୃତ୍ତି ଯଥା ର୍ୟାକେଟ ଚାଳନା କୌଶଳ, ବଲ ଉପରେ ଦୃଷ୍ଟି ରଖିବାର ଅଭ୍ୟାସ, ଆତ୍ମବିଶ୍ୱାସ ଓ ମିଜାଜର ଶୀତଳତା ସମାନ ଧର୍ମ ବିଶିଷ୍ଟ କେତେକ ଖେଳ ଯଥା—ଟେନିସ୍, ଟେବୁଲ ଟେନିସ୍ ଇତ୍ୟାଦିର ଅଭ୍ୟାସରେ ସାହାଯ୍ୟ କରେ । କାରଣ ଏହି ଦୁଇ ପ୍ରକାର ଖେଳରେ ବିଷୟଗତ ଓ ପଦ୍ଧତିଗତ ସାଦୃଶ୍ୟ ରହିଥାଏ ।

ସମ ଉପାଦାନ ତତ୍ତ୍ୱ ଶିକ୍ଷା କ୍ଷେତ୍ରରେ ଏକ ନୂତନ ଧାରଣାର ଆରମ୍ଭ କରିଥିଲା । ଏଥିରୁ ଶିକ୍ଷାର ଉପଯୋଗିତା ତତ୍ତ୍ୱ (Utility Theory) ଜନ୍ମ ନେଇଥିଲା । ଶିକ୍ଷାନବିଶ ଓ ଶିକ୍ଷାନୀତି ପ୍ରଣୟନକାରୀମାନେ ବିଭିନ୍ନ ଶ୍ରେଣୀ ପାଇଁ ପାଠ୍ୟକ୍ରମ ପ୍ରଚଳନ କରିବା ସମୟରେ ପରସ୍ପର ସାଦୃଶ୍ୟ ରକ୍ଷା କରୁଥିବା ଅଧ୍ୟାୟଗୁଡ଼ିକ ମନୋନୟନ କରିବାକୁ ଲାଗିଲେ । ମନୁଷ୍ୟ ଜୀବନର ଅଭିଜ୍ଞତାରୁ ଅନେକ ବିଷୟ ଗ୍ରହଣ କରାଗଲା । ଦୈନନ୍ଦିନ ଜୀବନ ଉପରେ ଉଦ୍ଦିଷ୍ଟ ଅନେକ ବିଷୟ ପାଠ୍ୟକ୍ରମରେ ଗ୍ରହଣ କରାଯିବା ଫଳରେ ଶିଶୁ ପାଇଁ ପ୍ରଶିକ୍ଷଣ ସଂକ୍ରମଣ ଏକ ଅସ୍ତିବାଚକ ଧାରାରେ କାର୍ଯ୍ୟ କଲା । ଫଳରେ ବିଦ୍ୟାଳୟରେ ପାଠ ଯୋଜନା ସଙ୍କୀର୍ଣ୍ଣ ନହୋଇ ବ୍ୟାପକ ହେଲା । ଏହି ପାଠ୍ୟକ୍ରମ ସାମାଜିକ ମୂଲ୍ୟବୋଧ ଓ ବ୍ୟକ୍ତି ଜୀବନର ବାସ୍ତବତା ଅଭିମୁଖୀ ହେଲା । ଅତ୍ୟଧିକ କ୍ଲିଷ୍ଟତା ଛାତ୍ରର ଆଗ୍ରହ ନଷ୍ଟ କରିଥାଏ ।

ଏହି ତତ୍ତ୍ୱର ଦୁଇଟି ସାଧାରଣ ଦୁର୍ବଳତା ରହିଛି । ପ୍ରଥମତଃ ଏହି ତତ୍ତ୍ୱ ଅନୁସାରେ ଜୀବନର ସମସ୍ୟାବଳୀ ସବୁ ସ୍ଥିର ଏବଂ ନିର୍ଦ୍ଦିଷ୍ଟ ଏବଂ ଏସବୁର ସମାଧାନ ପୂର୍ବ କଳ୍ପିତ । କିନ୍ତୁ ଆଧୁନିକ ସମାଜ ଅତ୍ୟନ୍ତ ପରିବର୍ତ୍ତନଶୀଳ ହୋଇଥିବାରୁ ଗୋଟିଏ ସମସ୍ୟାର ସମାଧାନ ସୂତ୍ର ଅନ୍ୟ ସମସ୍ୟାର ସମାଧାନ ପାଇଁ ପ୍ରଯୁଜ୍ୟ ହୋଇ ନପାରେ । ଦ୍ୱିତୀୟତଃ ଏହି ତତ୍ତ୍ୱ ଅନୁସାରେ ବିଦ୍ୟାଳୟର ସମସ୍ତ ଶିକ୍ଷା ଦୈନନ୍ଦିନ କାର୍ଯ୍ୟକଳାପଗୁଡ଼ିକୁ ପ୍ରଭାବିତ କରିବ । କିନ୍ତୁ ସମସ୍ତ ଶିକ୍ଷା ଦୈନନ୍ଦିନ କାର୍ଯ୍ୟାବଳୀକୁ ପ୍ରଭାବିତ କରିବା ଉଦ୍ଦେଶ୍ୟରେ ଲାଭ କରାଯାଇ ନଥାଏ । କେତେକ ବିଷୟର ଶିକ୍ଷା କଠିନତର ବିଷୟର ଶିକ୍ଷାକୁ ସୁଗମ କରିବା ପାଇଁ ଲାଭ କରାଯାଏ ଓ ଅନ୍ୟ କେତେକ ଶିକ୍ଷା କେବଳ ଜ୍ଞାନ ଆହରଣ ପାଇଁ ଲାଭ କରାଯାଏ ।

ଏ ସମସ୍ତ ସମାଲୋଚନା ସତ୍ତ୍ୱେ ବି ଥର୍ଣ୍ଡାଇକଙ୍କ ମତବାଦ ପାଠ ଯୋଜନା ଓ ଶିକ୍ଷା ପଦ୍ଧତି ପ୍ରଣୟନ କ୍ଷେତ୍ରରେ ଗ୍ରହଣ କରାଯାଇଥାଏ । କାରଣ ସମାନତା କ୍ଷେତ୍ରରେ ଯେ ପ୍ରଶିକ୍ଷଣର ସଂକ୍ରମଣ ହୁଏ, ଏହା ସମ୍ପୂର୍ଣ୍ଣ ଭିତ୍ତିହୀନ ନୁହେଁ ।

(୩) ସାଧାରଣ ନୀତି ତତ୍ତ୍ୱ (Theory of Generalisation) :—ଏହି ତତ୍ତ୍ୱ ଅନୁସାରେ ସାଧାରଣ ନୀତିର ଅର୍ଥହେଲା ବିଭିନ୍ନ ସ୍ୱତନ୍ତ୍ର ପରିସ୍ଥିତିରେ ସାଧାରଣ ଗୁଣ, ନିୟମ ଓ ସମ୍ପର୍କର ଅବଧାରଣା କରିବା । ନିଜର ବିଭିନ୍ନ ଅଭିଜ୍ଞତା ମଧ୍ୟରେ ଏକ ସାଧାରଣ ନିୟମ ଉଦ୍ଭାବନ କରିବା ଦ୍ୱାରା ଶିକ୍ଷାର ଉପଯୋଗୀତା ସହଜ ହୋଇଥାଏ । ୧୯୦୮ ଖ୍ରୀଷ୍ଟାବ୍ଦରେ ଚାର୍ଲସ ଜଡ୍ ସମ ଉପାଦାନ ତତ୍ତ୍ୱକୁ ଖଣ୍ଡନ କରି ନିଜର ସ୍ୱତନ୍ତ୍ର ମତ ପ୍ରଦାନ କରିଥିଲେ । ତାଙ୍କ ମତରେ ଦୁଇଟି କ୍ରିୟା ମଧ୍ୟରେ ନିହିତ ଉପାଦାନଗତ ସମତା ସଂକ୍ରମଣର କାରଣ ନୁହେଁ । ପ୍ରକୃତ କାରଣ ହେଉଛି କୌଣସି ଦୁଇଟି କାର୍ଯ୍ୟ ମଧ୍ୟରେ ଥିବା ଏକ ସାଧାରଣ ନିୟମ । ତେଣୁ ଛାତ୍ରମାନଙ୍କୁ ସମସ୍ୟା ସମାଧାନର ଧାରା ବର୍ଣ୍ଣନା ନକରି କେବଳ ସଦ୍‌ଗୁଣ ବିଷୟଗୁଡ଼ିକ ମଧ୍ୟରେ ଥିବା ସାଧାରଣ ନିୟମ ବିଷୟରେ ସୂଚନା ପ୍ରଦାନ କଲେ ସଂକ୍ରମଣ ତ୍ୱରାନ୍ୱିତ ହୁଏ ।

ଏହି ତତ୍ତ୍ୱ ପ୍ରମାଣିତ କରିବା ପାଇଁ ଜଡ୍ ଏକ ପରୀକ୍ଷା କରିଥିଲେ । ସେ ଏଥିପାଇଁ କେତେକ ଛାତ୍ରଙ୍କୁ ଦୁଇଟି ଦଳ ବା ଗ୍ରୁପରେ ବିଭକ୍ତ କରିଥିଲେ । ଗୋଟିଏ ନିୟାମକ ଦଳ (Control Group) ଅନ୍ୟଟି ପ୍ରୟୋଗାତ୍ମକ ଦଳ (Experimental Group) । ସେମାନଙ୍କୁ ଜଳର ଏକ ନିର୍ଦ୍ଦିଷ୍ଟ ଗଭୀରତାରେ ରଖାଯାଇଥିବା ଏକ ଲକ୍ଷ୍ୟ ସ୍ଥଳକୁ ଯଷ୍ଟି ଦ୍ୱାରା ଆଘାତ କରିବାକୁ କୁହାଗଲା । ଆଲୋକର ପ୍ରତିସରଣ ଯୋଗୁଁ ଆଖିକୁ ଦେଖାଯାଉଥିବା ଅବସ୍ଥାନ ବସ୍ତୁଟିର ପ୍ରକୃତ ଅବସ୍ଥାନ ନଥିଲା । ଫଳରେ ଏହି କାର୍ଯ୍ୟ କଷ୍ଟକର ଥିଲା ଏବଂ ଅଭ୍ୟାସ ଫଳରେ ଦୁଇଟି ଦଳର ଲକ୍ଷ୍ୟଭେଦ ସଫଳ ହେଲା । ଏହାପରେ ଜଡ୍ ପ୍ରୟୋଗାତ୍ମକ ଦଳକୁ ଆଲୋକର ପ୍ରତିସରଣ ସମ୍ବନ୍ଧରେ ଜ୍ଞାନ ପ୍ରଦାନ କଲେ; କିନ୍ତୁ ନିୟାମକ ଦଳକୁ ଏ ସମ୍ପର୍କରେ କିଛି କୁହାଗଲା ନାହିଁ । ଦ୍ୱିତୀୟଥର ଜଳର ଗଭୀରତା କମାଇଦିଆଗଲା ଏବଂ ଦୁଇଟିଯାକ ଦଳକୁ ପୁନଶ୍ଚ ଲକ୍ଷ୍ୟଭେଦ କରିବାକୁ କୁହାଗଲା । ଏହା ପରିଲକ୍ଷିତ କରାଗଲା ଯେ ନିୟାମକ ଦଳ ଯାହା! ଆଲୋକର ପ୍ରତିସରଣ ବିଷୟକ କୌଣସି ଜ୍ଞାନ ଅର୍ଜନ କରି ନଥିଲେ ସେମାନେ ଏହି କାର୍ଯ୍ୟ କରିବାପାଇଁ ବହୁ ଅସୁବିଧାର ସମ୍ମୁଖୀନ ହୋଇଥିଲେ । କିନ୍ତୁ ପ୍ରୟୋଗାତ୍ମକ ଦଳ ଖୁବ୍ ଶୀଘ୍ର ଲକ୍ଷ୍ୟ ଭେଦ କରିପାରିଲେ । ଏହି ପରୀକ୍ଷାରୁ ଜଡ୍ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ ଗୋଟିଏ ପରିସ୍ଥିତିରେ ଆହରଣ କରାଯାଇଥିବା ଜ୍ଞାନ ଅନ୍ୟ ଏକ ଭିନ୍ନ ପରିସ୍ଥିତିରେ କାର୍ଯ୍ୟ ନିର୍ବାହ କରିବାରେ ସାହାଯ୍ୟ କରେ । ସେ ମନୁଷ୍ୟର ବୁଦ୍ଧିମତ୍ତା ଉପରେ ଗୁରୁତ୍ୱ ପ୍ରଦାନ କରିଥିଲେ । ବୁଦ୍ଧି ଯୋଗୁଁ ମନୁଷ୍ୟ ଭୂଲ ପରିସ୍ଥିତି ମଧ୍ୟରେ ନିହିତ ସାଧାରଣ ତତ୍ତ୍ୱର ଜ୍ଞାନ ଅର୍ଜନ କରିପାରିବା ଫଳରେ ନୂତନ ସମସ୍ୟାମାନ ସମାଧାନ କରିବା ତା' ପକ୍ଷରେ ସମ୍ଭବ ହୁଏ ।

ଏହାପରେ ୧୯୪୧ ମସିହାରେ ହେଣ୍ଡ୍ରିକ୍‌ସନ୍ (Hendriekson) ଏବଂ ଶ୍ରୋଏଡ଼ର (Schroeder) ନାମକ ଦୁଇ ଜଣ ମନୋବିଜ୍ଞାନୀ ଜଡ୍‌ଙ୍କ ପରୀକ୍ଷା ପଦ୍ଧତିର

ସାମାନ୍ୟ ପରିବର୍ତ୍ତନ କରି, ଏହାର ପୁନରାବୃତ୍ତି କରିଥିଲେ । ସେମାନେ ତିନୋଟି ଦଳ ଗଠନ କରିଥିଲେ । ପ୍ରଥମ ଦଳ କେବଳ ଲକ୍ଷ୍ୟଭେଦର ଅଭ୍ୟାସ କଲେ । ଦ୍ୱିତୀୟ ଦଳକୁ ପ୍ରତିସରଣ ସମ୍ବନ୍ଧରେ ଶିକ୍ଷା ପ୍ରଦାନ କରାଗଲା ଏବଂ ତୃତୀୟ ଦଳକୁ ପ୍ରତିସରଣର ଜ୍ଞାନ ସହିତ ଜଳର ଗଭୀରତାର ପରିବର୍ତ୍ତନରେ ପ୍ରତିସରଣ କପରି କମ୍ ବେଶୀ ହୋଇଥାଏ ତାହାର ଜ୍ଞାନ ମଧ୍ୟ ପ୍ରଦାନ କରାଗଲା । ଦେଖାଗଲା ତୃତୀୟ ଦଳ ସର୍ବାପେକ୍ଷା ଉତ୍କୃଷ୍ଟ ଲକ୍ଷ୍ୟଭେଦ କରିବା ସମୟରେ ପ୍ରଥମ ଦଳ ସବୁଠାରୁ କମ୍ ସାଫଲ୍ୟ ପ୍ରଦର୍ଶନ କରିଥିଲେ ।

ଏହି ସବୁ ପରୀକ୍ଷାରୁ କେତେକ ସିଦ୍ଧାନ୍ତ ଗ୍ରହଣ କରାଯାଇଥିଲା । ପ୍ରଥମତଃ ମାଗ ଦର୍ଶନ ପ୍ରଶିକ୍ଷଣ ସଂକ୍ରମଣକୁ ତ୍ୱରାନ୍ୱିତ କରିଥାଏ ଏବଂ ଦ୍ୱିତୀୟତଃ ବିଷୟ ଗୁଡ଼ିକୁ ସେମାନଙ୍କ ସାଧାରଣ ନିୟମ ଅନୁଯାୟୀ ଶ୍ରେଣୀଭୁକ୍ତ କରିଦେଲେ ସେଗୁଡ଼ିକ ମଧ୍ୟରେ ସଂକ୍ରମଣ ଅଧିକ ହୋଇଥାଏ ।

**(୪) ଅନ୍ତ ବନିମୟ ତତ୍ତ୍ୱ (Thery of Transposition) :—** ଗେଷ୍ଟାଲଟ୍ ବା ଅବୟବ ବାଦୀ ମନୋବିଜ୍ଞାନୀମାନେ ଏହି ତତ୍ତ୍ୱର ପ୍ରବର୍ତ୍ତକ । ସେମାନଙ୍କ ମତରେ ପ୍ରଶିକ୍ଷଣର ସଂକ୍ରମଣ ପ୍ରତ୍ୟକ୍ଷରେ ସାଦୃଶ୍ୟ (Perceptual Similarities) ଯୋଗୁଁ ହୋଇଥାଏ । ଦୁଇଟି ବସ୍ତୁ ବା ବିଷୟ ମଧ୍ୟରେ ଗଠନ ଗତ ସମ୍ପର୍କ ପ୍ରତିଷ୍ଠା ହୋଇପାରିଲେ ସଂକ୍ରମଣ ସୁଗମ ହୋଇଥାଏ । ଗୋଟିଏ ପରିସ୍ଥିତିରେ ଏହି ସମ୍ପର୍କ ବିଷୟକ ଜ୍ଞାନ ଅର୍ଜିତ ହୋଇଥିଲେ ତାହା ଅନ୍ୟ ଏକ ପରିସ୍ଥିତିରେ ସାହାଯ୍ୟ କରିଥାଏ । ମନୁଷ୍ୟ ଶିକ୍ଷା ସମୟରେ ଏକ ଧାରଣା ଓ ଅନ୍ତର୍ଦୃଷ୍ଟି ଲାଭ କରିଥାଏ । ତାହା ତାକୁ ପରିବର୍ତ୍ତିତ ପରିସ୍ଥିତିରେ ନୂତନ ଜ୍ଞାନ ଆହରଣ କରିବା ଦିଗରେ ସାହାଯ୍ୟ କରେ । ଅନ୍ତ ବିନିମୟକୁ ଅଭିଜ୍ଞତାର ଧାରା ଭାବରେ ମଧ୍ୟ ଅଭିହିତ କରାଯାଇପାରେ ।

ଗେଷ୍ଟାଲ୍ଟ ମନୋବିଜ୍ଞାନୀମାନଙ୍କ ମତରେ ବ୍ୟବହୃତ ହୋଇଥିବା ଉପାଦାନ ମାନଙ୍କ ଦ୍ୱାରା ସାମଗ୍ରିକ ରୂପର ଅର୍ଥ ପ୍ରକାଶିତ ହୁଏ ନାହିଁ । ବରଂ ବସ୍ତୁର ସାମଗ୍ରିକ ରୂପ ତା'ର ଅଂଶ ବା ଉପାଦନ ମାନଙ୍କର ଅର୍ଥ ପ୍ରକାଶ କରିଥାଏ । ଅତଏବ ବିଭିନ୍ନ ସମୟରେ ମାନସିକ କ୍ରିୟାଗୁଡ଼ିକ ସଙ୍ଗଠିତ ଓ ସମନ୍ୱିତ ରୂପରେ ଏକ ଧାରଣା ବା ବିଷୟବସ୍ତୁର ପରିପ୍ରକାଶ କରିଥାଏ ।

ଅଭିଜ୍ଞତା ଓ ଅନୁଭୂତି ଗୁଡ଼ିକର ପୁନଃ ପ୍ରବର୍ତ୍ତନ ଓ ପୁନଃ ଗଠନ ଦ୍ୱାରା ସଂକ୍ରମଣ ହୋଇଥାଏ । ତେଣୁ ଛାତ୍ରମାନଙ୍କୁ କେତେକ ସାଧାରଣ ନିୟମ ବିଷୟକ ଶିକ୍ଷା ପ୍ରଦାନ କଲେ ଯଥେଷ୍ଟ ହୁଏ ନାହିଁ । ଛାତ୍ର ନିଜର ବର୍ତ୍ତମାନର ପରିସ୍ଥିତି ପ୍ରତି ସତତ ସଜାଗ ରହିବା ଉଚିତ୍ । ସେ ବହୁତ କମ୍ ସମୟ ମଧ୍ୟରେ ନିର୍ଣ୍ଣୟ କରିଦେବା ଉଚିତ୍

ଉଚିତ୍ ଯେ ତାର ଆହରିତ ଜ୍ଞାନ ସେହି ସମୟରେ ଆବଶ୍ୟକତା ପୂରଣ କରିବାକୁ ଯଥେଷ୍ଟ କି ନୁହେଁ ଅର୍ଥାତ୍ ଛାତ୍ର ମଧ୍ୟରେ ବୁଦ୍ଧିମତ୍ତାର ଉଦ୍ରେକ ହେବା ଆବଶ୍ୟକ ।

**ସଂକ୍ରମଣର ଯଥାର୍ଥ୍ୟ ଏବଂ ଉପଯୋଗୀତା :**

କୌଣସି ନୂତନ ପରିସ୍ଥିତିରେ ବ୍ୟକ୍ତି ଯେଉଁ ଆଚରଣ ବା କାର୍ଯ୍ୟକଳାପ ପ୍ରଦର୍ଶନ କରେ ତାହା ତାର ଅତୀତର ଅଭିଜ୍ଞତା ଓ ଶିକ୍ଷା ଦ୍ୱାରା ପ୍ରଭାବିତ ହୋଇଥାଏ । ନିଜ ଜୀବନ ଓ ଶିକ୍ଷାରୁ ଆହରିତ ସାମର୍ଥ୍ୟ ମନର ଚେତନ ସ୍ତରରେ ସଂକ୍ରମଣର ଏକ ଗ୍ରୁପ ଗଠନ କରିଥାଏ । ବ୍ୟକ୍ତିର ବିନିଯୋଗ କରିବାର କ୍ଷମତା ଉପରେ ସଂକ୍ରମଣର କାର୍ଯ୍ୟକାରିତା ନିର୍ଭର କରେ । ଅର୍ଥାତ୍ ଗୋଟିଏ କାର୍ଯ୍ୟରେ ପ୍ରଶିକ୍ଷଣ ଲାଭକରି ଅନ୍ୟ ଏକ କାର୍ଯ୍ୟରେ ସଫଳତା ହାସଲ କଲେ ତାହାକୁ ବିନିଯୋଗ କୁହାଯାଏ । ଏ କ୍ଷେତ୍ରରେ ମନୁଷ୍ୟର ମନୋବୃତ୍ତି (**Attiude**) ମୁଖ୍ୟ ଅଂଶ ଗ୍ରହଣ କରେ । ଗୋଟିଏ କାର୍ଯ୍ୟରୁ ଯେଉଁ ମନୋବୃତ୍ତି ଗଠିତ ହୋଇଥାଏ ତାହା ନୂତନ ପରିସ୍ଥିତି ଉପରେ ପ୍ରଭାବ ପକାଏ । ତେଣୁ ଛାତ୍ର ଶିକ୍ଷା ଲାଭ କରୁଥିବା ବିଷୟକୁ ଭବିଷ୍ୟତରେ କାର୍ଯ୍ୟରେ ବ୍ୟବହାର କରିବାର ଇଚ୍ଛା ବା ମନୋଭାବ ପୋଷଣ କରିବା ଆବଶ୍ୟକ । ଜଣେ ଭଲ ଖେଳାଳୀ ତାଙ୍କ ଖେଳ ସମୟରେ, ଆଗ୍ରହ, ଅନୁରକ୍ତି, ଏକାଗ୍ରତା, ସହଯୋଗୀତା ଆଦି ଗୁଣ ପ୍ରଦର୍ଶନ କରିଥାନ୍ତି । କିନ୍ତୁ ବାସ୍ତବ ଜୀବନର ଅନ୍ୟାନ୍ୟ ପରିସ୍ଥିତି ମାନଙ୍କରେ ସେ ତାହା ପ୍ରଦର୍ଶନ କରିବେ କି ନାହିଁ ତାହା ତାଙ୍କ ମନୋବୃତ୍ତି ଉପରେ ନିର୍ଭର କରେ ।

ସମସ୍ତ ସମୟରେ କେବଳ ମନୋବୃତ୍ତି ହିଁ ଯଥେଷ୍ଟ ହୋଇନଥାଏ । ଅତୀତର ଅଭିଜ୍ଞତା ଅନୁସାରେ କୌଣସି ସମସ୍ୟା ପୁଙ୍ଖାନୁପୁଙ୍ଖ ଭାବରେ ବିଶ୍ଳେଷିତ ହେବା ଦରକାର । ଯାହା ଶିକ୍ଷା କରାଯାଏ ତାହା ଯଦି ଅତ୍ୟଧିକ ବସ୍ତୁ କେନ୍ଦ୍ରିକ ଓ ସଙ୍କୀର୍ଣ୍ଣ ହୋଇଥାଏ କିମ୍ବା ଅତି ସାଧାରଣ ବା ଅବାସ୍ତବ ହୋଇଥାଏ ତାହା ସଂକ୍ରମଣର ଉପଯୋଗୀ ହୁଏନାହିଁ, କାରଣ ଏପରି ଶିକ୍ଷା ଦ୍ୱାରା ଅଭିଜ୍ଞତା ପରିପୁଷ୍ଟ ହୁଏନାହିଁ ।

କେତେକ ମନୋବୈଜ୍ଞାନିକଙ୍କ ମତରେ ପ୍ରଶିକ୍ଷଣ ସମୟରେ ଛାତ୍ର ସମ୍ମୁଖରେ କୌଣସି ଆଦର୍ଶ ରହିବା ଉଚିତ୍ । କାରଣ ସଂକ୍ରମଣ ପାଇଁ କୌଣସି ଏକ ଆଦର୍ଶର ଉପଯୋଗୀତା ରହିଥାଏ ଉଦାହରଣ ସ୍ୱରୂପ ଶିକ୍ଷକ ଛାତ୍ରମାନଙ୍କୁ ଠିକ୍ ସମୟରେ ପଢ଼ିବା, ଠିକ୍ ସମୟରେ ଖେଳିବା, ଠିକ୍ ସମୟରେ ଶୋଇବା, ଠିକ୍ ସମୟରେ ବିଦ୍ୟାଳୟକୁ ଆସିବା ପାଇଁ ଉପଦେଶ ଦେଇଥାନ୍ତି । ଛାତ୍ରମାନେ ଏହାକୁ ପାଳନ କରିଥାନ୍ତି । କିନ୍ତୁ ଏହି କାର୍ଯ୍ୟ ଗୁଡ଼ିକ ସ୍ଥାୟୀ ଅଭ୍ୟାସରେ ପରିଣତ ହେବାକୁ ହେଲେ ଛାତ୍ର ସମୟାନୁବର୍ତ୍ତିତାକୁ ନିଜ ଜୀବନର ଏକ ଆଦର୍ଶ ଭାବରେ ଗ୍ରହଣ କରିବା ଉଚିତ୍ ।

ଛାତ୍ର ବିଭିନ୍ନ ଆଦର୍ଶ ଓ ନିୟମ ଗୁଡ଼ିକର ପ୍ରକୃତ ଓ କାର୍ଯ୍ୟକାରିତା ବୁଝିପାରିଲେ ସଂକ୍ରମଣ ସୁଗମ ହୋଇଥାଏ ।

ଶିକ୍ଷକ ଶିକ୍ଷା ଦାନ କାଳରେ ସଂକ୍ରମଣର ଗୁରୁତ୍ୱ ଉପରେ ଆଲୋଚନା କରି ଛାତ୍ରମାନଙ୍କୁ ସେଥିପାଇଁ ପ୍ରସ୍ତୁତ କରିବା ଉଚିତ୍ । ବିଭିନ୍ନ ବିଷୟ ଶିକ୍ଷା ଦେବା ସମୟରେ ଶିକ୍ଷକ ଛାତ୍ରମାନଙ୍କୁ ସଂକ୍ରମଣ କଣ ଓ ଏହା କିପରି ସଂଘଟିତ ହୁଏ ତାହା ବୁଝାଇ ବିଭିନ୍ନ ସମୟରେ ସେମାନଙ୍କୁ ନେଇ ସଂକ୍ରମଣ ବିଷୟକ ପରୀକ୍ଷା କରିବା ଆବଶ୍ୟକ । ପୁନଶ୍ଚ ଗୋଟିଏ ବିଷୟରେ ପ୍ରାଥମିକ ଓ ମୌଳିକ ଶିକ୍ଷା ଯେତିକି ପୂର୍ଣ୍ଣାଙ୍ଗ ଓ ସମ୍ପୂର୍ଣ୍ଣ ହେବ, ପରବର୍ତ୍ତୀ କାଳରେ ଏହି ବିଷୟରୁ ସଂକ୍ରମଣ ସେତିକି ଫଳପ୍ରଦ ହେବ । କିନ୍ତୁ ପ୍ରାଥମିକ ଶିକ୍ଷା ଅସଂପୂର୍ଣ୍ଣ ରହିଲେ ଛାତ୍ରର ସେହି ବିଷୟରେ ଦୁର୍ବଳତା ରହେ, ଏହି ଦୁର୍ବଳତାରୁ ଭୟ ଓ ନ୍ୟୂନତା ଭାବ ସୃଷ୍ଟି ହୋଇ ଅନ୍ୟାନ୍ୟ ବିଷୟକୁ ସଂକ୍ରମିତ ହୁଏ । ଏ କ୍ଷେତ୍ରରେ ନାସ୍ତିସୂଚକ ସଂକ୍ରମଣ ଘଟିଥାଏ । ଛାତ୍ରକୁ କେବଳ ସଂକ୍ରମଣ ସମ୍ବନ୍ଧରେ ଶିକ୍ଷା ପ୍ରଦାନ କଲେ ଯଥେଷ୍ଟ ହୁଏନାହିଁ । ସମୟ ସମୟରେ ସଂକ୍ରମଣର ପରିମାଣକୁ ପରୀକ୍ଷା କରିବାକୁ ପଡ଼ିଥାଏ ।

ପ୍ରଶିକ୍ଷଣର ସଂକ୍ରମଣ ଯୋଗୁଁ ଛାତ୍ର ମନରେ ନୂତନ ସୃଷ୍ଟି କାରୀ ଭାବ ଉଦ୍ରେକ ହୋଇଥାଏ । ଅର୍ଥାତ୍ ଶିଶୁ ନିଜେ ନିଜେ କୌଣସି ସମସ୍ୟାର ସମାଧାନ କରିପାରିଲେ ଏହା ସଂକ୍ରମଣର ଏକ ଆଭାସ ଏବଂ ଅନ୍ୟ ସମସ୍ୟାଗୁଡ଼ିକ ମଧ୍ୟ ଉକ୍ତ ଶିଶୁ ସଂକ୍ରମଣ ସାହାଯ୍ୟରେ ସମାଧାନ କରିପାରେ ।

କୌଣସି ବିଷୟ ଶିକ୍ଷା କରିବା ସଙ୍ଗେ ସଙ୍ଗେ ବାସ୍ତବ ଜୀବନରେ ତାର ବ୍ୟବହାର ଓ କାର୍ଯ୍ୟକାରିତା ସମ୍ବନ୍ଧରେ ଜ୍ଞାନ ଅର୍ଜନ କରିବା ଆବଶ୍ୟକ । ଏହାଦ୍ୱାରା ସଂକ୍ରମଣ ସୁବିଧାଜନକ ହୋଇଥାଏ । ଯାନ୍ତ୍ରିକ କୌଶଳ, ବ୍ୟବସାୟିକ ଦକ୍ଷତା ଇତ୍ୟାଦିର ବାସ୍ତବ କ୍ଷେତ୍ରରେ ବ୍ୟବହାର ବହୁଳ ହୋଇଥିବାରୁ ସେଗୁଡ଼ିକ ସହଜରେ ସଂକ୍ରମିତ ହୋଇଥାଏ । ଜଣେ ଓକିଲ ନିଜର ବିଭିନ୍ନ ପରିସ୍ଥିତିରେ ଆହରଣ କରିଥିବା ଜ୍ଞାନକୁ ଏକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ବ୍ୟବହାର କରନ୍ତି । କାରଣ ସେହି ସମୟରେ ସେହି ଜ୍ଞାନର ବାସ୍ତବ କାର୍ଯ୍ୟକାରିତା ଅନୁଭୂତ ହୋଇଥାଏ ।

ଅଭିପ୍ରେରଣ (Motivarion), ମନୋବୃତ୍ତି (Attitude), ଅନ୍ତଃଦୃଷ୍ଟି (Insight) ସିଦ୍ଧାନ୍ତୀକରଣ (Generalization) ଏବଂ ଉତ୍ତମ ଶିକ୍ଷା ପ୍ରଣାଳୀ ଇତ୍ୟାଦି ସଂକ୍ରମଣକୁ ପ୍ରଭାବିତ କରିଥାନ୍ତି । ଛାତ୍ର ନିଜେ ପାଠ କରୁଥିବା ବିଷୟ ଓ ତାର କାର୍ଯ୍ୟକାରିତା ସମ୍ବନ୍ଧରେ ସଜାଗ ନ ରହିଲେ ସଂକ୍ରମଣ ସୁଦୂର ପରାହତ ହୋଇଥାଏ ।

## ଶିକ୍ଷା କ୍ଷେତ୍ରରେ ସଂକ୍ରମଣର ଉପଯୋଗୀତା :

ସଂକ୍ରମଣ ସ୍ୱୟଂକ୍ରିୟ ନୁହେଁ । ଏଥିପାଇଁ ବିଧିବଦ୍ଧ ଯୋଜନା ଓ ପ୍ରୟାସ ଆବଶ୍ୟକ । ଏଥିପାଇଁ ଶିକ୍ଷକ, ଛାତ୍ର ଓ ଶିକ୍ଷାବିତ୍ମାନଙ୍କର ମିଳିତ ପ୍ରଚେଷ୍ଟା ଆବଶ୍ୟକ ଅର୍ଜିତ ଜ୍ଞାନକୁ ବିଭିନ୍ନ ଦିଗରେ ପ୍ରୟୋଗ କରିବାର କ୍ଷମତା ହାସଲ କରିପାରିଲେ ଛାତ୍ର ସୃଜନଶୀଳ ହୋଇପାରେ । ଏଥିପାଇଁ କେତୋଟି ଦିଗ ପ୍ରତି ଦୃଷ୍ଟି ଦେବାକୁ ପଡ଼ିଥାଏ ।

୧ । ପ୍ରଥମତଃ ପାଠ୍ୟ ବସ୍ତୁକୁ ଜୀବନର ବାସ୍ତବ ସମସ୍ୟା ସହିତ ସଂଶ୍ଳିଷ୍ଟ କରିବା ଆବଶ୍ୟକ । ପ୍ରତ୍ୟେକ ପଠିତ ବିଷୟକୁ ସାମାଜିକ ସ୍ୱାସ୍ଥ୍ୟରକ୍ଷା, ସ୍ଥାନୀୟ ଇତିହାସ କିମ୍ବା ଶରୀର ବିଜ୍ଞାନ ଇତ୍ୟାଦି ବାସ୍ତବ ଧର୍ମୀ ବିଷୟ ଗୁଡ଼ିକ ସହିତ ସଂଯୋଜିତ କରିପାରିଲେ ଛାତ୍ରର ଆଗ୍ରହ ବୃଦ୍ଧି ପାଇଥାଏ । ଯେତେବେଳେ ଛାତ୍ର ଅନୁଭବ କରେ ଯେ ତା ଦ୍ୱାରା ପଠିତ ପାଠ୍ୟକ୍ରମ ଶ୍ରେଣୀ ଗୃହ ବାହାରେ ମଧ୍ୟ କାର୍ଯ୍ୟକାରୀ ହୋଇପାରିବ ସେ ସେଥିପ୍ରତି ଅଧିକ ଭାବରେ ଆଗ୍ରହାନ୍ୱିତ ହୋଇଥାଏ । ଇତିହାସ, ବିଜ୍ଞାନ, ଗଣିତ, ସାହିତ୍ୟ, ନାଗରିକବିଜ୍ଞାନ ଆଦି ପାଠ୍ୟ ଗୁଡ଼ିକ ସାଧାରଣ ଜୀବନ ସହ ଗଭୀର ସମ୍ପର୍କ ରଖିଥାନ୍ତି । ଏହି ବିଷୟ ଗୁଡ଼ିକର ପରସ୍ପର ମଧ୍ୟରେ ମଧ୍ୟ ସମ୍ପର୍କ ରହିଥାଏ । ବିଭିନ୍ନ ଉଦାହରଣ ମାଧ୍ୟମରେ ଛାତ୍ରକୁ ଏହି ସମ୍ପର୍କ ଗୁଡ଼ିକୁ ହୃଦୟଙ୍ଗମ କରାଇପାରିଲେ ଓ ଶିଶୁକୁ ସେଗୁଡ଼ିକର ବାସ୍ତବ କ୍ଷେତ୍ରରେ ଉପଯୋଗ କରିବାକୁ ପ୍ରବର୍ତ୍ତାଇଲେ ଶିକ୍ଷା କ୍ଷେତ୍ରରେ ସଂକ୍ରମଣ ଫଳପ୍ରଦ ହୋଇଥାଏ ।

୨ । କୌଣସି ବିଷୟକୁ କେବଳ ଭାଷାଗତ ଭାବରେ ଘୋଷି ମନେରଖିବା ଯଥେଷ୍ଟ ନୁହେଁ । ବିଷୟ ଗୁଡ଼ିକର ଅର୍ଥ ଉତ୍ତମ ଭାବରେ ବୁଝିବା ଆବଶ୍ୟକ । ବିଭିନ୍ନ ଆଲୋଚନା ଓ ପ୍ରତ୍ୟକ୍ଷ କାର୍ଯ୍ୟଦ୍ୱାରା ବାସ୍ତବ କ୍ଷେତ୍ରରେ ଏଗୁଡ଼ିକର କାର୍ଯ୍ୟକାରିତା ଛାତ୍ରକୁ ବୁଝାଇଦେବା ଆବଶ୍ୟକ । ପଠନ, ଲିଖନ, ସାରାଂଶ କରଣ, ପ୍ରୟୋଗ କରଣ ଓ ବର୍ଣ୍ଣନା ଆଦି ମାଧ୍ୟମରେ ଛାତ୍ର ସଂକ୍ରମଣର ଗୁରୁତ୍ୱ ଅନୁଭବ କରିବା ଉଚିତ୍ ।

୩ । ଗୋଟିଏ ବିଷୟକୁ ଅନ୍ୟ ବିଷୟକୁ ସଂକ୍ରମଣ ଅପେକ୍ଷା ଉକ୍ତ ବିଷୟକୁ କିପରି ବାସ୍ତବ ଜୀବନର ସମସ୍ୟା ସମାଧାନ କରିବାରେ ଲଗାଯାଇପାରିବ ତାହା ଜାଣିବା ଛାତ୍ର ପକ୍ଷରେ ଏକାନ୍ତ ଆବଶ୍ୟକ । ଛାତ୍ର ବିଦ୍ୟାଳୟ ମଧ୍ୟରୁ ସ୍ୱୟଂ ସମ୍ପୂର୍ଣ୍ଣ ହୋଇ ବାହାରୁ ଶିକ୍ଷା ପ୍ରାପ୍ତ ଦେଖାଯାଏ ନାହିଁ । କେବଳ

ରୁଟିନ୍ ବନ୍ଧ ପାଠ୍ୟକ୍ରମ ମଧ୍ୟରେ ସୀମିତ ନରହି ବିଭିନ୍ନ ବିଷୟରେ ଛାତ୍ର ମନରେ ଉଦ୍ରେକ ହେଉଥିବା ସନ୍ଦେହ ଗୁଡ଼ିକୁ ସେ ନିଜ ବୁଦ୍ଧିବଳରେ କିପରି ସମାଧାନ କରିପାରିବ ତାର କୌଶଳ ଶିକ୍ଷା ଦେବା ଆବଶ୍ୟକ ।

୪ । ପରୀକ୍ଷାଗାର, କର୍ମଶାଳା, କ୍ଲବ, ପାଠାଗାର, ସେମିନାର ଓ ସମ୍ମିଳନୀ ଆଦି ମାଧ୍ୟମରେ ଶିଶୁକୁ ଜୀବନର ବାସ୍ତବତା ସହିତ ପରିଚିତ କରାଇବା ଆବଶ୍ୟକ । ତାର ପ୍ରତ୍ୟେକ କାର୍ଯ୍ୟ ଯେପରି ଅର୍ଥପୂର୍ଣ୍ଣ ଓ ବାସ୍ତବ ଧର୍ମୀ ହେବା ସଙ୍ଗେ ସଙ୍ଗେ ନିଜ ଅନ୍ତର୍ନିହିତ ଗୁଣରାଜିର ବିକାଶ ଘଟିପାରିବ ସେଥିପ୍ରତି ଦୃଷ୍ଟି ଦେବା ଆବଶ୍ୟକ ।

୫ । ଭିନ୍ନ ଜଣାପଡ଼ୁଥିବା ବିଷୟଗୁଡ଼ିକ ମଧ୍ୟରୁ ସାମ୍ୟ ନିର୍ଦ୍ଧାରଣ କରିବା ପାଇଁ ଶିଶୁକୁ ପ୍ରଶିକ୍ଷଣ ଦିଆଯିବା ଆବଶ୍ୟକ । ବିଭିନ୍ନ ବିଷୟ ଗୁଡ଼ିକ ମଧ୍ୟରେ ସାଧାରଣ ତତ୍ତ୍ୱ ଓ ସମ୍ପର୍କ ଦର୍ଶାଇବା ଛାତ୍ରର ବିଦ୍ୟାଳୟ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ହେବା ଆବଶ୍ୟକ ।

୬ । ଛାତ୍ରକୁ କେତେକ ନିୟମ ସମ୍ପର୍କରେ ସୂଚନା ଦେଇ ସେଗୁଡ଼ିକ ମଧ୍ୟରେ କି ସମ୍ପର୍କ ରହିଛି ସେଗୁଡ଼ିକର ସବିଶେଷ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ବିଭିନ୍ନ ଉଦାହରଣ ପ୍ରଦାନ କରି ସେଗୁଡ଼ିକ କେଉଁ କେଉଁ ନିୟମର ଭିତ୍ତି ଭୂମି ଉପରେ ପ୍ରତିଷ୍ଠିତ ତାହା ନିର୍ଣ୍ଣୟ କରିବାକୁ ପ୍ରଶ୍ନ କରିବା ଉଚିତ । ପୂର୍ବେ ମାନସିକ ଶୃଙ୍ଖଳା ବା ବୌଦ୍ଧିକ ବିକାଶ ଶିକ୍ଷାର ଏକମାତ୍ର ଲକ୍ଷ୍ୟ ଥିଲା ଏବଂ ଏଥିପାଇଁ କେତେକ କଠୋର ପଦ୍ଧତି ବ୍ୟବହୃତ ହେଉଥିଲା । କିନ୍ତୁ ସଂକ୍ରମଣ ପଦ୍ଧତିରେ ଅତି ସରଳ ଓ ସହଜ ଉପାୟରେ ଲାଭ କରି ସେଗୁଡ଼ିକୁ ବାସ୍ତବ କ୍ଷେତ୍ରରେ ପ୍ରୟୋଗ କରିବାର କୌଶଳ ଆଧୁନିକ ମନୋବିଜ୍ଞାନୀ ମାନଙ୍କ ଦ୍ୱାରା ଆବୃତ ହୋଇପାରିଛି ।

୭ । ଶିଶୁକୁ ମନର ବିଭିନ୍ନ ବିଭାଗ ସମ୍ପର୍କରେ ଶିକ୍ଷା ଦାନ କରିବା ମୂଲ୍ୟହୀନ । ମାନସିକ ଶୃଙ୍ଖଳା ତତ୍ତ୍ୱ ଆଧୁନିକ ପରୀକ୍ଷା ଦ୍ୱାରା ଅପ୍ରମାଣିତ ହୋଇଛି । ବିଭିନ୍ନ ମନୋବିଜ୍ଞାନୀମାନଙ୍କ ମତଗୁଡ଼ିକୁ ପରୀକ୍ଷା କରି ଦେଖାଯାଇଛି ଯେ ମନୋବୃତ୍ତି, ଭାବନାର ସାବଲୀଳତା, ଆଦର୍ଶ ଗ୍ରହଣ, ପରୀକ୍ଷଣ, ସୃଜନଶୀଳତା ପ୍ରତି ଆଗ୍ରହ ଓ ବାସ୍ତବତା ସହ ସମ୍ପର୍କ ସ୍ଥାପନ ଦ୍ୱାରା ସଂକ୍ରମଣ ଅନୁକୂଳ ଫଳ ପ୍ରଦାନ କରିଥାଏ ।

୮ । ଶିକ୍ଷାଦାନ ସମୟରେ କୌଣସି ବିଷୟକୁ ଛାତ୍ରର ଉତ୍ତମରୂପେ ହୃଦ୍‌ବୋଧ କରାଇ ତାହାକୁ ବାରମ୍ବାର ପ୍ରୟୋଗ କରାଇବା ଫଳରେ ଛାତ୍ର ମନରେ ସେହି

କାର୍ଯ୍ୟ ବା କୌଶଳ ସମ୍ପର୍କରେ ଏକ ବିଧିବଦ୍ଧ ଧାରଣା ସୃଷ୍ଟି ହୁଏ । ଏହି ଧାରଣା ପରବର୍ତ୍ତୀ କାଳରେ ସଂକ୍ରମିତ ହୋଇ ଅନ୍ୟାନ୍ୟ କାର୍ଯ୍ୟର ଛାତ୍ରକୁ ସୃଜନଶୀଳ କରାଇଥାଏ । ଏହା ସହିତ ଏକ ନିର୍ଦ୍ଦିଷ୍ଟ ନିୟମ କେଉଁ ସ୍ଥଳରେ ଆବଶ୍ୟକ ଏବଂ କେଉଁ ସ୍ଥଳରେ ଅନାବଶ୍ୟକ ତାହା ମଧ୍ୟ ଛାତ୍ରକୁ ଜଣାଇଦେବା ଆବଶ୍ୟକ ହୋଇଥାଏ ।

୯ । ଶିକ୍ଷା ଦାନ ଯନ୍ତ୍ରବତ୍ ଓ କଠିନ ହେବା ପରିବର୍ତ୍ତେ ସାବଲୀଳ ଓ ନମନୀୟ ହେବା ଆବଶ୍ୟକ । ଛାତ୍ରମାନଙ୍କୁ ନୂତନ ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ପ୍ରସ୍ତୁତ କରିବା ଉଚିତ୍ । ଛାତ୍ର ମଧ୍ୟରେ ତାର ଆତ୍ମବିଶ୍ୱାସ ଓ ମନୋବଳ ଦୃଢ଼ ହେଲେ ସେ ଏକାକୀ ଯେ କୌଣସି ପରିସ୍ଥିତିର ବୁଦ୍ଧି ଓ ସାହସର ସହ ସମ୍ମୁଖୀନ ହୋଇପାରିବ ।

୧୦ । ଶ୍ରେଣୀ ଗୃହରେ ଶିକ୍ଷକ ବିଭିନ୍ନ ବିଷୟ ମଧ୍ୟରେ ସଂପର୍କ ଦର୍ଶାଇ ପାରୁଥିବାଭଳି ପରାମର୍ଶ ପ୍ରଦାନ କରିବା ଉଚିତ୍ । କେତେକ ସ୍ୱାଭାବିକ ବା ଉଦ୍ଭଟ ବିଷୟରେ ଶିକ୍ଷାଦାନ କରିବା ସମୟରେ ବାସ୍ତବ ଉଦାହରଣ ସବୁ ପ୍ରଦାନ କରାଯିବା ଫଳରେ ଛାତ୍ର ବିଷୟଟିକୁ ବୁଝିପାରେ ଏବଂ ଅନ୍ୟ ଏକ ବିଷୟ ମାଧ୍ୟମରେ ଉକ୍ତ ଉଦ୍ଭଟ ବିଷୟ ସଂପର୍କରେ ଧାରଣା କରିପାରେ ।

୧୧ । ବିଦ୍ୟାଳୟର ପରୀକ୍ଷା ଦ୍ୱାରା ସଂକ୍ରମଣର ପରିମାଣ ନିର୍ଣ୍ଣୟ କରାଯିବା ଉଚିତ । ଏହାଦ୍ୱାରା ସଂକ୍ରମଣ ଛାତ୍ରର ଲକ୍ଷ୍ୟ ବା ଉଦ୍ଦେଶ୍ୟ ରୂପେ କାର୍ଯ୍ୟ କରିବ ଏବଂ ଛାତ୍ର ନିଜର ଜ୍ଞାନକୁ ବିଭିନ୍ନ ସମସ୍ୟାର ସମାଧାନ ପାଇଁ ନିୟୋଜିତ କରିବାକୁ ଚେଷ୍ଟା କରିବ ।

୧୨ । ଶିକ୍ଷକ ଶିକ୍ଷାଦାନ ସମୟରେ କଠିନ ବିଷୟ ଗୁଡ଼ିକୁ କେତେକ ସହଜ ଅଂଶରେ ବିଭକ୍ତ କରି ସେଗୁଡ଼ିକର କୌଶଳ ଛାତ୍ରକୁ ବୁଝାଇଦେବା ଉଚିତ୍ । ଏହା ଫଳରେ କୌଣସି ସମସ୍ୟା ସମାଧାନ ପୂର୍ବରୁ ଆବଶ୍ୟକୀୟ ଜ୍ଞାନ ଛାତ୍ର ଦ୍ୱାରା ଆହରିତ ହୋଇପାରିଥାଏ । ପରେ ସେ ନିଜର ବୁଦ୍ଧି ଦ୍ୱାରା ଅଧିକ କଠିନ ସମସ୍ୟା ସବୁକୁ ସମାଧାନ କରିବାରେ ସମର୍ଥ ହୁଏ । କିନ୍ତୁ ଏହି ପ୍ରକ୍ରିୟା ସମସ୍ତ ପ୍ରକାର ସମସ୍ୟା ସମାଧାନ ପାଇଁ ପ୍ରଯୋଜ୍ୟ ନୁହେଁ । ସମୟ ସମୟରେ କୌଣସି ସମସ୍ୟାକୁ ସାମଗ୍ରିକ ଭାବେ ସମାଧାନ କରି ତତ୍ପରେ ସେଥିସହ ସଂପୃକ୍ତ ଅନ୍ୟ କ୍ଷୁଦ୍ର କ୍ଷୁଦ୍ର ସମସ୍ୟା ଗୁଡ଼ିକୁ ସମାଧାନ କରିବାକୁ ହୋଇଥାଏ । ତେଣୁ ଏଦିଗରେ ଶିକ୍ଷକ ବିଶେଷ ଧ୍ୟାନ ଦେବା ଆବଶ୍ୟକ ।



# ପଞ୍ଚଦଶ ଅଧ୍ୟାୟ

## ଶିକ୍ଷା ସମ୍ବନ୍ଧୀୟ ପରିସଂଖ୍ୟାନ

## (Educational Statistics)

### ପରିସଂଖ୍ୟାନ :

ସାଧାରଣ ଅର୍ଥରେ ପରି ସଂଖ୍ୟାନ କହିଲେ କେତେକ ଶ୍ରେଣୀମାଳାକୁ ବୁଝାଏ । ଜନସଂଖ୍ୟା କ୍ରମବୃଦ୍ଧିର ହିସାବ, ବିଭିନ୍ନ ପରୀକ୍ଷାରେ ଛାତ୍ରଛାତ୍ରୀମାନଙ୍କର ପରୀକ୍ଷା ନମ୍ବର, ବିଭିନ୍ନ ହିସାବ, ବଜାରଦର ପ୍ରଭୃତି ଏହାର ଅନ୍ତର୍ଗତ । ଆଜି କାଲି ଶିଳ୍ପ, ବାଣିଜ୍ୟ, ଅର୍ଥନୈତିକ, କୃଷି କ୍ଷେତ୍ରରେ ଉତ୍ପାଦନର ହ୍ରାସବୃଦ୍ଧି ଦର୍ଶାଇବା ପାଇଁ ଏହା ବ୍ୟାପକ ଭାବେ ବ୍ୟବହୃତ ହେଉଅଛି । ମାତ୍ର ପରିସଂଖ୍ୟାନ ଏବଂ ପରିସଂଖ୍ୟାନ ପଦ୍ଧତି କହିଲେ ଗୋଟିଏ ଅର୍ଥକୁ ବୁଝାଏ ନାହିଁ । ପରିସଂଖ୍ୟାନ ପଦ୍ଧତି ପରିସଂଖ୍ୟାନ ଅର୍ଥଠାରୁ ଭିନ୍ନ । ପରିସଂଖ୍ୟାନ ପଦ୍ଧତି କହିଲେ କୌଣସି ବିଷୟରେ ସଂଖ୍ୟାତ୍ମକ ତଥ୍ୟ (Numerical data) ସଂଗ୍ରହ, ଉକ୍ତ ତଥ୍ୟର ଯୁକ୍ତ ଯୁକ୍ତ ଉପସ୍ଥାପନ (Presentation), ବିଶ୍ଳେଷଣ (Analysi), ବ୍ୟାଖ୍ୟାକରଣକୁ ବୁଝାଏ । ଏହା ଏକ ବୈଜ୍ଞାନିକ ପ୍ରଣାଳୀ । ଉଦାହରଣ ସ୍ୱରୂପ ପରୀକ୍ଷାର୍ଥୀମାନଙ୍କର ପରୀକ୍ଷା ନମ୍ବରରୁ ସେମାନଙ୍କର ହାରାହାରି ନମ୍ବର (Mean) ନିର୍ଣ୍ଣୟ କରିବା ପରିସଂଖ୍ୟାନ ପଦ୍ଧତିର ଅନ୍ତର୍ଗତ ।

### ଶିକ୍ଷାରେ ପରିସଂଖ୍ୟାନର ପ୍ରୟୋଗ :

ପୂର୍ବେ ପରିସଂଖ୍ୟାନ ଜନସାଧାରଣଙ୍କର ସଂଖ୍ୟା, ଆୟ ବ୍ୟୟର ତଥ୍ୟାବଳୀ, ଦେଶ ବିଦେଶର ବିବରଣୀ, ଦେଶର ବିଭିନ୍ନ ଶ୍ରେଣୀର ଲୋକମାନଙ୍କର ସାମାଜିକ ତଥା ଅର୍ଥନୈତିକ ଅବସ୍ଥା ସମ୍ବନ୍ଧୀୟ ତଥ୍ୟକୁ ବୁଝାଉଥିଲା । ମାତ୍ର କାଳକ୍ରମେ ଏହାର ବହୁଳ ପ୍ରୟୋଗ ହେଉଅଛି । ମନସ୍ତତ୍ତ୍ୱ, ଶିକ୍ଷା, ନୃତତ୍ତ୍ୱ, ବାଣିଜ୍ୟ, ଅର୍ଥ ଶାସ୍ତ୍ର, ଶିଳ୍ପ, କୃଷି ବିଭିନ୍ନ ଶାସ୍ତ୍ରରେ ଏହାର ଆବଶ୍ୟକ ହୋଇଛି ।

ଶିକ୍ଷା କ୍ଷେତ୍ରରେ ପରିସଂଖ୍ୟାନ ପଦ୍ଧତିର ଉପାଦେୟତା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଶିକ୍ଷା କ୍ଷେତ୍ରରେ ଗବେଷକମାନେ ଗବେଷଣାର ଫଳାଫଳ ଉପଯୁକ୍ତ ଭାବରେ ଉପସ୍ଥାପନ

କରିବା ପାଇଁ ପରିସଂଖ୍ୟାନ ପଦ୍ଧତିର ସାହାଯ୍ୟ ନେଇଥାନ୍ତି । ଗବେଷଣାରେ ସଂପୃକ୍ତ ନଥାଇ ବିଭିନ୍ନ ପତ୍ରପତ୍ରିକାରେ ଗବେଷଣା ସମ୍ବନ୍ଧୀୟ ଲେଖା (Article) ବୁଝିବା ନିମିତ୍ତ ପରିସଂଖ୍ୟାନର ପଦ୍ଧତିର ଜ୍ଞାନ ଥିବା ଦରକାର । ବିଦ୍ୟାଳୟର ଶିକ୍ଷକଙ୍କ ନିମିତ୍ତ ମଧ୍ୟ ପରିସଂଖ୍ୟାନ ପଦ୍ଧତିର ଜ୍ଞାନର ଯଥେଷ୍ଟ ଆବଶ୍ୟକ ରହିଛି । ବିଦ୍ୟାଳୟରେ ଛାତ୍ରଛାତ୍ରୀଙ୍କର ଜ୍ଞାନର ପରିମାପକ ପାଇଁ ପରୀକ୍ଷା କରାଯାଏ । ଏହାଛଡ଼ା ଛାତ୍ରଛାତ୍ରୀଙ୍କର ବ୍ୟକ୍ତିତ୍ୱ ବିକାଶର ବିଭିନ୍ନ ଦିଗ ଯଥା—କର୍ମ ନୈପୁଣ୍ୟତା, ବୁଦ୍ଧି, ଅଭିରୁଚି, ମନୋବୃତ୍ତିର ପରୀକ୍ଷା ମଧ୍ୟ କରାଯାଇ ଥାଏ । ଏହି ପରୀକ୍ଷାମାନଙ୍କରୁ ମିଳୁଥିବା ନମ୍ବରକୁ ପରିସଂଖ୍ୟାନ ପଦ୍ଧତିରେ ବିଶ୍ଳେଷଣ କରିବାରେହିଁ ସେହି ପରୀକ୍ଷାରେ ଲବ୍ଧାଙ୍କ (Score) ଗୁଡ଼ିକ ଅର୍ଥବୋଧକ ହୋଇଥାଏ । ସେଥିପାଇଁ ଶିକ୍ଷକଙ୍କର ଏହି ବିଷୟରେ ଯଥେଷ୍ଟ ଜ୍ଞାନଥିବା ଆବଶ୍ୟକ । ଛାତ୍ରଛାତ୍ରୀଙ୍କର ବ୍ୟକ୍ତିତ୍ୱର ବିଭିନ୍ନ ଦିଗ ଜାଣିବା ବ୍ୟତୀତ ଅନ୍ୟ କେତେକ କାରଣରୁ ମଧ୍ୟ ଶିକ୍ଷକଙ୍କ ପକ୍ଷରେ ପରିସଂଖ୍ୟାନ ଜ୍ଞାନର ଗୁରୁତ୍ୱ ରହିଛି । ଉଦାହରଣ ସ୍ୱରୂପ—କୌଣସି ନୂତନ ଶିକ୍ଷଣ ପ୍ରଣାଳୀ ଅପେକ୍ଷା ଭଲ ନା ଖରାପ, କେଉଁ ଶ୍ରେଣୀରୁ ପିଲମାନଙ୍କୁ ବିଦେଶୀ ଭାଷାରେ ଶିକ୍ଷାଦେବା ଉଚିତ୍, କେଉଁ ଶ୍ରେଣୀରେ ଇଚ୍ଛାଧୀନ ବିଷୟ ଶିକ୍ଷାଦେଲେ ଭଲହେବ ଇତ୍ୟାଦି ଗୁରୁତ୍ୱପୂର୍ଣ୍ଣ ବିଷୟରେ ଗବେଷଣା ମାଧ୍ୟମରେ ସ୍ଥିର କରାଯାଇପାରେ । ଏହି ସମସ୍ତ ଗବେଷଣା ପାଇଁ ପରିସଂଖ୍ୟାନ ପଦ୍ଧତିର ଜ୍ଞାନ ଅପରିହାର୍ଯ୍ୟ । ଏହାର ପ୍ରୟୋଗ ବିନା ଉପଯୁକ୍ତ ବିଶ୍ଳେଷଣ ସମ୍ଭବ ନୁହେଁ ।

**ପରିସଂଖ୍ୟାନ ପଦ୍ଧତିର କେତୋଟି ମୂଳ କଥା :—**

ପରିସଂଖ୍ୟାନ ପଦ୍ଧତି ବିଷୟରେ ଜାଣିବା ପୂର୍ବରୁ ସେହି ସମ୍ବନ୍ଧୀୟ କେତେ-ଗୁଡ଼ିଏ ବିଷୟରେ ଜ୍ଞାନଥିବା ଦରକାର । ସେଗୁଡ଼ିକ ନିମ୍ନରେ ପ୍ରକାଶ କରାଯାଇଛି ।

**(୧) ଜନସଂଖ୍ୟା ଓ ନମୁନା (Population of Example) :—** ପରିସଂଖ୍ୟାନ ସାଧାରଣତଃ ଦୁଇ ପ୍ରକାରର ସଂଖ୍ୟା ବିଷୟକ ତଥ୍ୟରୁ ନିର୍ଣ୍ଣୟ କରାଯାଏ । (୧) ଜନସଂଖ୍ୟାରୁ ସଂଗୃହୀତ ତଥ୍ୟ ଓ (୨) ନମୁନାରୁ ସଂଗୃହୀତ ସଂଖ୍ୟା ବିଷୟକ ତଥ୍ୟ । ଏକ ନିର୍ଦ୍ଦିଷ୍ଟ ପରିସରରେ କୌଣସି ବିଷୟ ଜାଣିବାପାଇଁ ସମସ୍ତ ତଥ୍ୟ କିମ୍ବା ସମଗ୍ର ବ୍ୟକ୍ତିଠାରୁ ଯେଉଁ ତଥ୍ୟ ସଂଗ୍ରହ କରାଯାଏ ତାହାକୁ ଜନସଂଖ୍ୟା ତଥ୍ୟ ବୁଝାଯାଏ । ଉଦାହରଣସ୍ୱରୂପ କୌଣସି ବିଦ୍ୟାଳୟର ପ୍ରଧାନ ଶିକ୍ଷକ ତାଙ୍କ ବିଦ୍ୟାଳୟର ଏକାଦଶ ଶ୍ରେଣୀରେ ପଢ଼ୁଥିବା ଛାତ୍ରଛାତ୍ରୀମାନଙ୍କର ବୁଦ୍ଧି ପରୀକ୍ଷା କରିବାକୁ ଚାହିଁଲେ । ଯଦି ଏକାଦଶ ଶ୍ରେଣୀର ଛାତ୍ରଛାତ୍ରୀଙ୍କର ସଂଖ୍ୟା ୧୦୦ ହୋଇଥାଏ, ତେବେ ସେ ସମୁଦାୟ ଜନସଂଖ୍ୟା ୧୦୦ରୁ ତଥ୍ୟ ସଂଗ୍ରହ କରିବେ । ଏଠାରେ ଜନସଂଖ୍ୟା ୧୦୦ ଅଟେ ।

କେତେକ କ୍ଷେତ୍ରରେ ତଥ୍ୟସଂଖ୍ୟା ଅସୀମ ଥାଏ । ମନେକରାଯାଉ ଓଡ଼ିଶାରେ +୨ ଶ୍ରେଣୀପାଇଁ ଏକ ନୂତନ ଶିକ୍ଷାଦାନ ପଦ୍ଧତିର ଫଳାଫଳ ଉପରେ ଗବେଷଣା

କରାଗଲା । ଏପରି କ୍ଷେତ୍ରରେ ଜନ ସଂଖ୍ୟା ଅସୀମ ହୋଇଥିବାରୁ ସମସ୍ତ ଓଡ଼ିଶାର +୨ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କଠାରୁ ତଥ୍ୟ ସଂଗ୍ରହ କରିବା ସମ୍ଭବପର ନୁହେଁ । ଯଦି କୌଣସି ବିଷୟରେ ଆବଶ୍ୟକ ତଥ୍ୟ ସମୁଦାୟ ପରିସରରୁ ସଂଗୃହୀତ ହୋଇ ନପାରି ଜନସଂଖ୍ୟାଠାରୁ କମ୍ ସଂଖ୍ୟକ ତଥ୍ୟ ସଂଗ୍ରହ କରାଯାଏ । ତେବେ ତାହାକୁ ନମୁନା ତଥ୍ୟ ବୁଝାଯାଏ । ଉପରୋକ୍ତ ଉଦାହରଣରେ ଓଡ଼ିଶାର ସମସ୍ତ +୨ ଶ୍ରେଣୀର ଛାତ୍ରଛାତ୍ରୀଙ୍କ ଉପରେ ତଥ୍ୟ ସଂଗ୍ରହ କରିବା ସମ୍ଭବପର ହୋଇ ନଥିବାରୁ କେତେକ ଛାତ୍ରଛାତ୍ରୀ (+୨ଶ୍ରେଣୀର)ଙ୍କ ଉପରେ ଗବେଷଣା କରାଯାଇ ତଥ୍ୟ ସଂଗୃହୀତ ହୋଇଥାଏ । ଏଣୁ ନମୁନା ତଥ୍ୟ ଜନସଂଖ୍ୟା ତଥ୍ୟର କିୟଦଂଶ ମାତ୍ର । ଯେଉଁ ନମୁନାରୁ ତଥ୍ୟ ସଂଗ୍ରହ କରାଯାଏ ତାହା କେତେକ ନିର୍ଦ୍ଦିଷ୍ଟ ନିୟମ ଅନୁଯାୟୀ ନିର୍ବାଚିତ ହୋଇଥାଏ ।

**(୨) ବର୍ଣ୍ଣନାତ୍ମକ ପରିସଂଖ୍ୟାନ ଓ ଅବେକ୍ଷୀ ପରିସଂଖ୍ୟାନ :—** ସମୁଦାୟ ଜନସଂଖ୍ୟା ଉପରେ ଯେଉଁ ପରିସଂଖ୍ୟାନ ପଦ୍ଧତି ପ୍ରୟୋଗ କରାଯାଏ । ତାହାକୁ ବର୍ଣ୍ଣନାତ୍ମକ ପରିସଂଖ୍ୟାନ ବୁଝାଯାଏ । ଉଦାହରଣ ସ୍ୱରୂପ କୌଣସି ବିଦ୍ୟାଳୟର ପ୍ରଧାନ ଶିକ୍ଷକ ତାଙ୍କ ବିଦ୍ୟାଳୟର ସମୁଦାୟ ୧୦୦୦ ଛାତ୍ରଛାତ୍ରୀଙ୍କର ଭୂତ (**attitude**) ପରୀକ୍ଷା କରିବାକୁ ଯାଇ ଯେଉଁ ପରିସଂଖ୍ୟାନ ପଦ୍ଧତି ଅବଲମ୍ବନ କରିବେ ତାହାକୁ ବର୍ଣ୍ଣନାତ୍ମକ ପରିସଂଖ୍ୟାନ ବୁଝାଯିବ ।

ନମୁନା ତଥ୍ୟରୁ ସମଗ୍ର ତଥ୍ୟ ସୂଚନା ଦେବାପାଇଁ ଯେଉଁ ପରିସଂଖ୍ୟାନ ପଦ୍ଧତି ପ୍ରୟୋଗ କରାଯାଏ, ତାହାକୁ ଅବେକ୍ଷୀ ପରିସଂଖ୍ୟାନ ବୁଝାଯାଏ । ଉଦାହରଣ ସ୍ୱରୂପ କୌଣସି ବିଦ୍ୟାଳୟର ଏକ ନମୁନା ଛାତ୍ରଛାତ୍ରୀ ମଧ୍ୟରୁ ୬୦% ଛାତ୍ରଛାତ୍ରୀଙ୍କର **I. Q** (ବୁଦ୍ଧ୍ୟଙ୍କ) ୧୦୦ରୁ ଅଧିକ । ଏହି ତଥ୍ୟକୁ ସାଧାରଣ ଭାବରେ ପ୍ରକାଶ କରାଯାଇପାରେ । ଅବେକ୍ଷୀ ପରିସଂଖ୍ୟାନ ଦ୍ୱାରା ଏହି ସିଦ୍ଧାନ୍ତ ଗ୍ରହଣ କରାଯାଏ ।

**(୩) ଚଳସଂଖ୍ୟା (Variable) :—** ଚଳ ସଂଖ୍ୟା କହିଲେ ପରିବର୍ତ୍ତନଶୀଳ ସଂଖ୍ୟାକୁ ବୁଝାଏ । ଚଳ ସଂଖ୍ୟାକୁ ସାଧାରଣତଃ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ । (୧) ବିଚ୍ଛିନ୍ନ ଚଳ ସଂଖ୍ୟା (**Discrete Variable**) ଓ (୨) ଅବିଚ୍ଛିନ୍ନ ଚଳ ସଂଖ୍ୟା (**Continous Variable**) ।

ବିଚ୍ଛିନ୍ନ ଚଳସଂଖ୍ୟା କେତେକ ନିର୍ଦ୍ଦିଷ୍ଟ ମୂଲ୍ୟଦ୍ୱାରା ପ୍ରକାଶିତ ହୋଇଥାଏ । ଉଦାହରଣ ସ୍ୱରୂପ ଛାତ୍ରଛାତ୍ରୀଙ୍କ ସଂଖ୍ୟା ୨୦, ୨୨, ୪୦, ୪୫, ପ୍ରଭୃତି ପୂର୍ଣ୍ଣ ଶିକ୍ଷା ବିଶିଷ୍ଟ । ଏହା କଦାପି ଭଗ୍ନାଂଶ କିମ୍ବା ଦଶମିକରେ ପ୍ରକାଶ କରାଯାଇ ପାରିବ ନାହିଁ ।

ଅପର ପକ୍ଷରେ ଅବିଚ୍ଛିନ୍ନ ଚଳ ସଂଖ୍ୟା ପୂର୍ଣ୍ଣସଂଖ୍ୟା, ଭଗ୍ନାଂଶ ଓ ଦଶମିକରେ ପ୍ରକାଶ କରାଯାଇପାରେ । ସମୟ, ଉଚ୍ଚତା, ଓଜନ ଓ ଦୈର୍ଘ୍ୟ ପ୍ରଭୃତି ମାପରେ

ବ୍ୟବହୃତ ହେଉଥିବା ସଂଖ୍ୟା ଏହି ଶ୍ରେଣୀରେ ଅନ୍ତର୍ଭୁକ୍ତ । ଉଦାହରଣ ସ୍ୱରୂପ କୌଣସି ଶ୍ରେଣୀର ଛାତ୍ରଛାତ୍ରୀଙ୍କର ଉଚ୍ଚତା ୪'ରୁ ୫' ଭିତରେ ଯେ କୌଣସି ସଂଖ୍ୟା ବିଶିଷ୍ଟ ହୋଇପାରେ ।

## ପୌନଃପୁନ୍ୟ ବିତରଣ (Frequency Distribution) :

ବିଭିନ୍ନ କ୍ଷେତ୍ରରେ ବ୍ୟକ୍ତି ବିଶେଷର ପାରଙ୍ଗମତା ଜାଣିବା ପାଇଁ ଭିନ୍ନ ପରୀକ୍ଷଣର (test) ପ୍ରୟୋଗ ହୋଇଥାଏ । ବିଦ୍ୟାଳୟରେ ଛାତ୍ରଛାତ୍ରୀମାନଙ୍କର ବିଭିନ୍ନ ବିଷୟରେ ଦକ୍ଷତା ମାପିବାପାଇଁ ଭିନ୍ନ ଭିନ୍ନ (test)ର ସାହାଯ୍ୟ ନିଆଯାଇଥାଏ । ପରୀକ୍ଷାଲବ୍ଧ ସାଫଲ୍ୟାଙ୍କଗୁଡ଼ିକୁ ସାଧାରଣତଃ ପରୀକ୍ଷାର୍ଥୀମାନଙ୍କ କ୍ରମିକ ଅନୁଯାୟୀ ପ୍ରକାଶ କରାଯାଇଥାଏ । ଏହି ସାଫଲ୍ୟାଙ୍କଗୁଡ଼ିକୁ ଲବ୍ଧାଙ୍କ (Score) କୁହାଯାଏ । ଉଦାହରଣ ସ୍ୱରୂପ କୌଣସି ଶ୍ରେଣୀର ୫୦ ଜଣ ଛାତ୍ରଛାତ୍ରୀଙ୍କୁ ଏକ ନିର୍ଦ୍ଦିଷ୍ଟ ବିଷୟରେ ପରୀକ୍ଷା କରାଯାଇ ସେମାନଙ୍କ ଲବ୍ଧାଙ୍କଗୁଡ଼ିକୁ ନିମ୍ନରେ ପ୍ରକାଶ କରାଗଲା ।

ତାଲିକା ନଂ-୨୧

(୫୦ ଜଣ ଛାତ୍ର ଛାତ୍ରୀଙ୍କର ଲବ୍ଧାଙ୍କ)

| | | | | | | | | | |
|---|---|---|---|---|---|---|---|---|---|
| ୭୭ | ୬୧ | ୭୮ | ୭୭ | ୬୭ | ୭୨ | ୯୮ | ୯୯ | ୮୨ | ୧୦୧ |
| ୭୭ | ୮୧ | ୭୫ | ୬୫ | ୮୭ | ୭୩ | ୧୦୩ | ୯୫ | ୮୭ | ୯୩ |
| ୭୨ | ୬୭ | ୮୨ | ୭୭ | ୭୭ | ୬୯ | ୧୦୪ | ୧୦୫ | ୯୯ | ୧୦୨ |
| ୭୫ | ୮୩ | ୭୧ | ୬୩ | ୭୨ | ୭୨ | ୯୬ | ୧୦୭ | ୯୩ | ୧୦୬ |
| ୮୦ | ୬୧ | ୬୭ | ୮୪ | ୬୯ | ୬୪ | ୧୦୮ | ୧୦୫ | ୯୧ | ୧୦୪ |

ଉପରୋକ୍ତ ତାଲିକାକୁ ଲକ୍ଷ୍ୟକଲେ ଜଣାଯାଏ ଯେ ଏହା ବିଶେଷ ଅର୍ଥ ଦ୍ୟୋତକ ଓ ଶୃଙ୍ଖଳିତ ନୁହେଁ । ୫୦ ଜଣ ଛାତ୍ରଛାତ୍ରୀଙ୍କ ମଧ୍ୟରେ କେତେ ସଂଖ୍ୟକ ଛାତ୍ରଛାତ୍ରୀ ଅପେକ୍ଷାକୃତ ଅଧିକ ଲବ୍ଧାଙ୍କ ରଖିଛନ୍ତି କିମ୍ବା କମ ଲବ୍ଧାଙ୍କ ରଖିଛନ୍ତି ଇତ୍ୟାଦି ଜାଣିବା ସମ୍ଭବ ନୁହେଁ । ଏଥି ନିମିତ୍ତ ଲବ୍ଧାଙ୍କ ଗୁଡ଼ିକର ପୌନଃପୁନଃ ବିତରଣ ଆବଶ୍ୟକ ।

ତଥ୍ୟାବଳୀକୁ ଶୃଙ୍ଖଳିତ ଭବେ ପ୍ରକାଶ କରିବାକୁ ହେଲେ ଲବ୍ଧାଙ୍କଗୁଡ଼ିକୁ କ୍ରମାନୁଯାୟୀ ସଜାଇ ରଖିବାକୁ ହେବ । ଏଗୁଡ଼ିକୁ ନିମ୍ନ କ୍ରମରୁ ଉଚ୍ଚ କ୍ରମରେ କିମ୍ବା ଉଚ୍ଚ କ୍ରମରୁ ନିମ୍ନ କ୍ରମରେ ସଜାଇ ରଖାଯାଇପାରେ ।

ନିମ୍ନରେ ୨୦୦ ଜଣ ଛାତ୍ରଛାତ୍ରୀଙ୍କର ବୁଦ୍ଧ୍ୟଙ୍କ (Intelligence quetient) ଦିଆଯାଇଛି ।

### ତାଲିକା ନଂ ୨-୨

(୨୦୦ଜଣ ଛାତ୍ରଛାତ୍ରୀଙ୍କର ବୁଦ୍ଧ୍ୟଙ୍କ)

| | | | | | | | | | |
|---|---|---|---|---|---|---|---|---|---|
| ୮୭ | ୧୦୩ | ୧୧୧ | ୧୧୧ | ୯୩ | ୧୦୭ | ୧୦୮ | ୯୩ | ୧୨୩ | ୧୦୬ |
| ୮୯ | ୧୦୬ | ୧୦୫ | ୧୦୬ | ୧୧୦ | ୧୦୬ | ୧୦୨ | ୧୨୨ | ୧୦୩ | ୧୧୦ |
| ୯୮ | ୯୩ | ୧୧୪ | ୧୦୬ | ୧୧୦ | ୧୦୫ | ୧୦୭ | ୧୦୪ | ୧୦୩ | ୧୦୬ |
| ୧୦୫ | ୧୦୮ | ୧୦୮ | ୯୧ | ୯୬ | ୧୦୪ | ୯୭ | ୧୦୮ | ୧୧୦ | ୧୦୫ |
| ୧୦୧ | ୧୦୭ | ୯୫ | ୧୧୧ | ୧୧୫ | ୧୦୧ | ୧୨୩ | ୧୦୬ | ୯୯ | ୧୦୭ |
| ୧୦୩ | ୧୦୩ | ୧୧୧ | ୧୦୪ | ୧୨୨ | ୧୨୩ | ୧୦୮ | ୯୪ | ୧୦୧ | ୯୧ |
| ୯୬ | ୧୧୪ | ୧୦୬ | ୯୬ | ୧୧୦ | ୯୬ | ୧୦୪ | ୧୦୮ | ୧୦୮ | ୧୦୨ |
| ୧୦୮ | ୯୩ | ୧୦୪ | ୧୨୨ | ୧୦୩ | ୧୨୩ | ୧୧୫ | ୧୨୮ | ୧୧୬ | ୯୬ |
| ୧୦୨ | ୧୦୫ | ୧୧୨ | ୧୧୨ | ୯୫ | ୧୨୩ | ୧୨୩ | ୧୦୧ | ୯୯ | ୧୦୩ |
| ୧୦୭ | ୧୦୮ | ୧୦୬ | ୧୦୩ | ୧୦୭ | ୧୧୭ | ୧୨୨ | ୧୧୦ | ୧୧୫ | ୧୧୨ |
| ୯୯ | ୧୧୪ | ୯୩ | ୧୧୪ | ୧୧୨ | ୧୦୮ | ୯୬ | ୧୦୫ | ୧୦୭ | ୧୦୪ |
| ୧୦୬ | ୧୦୪ | ୧୧୦ | ୧୧୮ | ୧୦୭ | ୧୦୭ | ୧୦୮ | ୧୦୭ | ୧୦୪ | ୧୦୮ |
| ୧୦୪ | ୧୦୧ | ୧୦୭ | ୯୭ | ୧୦୬ | ୧୧୧ | ୧୦୬ | ୧୧୭ | ୧୦୩ | ୯୮ |
| ୧୦୭ | ୧୧୪ | ୧୧୭ | ୧୧୦ | ୧୧୧ | ୯୯ | ୮୯ | ୧୦୨ | ୯୪ | ୧୦୭ |
| ୯୭ | ୯୫ | ୧୧୪ | ୧୦୭ | ୮୬ | ୧୦୪ | ୧୧୨ | ୧୦୭ | ୧୦୪ | ୧୦୪ |
| ୧୦୫ | ୧୦୮ | ୧୧୮ | ୧୧୬ | ୧୧୫ | ୧୧୫ | ୧୨୩ | ୧୦୬ | ୧୧୦ | ୧୧୪ |
| ୧୦୮ | ୧୦୭ | ୧୦୬ | ୧୧୫ | ୯୬ | ୧୦୧ | ୯୫ | ୧୧୮ | ୯୭ | ୧୦୬ |
| ୯୮ | ୧୦୭ | ୧୧୬ | ୧୦୮ | ୧୧୦ | ୧୦୮ | ୧୦୩ | ୧୦୫ | ୧୧୧ | ୧୦୬ |
| ୧୧୫ | ୧୧୭ | ୧୧୫ | ୧୦୧ | ୧୦୭ | ୧୦୫ | ୧୦୬ | ୧୨୨ | ୧୧୧ | ୧୦୫ |
| ୧୦୩ | ୧୦୪ | ୯୬ | ୧୦୭ | ୯୮ | ୯୯ | ୧୧୪ | ୧୦୬ | ୧୦୬ | ୧୧୨ |

ଉପରୋକ୍ତ ତାଲିକାରେ ବୁଦ୍ଧି ପରିମାପକ ତଥ୍ୟାବଳୀକୁ ଶୃଙ୍ଖଳିତ ଭାବେ ପ୍ରକାଶ କରିବାକୁ ହେଲେ ଲବ୍ଧାଙ୍କ ଗୁଡ଼ିକୁ କ୍ରମାନୁଯାୟୀ ସଜାଇ ରଖିବାକୁ ହେବ । ଏଗୁଡ଼ିକୁ ନିମ୍ନ କ୍ରମରୁ ଉଚ୍ଚ କ୍ରମ କିମ୍ବା ଉଚ୍ଚ କ୍ରମରୁ ନିମ୍ନ କ୍ରମରେ ଜାଇ ରଖାଯାଇପାରେ ।

ନିମ୍ନରେ ୨୦୦ ଜଣ ଛାତ୍ରଛାତ୍ରୀଙ୍କର ବୁଦ୍ଧ୍ୟଙ୍କ (Intelligence quetient) କ୍ରମାନୁଯାୟୀ ସଜ୍ଜିତ ହୋଇଅଛି ।

### ତାଲିକା ନଂ 2-3

(୨୦୦ ଜଣ ଛାତ୍ରଛାତ୍ରୀଙ୍କର ବୁଦ୍ଧ୍ୟଙ୍କ)

| ବୁଦ୍ଧ୍ୟଙ୍କ (I.Q) | ପୌନଃପୁନ୍ୟ (F) | ବୁଦ୍ଧ୍ୟଙ୍କ (I.Q) | ପୌନଃପୁନ୍ୟ (F) |
|---|---|---|---|
| 87 | 2 | 104 | 14 |
| 89 | 2 | 105 | 10 |
| 91 | 2 | 106 | 20 |
| 93 | 5 | 107 | 18 |
| 94 | 2 | 108 | 15 |
| 95 | 4 | 110 | 10 |
| 96 | 2 | 111 | 8 |
| 97 | 10 | 112 | 6 |
| 98 | 4 | 114 | 7 |
| 99 | 5 | 115 | 8 |
| 101 | 7 | 117 | 7 |
| 102 | 4 | 118 | 4 |
| 103 | 13 | 122 | 5 |
| | | 123 | 5 |
| | | 128 | 1 |

ତାଲିକା ନଂ ୨.୩ ପୂର୍ବ ତାଲିକା ତଥା ତାଲିକା ନଂ ୨.୨ ଠାରୁ ଅଧିକ ଶୃଙ୍ଖଳିତ କରାଯାଇଅଛି । ଏହି ତାଲିକାରୁ ସର୍ବନିମ୍ନ ଓ ସର୍ବୋଚ୍ଚ ଲବ୍ଧାଙ୍କ ଯଥାକ୍ରମେ ୮୭ ଓ ୧୨୮ ବୋଲି ଜଣାପଡ଼େ । ତା' ବ୍ୟତୀତ ବିତରଣ ମଧ୍ୟରେ କୌଣସି ଲବ୍ଧାଙ୍କ କେତେଥର ରହିଅଛି ତାହା ସ୍ପଷ୍ଟ ଜଣାପଡ଼େ । ଉଦାହରଣ ସ୍ୱରୂପ ଏହି ତାଲିକାର ୨ଜଣ ପିଲାଙ୍କର ବୁଦ୍ଧ୍ୟଙ୍କ ୮୭, ୨ ଜଣଙ୍କର ୮୯, ୫ ଜଣଙ୍କର ୯୩ ଇତ୍ୟାଦି ।

କୌଣସି ଲବ୍ଧାଙ୍କ ତାଲିକାରେ ଏକ ନିର୍ଦ୍ଦିଷ୍ଟ ଲବ୍ଧାଙ୍କ ଯେତେଥର ଥାଏ ତାହାକୁ ସେହି ଲବ୍ଧାଙ୍କର ପୌନଃପୁନ୍ୟ ବୁଝାଯାଏ । ଲବ୍ଧାଙ୍କ ଗୁଡ଼ିକରେ ପୌନଃପୁନ୍ୟ ସାହାଯ୍ୟରେ ଲବ୍ଧାଙ୍କ ତାଲିକାକୁ ସରଳ, ସହଜ ଓ ସଂକ୍ଷିପ୍ତ କରାଯାଇଥାଏ । ତାଲିକା ନଂ ୨.୨ରେ ଅନ୍ତର୍ଗତ ଲବ୍ଧାଙ୍କ ଗୁଡ଼ିକୁ ୨.୩ର ପ୍ରଥମ ସ୍ତରରେ କ୍ରମାନୁଯାୟୀ ରଖାଯାଇଛି ଏବଂ ତାର ପାର୍ଶ୍ୱରେ ସେମାନଙ୍କର ପୌନଃପୁନ୍ୟର ସୂଚନା ଦିଆଯାଇଛି । ଏହି

ପ୍ରକାର ତାଲିକାକୁ ପୌନଃପୁନ୍ୟ ବିତରଣ ତାଲିକା କୁହାଯାଏ । ଏହି ପ୍ରକାର ବିତରଣକୁ ସରଳ ପୌନଃପୁନ୍ୟ ବିତରଣ କୁହାଯାଏ ।

ଉକ୍ତ ତଥ୍ୟାବଳୀକୁ ଅଧିକ ସଂକ୍ଷିପ୍ତ ଆକାରରେ ପ୍ରକାଶ କରାଯାଇ ପାରେ । ତାଲିକା ନଂ ୬.୪ରେ ଦିଆଯାଇଥିବା ସବୁଗୋଟି ପୌନଃପୁନ୍ୟ ବିତରଣ ତାଲିକାରେ ଭିନ୍ନ ଭିନ୍ନ ଭାବେ ୨ ଗୋଟି ଲବ୍ଧାଙ୍କକୁ ସଂକ୍ଷେପରେ ପ୍ରକାଶ କରାଯାଇଛି ।

### ତାଲିକା ନଂ ୬-୪

#### (କ)

| ସଂଭାଗ (C.L) | ପୌନଃପୁନ୍ୟ (Frequency) | ସଂଭାଗ (Class Interval) | ପୌନଃପୁନ୍ୟ (Frequency |
|---|---|---|---|
| 86-87 | 2 | 108-109 | 15 |
| 88-89 | 2 | 110-111 | 18 |
| 90-91 | 2 | 112-113 | 6 |
| 92-93 | 5 | 114-115 | 15 |
| 94-95 | 6 | 116-117 | 7 |
| 96-97 | 12 | 118-119 | 4 |
| 98-99 | 9 | 120-121 | 0 |
| 100-101 | 7 | 122-123 | 10 |
| 102-103 | 17 | 124-125 | 0 |
| 104-105 | 24 | 126-127 | 0 |
| 106-107 | 38 | 128-129 | 1 |
| | | | N = 200 |

#### (ଖ) ତାଲିକା

| ସଂଭାଗ (C.I) | ପୌନଃପୁନ୍ୟ (F) | ସଂଭାଗ C.I) | ପୌନଃପୁନ୍ୟ (F) |
|---|---|---|---|
| 87 89 | 4 | 108-110 | 25 |
| 90-92 | 2 | 111 113 | 14 |
| 93-94 | 11 | 114-116 | 15 |
| 96-98 | 16 | 117-119 | 11 |
| 99 101 | 12 | 120 125 | 5 |
| 102 104 | 31 | 123-125 | 5 |
| 105 107 | 48 | 139-138 | 1 |
| | | | N = 200 |

## 'ଗ' ତାଲିକା

| ସଂଵର୍ଗ (C.I) | ପୌନଃପୁନ୍ୟ (F) | ସଂଵର୍ଗ (C.I) | ପୌନଃପୁନ୍ୟ (F) |
|---|---|---|---|
| ୮୫-୮୯ | ୪ | ୧୧୦-୧୧୪ | ୩୧ |
| ୯୦-୯୪ | ୯ | ୧୧୫-୧୧୯ | ୧୯ |
| ୯୫-୯୯ | ୨୫ | ୧୨୦-୧୨୪ | ୧୦ |
| ୧୦୦-୧୦୪ | ୩୮ | ୧୨୫-୧୨୯ | ୧ |
| ୧୦୫-୧୦୯ | ୬୩ | | |
| | | | N = ୨୦୦ |

## 'ଘ' ତାଲିକା

| ସଂଵର୍ଗ (C.I) | ପୌନଃପୁନ୍ୟ (F) | ସଂଵର୍ଗ (C.I) | ପୌନଃପୁନ୍ୟ (F) |
|---|---|---|---|
| ୮୫-୯୪ | ୧୩ | ୧୧୫-୧୨୪ | ୨୯ |
| ୯୫-୧୦୪ | ୬୩ | ୧୨୫-୧୩୪ | ୧ |
| ୧୦୫-୧୧୪ | ୯୪ | | |
| | | | N = ୨୦୦ |

'କ' ତାଲିକାକୁ ଲକ୍ଷ୍ୟ କରାଯାଉ । ଏଥି ପୌନଃପୁନ୍ୟ ବିତରଣରେ ସମୁଦାୟ ୨୦୦ ଲବ୍ଧାଙ୍କର ବର୍ଗୀକରଣ (Classification) ୨୨ଟି ସଂଵର୍ଗରେ (Class Interval) ହୋଇଅଛି । ପ୍ରତ୍ୟେକ ସଂଵର୍ଗ ଦୁଇଟି ଲେଖାଏଁ କ୍ରମିକ ସଂଖ୍ୟାକୁ ନେଇ ଗଠିତ । ଉଦାହରଣ ୮୬-୮୭ ସଂଵର୍ଗଟି ୮୬ ଓ ୮୭ ଦୁଇଟି ଲବ୍ଧାଙ୍କକୁ ନେଇ ଗଠିତ । ପ୍ରତ୍ୟେକ ସଂଵର୍ଗ ଅନ୍ତର୍ଗତ ଲବ୍ଧାଙ୍କ ସଂଖ୍ୟାକୁ ସଂଵର୍ଗ ବିସ୍ତାର (Class magnitude) ବୁଝାଯାଏ । ଏଠାରେ ସଂଵର୍ଗ ବିସ୍ତାର ୨ଟେ । ପ୍ରତ୍ୟେକ ସଂଵର୍ଗ ପାର୍ଶ୍ୱରେ ଅନୁରୂପ ପୌନଃପୁନ୍ୟ (Corresponding Frequency)ର ସୂଚନା ଦିଆଯାଇଛି ।

'ଖ' ତାଲିକାକୁ ଲକ୍ଷ୍ୟ କଲେ ଦେଖାଯିବ ଯେ ସମୁଦାୟ ୨୦୦ଟି ଲବ୍ଧାଙ୍କକୁ ୧୪ଟି ସଂଵର୍ଗରେ ବିଭକ୍ତ କରାଯାଇଛି । ଏଠାରେ ସଂଵର୍ଗ ବିସ୍ତାର ୩ । ଅର୍ଥାତ ପ୍ରତ୍ୟେକ

ସଂଶ୍ରେଣୀ ୩ଟି ଲବ୍‌ଧାଙ୍କକୁ ନେଇ ଗଠିତ । ଯଥା ୮୭-୮୯ ସଂଶ୍ରେଣୀଟି ୮୭, ୮୮ ଓ ୮୯ ଏହି ୩ଟି ଲବ୍‌ଧାଙ୍କକୁ ନେଇ ଗଠିତ । 'ଖ' ତାଲିକାର ତଥ୍ୟାବଳୀ ଅପେକ୍ଷାକୃତ ସଂକ୍ଷେପ ହୋଇଅଛି । ସେହିପରି 'ଗ' ତାଲିକାରେ ସମୁଦାୟ ୨୦୦ ଲବ୍‌ଧାଙ୍କକୁ ୯ଟି ସଂଶ୍ରେଣୀରେ ବିଭକ୍ତ କରାଯିବା ସ୍ଥଳେ 'ଘ' ତାଲିକାରେ ୫ଟି ସଂଶ୍ରେଣୀରେ ବିଭକ୍ତ କରାଯାଇଛି । 'ଗ'ରେ ସଂଶ୍ରେଣୀ ବିସ୍ତାର ୫ ଥିବା ସ୍ଥଳେ 'ଘ' ରେ ସଂଶ୍ରେଣୀ ବିସ୍ତାର ୧୦ ଅଛି ।

ଯଦି ବର୍ଗୀକରଣରେ ଅଧିକ ସଂଖ୍ୟକ ସଂଶ୍ରେଣୀ ବ୍ୟବହୃତ ହୁଏ ତେବେ ପୌନଃପୁନ୍ୟ ବିତରଣ ତାଲିକା ବିଶେଷ ଦୀର୍ଘ ଜଣାଯାଏ ଓ ସଂଶ୍ରେଣୀ ବିସ୍ତାର କମ୍ ହୁଏ । ସଂଶ୍ରେଣୀ ସଂଖ୍ୟା ଅଧିକ ହୋଇଥିବାରୁ ଏ ପ୍ରକାର ବର୍ଗୀକରଣରେ ସମୁଦାୟ ଲବ୍‌ଧାଙ୍କ ବିତରଣ ସମ୍ପର୍କୀୟ ଧାରଣା ମନେପକାଇବା ସମ୍ଭବ ହୁଏନାହିଁ । ଅପର ପକ୍ଷରେ ଯଦି ସଂଶ୍ରେଣୀ ସଂଖ୍ୟା ଖୁବ୍ କମ୍ ହୁଏ, ତେବେ ବର୍ଗୀକରଣ ବିଶେଷ ସଂକ୍ଷିପ୍ତ ହୁଏ । ଏ ପ୍ରକାର ବର୍ଗୀକରଣରୁ ଉପଯୁକ୍ତ ତଥ୍ୟ ନମିଳିବାର ସମ୍ଭାବନା ଥାଏ ।

ଉପରୋକ୍ତ ୪ଗୋଟି ବିତରଣକୁ ଲକ୍ଷ୍ୟ କଲେ ଜଣାଯିବ ଯେ ପ୍ରଥମ ୨ଟି ବର୍ଗୀକରଣ ('କ' ତାଲିକା ଓ 'ଖ' ତାଲିକା)ରେ ସଂଶ୍ରେଣୀ ସଂଖ୍ୟା ଅଧିକ ଅଛି । ଏହା ଅତି ଦୀର୍ଘ ହୋଇଥିବାରୁ ଏଥିରୁ ପୌନଃପୁନ୍ୟ ବିତରଣ କରିବା ଧାରଣା ସହଜ ମନେ ହୁଏ ନାହିଁ । ଅପର ପକ୍ଷରେ 'ଘ' ତାଲିକାରେ ସଂଶ୍ରେଣୀ ସଂଖ୍ୟା ଖୁବ୍ କମ୍ ଥିବାରୁ (୨୦୦ଟି ଲବ୍‌ଧାଙ୍କ ମାତ୍ର ୫ଟି ସଂଶ୍ରେଣୀରେ ବର୍ଗୀକରଣ ହୋଇଥିବାରୁ) ଏଥିରୁ ମଧ୍ୟ ତଥ୍ୟାବଳୀ ସଂଗ୍ରହ ସହଜ ସାପେକ୍ଷ ନୁହେଁ । ଏହା ଅତ୍ୟନ୍ତ ସ୍ଥୂଳ ଅଟେ । 'ଗ' ତାଲିକାଟି ସମସ୍ତଠାରୁ ଉନ୍ନତତର ଅଟେ । ୯ଟି ସଂଶ୍ରେଣୀ ନେଇ ଏହା ଗଠିତ ।

କେତେକ ପରିସଂଖ୍ୟାବିତ୍‌ଙ୍କ ମତରେ ସଂଗୃହୀତ ଲବ୍‌ଧାଙ୍କ ସଂଖ୍ୟା ଯେତେ ଅଧିକ ହୋଇଥାଉନା କାହିଁକି ତାହାର ସଂକ୍ଷେପୀକରଣ ନିମିତ୍ତ ପୌନଃପୁନ୍ୟ ବିତରଣ ତାଲିକାରେ ବ୍ୟବହୃତ ସଂଶ୍ରେଣୀ ସଂଖ୍ୟା ୨୦ରୁ ଅଧିକ ହେବା ଉଚିତ ନୁହେଁ । ସଂଗୃହୀତ ତଥ୍ୟର ଲବ୍‌ଧାଙ୍କ ସଂଖ୍ୟା ୧୦୦୦ କିମ୍ବା ତା' ଅପେକ୍ଷା କମ୍ ହୋଇଥିବାରୁ ତାହାର ବର୍ଗୀକରଣ ନିମିତ୍ତ ୧୦ କିମ୍ବା ତା'ଠାରୁ କମ୍ ସଂଶ୍ରେଣୀ ବ୍ୟବହୃତ ହୋଇଥାଏ । ଲବ୍‌ଧାଙ୍କ ସଂଖ୍ୟା ୧୦୦୦ରୁ ଅଧିକ ଥିଲେ ସଂଶ୍ରେଣୀ ସଂଖ୍ୟା ୧୧ରୁ ୨୦ ଭିତରେ ହୋଇପାରେ ।

**ପୌନଃପୁନ୍ୟ ବିତରଣ ତାଲିକା ଗଠନ :**

ସଂକ୍ଷେପରେ କହିବାକୁ ଗଲେ କୌଣସି ପରୀକ୍ଷାର ଲବ୍‌ଧାଙ୍କକୁ ଅସଙ୍ଗଠିତ ଭାବେ ପ୍ରକାଶ କରିବାଠାରୁ ତାହା ବିଶେଷ ଫଳପ୍ରଦ ହୋଇନଥାଏ । ସେହି ଲବ୍‌ଧାଙ୍କ

ଗୁଡ଼ିକର ବିତରଣ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ଧାରଣା କରିବାକୁ ହେଲେ ସେଗୁଡ଼ିକୁ ପୌନଃପୁନ୍ୟ ବିତରଣ ତାଲିକାରେ ପ୍ରକାଶ କରାଯିବା ଦରକାର । ପୌନଃପୁନ୍ୟ ତାଲିକା ଗଠନ କରିବାକୁ ହେଲେ ପ୍ରଥମେ ସଂଶ୍ରେଣ ସଂଖ୍ୟା ଏବଂ ସଂଶ୍ରେଣ ବିସ୍ତାର ନିର୍ଣ୍ଣୟ କରିବା ଆବଶ୍ୟକ । ଉଦାହରଣ ସ୍ୱରୂପ ନିମ୍ନରେ ୪୫ ଜଣ ଛାତ୍ରଛାତ୍ରୀଙ୍କର ଯାନ୍ତ୍ରିକ ଦକ୍ଷତା (**Mechanical aptitude**) ସୂଚକ ପରୀକ୍ଷାଲବ୍ଧ ୪୫ଟି ଲବ୍ଧାଙ୍କ ଦିଆଯାଇଛି ।

### ତାଲିକା ନଂ ୨-୫

(୪୫ ଜଣ ଛାତ୍ରଛାତ୍ରୀଙ୍କର ଯାନ୍ତ୍ରିକ ଦକ୍ଷତା ସୂଚକ)

ଲବ୍ଧାଙ୍କ

| | | | | | | | | |
|---|---|---|---|---|---|---|---|---|
| ୭୨ | ୭୮ | ୬୬ | ୬୭ | ୭୨ | ୭୦ | ୭୯ | ୭୧ | ୮୦ |
| ୮୧ | ୭୫ | ୬୫ | ୮୭ | ୭୩ | ୬୭ | ୭୨ | ୭୯ | ୬୩ |
| ୬୭ | ୮୨ | ୬୬ | ୭୬ | ୬୦ | ୫୧ | ୬୯ | ୭୬ | ୬୭ |
| ୮୩ | ୭୧ | ୬୩ | ୭୨ | ୭୨ | ୮୯ | ୫୮ | ୯୦ | ୫୦ |
| ୬୧ | ୬୭ | ୮୪ | ୬୯ | ୬୪ | ୯୧ | ୬୪ | ୭୧ | ୪୮ |

ଉପରୋକ୍ତ ତାଲିକାରେ ଲବ୍ଧାଙ୍କ ଗୁଡ଼ିକ ୪୮ରୁ ୯୦ ମଧ୍ୟରେ ସୀମାବଦ୍ଧ । ଆଗରୁ ଆଲୋଚନା ହୋଇଛି ଯେ ପୌନଃପୁନ୍ୟ ତାଲିକା ଗଠନ କରିବାକୁ ହେଲେ ପ୍ରଥମେ ସଂଶ୍ରେଣ ବିସ୍ତାର ଓ ସଂଶ୍ରେଣ ସଂଖ୍ୟା ନିର୍ଣ୍ଣୟ ଆବଶ୍ୟକ । ସଂଶ୍ରେଣ ବିସ୍ତାର ନିରୂପଣ କରିବା ନିମିତ୍ତ ଦତ୍ତ ତଥ୍ୟାବଳୀରେ ଥିବା ବୃହତ୍ତମ ଓ କ୍ଷୁଦ୍ରତମ ଲବ୍ଧାଙ୍କ ଦ୍ୱୟ ମଧ୍ୟରେ ଥିବା ବ୍ୟବଧାନ ବା ବ୍ୟାପକତା (**Range**) ନିର୍ଣ୍ଣୟ କରିବାକୁ ହେବ । ସର୍ବୋଚ୍ଚ ଲବ୍ଧାଙ୍କରୁ ସର୍ବନିମ୍ନ ଲବ୍ଧାଙ୍କ ବିୟୋଗ କରି ଏହି ବ୍ୟବଧାନ ନିରୂପଣ କରାଯାଏ । ଦତ୍ତ ଉଦାହରଣରେ ସର୍ବୋଚ୍ଚ ଲବ୍ଧାଙ୍କ ୯୦ ଏବଂ ସର୍ବନିମ୍ନ ଲବ୍ଧାଙ୍କ ୪୮ ହୋଇ ଥିବାରୁ ବ୍ୟବଧାନ ୪୨ (୯୦-୪୮) ଅଟେ । ବ୍ୟବଧାନକୁ (**Range**) ସଂଶ୍ରେଣ ବିସ୍ତାର ଦ୍ୱାରା ଭାଗକରି ମୋଟ ସଂଶ୍ରେଣ ସଂଖ୍ୟା ନିର୍ଣ୍ଣୟ କରାଯାଏ । ସ୍ଥୂଳ ନିୟମ (**rule of thumb**) ଅନୁଯାୟୀ ସଂଶ୍ରେଣ ସଂଖ୍ୟା ୧୦ରୁ ୨୦ ଭିତରେ ହେବା ଆବଶ୍ୟକ । ଏହି ନିୟମ ଅନୁଯାୟୀ ଏହି ବିତରଣରେ ଯଦି ସଂଶ୍ରେଣ ବିସ୍ତାର ୩ ନିଆଯାଏ ତେବେ ୧୫ଟି ସଂଶ୍ରେଣ ହେବା ଯୁକ୍ତିଯୁକ୍ତ । ମାତ୍ର ଉକ୍ତ ଉଦାହରଣରେ ଲବ୍ଧାଙ୍କ ସଂଖ୍ୟା କେବଳ ୪୦ ହୋଇଥିବାରୁ ଏତେଗୁଡ଼ିଏ ସଂଶ୍ରେଣ ବ୍ୟବହାର କରିବା ଲାଭଜନକ ନୁହେଁ । ଏହି ଉଦାହରଣରେ ଯଦି ସଂଶ୍ରେଣ ବିସ୍ତାର ୫ ନିଆଯାଏ ତେବେ ବିତରଣରେ ସର୍ବମୋଟ ୧୦ଟି ସଂଶ୍ରେଣ ବ୍ୟବହୃତ ହେବ ।

ସଂଭାଗ ବିସ୍ତାର ଓ ସଂଭାଗ ସଂଖ୍ୟା ନିରୂପିତ ହେବାପରେ କେଉଁ ଲବ୍ଧାଙ୍କରୁ ପ୍ରଥମ ସଂଭାଗ ଆରମ୍ଭହେବ ତାହା ବିଚାର୍ଯ୍ୟ ଅଟେ । ସାଧାରଣତଃ ଏପରି ଏକ ସର୍ବନିମ୍ନ ଲବ୍ଧାଙ୍କରୁ ପ୍ରଥମ ସଂଭାଗର ନିମ୍ନସୀମା ଆରମ୍ଭ କରିବାକୁ ହେବ, ଯାହାକି ସଂଭାଗ ବିସ୍ତାର ସଂଖ୍ୟାର ଏକ ଗୁଣିତକ ହୋଇଥିବ । ଦତ୍ତ ଉଦାହରଣରେ ସର୍ବନିମ୍ନ ଲବ୍ଧାଙ୍କ ୪୮ ଓ ବିସ୍ତାର ୫ ହୋଇଥିବାରୁ ଏଠାରେ ପ୍ରଥମ ସଂଭାଗର ନିମ୍ନ ସୀମା ୪୦ ହେବ । ଏପରିସ୍ଥଳେ ପ୍ରଥମ ସଂଭାଗଟି ୪୦-୪୪ ଅର୍ଥାତ୍ ୪୦, ୪୧, ୪୨, ୪୩, ୪୪ ହେବ । ସେହିପରି ଦ୍ୱିତୀୟଟି ୪୫-୪୯ ହେବ ଅର୍ଥାତ୍ ୪୫, ୪୬, ୪୭, ୪୮ ଓ ୪୯ । ସର୍ବଶେଷ ସଂଭାଗଟି ୯୦-୯୪ ହେବ ଅର୍ଥାତ୍ ୯୦, ୯୧, ୯୨, ୯୩, ଓ ୯୪ ।

**ଲବ୍ଧାଙ୍କ ଅନୁମେଳନ ଓ ପୌନଃପୁନ୍ୟ ନିରୂପଣ :**

କେଉଁ ଲବ୍ଧାଙ୍କଠାରୁ ପ୍ରଥମ ସଂଭାଗ ଆରମ୍ଭ କରାଯିବ ତାହା ନିର୍ଦ୍ଧାରଣ କରାଯାଇବା ପରେ ସଂଭାଗ ଗୁଡ଼ିକୁ କ୍ରମାନୁଯାୟୀ ଲେଖିବା ଆବଶ୍ୟକ । ସଂଭାଗ ଗୁଡ଼ିକୁ ଲେଖାଯିବା ସ୍ତମ୍ଭର ଦକ୍ଷିଣ ପାର୍ଶ୍ୱରେ ଲବ୍ଧାଙ୍କ ଗୁଡ଼ିକର ଅନୁମେଳନ (tally) କରିବା ନିମିତ୍ତ ସ୍ଥାନ ଥାଏ । ତାପରେ ମୂଳ ଲବ୍ଧାଙ୍କର ତାଲିକାରୁ ପ୍ରତ୍ୟେକ ଲବ୍ଧାଙ୍କ ପାଇଁ ଅନୁରୂପ ସଂଭାଗ ପାର୍ଶ୍ୱରେ ଏକ ଏକ ଅନୁମେଳନ ଗାର (।) ଅଙ୍କନ କରାଯାଏ ।

ଉଦାହରଣ ସ୍ୱରୂପ—ତାଲିକା ନଂ ' ୫ରେ ପ୍ରଥମ ଲବ୍ଧାଙ୍କ ୬୨ ଅଟେ । ଏହି ଲବ୍ଧାଙ୍କ ଦେଉଥିବା ୭୦-୭୪ ସଂଭାଗର ଅନ୍ତର୍ଭୁକ୍ତ । ତେଣୁ ଲବ୍ଧାଙ୍କ ୭୨ ପାଇଁ ୭୦-୭୦ ପାର୍ଶ୍ୱରେ ଗୋଟିଏ ଅନୁମେଳନ ରେଖା ଅଙ୍କନ କରିବାକୁ ହେବ । ସେହିପରି ତାଲିକାରେ ଥିବା ୭୧, ୭୨ ଓ ୭୩ ଲବ୍ଧାଙ୍କ ଏହି ସଂଭାଗର ଅନ୍ତର୍ଭୁକ୍ତ । ତେଣୁ ଏହି ସଂଭାଗରେ ଥିବା ୧୦ଟି ଲବ୍ଧାଙ୍କ ନିମିତ୍ତ ୧୦ଟି ଅନୁମେଳନ ରେଖା ଅଙ୍କନ କରିବାକୁ ହେବ । ଏହି ଅନୁମେଳନ ରେଖାକୁ ଗଣି ସେହି ସଂଭାଗର ପୌନଃ-ପୁନ୍ୟ ନିରୂପଣ କରାଯାଏ । ତାଲିକା ନଂ ୨-୭ରୁ ଦତ୍ତ ଲବ୍ଧାଙ୍କର ଅନୁମେଳନ ରେଖା ସୂଚିତ ହୁଏ ।

| ସଂଭାଗ C.I | ଅନୁମେଳନ ରେଖା Tally | ପୌନଃପୁନ୍ୟ Frequency |
|---|---|---|
| 90—94 | । | 1 |
| 84—89 | ।। | 2 |
| 80—84 | ।।।।। | 5 |
| 75—79 | ।।।।।।।। | 8 |
| 70—74 | ।।।।।।।।।। | 10 |
| 65—69 | ।।।।।।। | 7 |

| ସଂଭାଗ C.I | ଅନୁମେଳନ ରେଖା Tally | ପୌନଃପୁନ୍ୟ Frequence |
|---|---|---|
| 60—64 | \|\|\|\| | 4 |
| 55—59 | \| | 1 |
| 50—54 | \| | 1 |
| 45—49 | \| | 1 |
| | | N = 40 |

ଉପରୋକ୍ତ ତାଲିକାରେ ପ୍ରତ୍ୟେକ ସଂଭାଗ ପାର୍ଶ୍ୱରେ ଆବଶ୍ୟକ ଅନୁମେଳନ ରେଖା ଅଙ୍କନ କରାଯାଇ ପ୍ରତ୍ୟେକ ସଂଭାଗର ପୌନଃପୁନ୍ୟ ନିରୂପଣ କରାଯାଇଛି ।

**ପୌନଃପୁନ୍ୟ ବିତରଣ ଲେଖଚିତ୍ର ଅଙ୍କନ (Graphic Representation of Frequency Distribution) :**

ପୌନଃପୁନ୍ୟ ବିତରଣର ଲେଖଚିତ୍ର ମାଧ୍ୟମରେ ପ୍ରକାଶିତ ତଥ୍ୟାବଳୀ ପାଠକର ଦୃଷ୍ଟିକୁ ସହଜରେ ଆକର୍ଷଣ କରିଥାଏ । ଏହି କାରଣରୁ ଆକର୍ଷଣୀୟ କରିବା ନିମିତ୍ତ କେତେକ କ୍ଷେତ୍ରରେ ସାଂଖ୍ୟିକ ତଥ୍ୟାବଳୀକୁ ଲେଖଚିତ୍ରରେ ପ୍ରକାଶ କରାଯାଇଥାଏ । ଏହାଦ୍ୱାରା ପ୍ରକାଶିତ ତଥ୍ୟାବଳୀ ସହଜ, ବୋଧଗମ୍ୟ ହୁଏ । ପୌନଃପୁନ୍ୟ ବିତରଣକୁ ସାଧାରଣତଃ ୪ଟି ଲେଖ ଚିତ୍ରରେ ପ୍ରକାଶ କରାଯାଇପାରେ । ସେଗୁଡ଼ିକ ହେଲା (୧) ପୌନଃପୁନ୍ୟ ନିର୍ଦ୍ଦେଶକ ବହୁଭୁଜ (Frequency polygon) (୨) ସଙ୍ଗଠନ ରେଖାଙ୍କନ ବା ହିଷ୍ଟୋଗ୍ରାମ (Histogram), (୩) ସଞ୍ଚୟୀ ପୌନଃପୁନ୍ୟ ବକ୍ର (Cumulative Frequency Curve) ଓ (୪) ସଞ୍ଚୟୀ ଶତକଡ଼ା ପୌନଃପୁନ୍ୟ ବକ୍ର (Cumulative Percentage Curve or Ogire)

**(୧) ପୌନଃପୁନ୍ୟ ନିର୍ଦ୍ଦେଶକ ବହୁଭୁଜ ଅଙ୍କନ (Frequency Polygon)**—୪୦ ଜଣ ଛାତ୍ରଛାତ୍ରୀଙ୍କର ଗଣିତଲବ୍ଧ ସାଫଲ୍ୟାଙ୍କକୁ ଏକ ପୌନଃପୁନ୍ୟ ବିତରଣରେ ପ୍ରକାଶ କରାଯାଇ ତାହାକୁ ଲେଖଚିତ୍ରରେ ପ୍ରକାଶ କରାଯାଇଛି ।

ତାଲିକା ନଂ—3.1

| ସଂଭାଗ (C.I) | ପୌନଃପୁନ୍ୟ (F) |
|---|---|
| 70—74 | 1 |
| 65—69 | 2 |
| 60—64 | 4 |
| 55—59 | 5 |
| 50—54 | 8 |
| 45—49 | 10 |

| ସଂଘଗ (C I) | ପୌନଃପୁନ୍ୟ (F) |
|---|---|
| 40—44 | 6 |
| 35—39 | 4 |
| 30—34 | 4 |
| 25—29 | 2 |
| 20—24 | 3 |
| 15—19 | 1 |

ପୌନଃପୁନ୍ୟ ନିର୍ଦ୍ଦେଶକ ବହୁଭୁଜର ଅଙ୍କନ ସମୟରେ କେତେଗୁଡ଼ିଏ ବିଷୟ ପ୍ରତି ଦୃଷ୍ଟି ଦେବା ଉଚିତ୍ । ସେଗୁଡ଼ିକୁ ନିମ୍ନରେ ଦିଆଯାଇଛି ।

(୧) **ଆନୁଭୂମିକ ଅକ୍ଷଦଣ୍ଡ ଉପରେ ବିନ୍ଦୁ ସଂସ୍ଥାପନ** :—ଗ୍ରାଫ୍ କାଗଜରେ ଆନୁଭୂମିକ ଅକ୍ଷଦଣ୍ଡ ( X ଅକ୍ଷଦଣ୍ଡ ) ଉପରେ ସଂଘଗ ଗୁଡ଼ିକ ସମାନ ବ୍ୟବଧାନରେ ବିଭିନ୍ନ ଉପାୟରେ ସୂଚିତ ହୋଇଥାଏ । କେତେକ କ୍ଷେତ୍ରରେ ସଂଘଗ ଗୁଡ଼ିକର ପ୍ରକୃତ ସୀମା ଚିହ୍ନିତ କରାଯାଇଥାଏ ଓ ଅନ୍ୟ କେତେକ କ୍ଷେତ୍ରରେ ସଂଘଗ ଗୁଡ଼ିକର ମଧ୍ୟ ବିନ୍ଦୁକୁ ଚିହ୍ନିତ କରାଯାଇଥାଏ । ତାଲିକା ୩-୧ରେ ସର୍ବନିମ୍ନ ଲବ୍ଧାଙ୍କ ୧୫ ଏବଂ ସର୍ବୋଚ୍ଚ ଲବ୍ଧାଙ୍କ ୨୪ । ଚିତ୍ର ନଂ ୩-୨ରେ ଏହି ସଂଘଗ ଗୁଡ଼ିକୁ X ଅକ୍ଷଦଣ୍ଡ ଉପରେ ଚିହ୍ନିତ କରିବା ନିମିତ୍ତ ପ୍ରତ୍ୟେକ ସଂଘଗର ନିମ୍ନ ସୀମା ଗୁଡ଼ିକୁ ସମାନ ସମାନ ବ୍ୟବଧାନରେ X ଅକ୍ଷଦଣ୍ଡ ଉପରେ ନିଆଯାଇଛି ।

(୨) **ଉଲମ୍ବ ଉପରେ ପୌନଃପୁନ୍ୟର ସୂଚନା** :—Y ଅକ୍ଷଦଣ୍ଡ (ଉଲମ୍ବ) ଉପରେ ପୌନଃପୁନ୍ୟର ସୂଚନା ଦେବା ନିମିତ୍ତ ବ୍ୟବହୃତ ଏକକ ନିର୍ଦ୍ଧାରଣ କରିବା ସମୟରେ ଲେଖଚିତ୍ରର ଉଚ୍ଚତା ପ୍ରତି ଦୃଷ୍ଟି ଦିଆଯିବା ଆବଶ୍ୟକ । ସାଧାରଣତଃ ବାହୁଭୁଜର ଉଚ୍ଚତା ତାହାର ପ୍ରସ୍ଥର ଶତକଡ଼ା ୬୦ରୁ ୮୦ ଭାଗ ମଧ୍ୟରେ ସୀମିତ ହେବା ଉଚିତ୍ । ଆନୁଭୂମିକ ଅକ୍ଷଦଣ୍ଡ ଉପରେ ସମ୍ପୂର୍ଣ୍ଣ ବିସ୍ତାରଗୁଡ଼ିକ ସୂଚିତ କରିବା ନିମିତ୍ତ ଆବଶ୍ୟକ ହେଉଥିବା ଦୈର୍ଘ୍ୟ ରେଖା ଅନୁଯାୟୀ ବହୁଭୁଜର ଉଚ୍ଚତା ନିରୂପଣ କରିବାକୁ ହେବ । ସେହି ଅନୁଯାୟୀ Y ଅକ୍ଷଦଣ୍ଡ ଉପରେ ଏକକ ନିର୍ଦ୍ଧାରଣ କରାଯିବା ଆବଶ୍ୟକ ।

(୩) **ଲେଖଚିତ୍ରରେ ବିଭିନ୍ନ ସଂଘଗର ପୌନଃପୁନ୍ୟ ପ୍ରକାଶ ନିମିତ୍ତ ବିନ୍ଦୁ ସ୍ଥାପନ** :—ପ୍ରତ୍ୟେକ ସଂଘଗର ମଧ୍ୟବିନ୍ଦୁକୁ X ଅକ୍ଷରେଖା ଉପରେ ନିରୂପଣ କରି ସେହି ବିନ୍ଦୁ ଉପରିସ୍ଥ ଅକ୍ଷରେଖା ଉପରେ ଅନୁରୂପ ପୌନଃପୁନ୍ୟ ଚିହ୍ନିତ କରାଯାଏ । ଉଦାହରଣ ୧୫-୧୯ ସଂଘଗର ପୌନଃପୁନ୍ୟ ୧ ଅଟେ । ପ୍ରଥମେ ୧୫ ଓ ୧୯ର ମଧ୍ୟ ବିନ୍ଦୁ ନିରୂପଣ କରିବାକୁ ହେବ । (ମଧ୍ୟ ବିନ୍ଦୁ ନିରୂପଣ ବିଭିନ୍ନ ଉପାୟରେ ହୋଇଥାଏ । ଯଥା— $\frac{୧୫+୧୯}{୨}$ = ୧୭ । ଏହାକୁ ଅନ୍ୟ ଭାବରେ ମଧ୍ୟ ନିର୍ଣ୍ଣୟ

କରଯାଇପାରେ । ୧୫—୧୯ ସଂଭଗର ବାସ୍ତବ ସୀମାଦ୍ୱୟ ୧୪.୫—୧୯.୫ । ଏହାର ସଂଭଗ ୫ ଅଟେ । ଏହି ବିସ୍ତାର ସମ୍ଭାଗ ବିସ୍ତାରର ଅର୍ଦ୍ଧାଂଶ ୨.୫ ଅଟେ । ଏହି ସଂଭଗର ମଧ୍ୟବିନ୍ଦୁ ୧୪.୫ + ୨.୫ = ୧୭ ଅର୍ଥାତ୍ ନିମ୍ନ ବାସ୍ତବ ସୀମାଠାରୁ ୨.୫ ଏକକ ଅଧିକ ଅଟେ ।) ଏହି ମଧ୍ୟବିନ୍ଦୁ ଉପରେ ଲମ୍ବଭାବେ ଦଣ୍ଡାୟମାନ ସରଳରେଖା ଓ Y ଅକ୍ଷରେଖା ଉପରେ ପୌନଃପୁନ୍ୟ ସୂଚୁଥିବା ବିନ୍ଦୁ ମଧ୍ୟଦେଇ ସମାନ୍ତର ସରଳରେଖା (X ଅକ୍ଷଦଣ୍ଡ ସହିତ) ଦ୍ୱୟ ଯେଉଁ ବିନ୍ଦୁରେ ପରସ୍ପର ଛେଦ କରିବେ, ସେହି ବିନ୍ଦୁଟି ୧୫—୧୯ ସଂଭଗର ପୌନଃପୁନ୍ୟ ୨ ବୋଲି ସୂଚାଇବ । ଏହିପରି ଭାବରେ ଦତ୍ତ ତଥ୍ୟମାଳାରେ ଅନ୍ୟାନ୍ୟ ସଂଭଗଗୁଡ଼ିକର ପୌନଃପୁନ୍ୟ ସୂଚିତ ହେବ ।

(୪) ପୌନଃପୁନ୍ୟ ବହୁଭୁଜ ଅଙ୍କନ :—ସଂଭଗ ଗୁଡ଼ିକର ପୌନଃପୁନ୍ୟ ବିନ୍ଦୁଗୁଡ଼ିକ ଚିହ୍ନିତ କରସାରିବା ପରେ ସେଗୁଡ଼ିକୁ କ୍ରମାନୁଯାୟୀ ସରଳରେଖା ଦ୍ୱାରା ସଂଯୋଗ କରିବାକୁ ହେବ । ସେହି ବିନ୍ଦୁଗୁଡ଼ିକ ପରସ୍ପର ସଂଯୋଗ ହୋଇସାରିବା ପରେ ଯେଉଁ ବହୁଭୁଜଟି ଅଙ୍କିତ ହେବ, ତାହାକୁ ପୌନଃପୁନ୍ୟ ନିର୍ଦ୍ଦେଶକ ବହୁଭୁଜ କୁହାଯିବ ।




ଚିତ୍ର ନଂ ୩.୨ (ତାଲିକା ନଂ ୩.୧୩ ରେ ଥିବା ଗଣିତ ଲବ୍ଧାଙ୍କର ପୌନଃ ନିର୍ଦ୍ଦେଶକ ବହୁ ଭୁଜ)

ଉପରୋକ୍ତ ପୌନଃପୁନ୍ୟ ନିର୍ଦ୍ଦେଶକ ବହୁଭୁଜଟିର ଉଭୟ ପାର୍ଶ୍ୱ ସଂଯୁକ୍ତ ନୁହେଁ । ତେଣୁ ଏହାକୁ ସମ୍ପୂର୍ଣ୍ଣ କରିବା ନିମିତ୍ତ X ଅକ୍ଷରେଖା ଉପରେ ବାମପଟେ

ସର୍ବୋଚ୍ଚ ସଂଗ୍ରହର ପରବର୍ତ୍ତୀ ସଂଗ୍ରହ ସହ ସଂଯୁକ୍ତ କରିବାକୁ ହୁଏ । ଏହି ଉଭୟ ସଂଗ୍ରହର ପୌନଃପୁନ୍ୟ ୦ (ଶୂନ) ଅଟେ ।

**ପୌନଃପୁନ୍ୟ ଆୟତ ଚିତ୍ର (Histogram) :**

ପୌନଃପୁନ୍ୟ ଆୟତ ଚିତ୍ର ମାଧ୍ୟମରେ ଅଧିକ ସରଳଭାବେ ପୌନଃପୁନ୍ୟ ବିତରଣକୁ ପ୍ରକାଶ କରାଯାଇ ଥାଏ । ଉଭୟ ପୌନଃପୁନ୍ୟ ନିର୍ଦ୍ଦେଶକ ବହୁଭୁଜ ଓ ପୌନଃପୁନ୍ୟ ଆୟତ ଚିତ୍ର ଅଙ୍କନର ନିୟମମାନ ସମାନ । ମାତ୍ର ଉଭୟଙ୍କ ମଧ୍ୟରେ ପାର୍ଥକ୍ୟ ହେଉଛି ଯେ ପୌନଃପୁନ୍ୟ ନିର୍ଦ୍ଦେଶକ ବହୁଭୁଜରେ କୌଣସି ସଂଗ୍ରହର ପୌନଃପୁନ୍ୟ ସେହି ସଂଗ୍ରହର ମଧ୍ୟବିନ୍ଦୁ ଦ୍ୱାରା ସୂଚିତ ହେଉଥିବା ସ୍ଥଳେ ପୌନଃପୁନ୍ୟ ଆୟତ ଚିତ୍ରରେ କୌଣସି ସଂଗ୍ରହର ପୌନଃପୁନ୍ୟ ସେହି ସଂଗ୍ରହର ବାସ୍ତବ ସୀମା ବିସ୍ତାର ଦ୍ୱାରା ସୂଚିତ ହୋଇଥାଏ । ପୌନଃପୁନ୍ୟ ନିର୍ଦ୍ଦେଶକ ବହୁଭୁଜରେ ମଧ୍ୟବିନ୍ଦୁ ସଂଗ୍ରହରେ ଥିବା ସମସ୍ତ ଲବ୍ଧାଙ୍କର ପ୍ରତିନିଧିତ୍ୱ କରୁଥିବା ସ୍ଥଳେ ପୌନଃପୁନ୍ୟ ଆୟତ ଚିତ୍ରରେ କୌଣସି ସଂଗ୍ରହର ପୌନଃପୁନ୍ୟ ସେହି ସଂଗ୍ରହରେ ଥିବା ସମସ୍ତ ଲବ୍ଧାଙ୍କ ମଧ୍ୟରେ ସମ ବଣ୍ଟନ ହୋଇଥାଏ ।

ଚିତ୍ର ନଂ ୩. ୩ରେ ତାଲିକା ନଂ ୩.୧ ରେ ଦଉଥିବା ଲବ୍ଧାଙ୍କକୁ ନେଇ ଆୟତ ଚିତ୍ର ଅଙ୍କନ କରାଯାଇଛି ।



ଉପରୋକ୍ତ ଚିତ୍ରରେ X ଅକ୍ଷରେଖା ଉପରେ ସଂଖ୍ୟାଗୁଡ଼ିକ ଚିହ୍ନିତ କରାଯାଇଛି । ଚିତ୍ରଟିର ପ୍ରଥମ ସଂଖ୍ୟା ବାସ୍ତବରେ ୧୪.୫ ଠାରୁ ଆରମ୍ଭ ହୋଇ ୧୯.୫ରେ ଶେଷ ହୋଇଛି । ଏହି ସଂଖ୍ୟାର ପୌନଃପୁନ୍ୟ I ଅଟେ । ଏଣୁ ଏହାକୁ ଏକ ଆୟତ କ୍ଷେତ୍ରରେ ପ୍ରକାଶ କରାଯାଇଛି । ଆୟତ କ୍ଷେତ୍ରଟିର ପ୍ରସ୍ଥ ସେହି ସଂଖ୍ୟାବିସ୍ତାର ସହିତ ସମାନ ଏବଂ ଏହାର ଉଚ୍ଚତା Y ଅକ୍ଷରେଖା ଉପରେ I ଏକକ ଅଟେ । ସେହିପରି ଅନ୍ୟ ସଂଖ୍ୟାଗୁଡ଼ିକର ପୌନଃପୁନ୍ୟ ଅନୁଯାୟୀ ଲେଖଚିତ୍ର ଅଙ୍କନ କରାଯାଇଛି ।

ଉଭୟ ପୌନଃପୁନ୍ୟ ନିର୍ଦ୍ଦେଶକ ବହୁଭୁଜ ଓ ପୌନଃପୁନ୍ୟ ଆୟତ ଚିତ୍ର ପୌନଃପୁନ୍ୟ ବିତରଣର ଲେଖଚିତ୍ର ଅଟେ । ପୌନଃପୁନ୍ୟ ଆୟତ ଚିତ୍ର ଅନ୍ତର୍ଗତ ପ୍ରତ୍ୟେକ ଆୟତ କ୍ଷେତ୍ରର କ୍ଷେତ୍ରଫଳ ତାହାର ଅନୁରୂପ ପୌନଃପୁନ୍ୟ ସହିତ ସମାନୁପାତ ବିଶିଷ୍ଟ ହୋଇଥିବାରୁ କେତେକ କ୍ଷେତ୍ରରେ ଏହା ଅଧିକ ଉପଯୋଗୀ ହୋଇଥାଏ । ମାତ୍ର ପୌନଃପୁନ୍ୟ ନିର୍ଦ୍ଦେଶକ ବହୁଭୁଜରେ ବିଭିନ୍ନ ସଂଖ୍ୟାର ପୌନଃପୁନ୍ୟର ପାର୍ଥକ୍ୟ ସହଜରେ ଜଣାଯାଇପାରେ । ଏକ ଅକ୍ଷରେଖା ଉପରେ ଦୁଇ ବା ତତୋଧିକ ପୌନଃପୁନ୍ୟ ବିତରଣର ଲେଖଚିତ୍ର ଅଙ୍କନ ପାଇଁ ଆୟତ ଚିତ୍ର ଅପେକ୍ଷା ପୌନଃପୁନ୍ୟ ନିର୍ଦ୍ଦେଶକ ବହୁଭୁଜ ଅଧିକ ଉପଯୋଗୀ ।

## କେନ୍ଦ୍ରୀୟ ପ୍ରବଣତା ମାପ (Measures of Central Tendency) :

ସମୁଦାୟ ପୌନଃପୁନ୍ୟ ବିତରଣ ସମ୍ବନ୍ଧରେ ହାରାହାରି ସାହାଯ୍ୟରେ ଧାରଣା ଦିଆଯାଇପାରେ । ଉଦାହରଣସ୍ୱରୂପ କୌଣସି ଶ୍ରେଣୀର ୧୦୦ ଜଣ ଛାତ୍ରଙ୍କୁ ଗଣିତ ବିଷୟରେ ପରୀକ୍ଷା କରାଯାଇ ସେମାନଙ୍କର ଲବ୍ଧାଙ୍କ ବିତରଣରେ ଏକ ତାଲିକା ତିଆରି କରାଗଲା । ସେହି ଶ୍ରେଣୀର ଛାତ୍ରଛାତ୍ରୀମାନେ ଗଣିତ ବିଷୟରେ କିପରି ସଫଳତା ହାସଲ କରିଛନ୍ତି ତାହା ସେହି ଲବ୍ଧାଙ୍କ ପ୍ରଭୃତିର ହାରାହାରି ମାନଦ୍ୱାରା ଜଣାଯାଏ । ସମୁଦାୟ ୧୦୦ଜଣ ଛାତ୍ରଛାତ୍ରୀଙ୍କର ଲବ୍ଧାଙ୍କକୁ ବ୍ୟକ୍ତିଗତ ଭାବେ ପ୍ରକାଶ ନକରି ସେଗୁଡ଼ିକର ହାରାହାରି ମାନଦ୍ୱାରା ଲବ୍ଧାଙ୍କ ବିତରଣ ସମ୍ବନ୍ଧରେ ଧାରଣା କରାଯାଇପାରେ ।

ଲବ୍ଧାଙ୍କ ଗୁଡ଼ିକ ବିତରଣରେ ତାଲିକା ଭୁକ୍ତ ହୋଇସାରିବା ପରେ ସେ ଗୁଡ଼ିକର କେନ୍ଦ୍ରୀୟ ପ୍ରବଣତା ହାରାହାରି ମାନ (Average value) ଦ୍ୱାରା ମପାଯାଏ । ସାଂଖ୍ୟିକ ବିତରଣର ହାରାହାରି ମାନଗୁଡ଼ିକ ମଧ୍ୟରୁ ମାଧ୍ୟ (Mean) ମଧ୍ୟମା (median) ଓ ଗରିଷ୍ଠକ (mode) ଗୁଡ଼ିକ ପ୍ରଧାନ ।

## ମାଧ୍ୟ (Mean) :

ସାଂଖ୍ୟିକ ତଥ୍ୟାବଳୀର ବର୍ଣ୍ଣନା ନିମନ୍ତେ ଯେତେସବୁ କେନ୍ଦ୍ରୀୟ ପ୍ରବଣତା ମାପ ବ୍ୟବହୃତ ହୋଇଥାଏ, ସେଗୁଡ଼ିକ ମଧ୍ୟରେ ମାଧ୍ୟମାନ ଏକ ନିର୍ଦ୍ଦିଷ୍ଟ ଲବ୍ଧାଙ୍କର

ସ୍ଥିତି ସେହି ତଥ୍ୟାବଳୀର ମାଧ୍ୟରେ ପରିପ୍ରେକ୍ଷୀରେ ହୋଇଥାଏ । ଉଦାହରଣ ସ୍ୱରୂପ— କୌଣସି ଏକ ଶ୍ରେଣୀର ୪୦ ଜଣ ଛାତ୍ରଙ୍କୁ କୌଣସି ବିଷୟରେ ପରୀକ୍ଷା କରାଯାଇ ସେମାନଙ୍କ ଲବ୍‌ଧାଙ୍କର ମାଧ୍ୟମାନ ନିରୂପଣ କରାଗଲା । ୪୦ ଜଣ ପରୀକ୍ଷାର୍ଥୀଙ୍କ ମଧ୍ୟରୁ କୌଣସି ଦୁଇଜଣଙ୍କ ଲବ୍‌ଧାଙ୍କ ୭୦ ଓ ୬୦ । ଏହି ଦୁଇଟି ଲବ୍‌ଧାଙ୍କରୁ ସେମାନଙ୍କର ସ୍ଥିତି ବିଷୟରେ ଜାଣିହୁଏ ନାହିଁ । ସମସ୍ତ ଲବ୍‌ଧାଙ୍କକୁ ପ୍ରକାଶ ନକରି ଯଦି କୁହାଯାଏ ଯେ ସେମାନଙ୍କର ମାଧ୍ୟ ୬୫, ତଦ୍ୱାରା ଲବ୍‌ଧାଙ୍କ ଦ୍ୱୟର ସ୍ଥିତି ବିଷୟରେ ଜାଣିହେବ । ଯେଉଁ ପରୀକ୍ଷାର୍ଥୀଙ୍କର ଲବ୍‌ଧାଙ୍କ ୭୦ ତାଙ୍କର ସଫଳତା ଶ୍ରେଣୀର ହାରାହାରି ମାନ ଅପେକ୍ଷା ଅଧିକ ଓ ଯେଉଁ ପରୀକ୍ଷାର୍ଥୀଙ୍କର ଲବ୍‌ଧାଙ୍କ ୬୦, ତାଙ୍କର ସଫଳତା ଶ୍ରେଣୀର ହାରାହାରି ମାନ ଅପେକ୍ଷା କମ୍ ଅଟେ ।

**(କ) ଅଶ୍ରେଣୀ ବଦ୍ଧ ତଥ୍ୟର (Ungrouped data) ମାଧ୍ୟ ନିରୂପଣ** :—ଅଶ୍ରେଣୀ ବଦ୍ଧ ବା ଅବର୍ଗିତ ତଥ୍ୟର ଅନ୍ତର୍ଗତ ସମସ୍ତ ଲବ୍‌ଧାଙ୍କର ଯୋଗଫଳକୁ ଲବ୍‌ଧାଙ୍କ ସଂଖ୍ୟାଦ୍ୱାରା ଭାଗକରି ମାଧ୍ୟ ନିରୂପଣ କରାଯାଏ । ଏଥିପାଇଁ ନିମ୍ନଲିଖିତ ସୂତ୍ର ପ୍ରୟୋଗ କରାଯାଇପାରେ ।

$$M = \frac{Zx}{N} \text{ ............ ସୂତ୍ର ନଂ 4.1}$$

M = ମାଧ୍ୟ ବା mean
Σ (Sigma) = ସମଷ୍ଟି ।
X = ବିତରଣ ଅନ୍ତର୍ଗତ ପ୍ରତ୍ୟେକ ଲବ୍‌ଧାଙ୍କ
M = ବିତରଣ ଅନ୍ତର୍ଗତ ସମସ୍ତ ଲବ୍‌ଧାଙ୍କ ସଂଖ୍ୟା ।

ଉଦାହରଣ ସ୍ୱରୂପ ୫ଜଣ ଛାତ୍ରଙ୍କର କୌଣସି ବିଷୟରେ ଲବ୍‌ଧାଙ୍କ ଯଥାକ୍ରମେ ୧୦, ୨୦, ୧୫, ୧୮ ଓ ୧୨ ହେଲେ ସମୁଦାୟ ଲବ୍‌ଧାଙ୍କ ସଂଖ୍ୟା ବା N = ୫, ସମସ୍ତ ଲବ୍‌ଧାଙ୍କର ସମଷ୍ଟି ବା Ex = ୭୫ (୧୦ + ୨୦ + ୧୫ + ୧୮ + ୧୨ ।

$$\text{ତେଣୁ ମାଧ୍ୟ ବା Mean} = \frac{\Sigma x}{N} = \frac{୭୫}{୫} = ୧୫$$

ଉପରୋକ୍ତ ଉଦାହରଣରେ ପ୍ରତ୍ୟେକ ଲବ୍‌ଧାଙ୍କ ମାଧ୍ୟଠାରୁ ଭିନ୍ନ । କେତେକ କ୍ଷେତ୍ରରେ ମାଧ୍ୟ ବିତରଣ ଅନ୍ତର୍ଗତ କୌଣସି ଲବ୍‌ଧାଙ୍କ ମାନ ସହିତ ସମାନ ହୋଇପାରେ । କେତେକ ଲବ୍‌ଧାଙ୍କ ମଧ୍ୟ ମାଧ୍ୟଠାରୁ ଅଧିକ କିମ୍ବା କମ୍ ହୋଇଥାନ୍ତି । ଲବ୍‌ଧାଙ୍କଠାରୁ ମାଧ୍ୟର ଅନ୍ତରକୁ ମାଧ୍ୟ ବିଚ୍ୟୁତି ବା ମାଧ୍ୟ ଦୂରତ୍ୱ (Mean Deviation) କୁହାଯାଏ । ଯେଉଁ ଲବ୍‌ଧାଙ୍କ ମାନ ମାଧ୍ୟମାନ ଠାରୁ ଅଧିକ ସେଗୁଡିକର ମଧ୍ୟ ଦୂରତ୍ୱ ଧନରାଶି ହୋଇଥାଏ । ଯେଉଁ ଲବ୍‌ଧାଙ୍କ ମାନ ମାଧ୍ୟମାନ

ଅପେକ୍ଷା କମ୍ ସେଗୁଡ଼ିକର ମାଧ୍ୟ ଦୂରତ୍ୱ ଋଣାତ୍ମକ ହୋଇଥାଏ । ସମଗ୍ର ବିତରଣରେ ମାଧ୍ୟ ବିଚ୍ୟୁତିର ସମଷ୍ଟି ୦ (ଶୂନ) ହୋଇଥାଏ ।

**(ଖ) ଶ୍ରେଣୀବଦ୍ଧ ବା ବଣ୍ଟିତ ତଥ୍ୟର (Grouped data) ମାଧ୍ୟ ନିରୂପଣ :**—କୌଣସି ବିଷୟରେ ଯଦି ସଂଗୃହୀତ ତଥ୍ୟାବଳୀ ସୁଦୀର୍ଘ ହୋଇଥାଏ । ତେବେ ତଥ୍ୟାବଳୀ ଅନ୍ତର୍ଗତ ସମସ୍ତ ଲବ୍ଧାଙ୍କର ସମଷ୍ଟି ନିରୂପଣ କରି ତହିଁରୁ ମାଧ୍ୟ ପ୍ରକାଶ କରିବା ସାଧାରଣତଃ ସମୟ ସାପେକ୍ଷ ଏବଂ କଷ୍ଟକର ହୋଇଥାଏ । ଏପରି କ୍ଷେତ୍ରରେ ତଥ୍ୟାବଳୀକୁ ଶ୍ରେଣୀବଦ୍ଧ କରି ତହିଁରୁ ମାଧ୍ୟ ନିରୂପଣ କରାଯାଏ । ତାଲିକା ନଂ 4.1ରେ 50 ଜଣ ଛାତ୍ରଛାତ୍ରୀଙ୍କର ଲବ୍ଧାଙ୍କ ଗୁଡ଼ିକର ପୌନଃପୁନ୍ୟ ନିରୂପଣ କରାଯାଇଛି ।

**ତାଲିକା ନଂ 4.1**

(50 ଜଣ ଛାତ୍ରଛାତ୍ରୀଙ୍କର ଲବ୍ଧାଙ୍କ)

| ଲବ୍ଧାଙ୍କ (X) | ପୌନଃପୁନ୍ୟ 7 | ଲବ୍ଧାଙ୍କ × ପୌନଃପୁନ୍ୟ 7X |
|---|---|---|
| 80 | 1 | 80 |
| 75 | 2 | 150 |
| 50 | 4 | 120 |
| 35 | 5 | 175 |
| 24 | 10 | 240 |
| 22 | 10 | 220 |
| 20 | 8 | 160 |
| 15 | 5 | 75 |
| 21 | 3 | 36 |
| 10 | 2 | 20 |
| | N = 50 | Σ7x = 1356 |

$$M = \frac{\Sigma 7x}{N} = \frac{1356}{50} = 21 : 12$$

ମାଧ୍ୟ ନିରୂପଣକରିବା ସମୟରେ ସମସ୍ତ ଲବ୍ଧାଙ୍କର ସମଷ୍ଟି ନିରୂପଣ କରିବା କଥା । ଉପରୋକ୍ତ ଉଦାହରଣରେ ପ୍ରାୟ ଅଧିକାଂଶ ଲବ୍ଧାଙ୍କ ଏକାଧିକଥର ରହିଥିବାରୁ ସେହି ଲବ୍ଧାଙ୍କକୁ ସେତିକିବାର ମିଶାଇ ସମଷ୍ଟି ନିରୂପଣ କରିବା ପରିବର୍ତ୍ତେ ଉକ୍ତ

ଲବ୍ଧାଙ୍କ ଗୁଚ୍ଛକୁ ପୌନଃପୁନ୍ୟ ଦ୍ୱାରା ଗୁଣି ଗୁଣଫଳର ସମଷ୍ଟିକୁ ବ୍ୟବହାର କରାଯାଏ । ଏହା Σ7X ହୋଇଥାଏ । ଏପରି କ୍ଷେତ୍ରରେ ନିମ୍ନଲିଖିତ ସୂତ୍ର ପ୍ରୟୋଗ କରାଯାଏ ।

$$M = \frac{7X}{N}$$ ...............ସୂତ୍ର 4·2

M = ମାଧ୍ୟ ବା **Mean**

**X** = ବିତରଣ ଅନ୍ତର୍ଗତ ପ୍ରତ୍ୟେକ ଲବ୍ଧାଙ୍କ

**F** =

Σ =

N =

ଉପରୋକ୍ତ ଉଦାହରଣରେ ଲବ୍ଧାଙ୍କଗୁଚ୍ଛକୁ ସଂଭାଗ ବିସ୍ତାର ଅନୁଯାୟୀ ସଂକ୍ଷିପ୍ତ କରାଯାଇ ନାହିଁ । ସଂଭାଗ ବିସ୍ତାର ସାହାଯ୍ୟରେ 4.2 ସୂତ୍ର ପ୍ରୟୋଗ କରାଯାଇ ମଧ୍ୟ ଲବ୍ଧାଙ୍କ ଗୁଚ୍ଛକର ମାଧ୍ୟ ନିରୂପଣ କରାଯାଏ । ନିମ୍ନ ଉଦାହରଣରୁ ଏହା ସ୍ପଷ୍ଟ ଜଣାଯାଏ ।

**ଉଦାହରଣ**— କୌଣସି ଶ୍ରେଣୀର 3ଜଣ ଛାତ୍ରଛାତ୍ରୀଙ୍କୁ ଗଣିତ ବିଷୟରେ ପରୀକ୍ଷା କରାଯାଇ ସେମାନଙ୍କର ଲବ୍ଧାଙ୍କ ପ୍ରକାଶ କରାଯାଇଛି ।

ତାଲିକା ନଂ 4·2

| ସଂଭାଗ | ପୌନଃପୁନ୍ୟ | ସଂଭାଗର ମଧ୍ୟବିନ୍ଦୁ | ମଧ୍ୟବିନ୍ଦୁ × ପୌନଃପୁନ୍ୟ |
|---|---|---|---|
| CI | F | X | 7x |
| 40-44 | 1 | 42 | 42 |
| 35-39 | 2 | 37 | 74 |
| 30-34 | 8 | 32 | 256 |
| 25-29 | 10 | 27 | 270 |
| 20-24 | 6 | 22 | 132 |
| 15-19 | 5 | 17 | 85 |
| 10-14 | 2 | 12 | 24 |
| 5-9 | 1 | 7 | 7 |
| | N=35 | | Σ7x = 890 |

$$M = \frac{E7x}{N} = \frac{890}{25} = 2543$$

(ଗ) ଶ୍ରେଣୀବଦ୍ଧ ତଥ୍ୟାବଳୀର ମାଧ୍ୟ ନିରୂପଣ କରିବାର ସଂକ୍ଷିପ୍ତ ପଦ୍ଧତି (Short Method) :—ଉପରୋକ୍ତ ପଦ୍ଧତି ଅନୁଯାୟୀ କୌଣସି ତଥ୍ୟାବଳୀର ମାଧ୍ୟ ନିରୂପଣ କରିବା ଅପେକ୍ଷାକୃତ ଦୀର୍ଘ ଅଟେ । କାରଣ ବିତରଣ ଅନ୍ତର୍ଗତ ସମସ୍ତ ଲବ୍ଧାଙ୍କର ସମଷ୍ଟି ନିରୂପଣ କରିବା ନିମିତ୍ତ ପ୍ରତ୍ୟେକ ସଂଗରର ମଧ୍ୟବିନ୍ଦୁ ଓ ତାହାର ଅନୁରୂପ ପୌନଃପୁନ୍ୟର ଗୁଣଫଳ (×) ପୃଥକ ପୃଥକ ଭାବେ ନିର୍ଣ୍ଣୟ କରି ତାହାର ସମଷ୍ଟି (Σ7X) ନିର୍ଣ୍ଣୟ କରାଯାଏ । ଏକ ସଂକ୍ଷିପ୍ତ ପଦ୍ଧତି ସାହାଯ୍ୟରେ ଏହି ତଥ୍ୟାବଳୀର ମାଧ୍ୟ ନିରୂପଣ କରାଯାଇପାରେ । ନିମ୍ନ ଉଦାହରଣରୁ ଏହା ସ୍ପଷ୍ଟ ଜଣାପଡ଼େ ।

ତାଲିକା ନଂ 4·2

| ଲବ୍ଧାଙ୍କ ସଂଗର (C.I) | ପୌନଃପୁନ୍ୟ (7) | ସଂଗର ବିଚ୍ୟୁତି (d) | ପୌନଃପୁନ୍ୟ + ସଂଗର ବିଚ୍ୟୁତି (7d) |
|---|---|---|---|
| 40 44 | 1 | +3 | +3 |
| 35 39 | 2 | +2 | +4 |
| 30-34 | 8 | +1 | +8 |
| | | | +15 |
| 25-29 | 10 | 0 | 0 |
| 20-24 | 6 | −1 | −6 |
| 15-19 | 5 | −2 | −10 |
| 10-14 | 2 | −3 | −6 |
| 5 9 | 1 | −4 | −4 |
| | | | −26 |
| | N=35 | | Σ7d=11 |

ଉପରୋକ୍ତ ଉଦାହରଣ ସୂତ୍ର ନଂ 4·3 ପ୍ରୟୋଗ କରାଯାଇପାରେ । ମାଧ୍ୟ ହା

$$\text{Mean} = A{\cdot}M + \frac{\Sigma 7d}{N} 2 \quad \ldots\ldots\ldots \text{ସୂତ୍ର ନଂ } 4.3$$

A.M = 27

Σ7d = −11

N = 5

I = 5

$$\text{Mean} = 27 + \frac{-11}{35} \times 6$$

$$= 27 - 1{\cdot}57$$

$$= 25 - 43$$

ନିମ୍ନଲିଖିତ ସୋପାନ (Step) ଅନୁଯାୟୀ ସଂକ୍ଷିପ୍ତ ଉପାୟରେ ମାଧ୍ୟ ନିର୍ଣ୍ଣୟ କରାଯାଇ ପାରେ ।

୧ । ବିତରଣ ଅନ୍ତର୍ଗତ ସଂଭାଗଗୁଡ଼ିକ ମଧ୍ୟରୁ କୌଣସି ଏକ ସଂଭାଗକୁ ଅଭ୍ୟୁଦେଶ ସଂଭାଗ ରୂପେ ଗ୍ରହଣ କରାଯାଏ । ସାଧାରଣତଃ ଯେଉଁ ସଂଭାଗ ବିତରଣର ମଧ୍ୟ ଭାଗରେ ଥାଏ, ଯାହାର କି ପୌନଃପୁନ୍ୟ ଅନ୍ୟାନ୍ୟ ସଂଭାଗର ପୌନଃପୁନ୍ୟ ଅପେକ୍ଷା ଅଧିକ ଥାଏ, ତାହାକୁହିଁ ଅଭ୍ୟୁଦେଶ ସଂଭାଗ ରୂପେ ଗ୍ରହଣ କରାଯାଏ । ଅଭ୍ୟୁଦେଶ ସଂଭାଗର ମଧ୍ୟ ବିନ୍ଦୁକୁ କଳ୍ପିତ ମାଧ୍ୟ (Assumed Mean) କୁହାଯାଏ ।

୨ । କଳ୍ପିତ ମାଧ୍ୟଠାରୁ ଅନ୍ୟାନ୍ୟ ସଂଭାଗର ମଧ୍ୟ ବିନ୍ଦୁର ବିଚ୍ୟୁତି ବା ଦୂରତ୍ୱକୁ ସଂଭାଗ ବିସ୍ତାର ଏକକରେ ପ୍ରକାଶ କରାଯାଏ । ଅଭ୍ୟୁଦେଶ ସଂଭାଗରୁ ଉଚ୍ଚ କ୍ରମରେ ଥିବା ସଂଭାଗ ଗୁଡ଼ିକରେ ଏହି ବିଚ୍ୟୁତି ଧନାତ୍ମକ ଓ ନିମ୍ନକ୍ରମରେ ଥିବା ସଂଭାଗ ଗୁଡ଼ିକରେ ଏହି ବିଚ୍ୟୁତି ଋଣାତ୍ମକ ହେବ ।

୩ । ପ୍ରତ୍ୟେକ ସଂଭାଗର ମାଧ୍ୟ ବିଚ୍ୟୁତି ଓ ସେହି ସଂଭାଗର ପୌନଃପୁନ୍ୟର ଗୁଣଫଳ ନିର୍ଣ୍ଣୟ କରାଯାଉ । ଏହି ଗୁଣଫଳ ଧନାତ୍ମକ କିମ୍ବା ଋଣାତ୍ମକ ହୋଇପାରେ । ଏହି ଗୁଣଫଳ ଗୁଡ଼ିକର ସମଷ୍ଟି (Σ7d) ନିର୍ଣ୍ଣୟ କରାଯାଉ । ଏହି ସମଷ୍ଟିର ଚିହ୍ନ ଋଣରାଶି କିମ୍ବା ଧନରାଶି ହୋଇପାରେ ।

୪ । Σ7d କୁ (ଗୁଣଫଳର ସମଷ୍ଟି) ସମୁଦାୟ ଲବ୍ଧାଙ୍କ ସଂଖ୍ୟା (N) ଦ୍ୱାରା ଭାଗକରି ଏହି ଭାଗଫଳକୁ ସଂଭାଗ ବିସ୍ତାର (I) ଦ୍ୱାରା ଗୁଣାଯାଉ । ଏହାକୁ କଳ୍ପିତ ମାଧ୍ୟର ମଧ୍ୟବିନ୍ଦୁ ସହ ଯୋଗକରି ବିତରଣରେ ନିରୂପଣ କରାଯାଏ ।

ଦୁଇ କିମ୍ବା ତତୋଽଧିକ ବିତରଣରେ ମାଧ୍ୟ ନିର୍ଣ୍ଣୟ :—

ଏକାଧିକ ଶ୍ରେଣୀର ସଂଯୋଗୀ ମାଧ୍ୟ ନିରୂପଣ କରିବା ନିମିତ୍ତ ନିମ୍ନ ସୂତ୍ର ପ୍ରୟୋଗ କରାଯାଇଥାଏ ।

$$M\ Comb = \frac{N M_1 + N_2M_2 + \cdots\cdots + Nn\ Mn}{N_1 + N_2 + \cdots\cdots Nn}$$ —ସୂତ୍ର ନଂ 4·4

M Comb = ଏକତ୍ରିତ ମାଧ୍ୟର ମୂଲ୍ୟ

$N_1N_2Nn$ = ଶ୍ରେଣୀଗୁଡ଼ିକର ମୋଟ ସଂଖ୍ୟା

$M_1M_2Mn$ — = ଲବ୍ଧାଙ୍କ ବିତରଣର ପୃଥକ୍ ପୃଥକ୍ ମାଧ୍ୟର ମୂଲ୍ୟ ।

**ଉଦାହରଣ**—୩୦ ଜଣ ଛାତ୍ରଙ୍କର ଗଣିତ ପରୀକ୍ଷା ଲବ୍ଧାଙ୍କ ବିତରଣର ମାଧ୍ୟ ୪୦ । ଅନ୍ୟ ୨୦ ଜଣ ଛାତ୍ରଙ୍କର ପରୀକ୍ଷାଲବ୍ଧ ବିତରଣର ମାଧ୍ୟ ୫୦ । ତେବେ ଉଭୟ ୫୦ ଜଣ ଛାତ୍ରଙ୍କର ଦେଇ ଗଣିତ ବିଷୟକ ଲବ୍ଧାଙ୍କ ବିତରଣର ଏକତ୍ରିତ ମାଧ୍ୟ =

$$M\ Comb = \frac{(30 \times 40) + (20 + 50)}{30 + 20}$$

$$= \frac{1200 + 1000}{50} = \frac{2200}{50} = 44$$ ଅଟେ ।

**ମଧ୍ୟମା :**

କୌଣସି ଲବ୍ଧାଙ୍କ ବିତରଣର କେନ୍ଦ୍ରୀୟ ପ୍ରବଣତାର ଅନ୍ୟ ଏକ ମାପ ହେଉଛି ମଧ୍ୟମା । ଏହା ମାଧ୍ୟଠାରୁ ସଂପୂର୍ଣ୍ଣ ଭିନ୍ନ ଅଟେ । ସମସ୍ତ ବିତରଣରେ ଥିବା ଲବ୍ଧାଙ୍କକୁ ଏହା ସମାନ ସମାନ ଭାଗରେ ବିଭକ୍ତ କରେ । ଅର୍ଥାତ୍ ମଧ୍ୟମା ବିତରଣର ଏକ ମଧ୍ୟ ବିନ୍ଦୁ ଯାହାଦ୍ୱାରା ସମୁଦାୟ ଲବ୍ଧାଙ୍କର ୫୦% ଏହି ବିନ୍ଦୁର ଉର୍ଦ୍ଧ୍ୱରେ ଓ ୫୦% ଏହି ବିନ୍ଦୁର ନିମ୍ନରେ ରହେ ।

**ଅଶ୍ରେଣୀବଦ୍ଧ ବା ଅବର୍ଗୀତ ତଥ୍ୟର ମଧ୍ୟମା ନିରୂପଣ :**

ଉଦାହରଣ ସ୍ୱରୂପ ଗଣିତ ପରୀକ୍ଷାରେ ୯ ଜଣ ପରୀକ୍ଷାର୍ଥୀଙ୍କର ଲବ୍ଧାଙ୍କ ଯଥାକ୍ରମେ ୫୨, ୫୮, ୫୪, ୪୮, ୭୪, ୬୧, ୬୦, ୭୨ ଓ ୫୦ । ଏହି ଲବ୍ଧାଙ୍କ ଗୁଡ଼ିକର ମଧ୍ୟମା ନିରୂପଣ କରିବାକୁ ହେଲେ ପ୍ରଥମେ ଲବ୍ଧାଙ୍କଗୁଡ଼ିକୁ କ୍ରମରେ ସଜାଇ ରଖାଯିବା ଦରକାର । ଯଥା ୪୮, ୫୦, ୫୨, ୫୪, ୫୮, ୬୦, ୬୧, ୭୪ ଓ ୭୨ । ଉକ୍ତ ତଥ୍ୟରୁ ମଧ୍ୟମା ନିର୍ଣ୍ଣୟ ଅତ୍ୟନ୍ତ ସହଜ ଅଟେ । ସଂଜ୍ଞାନୁଯାୟୀ ମଧ୍ୟମା ବିତରଣର ଠିକ୍ ମଧ୍ୟ ସ୍ଥଳରେ ଥିବାରୁ ଏଠାରେ ମଧ୍ୟମା ୫୮ ଅଟେ । ମାତ୍ର ଲବ୍ଧାଙ୍କଗୁଡ଼ିକ ଅଯୁଗ୍ମ ନଥାଇ ଯୁଗ୍ମ ଥିଲେ, ଅର୍ଥାତ୍ ଲବ୍ଧାଙ୍କଗୁଡ଼ିକ ନିମ୍ନରୂପରେ ଥିଲେ ଯଥା ୪୮, ୫୦,

୫୨, ୫୪, ୫୮, ୬୦, ୬୧ ଓ ୬୪ । ଏଠାରେ ମଧ୍ୟମା ସଂଖ୍ୟାନୁଯାୟୀ ଠିକ୍ ମଧ୍ୟସ୍ଥଳ ଅର୍ଥାତ୍ ୫୪ ଓ ୫୮ ମଧ୍ୟରେ ଅବସ୍ଥାନ କରିବ ଅର୍ଥାତ୍ ଏଠାରେ ମଧ୍ୟମା $\left(\frac{51+58}{2}\right)$ 56 ହେବ ।

ଅଶ୍ରେଣୀବଦ୍ଧ କୌଣସି ତଥ୍ୟ ମାଳାରେ ଯଦି N ସଂଖ୍ୟକ ଲବ୍ଧାଙ୍କ ଥାଏ, ତେବେ ଲବ୍ଧାଙ୍କଗୁଡ଼ିକୁ ଅବସ୍ଥିତ ଅନୁଯାୟୀ ସଜାଇ ରଖିଲେ $\left(\frac{(N+1)}{2}\right)$ th ଲବ୍ଧାଙ୍କଟି ମଧ୍ୟମା ହେବ । ପ୍ରଥମ ଉଦାହରଣରେ ଲବ୍ଧାଙ୍କ ସଂଖ୍ୟା ୯ ହୋଇଥିବାରୁ ଏଠାରେ $\left(\frac{(9+1)}{2}\right)$ th ଅର୍ଥାତ୍ ପଞ୍ଚମ ଲବ୍ଧାଙ୍କଟି ବଣ୍ଟନର ମଧ୍ୟମା ହେବ । ଅର୍ଥାତ୍ ୫୮ ହେବ । ସେହିପରି ଦ୍ୱିତୀୟ ଉଦାହରଣରେ ଲବ୍ଧାଙ୍କ ସଂଖ୍ୟା 8 ହୋଇଥିବାରୁ $\left(\frac{8+1}{2}\right)$ th ଅର୍ଥାତ୍ 4.5 th ସଂଖ୍ୟାଟି ମଧ୍ୟମା ହେବ । ଏହି ଉଦାହରଣରେ ୫୪ ଓ ୫୮ ଯଥାକ୍ରମେ ଚତୁର୍ଥ ଓ ପଞ୍ଚମ ସଂଖ୍ୟା ହୋଇଥିବାରୁ ଏହି ଦୁଇ ଲବ୍ଧାଙ୍କର ମଧ୍ୟବିନ୍ଦୁ $\left(\frac{54+58}{2}\right)$ 56 ବଣ୍ଟନର ମଧ୍ୟମା ହେବ ।

**ଶ୍ରେଣୀବଦ୍ଧ ତଥ୍ୟର ମଧ୍ୟମା ନିରୂପଣ :**

ନିମ୍ନରେ ଥିବା ଉଦାହରଣରୁ ଶ୍ରେଣୀବଦ୍ଧ ତଥ୍ୟରୁ କିପରି ମଧ୍ୟମା ନିରୂପଣ କରାଯାଏ, ତାହା ସ୍ପଷ୍ଟ ଜଣାପଡ଼େ । ନିମ୍ନରେ ୧୨୦ ଜଣ ପରୀକ୍ଷାର୍ଥୀଙ୍କର ଲବ୍ଧାଙ୍କକୁ ଶ୍ରେଣୀବଦ୍ଧ ଭାବେ ପ୍ରକାଶ ହୋଇଛି ।

ତାଲିକା ନଂ ୪.୪

| ସଂଭାଗ (C. I) | ପୌନଃପୁନ୍ୟ (7) | ସଞ୍ଚୟୀ ପୌନଃପୁନ୍ୟ (Cumulative Frequency) |
|---|---|---|
| 68-72 | 2 | 120 |
| 63-67 | 8 | 118 |
| 58-62 | 17 | 110 |
| 53-47 | 22 | 93 |

| ସଂଘଗ | ପୌନଃପୁନ୍ୟ | ସଞ୍ଚୟୀ ପୌନଃପୁନ୍ୟ |
|---|---|---|
| (C.I) | (7) | (Cumulative Frequence) |
| 48-32 | 26 | 71 |
| 43 47 | 18 | 45 |
| 38 42 | 17 | 27 |
| 33-37 | 7 | 10 |
| 28-32 | 3 | 3 |
| | N = 120 | |

ତାଲିକା ନଂ ୪.୪ରେ ପ୍ରଥମ ଓ ଦ୍ୱିତୀୟ ସ୍ତମ୍ଭରେ ଯଥାକ୍ରମେ ସଂଘଗ ଓ ସେଗୁଡ଼ିକର ଅନୁରୂପ ପୌନଃପୁନ୍ୟର ସୂଚନା ଦିଆଯିବା ସଙ୍ଗେ ସଙ୍ଗେ ତୃତୀୟ ସ୍ତମ୍ଭରେ ସଞ୍ଚୟୀ ପୌନଃପୁନ୍ୟର ସୂଚନା ଦିଆଯାଇଛି । କୌଣସି ବିତରଣର ମଧ୍ୟମା ନିରୂପଣ କରିବା ସମୟରେ ସଞ୍ଚୟୀ ପୌନଃପୁନ୍ୟ ଜାଣିବା ବିଶେଷ ଗୁରୁତ୍ୱପୂର୍ଣ୍ଣ । କୌଣସି ଲବ୍ଧାଙ୍କ ସୀମାର ସଞ୍ଚୟୀ ପୌନଃପୁନ୍ୟ ହେଉଛି ଏହି ଲବ୍ଧାଙ୍କ ସୀମାର ନିମ୍ନରେ ବା ଊର୍ଦ୍ଧ୍ୱରେ ଥିବା ସମସ୍ତ ପୌନଃପୁନ୍ୟର ସମଷ୍ଟି । ମଧ୍ୟମା ସଂଜ୍ଞାନୁଯାୟୀ ଉପରୋକ୍ତ ତାଲିକାର ଏହା ଏପରି ଏକ ଲବ୍ଧାଙ୍କ ବିନ୍ଦୁ ହେବ ଯାହାର ନିମ୍ନକୁ ଓ ଉପରକୁ ୬୦ଟି ଲବ୍ଧାଙ୍କ (୧୨୦ର ୫୦% = ୬୦) ରହିବ । ଦ୍ଉପର ତାଲିକାରୁ ଜଣାଯାଏ ଯେ, ମଧ୍ୟମା ୪୮-୫୨ ସଂଘଗର ଅନ୍ତର୍ଗତ । ନିମ୍ନ ସୂତ୍ରରେ ଏହା ନିରୂପଣ କରାଯାଇପାରେ ।

$$\text{ମଧ୍ୟମା} = Mdn = L + \frac{\frac{N}{2} - F}{FM} I \quad \text{— ସୂତ୍ର ନଂ 4.5}$$

Mdn = ମଧ୍ୟମା

L = ମଧ୍ୟମା ସଂଘଗର ନିମ୍ନ ବାସ୍ତବ ସୀମା

N = ବିତରଣ ଅନ୍ତର୍ଗତ ଲବ୍ଧାଙ୍କ ସମଷ୍ଟି

F = ମଧ୍ୟମା ସଂଘଗର ନିମ୍ନ ବାସ୍ତବ ସୀମାର ନିମ୍ନ କ୍ରମରେ ଥିବା ସମସ୍ତ ପୌନଃପୁନ୍ୟ ସମଷ୍ଟି ବା ସଞ୍ଚୟୀ ପୌନଃପୁନ୍ୟ ।

7m = ମଧ୍ୟମା ସଂଘଗ ଅନ୍ତର୍ଗତ ପୌନଃପୁନ୍ୟ ସଂଖ୍ୟା

I = ସଂଘଗ ବିସ୍ତାର ।

ସୂତ୍ର ଅନୁଯାୟୀ ତାଲିକା ନଂ 4.4 ଅନ୍ତର୍ଗତ ତଥ୍ୟାବଳୀର

$$\text{ମଧ୍ୟମା} = 47.5 + \frac{60-45}{26}.5$$

$$= 47.5 + \frac{15}{20}.5$$

$$= 47.5 + \frac{75}{26}$$

$$= 47.5 + 2.88$$

$$= 50.38$$

ବିତରଣର ନିମ୍ନ କ୍ରମରୁ ସଞ୍ଚୟୀ ପୌନଃପୁନ୍ୟ ଗଣନା କରାଯାଇ ଯେପରି ମଧ୍ୟମା ନିରୂପଣ କରାଯାଏ, ସେହିପରି ଉଚ୍ଚ କ୍ରମରୁ ସଞ୍ଚୟୀ ପୌନଃପୁନ୍ୟ ଗଣନା କରାଯାଇ ମଧ୍ୟ ମଧ୍ୟମା ନିର୍ଣ୍ଣୟ କରିହୁଏ । ସେହିପରି ସ୍ଥଳେ ନିମ୍ନ ସୂତ୍ର ପ୍ରୟୋଗ ହୁଏ ।

$$\text{ମଧ୍ୟମା} = \text{Mdn} = \frac{U - \frac{N}{2} - F}{FM} 2 \quad \text{— ସୂତ୍ର ନଂ } 4{\cdot}6$$

U = ମଧ୍ୟମା ସଂଭାଗର ଉଚ୍ଚ ବାସ୍ତବ ସୀମା ।

N = ବିତରଣ ଅନ୍ତର୍ଗତ ଲବ୍ଧାଙ୍କ ସଂଖ୍ୟା ।

F – ମଧ୍ୟମା ସଂଭାଗର ଉଚ୍ଚ ବାସ୍ତବ ସୀମାର ଉଚ୍ଚ କ୍ରମରେ ଥିବା ସଞ୍ଚୟୀ ପୌନଃପୁନ୍ୟ ।

7M = ମଧ୍ୟମା ସଂଭାଗର ପୌନଃପୁନ୍ୟ ।

I = ସଂଭାଗ ବିସ୍ତାର ।

## ଗରିଷ୍ଠକ :

ଅଶ୍ରେଣୀବଦ୍ଧ ତଥ୍ୟାବଳୀରେ ଯେଉଁ ଲବ୍ଧାଙ୍କ ସର୍ବାଧିକ ବାର ରହିଥାଏ, ଅଥବା ଯାହାର ପୌନଃପୁନ୍ୟ ଅନ୍ୟାନ୍ୟ ଲବ୍ଧାଙ୍କର ପୌନଃପୁନ୍ୟ ଅପେକ୍ଷା ଅଧିକ ଥାଏ, ତାହାକୁ ସେହି ବିତରଣର ସ୍ଥୂଳ ଗରିଷ୍ଠକ କୁହାଯାଏ । ଉଦାହରଣ ୫, ୭, ୯, ୭, ୧୦, ୧୧, ୭, ୫ ଓ ୪ ତଥ୍ୟାବଳୀରେ ୭ର ପୌନଃପୁନ୍ୟ ସର୍ବାଧିକ ହୋଇ-ଥିବାରୁ ୭ ଉକ୍ତ ତଥ୍ୟାବଳୀର ସ୍ଥୂଳ ଗରିଷ୍ଠକ ଅଟେ ।

ଶ୍ରେଣୀବଦ୍ଧ ତଥ୍ୟମାଳାରେ ଯେଉଁ ସଂସ୍ତରର ପୌନଃପୁନ୍ୟ ସର୍ବାପେକ୍ଷା ଅଧିକ ସେହି ସଂସ୍ତରର ମଧ୍ୟ ବିନ୍ଦୁକୁ ଉକ୍ତ ବିତରଣର ସ୍ଥୂଳ ଗରିଷ୍ଠକ ରୂପେ ଧରାଯାଏ । ମାତ୍ର ବିତରଣର ସଂଖ୍ୟା ଅତ୍ୟଧିକ ହୋଇଥିଲେ ଏବଂ ବିତରଣରେ ପୌନଃପୁନ୍ୟ ଗୁଡ଼ିକର ବଣ୍ଟନ ହୋଇଥିଲେ ନିମ୍ନ ସୂତ୍ର ଅନୁଯାୟୀ ଗରିଷ୍ଠକ ନିର୍ଦ୍ଧାରିତ ହୁଏ ।

**Mode** ବା ଗରିଷ୍ଠକ = 3 **Median** – 2 **Mean** ସୂତ୍ର ନଂ 4·7

ଉଦାହରଣ—କୌଣସି ତଥ୍ୟାବଳୀର ମାଧ୍ୟ **Mean** = 12 ଏବଂ ମଧ୍ୟମା 10 ହେଲେ ତଥ୍ୟାବଳୀର ଗରିଷ୍ଠକ =

$$(3 \times 10) - (2 \times 12)$$

$$= 30 - 24$$

$$= 6$$ ହେବ ।

## ମାଧ୍ୟର ବ୍ୟବହାର (Use of Mean) :

୧ । 3 ଗୋଟିଏ କେନ୍ଦ୍ରୀୟ ପ୍ରବଣତା ନିର୍ଦ୍ଦେଶକ ମାପ ମଧ୍ୟରୁ ମାଧ୍ୟର ଅପେକ୍ଷାକୃତ ଅଧିକ ଉପାଦେୟ ।

୨ । ବିତରଣରେ ପୌନଃପୁନ୍ୟର ଅତ୍ୟଧିକ ବିଷମ ବଣ୍ଟନ ହୋଇ ନଥିଲେ ମାଧ୍ୟର ବ୍ୟବହାର ଯୁକ୍ତିଯୁକ୍ତ ।

## ମଧ୍ୟମାର ବ୍ୟବହାର (Use of Median)

୧ । କୌଣସି ବିତରଣର ଠିକ୍ ମଧ୍ୟ ବିନ୍ଦୁ ଜାଣିବା ପାଇଁ ମଧ୍ୟମା ନିର୍ଣ୍ଣୟ କରିବା ଆବଶ୍ୟକ ।

୨ । କେତେକ ବିତରଣରେ ଅତି ଉଚ୍ଚ ନମ୍ବର କିମ୍ବା ଅତି ନିମ୍ନ କ୍ରମରେ କେତେକ ଲବ୍ଧାଙ୍କ ଥିବା ହେତୁ ମାଧ୍ୟର ମୂଲ୍ୟ ପ୍ରଭାବିତ ହୁଏ । ଏପରି କ୍ଷେତ୍ରର ମଧ୍ୟମା ନିର୍ଣ୍ଣୟ ସଙ୍ଗଠନ କରାଯିବା ଆବଶ୍ୟକ ।

୩ । ବିତରଣର ଉଭୟ ସଂସ୍ତର (ସର୍ବୋଚ୍ଚ ଓ ସର୍ବନିମ୍ନ)ର ସୀମା ଅନିର୍ଦ୍ଦିଷ୍ଟ ଥିଲେ ମଧ୍ୟମା ସହଜରେ ନିର୍ଣ୍ଣୟ କରିହୁଏ ।

**ଗରିଷ୍ଠକର ବ୍ୟବହାର (Use of Mode) :**

୧ । କୌଣସି ବିତରଣର କେନ୍ଦ୍ରୀୟ ପ୍ରବଣତା ତୁରନ୍ତ ଜାଣିବାକୁ ହେଲେ ଗରିଷ୍ଠକ ନିର୍ଣ୍ଣୟ କରାଯାଏ ।

୨ । କୌଣସି ଶ୍ରେଣୀବଦ୍ଧ ତଥ୍ୟମାଳାରେ ଯଦି ସ୍ୱତନ୍ତ୍ର ବା ଆଦର୍ଶଭୂତ ମୂଲ୍ୟର ନିର୍ଦ୍ଦେଶନା ପାଇଁ କେନ୍ଦ୍ରୀୟ ପ୍ରବଣତା ମାପର ଆବଶ୍ୟକ ହୁଏ, ଏପରିସ୍ଥଳେ ଗରିଷ୍ଠକର ବ୍ୟବହାର କରାଯାଇ ଥାଏ ।

